

# ଇତିହାସର ଦର୍ପଣରେ ...

ଦଣ୍ଡଧର ପତି









## ଇତିହାସର ଦର୍ପଣରେ କଷ୍ଟଲବ୍ଧ ସାଧୀନତା



## ଲେଖକ

ଆଜି ଯେଉଁମାନଙ୍କୁ ଆମେ ଦେଶର ଏବଂ ଜାତିର ଭବିଷ୍ୟତ ବୋଲି ଆଶା କରିଛେ ସେମାନଙ୍କ ଜୀବନ ଅଧୁନା ବିଜ୍ଞାନ ସହ ଜଡ଼ିତ ହୋଇ ସେମାନଙ୍କୁ ଯୋଗାଇ ଦେଉଛି ଅପୂର୍ବ ଭୋଗ ବିଳାସ। ସୁଖ ସ୍ୱାଚ୍ଛନ୍ଦ୍ୟ ଭରା ଜୀବନ ଏବଂ ସେମାନଙ୍କ ଠାରୁ ଛଡ଼େଇ ନେଉଛି ଜୀବନର ଆବେଗ, ଆନନ୍ଦ, ଆହ୍ଲାଦ ଉଲ୍ଲାସ। ଏକବିଂଶ ଶତାବ୍ଦୀର ବସ୍ତୁନିଷ୍ଠ ଜ୍ଞାନ ଆମକୁ ଯୋଗାଇ ଦେଉଛି ଆବିଷ୍କାର ଏବଂ ଉଦ୍‌ଭାବନାର ନୂତନ ଦିଗନ୍ତ କିନ୍ତୁ ଛଡ଼େଇ ନେଉଛି ଆମ ଜୀବନର ଚିରନ୍ତନ ପ୍ରେମ, ଶୀକାରିକ ଉପଲବ୍ଧି, ସୃଜନଶୀଳତା, ଭୂମି ସଂଲଗ୍ନ ସଂସ୍କୃତି ଏବଂ ଋଷିତୁଲ୍ୟ ନୀତିନିଷ୍ଠ ଆଦର୍ଶ। ଆଜିର ଧନପିପ୍‌ସା ମଣିଷ ବସ୍ତୁନିଷ୍ଠ ଜ୍ଞାନର ବନ୍ଦନୀରୁ ମୁକ୍ତି ହୋଇ ପାରିନି। ଆଜିର ଭୌତିକ ଅଗ୍ରଗତି ସମାଜରେ ସୃଷ୍ଟି କରିଛି ଘୋର ଦୁର୍ଦ୍ଦିନ। ଆଜିର ଆଧୁନିକ ଶିକ୍ଷା କେବଳ ଡ଼ାକ୍ତର, ଇଞ୍ଜିନିୟର, ଅଧ୍ୟାପକ, ପ୍ରଶାସକ ଓ ବୈଜ୍ଞାନିକ ଇତ୍ୟାଦି ସୃଷ୍ଟି କରି ଚାଲିଛି। କିନ୍ତୁ ଭଲ ମଣିଷଟିଏ ଗଢ଼ି ପାରିନି। ପ୍ରକୃତ ଶିକ୍ଷାର ଉଦ୍ଦେଶ୍ୟ ହେଉଛି - ଆତ୍ମିକ ଉତ୍ତରଣ, ସେବା, ତ୍ୟାଗ ଓ ଚରିତ୍ର ଗଠନ ପାଇଁ। ଆଧୁନିକତାର ଅନ୍ଧଗଳିରେ ଦିଗଭ୍ରଷ୍ଟ ଆଜିର ମଣିଷ। ବିଶେଷ କରି ଯୁବ ସମାଜକୁ ଏହା ସମ୍ପୂର୍ଣ୍ଣ ନିରର୍ଥକ ଓ ହାସ୍ୟାସ୍ପଦ ମନେ ହେଉଛି। ଯେଉଁ ମାନଙ୍କୁ ଆମେ ଦେଶ ଏବଂ ଜାତିର ଭବିଷ୍ୟତ ବୋଲି ଆଶା କରୁଛେ ସେମାନଙ୍କୁ ମୋର ବିନମ୍ର ଅନୁରୋଧ ସେମାନେ ରାଷ୍ଟ୍ରର (ରାଜ୍ୟର ମଧ୍ୟ) ଭାଷା, ସାହିତ୍ୟ, କଳା, ଇତିହାସ ଏବଂ ସଂସ୍କୃତିର ଗୌରବମୟ ଐତିହକୁ ମନେ ପକାଇବା ସଙ୍ଗେ ସଙ୍ଗେ ତାର ରକ୍ଷାଣବେକ୍ଷଣ ଏବଂ ପୁନରୁଦ୍ଧାର ପାଇଁ ସଚେତନ ହେବା ନିତ୍ୟାନ୍ତ ଆବଶ୍ୟକ।

# ଇତିହାସର ଦର୍ପଣରେ କଷ୍ଟଲବ୍ଧ ସ୍ୱାଧୀନତା

(ଇତିହାସ)


## ଦଣ୍ଡଧର ପତି



ପ୍ରକାଶିକା : ସୁଷମା ପତି

ପଞ୍ଚପଡ଼ା, ହିନ୍ଦୋଳ, ଢେଙ୍କାନାଳ

# ଇତିହାସର ଦର୍ପଣରେ କଷ୍ଟଲବ୍ଧ ସ୍ୱାଧୀନତା


| | | |
|---|---|---|
| ଲେଖକ ଏବଂ ସଂଗ୍ରାହକ | : | ଦଣ୍ଡଧର ପତି |
| ପ୍ରକାଶିକା | : | ସୁଷମା ପତି |
| ଗ୍ରାମ/ପୋଅ | : | ପଞ୍ଚପଡ଼ା<br>ହିନ୍ଦୋଳ, ଢେଙ୍କାନାଳ |
| ପ୍ରଥମ ସଂସ୍କରଣ | : | ୨୦୧୩ |
| ଲିପି ସଂଯୋଜନ | : | ସୀତାରାମ ଡ଼ି.ଟି.ପି<br>ସେଣ୍ଟର<br>ଭୀମଟାଙ୍ଗି, ଭୁବନେଶ୍ୱର |
| ପଚ୍ଛଦ | : | ଶ୍ରୀ ଜଗନ୍ନାଥ ପ୍ରିଣ୍ଟର୍ସ |
| ମୁଦ୍ରଣ | : | ଶ୍ରୀ ଜଗନ୍ନାଥ ପ୍ରିଣ୍ଟର୍ସ<br>ଭୁବନେଶ୍ୱର |
| ମୂଲ୍ୟ | : | ଟ. ୧୫୦.୦୦ ଙ୍କା<br>ଏକ ଶତ ପଚାଶ ଟଙ୍କା ମାତ୍ର |


**ITIHASARA DARPANARE KASTALAVDHA SWADHINATA**


**Written & Collected by : Dandadhar Pati**

# ଅଭିମତ



ଶିକ୍ଷା, ଶିକ୍ଷକ, ଶିକ୍ଷାର୍ଥୀ ଏବଂ ଶିକ୍ଷାନିକେତନ ପାଇଁ ହେଉ, ସମାଜ ଉପଯୋଗୀ ହେଉ, ରାଷ୍ଟ୍ର ଉପଯୋଗୀ ହେଉ, କିମ୍ବା ଜଣେ ନାଗରିକ ପାଇଁ ହେଉନା କାହିଁକି, ପୁସ୍ତକଟିଏ ଲେଖି ପ୍ରକାଶିତ କରିବା ନିଶ୍ଚିତ ଭାବେ ଅଲଗା ଚିନ୍ତାଧାରା । ଜଣେ ପ୍ରାକ୍ତନ ଶିକ୍ଷକ ଭାବରେ ଏହା ମୋର ବ୍ୟକ୍ତିଗତ ଅଭିମତ । ଉପନ୍ୟାସ ହେଉ, ଗଳ୍ପ ହେଉ, ପ୍ରବନ୍ଧ ହେଉ, କବିତା ହେଉ କିମ୍ବା ଦେଶାତ୍ମବୋଧକତା ହେଉ ତାହା ଜଣେ ଲେଖକ କିମ୍ବା କବିଙ୍କର ଶାଶ୍ୱତ ସତ୍ୟର ଅଭିବ୍ୟକ୍ତି । ଲେଖିବା ଏକ ସତନ୍ତ୍ର ଈଶ୍ୱର ଦତ୍ତ କଳା । ଏହାକୁ ଅସ୍ୱୀକାର କରାଯାଇନପାରେ ।

ସେଦିନ ମୁଁ ମୋର ସହଧର୍ମିଣୀଙ୍କ ସହିତ ଢେଙ୍କାନାଳରେ ପୁଅ ବ୍ରଜ ଘରେ ପହଞ୍ଚିଲି । ପୁଅ କହିଲା, ବାପା ଆମ ଅଫିସର ଜଣେ କର୍ମଚାରୀ ଖଣ୍ଡିଏ ବହି ଲେଖୁଛନ୍ତି । ସେ ସମ୍ବଲପୁର ବିଷୟରେ ସେ ବହିରେ କିଛି ଅବତାରଣା କରିଛନ୍ତି । ତାଙ୍କୁ ଡାକିବା, ସେ ଆପଣଙ୍କୁ ପଢି ଶୁଣାଇବେ । ବାପା, କେବଳ ଅଧା ଘଣ୍ଟା ସମୟ ଦେବେକି ? ମୁଁ କହିଲି ଆରେ ସମୟ କ'ଣ ? ସମ୍ବଲପୁର ଉପରେ ଲେଖାକୁ ଆମେ ତ ଆଗ୍ରହ ସହକାରେ ଶୁଣିବା ଉଚିତ୍ ।

ସନ୍ଧ୍ୟାରେ ବ୍ରଜ ତାଙ୍କୁ ନେଇ ମୋ ନିକଟକୁ ଆସିଲା । ସେ ପଢିଲେ ଏବଂ ମୁଁ ଶୁଣିଲି । ୧୮୫୦ ମସିହାର ସମ୍ବଲପୁରରେ ଓଡ଼ିଆ ଭାଷା ବିଚ୍ଛେଦ ଇତିହାସକୁ ସଂଗ୍ରହ କରି ଏହାର ଏକ ନିଛକ ଚିତ୍ର ନିଜ ପୁସ୍ତକରେ ଉପସ୍ଥାପନା କରିଛନ୍ତି । ତତ୍ ସଙ୍ଗେ ସଙ୍ଗେ ସେ ସ୍ୱର୍ଗତ ଚନ୍ଦ୍ରଶେଖର ବେହେରାଙ୍କର ସଂକ୍ଷିପ୍ତ କର୍ମମୟ ଜୀବନକୁ ତାଙ୍କ ପୁସ୍ତକରେ ଉପସ୍ଥାପନା କରି ପାରିଛନ୍ତି ଶୁଣି ଖୁସିହେଲି । ଚନ୍ଦ୍ରଶେଖର ବେହେରା ହାଇସ୍କୁଲ (ପ୍ରାକ୍ତନ ସମ୍ବଲପୁର ଜିଲ୍ଲା ହାଇସ୍କୁଲ) ରେ ଶିକ୍ଷକତା କରି ଅବସର ଗ୍ରହଣ କରିଥିବା ହେତୁ ମୁଁ ତ ଆନନ୍ଦ ହେବା ସ୍ୱାଭାବିକ ।

ମା ସମଲେଶ୍ୱରୀଙ୍କ ନିକଟରେ ପ୍ରାର୍ଥନା କରୁଛି ଲେଖକଙ୍କର ସ୍ୱଦେଶ ପ୍ରୀତି, ମାତୃଭୂମି ପ୍ରୀତି ଏବଂ ମାତୃଭାଷା ପ୍ରୀତିର ଉତ୍ତରୋତ୍ତର ଉନ୍ନତି ହେଉ ଏବଂ ପୁସ୍ତକ ପ୍ରକାଶନରେ ମା' ସହାୟକ ହୁଅନ୍ତୁ ଏହାହିଁ ମୋର କାମନା ।

**ଜଗବନ୍ଧୁ ପାଢୀ**
**ଅବସର ପ୍ରାପ୍ତ ଶିକ୍ଷକ**
**ଚନ୍ଦ୍ରଶେଖର ବେହେରା ଜିଲ୍ଲା ସ୍କୁଲ**
**ସମ୍ବଲପୁର ।**

# ଅଭିମତ



ନିଜ ଦେଶ, ରାଜ୍ୟ ଏବଂ ଅଞ୍ଚଳର ପୁରାବୃତ୍ତ ସଂପର୍କରେ ଜାତିପ୍ରାଣ, ସଂସ୍କୃତି ସଂପନ୍ନ ପ୍ରତ୍ୟେକ ବ୍ୟକ୍ତିଙ୍କ ନିକଟରେ ଅଫୁରନ୍ତ ଅନୁସନ୍ଧିତ୍ସୁ ମନୋବୃତ୍ତି ରହିଥାଏ । ଅତୀତରେ ଇତିବୃତ୍ତି ବିନା ମାନବ ସଭ୍ୟତାର ସ୍ଥିତି ଓ ବିକାଶ କଳ୍ପନା କରିବା ଏବଂ ସେ ସଂପର୍କରେ ଅବଧାରଣା କରିବା ନିଶ୍ଚିନ୍ତ ଭାବେ ଅସମ୍ଭବ ହୋଇ ପଡ଼ିବା ସ୍ୱାଭାବିକ ।

ଏ ପରିପ୍ରେକ୍ଷୀରେ ବହୁ ଲବ୍ଧ ପ୍ରତିଷ୍ଠ, ପ୍ରଥିତ ଯଥା ଐତିହାସିକ, ଆଞ୍ଚଳିକ ଇତିହାସର ସତ୍ୟାନ୍ୱେଷୀ ଆଗ୍ରହ ପ୍ରସୁତ ମୂଲ୍ୟାୟନ ପୂର୍ବକ ଇତିହାସ ଗବେଷଣାରେ ମନୋନିବେଶ କରିବାକୁ ନବୀନ ଇତିହାସ ଲେଖକ, ଇତିହାସ ପ୍ରେମୀ ମାନଙ୍କୁ ଆହ୍ୱାନ ଦେଇ ଆସିଛନ୍ତି । ଅତୀତ ଇତିହାସର ନବନବ ଦିଗନ୍ତର ଆବିଷ୍କାର କରି ତତ୍ତ୍ୱାନ୍ୱେଷୀ ଏବଂ ତଥ୍ୟାଶ୍ରୟୀ ହୋଇ ଐତିହାସିକ ତ୍ରୁଟି ଓ ପ୍ରମାଦ ଗୁଡ଼ିକୁ ଆଲୋଚନାକୁ ଆଣିବା ଏବଂ ପ୍ରକୃତ ଇତିହାସ ସ୍ୱରୂପ ଦେବାପାଇଁ ସେମାନେ ଅନୁପ୍ରେରିତ ହେବାସହ ଦୃଢ ସଂକଳ୍ପ ହେବାକୁ ଆହ୍ୱାନ ଦିଆଯାଇଛି ।

ଓଡ଼ିଶାର ୨୬ ଗୋଟି ଗଡ଼ଜାତ ରାଜ୍ୟ ମଧ୍ୟରେ ହିନ୍ଦୋଳ ଅନ୍ୟତମ । ଅଥଚ ଏହି କ୍ଷୁଦ୍ର ଗଡ଼ଜାତ ରାଜ୍ୟ ସଂପର୍କରେ ଅଦ୍ୟାବଧି ଅଳ୍ପ କିଛି ସଂକ୍ଷିପ୍ତ ବିବରଣୀ ସ୍ୱଳ୍ପ କେତେକ ଗ୍ରନ୍ଥ ମଧ୍ୟରେ ସ୍ଥାନିତ, ଯାହାକି ଲୋକ ଲୋଚନର ଅନ୍ତରାଳରେ ରହି ଯାଇଛି । ମାତ୍ର କେଇ ପୃଷ୍ଠା ସମ୍ବଳିତ ହିନ୍ଦୋଳର ଇତିହାସ ଓ ଭୌଗଳିକ ବିବରଣୀ ପୂର୍ଣ୍ଣ ଐତିହାସିକତା ବହନ କରିନାହିଁ । ଢେଙ୍କାନାଳ ଇତିହାସରେ କାଁ ଭାଁ କେଉଁଠି ହିନ୍ଦୋଳ ଗଡ଼ଜାତର ନାମୋଲ୍ଲେଖ ମାତ୍ର ରହିଛି । ଏକ ପ୍ରାଚୀନ ଗଡ଼ଜାତ ରାଜ୍ୟ ହିନ୍ଦୋଳ ସଂପର୍କିତ ଇତିହାସର ଆବଶ୍ୟକତା ଅନୁଭବ କରିବାର ସମୟ ନିଶ୍ଚିତ ଭାବେ ଉପଗତ ହୋଇଅଛି । ଅତୀବ ଆନନ୍ଦର କଥା, ଏହି ଗ୍ରନ୍ଥାକାର ଶ୍ରୀଯୁକ୍ତ ଦଣ୍ଡଧର ପତି ଏ ଦିଗରେ ବହୁ ଆୟାସ ସାଧ ଉଦ୍ୟମର ସହ ବିଭିନ୍ନ ସୂତ୍ରରୁ ତଥ୍ୟାବଳୀ ସଂଗ୍ରହ କରି ତାହାକୁ ମାଳାକାର ସଦୃଶ ସଯତ୍ନ ଗୁନ୍ଥନର ପ୍ରୟାସ କରିଛନ୍ତି ।

ହିନ୍ଦୋଳ ମାଟିର ଜୈନିକ ସୁଯୋଗ୍ୟ ସନ୍ତାନ ରୂପେ ମାତୃଭୂମି ପ୍ରତି ଗଭୀର ମମତ୍ୱ ବୋଧ ଏବଂ ଐକାନ୍ତିକ ନିଷ୍ଠା ପ୍ରକାଶ କରି ଶ୍ରୀଯୁକ୍ତ ପତି ଭାରତୀୟ ଜାତୀୟ ଆନ୍ଦୋଳନ ପୃଷ୍ଠ ଭୂମିରେ ହିନ୍ଦୋଳ ଗଡ଼ଜାତ ଏବଂ ଏ ମାଟିର ସ୍ୱାଧୀନତା ସଂଗ୍ରାମୀ ମାନଙ୍କର ଭୂମିକା ପ୍ରାକ୍ ସ୍ୱାଧୀନତା ଏବଂ ସ୍ୱାଧୀନୋତ୍ତର କାଳରେ ବିଭିନ୍ନ ସଂଗ୍ରାମୀ, ଦେଶ ସେବକ, ଶିକ୍ଷାବିତ୍ ଓ ସମାଜ ସେବୀଙ୍କ ଅବଦାନ ଗଡ଼ଜାତ ମିଶ୍ରଣ ପରବର୍ତ୍ତି କାଳରେ ହିନ୍ଦୋଳର ଶିକ୍ଷା

ବ୍ୟବସ୍ଥା ଏବଂ ଖଜୁରିଆ କଟା ସଦୃଶ ଏକ ସତନ୍ତ୍ର ଶିକ୍ଷାଞ୍ଚଳରେ ସୃଷ୍ଟି (ତାହା ପୁଣି ଜଣେ ବ୍ୟକ୍ତିଙ୍କ ଏକକ ଉଦ୍ୟମ ଓ ଆନ୍ତରିକ ନିଷ୍ଠା ବଳରେ), ଏତାଦୃଶ ବହୁ ତଥ୍ୟକୁ ଗ୍ରନ୍ଥକାର ଅକ୍ଲାନ୍ତ ଚେଷ୍ଟା ଏବଂ ଶ୍ରମସ୍ୱୀକାର ପୂର୍ବକ ବିଭିନ୍ନ ସ୍ଥାନ ଭ୍ରମଣ କରି, ବହୁ ବ୍ୟକ୍ତିଙ୍କ ଠାରୁ ସଂଗ୍ରହ କରି ସେ ସବୁକୁ ଏ ଗ୍ରନ୍ଥରେ ସନ୍ନିବେଶିତ କରିଛନ୍ତି ।

ସ୍ଥୂଳତଃ ଗ୍ରନ୍ଥଟି ତଥ୍ୟବହୁଳ ହୋଇଛି । ମାତ୍ର ଅନେକତ୍ର ଲେଖକ ଇତିହାସର କଷଟିରେ ପରଖି ପରଖି ବାକ୍ ପ୍ରଗଳ୍ଭ ଏବଂ ଭାବ ପ୍ରବଣ ହୋଇ ପଡ଼ି ଶ୍ରୁତ କଥା ଏବଂ କିମ୍ବଦନ୍ତୀ ଆଶ୍ରୟୀ ହୋଇ ପଡ଼ିଛନ୍ତି । ବର୍ଣ୍ଣନା ବାହୁଲ୍ୟ କାରଣରୁ ଅନେକତ୍ର ଭାବସାନ୍ଦ୍ରତା ଏବଂ ତଥ୍ୟାବଳୀର ଅନୁକ୍ରମିକତା ବ୍ୟାହାତ ହୋଇଛି । କେତେକ ସ୍ଥାନରେ ଇତିହାସ ଆଲୋଚନା କରୁ କରୁ ସାହିତ୍ୟିକ ସଦୃଶ କଳ୍ପନା ବଳୟ ମଧ୍ୟକୁ ଲେଖକଙ୍କ ଚିନ୍ତାଧାରା ଟାଣିହୋଇ ଯାଇଥିବା ଲକ୍ଷିତ ହୁଏ ।

ବସ୍ତୁତଃ ଲେଖକ ଯେହେତୁ ଇତିହାସକାର ନୁହଁନ୍ତି ତଥାପି ଇତିହାସ ପ୍ରତି ତାଙ୍କ ମାନସରେ ଥିବା ଗଭୀର ରୁଚି ବୋଧ, ଅନୁସନ୍ଧିତ୍ସୁ ମନୋବୃତ୍ତି, କିଛି ନୂଆକରି ଗଢ଼ି ଯିବା ପାଇଁ ଦୁରନ୍ତ ଆଗ୍ରହ, ସର୍ବୋପରି ମାଆ ମାଟି ପ୍ରତିଥିବା ଗଭୀର ପ୍ରେମ ଭାବ ଓ ଜାତୀୟ ଚେତନା ତାଙ୍କୁ ହିନ୍ଦୋଳ ଗଡ଼ଜାତର ଅତୀତର ଇତିବୃତ୍ତି ରଚନା କରିବାକୁ ଉତ୍ସାହିତ ଓ ଅନୁପ୍ରେରିତ କରିଅଛି । ଏହି ବିବରଣାତ୍ମକ ଲେଖା ମଧ୍ୟରେ ଇତିହାସର ଉପାଦାନ ଭରି ଦେବାପାଇଁ ଲେଖକ ଯଥା ସାଧ୍ୟ ପ୍ରୟାସ କରିଛନ୍ତି । ଭବିଷ୍ୟତର ଲେଖକ, ଗବେଷକ ଏବଂ ଇତିହାସକାର ମାନଙ୍କ ପାଇଁ ଲେଖକ ମାର୍ଗଟିଏ ପ୍ରସ୍ତୁତ କରି ଅଛନ୍ତି । ତାଙ୍କ ପ୍ରଦତ୍ତ ତଥ୍ୟ ଓ ସୂଚନା ଆଗାମୀ ପିଢ଼ିର ଲେଖକ ମାନଙ୍କୁ ଅଧିକ କିଛି ଲେଖିବା ପାଇଁ, ଅନାବିଷ୍କୃତ ତଥ୍ୟକୁ ଆବିଷ୍କାର କରିବା ପାଇଁ ନିଶ୍ଚିନ୍ତ ଭାବେ ଉପାଦାନ ଓ ପ୍ରେରଣା ଯୋଗାଇବ ଏଥିରେ ସନ୍ଦେହ ନାହିଁ ।

ସର୍ବଶେଷରେ ଲେଖକଙ୍କ ବିଧ ଅଭିନବ ଉଦ୍ୟମ ଫଳପ୍ରଦ ହେଉ, ସର୍ବାନ୍ତ କରଣରେ ସାଧୁବାଦ ଜଣାଇ ଏ ଗ୍ରନ୍ଥର ଉତ୍ତରୋତ୍ତର ପ୍ରସାର ଏବଂ ଆଦୃତି କାମନା କରୁଅଛି ।

**ଅଳଂ ମତି ବିସ୍ତରେଣ**

**ଡ଼ଃ ଅକ୍ଷୟ କୁମାର ମହାପାତ୍ର**
**ପ୍ରାଧ୍ୟାପକ, ଓଡ଼ିଆ ବିଭାଗ**
**ହିନ୍ଦୋଳ ମହାବିଦ୍ୟାଳୟ**
**ଖଜୁରିଆକଟା ।**

# ମୁଖବନ୍ଧ



ଭିନ୍ନ ଭିନ୍ନ ଐତିହାସିକ ସେମାନଙ୍କ ବୁଦ୍ଧି ଓ ଦୃଷ୍ଟି କୋଣରୁ ଇତିହାସକୁ ବିଚାର କରିଥାନ୍ତି । ଇ.ଏଚ୍.କାର ତାଙ୍କର ପୁସ୍ତକ "ହ୍ୱାଟ ଇଜ ହିଷ୍ଟ୍ରି" ରେ ଲେଖିଛନ୍ତି "ଆମର ଇତିହାସର ଲକ୍ଷ୍ୟ, ଆମର ସମାଜର ଉଦ୍ଦେଶ୍ୟକୁ ପ୍ରତିଫଳିତ କରିଥାଏ ।" ସମୟର ଗତି ସହିତ ଇତିହାସ ଲେଖନ ପ୍ରଣାଳୀ ବଦଳି ଯାଏ । ଐତିହାସିକ ମାନଙ୍କର ଚେଷ୍ଟା, ଅଧ୍ୟୟନ ଓ ଗବେଷଣା ଯୋଗୁଁ ଇତିହାସ ବିକାଶ ମୁଖୀ ହୋଇ ପାରିଛି । ଅନେକ ନୂତନ ତତ୍ତ୍ୱ, ତଥ୍ୟ ଓ ଆଭିମୁଖ୍ୟର ସମାହାରରେ ଇତିହାସ ସମୃଦ୍ଧ । ଆକଟନଙ୍କ ପ୍ରସିଦ୍ଧ ଭାଷାରେ "ଇତିହାସ ହେଉଛି ଲେଖି ରଖିବା ପାଇଁ ଏକମାତ୍ର ସୁଯୋଗ, ସେଥିରେ  ରହିଛି ଜ୍ଞାନର ପରିପୂର୍ଣ୍ଣତା । ଏହି ଜ୍ଞାନ ହୋଇପାରେ ଦର୍ଶନ, ଧର୍ମ, ବିଜ୍ଞାନ, ପ୍ରଯୁକ୍ତି ବିଦ୍ୟା, ଗଣିତ ବା ସଙ୍ଗୀତ" । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ଇତିହାସର ଏକ ବ୍ୟାପକ ସଂଜ୍ଞା ଦିଆଯାଇ କୁହାଯାଇଛି "ପୁରାଣ ମିତି ବୃତ୍ତ ମାଖ୍ୟାୟିକା ଉଦାହରଣଂ ଅର୍ଥଶାସ୍ତ୍ର ଧର୍ମଶାସ୍ତ୍ର ଚେତୀତ ହାସଃ ।" ଅର୍ଥାତ୍ ଇତିହାସ କହିଲେ ପୁରାଣ, ଇତିବୃତ୍ତ, ଆଖ୍ୟାୟିକା, ଉଦାହରଣ, ଧର୍ମଶାସ୍ତ୍ର ଓ ଅର୍ଥ ଶାସ୍ତ୍ରକୁ ବୁଝାଏ ।  ଏହି ଜ୍ଞାନ ମାନବ ଜାତିର କଲ୍ୟାଣ ଓ ସଭ୍ୟତାର ବିକାଶରେ ସାହାଯ୍ୟ କରିଥାଏ । ଟ୍ରୟସେନଙ୍କ ମତରେ ଇତିହାସ ହେଉଛି ଛାଏଁ ଛାଏଁ ମାନବ ଜାତିର ଜ୍ଞାନ ଏହାର ଆତ୍ମଚେତନା ।

ଉନବିଂଶ ଶତାବ୍ଦୀରେ ଭାରତ ଇତିହାସ ଲେଖିବାର ପ୍ରୟାସ ଇଂରେଜମାନେ ଆରମ୍ଭ କରିଥିଲେ । ସେମାନଙ୍କ ଶାସନକୁ ସୁହାଇଲା ପରି ଏକ ଦେଶଦର୍ଶୀ ରୀତିରେ ବହୁ ତଥ୍ୟଗତ ତ୍ରୁଟି ପ୍ରମାଦଯୁକ୍ତ ହୋଇ ଇତିହାସ ରଚିତ ହେଲା । ଓଡ଼ିଶାରେ ଇତିହାସ ରଚନାର ଧାରା ଉନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବେଳକୁ ଆରମ୍ଭ ହେଲା । ପରବର୍ତ୍ତୀ ସମୟରେ ପ୍ୟାରିମୋହନ ଆଚାର୍ଯ୍ୟ, କୃପାସିନ୍ଧୁ ମିଶ୍ର ଆଦି ପ୍ରମୁଖ ଉତ୍କଳୀୟ ଓଡ଼ିଶାର ତଥ୍ୟ ଭିତ୍ତିକ ଇତିହାସ ରଚନା କରି ଇତିହାସକୁ ସାମଗ୍ରିକ ଭାବରେ ଦେଖି ଦେଖାଇବାର ପ୍ରୟାସ କରିଛନ୍ତି ।

ପ୍ରକୃତ ଐତିହାସିକ କେବଳ କାଳ ଓ ଦିନ ନିର୍ଦ୍ଧାରଣ କରନ୍ତି ନାହିଁ । ଧାରାବାହିକ ତାର ସଂଶୋଧନ ପାଇଁ ସେ ତୀକ୍ଷଣ  ଦୃଷ୍ଟି ଦେଇଥାନ୍ତି । ଇତିହାସ କେବଳ ଅତୀତକୁ ଚାହେନାହିଁ । ବର୍ତ୍ତମାନ ଉପରେ ତା'ର ବିଚାର ବିଭର୍ଣର ବ୍ୟାପକ ବିଶ୍ଳେଷଣ ସୁଦୂର ପ୍ରସାରୀ କରିଥାଏ । ଐତିହାସିକଙ୍କ ନିଜସ୍ୱ ଗବେଷଣାର ଗଭୀରତା କେତେ, ପରସ୍ପ ଚିନ୍ତାଧାରା

ଦ୍ୱାରା ଏହା କେତେ ଦୂର ପ୍ରଭାବିତ, ଯଗବେଷଣାରେ ନୂତନତାର ଧାରା କେତେ ମାତ୍ରାରେ ରକ୍ଷିତ, ଅତୀତକୁ ସେ କେତେ ଆଶ୍ରା କରିଛନ୍ତି, ସତ୍ୟ ଅସତ୍ୟର ମାତ୍ରା ଏହାକୁ କେତେଦୂର ଗ୍ରାସ କରିଛି ଏ ସବୁକୁ ବିଚାର କରିବା ଜଣେ ଖାଣ୍ଟି ଇତିହାସ କାରୀଙ୍କ କର୍ତ୍ତବ୍ୟ । ଐତିହାସିକ କେବଳ ଜଣେ ସଂକଳକ ନୁହନ୍ତି, ଅଧିକନ୍ତୁ ପ୍ରତ୍ନତତ୍ତ୍ୱବିତ ସଦୃଶ୍ୟ ମଧ ଜଣେ ଆବିଷ୍କାରକ ।

ସୁଖର କଥା, ଶ୍ରୀଯୁକ୍ତ ଦଣ୍ଡଧର ପତି ଭାରତୀୟ ସଂସ୍କୃତି ଓ ଜାତୀୟତା ପୃଷ୍ଠଭୂମି ଆଲୋଚନା କରିବା ସହିତ ହିନ୍ଦୋଳ ପରି ଏକ କ୍ଷୁଦ୍ର ଗଡ଼ଜାତ ରାଜ୍ୟର ଐତିହାସିକ ବିବରଣୀ ପୁର୍ଣ୍ଣ ଲେଖକଙ୍କର ଇତିହାସ ପ୍ରତି ଗଭୀର ରୁଚି, ନୂତନ ତଥ୍ୟ ଅଧ୍ୟୟନ ଓ ଅନୁଶୀଳନର ନିଷ୍ଠାପରତା ତାଙ୍କୁ ଏପରି ଗ୍ରନ୍ଥ ରଚନା କରିବା ପାଇଁ ଅନୁପ୍ରେରିତ କରିଛି ।

ମନ୍ଦିରକୁ ମୁଖଶାଳା ବଳିଗଲା ପରି ଏ ଗ୍ରନ୍ଥଟି ହୋଇଥିଲେ ହେଁ ହିନ୍ଦୋଳ ଗଡ଼ଜାତ ରାଜ୍ୟର ବହୁ ଅନାବିଷ୍କୃତ, ଅନାଲୋଚିତ ତଥ୍ୟକୁ ଆଲୋକକୁ ଆଣିବା ପାଇଁ ଗ୍ରନ୍ଥଟିରେ ଚେଷ୍ଟାକରାଯାଇଛି । ହିନ୍ଦୋଳ ଗଡ଼ଜାତ ରାଜ୍ୟରେ ଚିତଲପୁର ଗ୍ରାମର ବଳିଷ୍ଠ ଭୂମିକା ଜାତୀୟ ଚେତନାର ଉଦ୍ଦୀପ୍ତ ସ୍ୱର ସୃଷ୍ଟି କରିଥିବା ମଣିପାଳଙ୍କ ପ୍ରସଙ୍ଗ, ଖଜୁରିଆକଟାପରି ଏକ ସଂସ୍କୃତି ସଂପନ୍ନ ଅଞ୍ଚଳରେ ସୃଷ୍ଟିରେ ଜଣେ ସମାଜ ସେବୀଙ୍କ ପିଢି ପାଇଁ ନିଶ୍ଚିତ ଭାବରେ ପ୍ରଭାବୀ ଓ ପ୍ରେରଣା ଦାୟୀ ହୋଇ ପାରିବ ବୋଲି ଆଶାକରୁ ।

ସରଳ ଓ ବୋଧଗମ୍ୟ ଭାବରେ ପ୍ରତ୍ୟେକ ବିଷୟକୁ ଆଲୋଚନା କରିବାରେ ଶ୍ରୀଯୁକ୍ତ ପତି ପ୍ରୟାସ କରିଛନ୍ତି । ଏହି ଗ୍ରନ୍ଥଟିରେ ଜଟିଳତାର ସ୍ଥାନ ନାହିଁ । ପ୍ରଚାର ଓ ପ୍ରସିଦ୍ଧିର ବ୍ୟାକୁଳତାରୁ ଦୂରରେ ରହି ଐତିହାସିକ ଚିତ୍ର ଅଙ୍କନ କରିବାରେ ଶ୍ରୀଯୁକ୍ତ ପତିଙ୍କ ପ୍ରଚେଷ୍ଟା ସଫଳ ହୋଇଛି ବୋଲି ମନେ କରୁଛି ।

ଗ୍ରନ୍ଥଟିର ବହୁ ଜାନଦୃତି ଆମର କାମ୍ୟ ।

**ଡ଼ଃ ନରେନ୍ଦ୍ର ନାଥ ଦାସ**
**ଅଧକ୍ଷ ହିନନ୍ଦୋଳ ମହାବିଦ୍ୟାଳୟ**
**ଖଜୁରିଆକଟା ।**

# ଲେଖକଙ୍କ କଲମରୁ .............

ସଂସାରରେ ରହି ସବୁ କାମ କର, ମାତ୍ର ଲକ୍ଷ ରଖ ଯେପରିକି ଇଶ୍ୱରଙ୍କଠାରୁ ମନ ଦୂରେଇ ଚାଲି ନଯାଏ । କୁହାଯାଏ ଇଶ୍ୱରଙ୍କ ଇଚ୍ଛା ବିନା କିଛି ବି ସମ୍ଭବ ନୁହେଁ । ଯାହାପାଇଁ ଯାହା ଲେଖା ଅଛି । ଏମିତି କିଛି ଘଟିଥାଏ ବହୁ ପ୍ରତିଭା ନିଷ୍ଠ ଲୋକଙ୍କ ଜୀବନରେ । ପ୍ରତିଭା ଏକ ଇଶ୍ୱର ଦତ୍ତ ସତନ୍ତ୍ର କଳା । ଲେଖକ, ଗାଳ୍ପିକ, କବି, ପ୍ରାବନ୍ଧିକ, ଚିତ୍ରଶିଳ୍ପୀ ଏବଂ ସଙ୍ଗୀତକାର ଯେ ହୁଅନ୍ତି ନା କାହିଁକି, ଏମାନେ ସମସ୍ତେ ଇଶ୍ୱରଙ୍କ ଏକ ସତନ୍ତ୍ର ଦତ୍ତଗୁଣ ଦ୍ୱାରା ପରିଭୂଷିତ ହୋଇଥାନ୍ତି । କୌଣସି କାରଣରୁ ଏହା ଓତପ୍ରୋତ ଭାବେ ପରିସ୍ଫୁଟିତ ହୋଇଥାଏ ।

ଉପରୋକ୍ତ କଥନୀ ମୋ ଜୀବନରେ ମୁଁ ଅଙ୍ଗେ ଲିଭାଇଛି । ମୋର ସଂପର୍କୀୟ ଶଳା ସନ୍ତୋଷ କୁମାର ପଣ୍ଡା ଅସୁସ୍ଥ ଥିବାରୁ ମୁଁ ମୋର ସହଧର୍ମିଣୀଙ୍କ ସହିତ ତାକୁ ଦେଖିବା ପାଇଁ ତାଙ୍କ ଘରକୁ ଯାଇଥିଲୁ । ବ୍ୟବହାର ଦୃଷ୍ଟିରୁ ସଙ୍ଗରେ କିଛି ଫଳ ନେଇ ମଧ ଯାଇଥିଲୁ । ତାଙ୍କ ଘରେ ପହଞ୍ଚି ତାର ସାସ୍ଥ୍ୟ ଅବସ୍ଥା କଥା ପଚାରିବାରୁ ସେ ନିରବ ରହିଲା ଏବଂ କହିଲା, ଭାଇନା, ଆପଣ ସଙ୍ଗରେ ଆଣିଥିବା କୌଣସି ଫଳ ମୁଁ ଗ୍ରହଣ କରିବି ନାହିଁ । ମୁଁ ଆଶ୍ଚର୍ଯ୍ୟ ହୋଇ ଚୁପ୍ ରହିଲି । ପଚାରିଲି କାରଣ କ'ଣ ? ସେ ମୋତେ କହିଲା ଯଦି ମୋ କଥାରେ ଆପଣ ରାଜି ହେବେ ତାହା ହେଲେ ଆପଣ ଆଣିଥିବା ଫଳ ଗ୍ରହଣ କରିବି । ମୁଁ ତାର କଥାରେ ଏକମତ ହେଲି ।

ସେ କହିଲା, ଭାଇନା, ଏ ଜୀବ ଜଗତର ମାଲିକ ହେଉଛନ୍ତି ଭଗବାନ । ସେ ମନୁଷ୍ୟ ଠାରୁ ସରିସୃପ ପର୍ଯ୍ୟନ୍ତ ଯାହା ଗଢିଛନ୍ତି ସେଥିମଧ୍ୟରୁ କିଛି ଜୀବଙ୍କ ହୃଦୟରେ କିଛି ସତନ୍ତ୍ର କଳା ପ୍ରଦାନ କରି ଦୁନିଆଁକୁ ପ୍ରେରଣ କରିଥାନ୍ତି । ଯଦି ସେମାନେ ତାହା ବିକାଶ ନ କରନ୍ତି ତାହାହେଲେ ସେମାନେ ଇଶ୍ୱରଙ୍କ ନିକଟରେ ଦୋଷୀ ସାବ୍ୟସ୍ତ ହୁଅନ୍ତି । ଆପଣଙ୍କୁ ଲେଖିବାର କଳା ଭଗବାନ ଦେଇଛନ୍ତି । ଆପଣ ଲେଖୁନାହାନ୍ତି କାହିଁକି ?

ମୁଁ କହିଲି, ସମୟ ଥିଲା ଲେଖୁଥିଲି, ଆଜି କ'ଣ ସମ୍ଭବ ? ହେଉ ଦେଖିବା; ଚାକରୀରୁ ଅବସର ଗ୍ରହଣ କଲାପରେ ଲେଖିବା, ସେ କହିଲା, ସେତେବେଳେ ହାତ ଥରୁଥିବ, ମୁଣ୍ଡ କାମ କରୁନଥିବ, ଉଚ୍ଚ ରକ୍ତଚାପ ଦ୍ୱାରା ଆକ୍ରାନ୍ତ ହୋଇ ଶେଷରେ ଇଶ୍ୱରଙ୍କ ନିକଟରେ ଦୋଷୀ ସାବ୍ୟସ୍ତ ହେବେ । ତା'ର କଥା ଗୁଡାକ ମୋତେ 'ସାହିତ୍ୟ ଚାପୁଡ଼ା'

ଖାଇଲା ପରି ଲାଗୁଥାଏ । ସାଙ୍ଗରେ ନେଇଥିବା କମଳା ଛଡ଼ାଇ ତାକୁ ଖୁଆଇ ଦେବା ସଙ୍ଗେ ସଙ୍ଗେ ପଚାରିଲି କହ କା ଉପରେ ବହି ଲେଖିବା ? ଗଳ୍ପ, କବିତା, ଉପନ୍ୟାସ କିମ୍ବା କାହାଣୀ ? ନାଁ, ହିନ୍ଦୋଳ ଗଡ଼ଜାତ ଉପରେ ଲେଖାଯାଉ, ସେ କହିଲା, ମୁଁ ପ୍ରତିଶ୍ରୁତି ଦେଇ ଫେରି ଆସିଲି ।

ତା'ପରେ ଆରମ୍ଭ ହେଲା ମନ ଭିତରେ ଝଡ଼ । ମୁଁ କ'ଣ ଈଶ୍ୱରଙ୍କ ନିକଟରେ ଦ୍ରୋହୀ ହେବି ? ମନର ଝଡ଼ ଥମୁ ନଥାଏ ।

ଇତିହାସ ଲେଖିବାରେ 'ତଥ୍ୟ'ର ଆବଶ୍ୟକତା ଥାଏ । ତେଣୁ 'ତଥ୍ୟ' ସଂଗ୍ରହ ପାଇଁ ପ୍ରତ୍ୟେକ ରବିବାର ଦିନ ବାହାରକୁ ଯିବାକୁ ପଡ଼ିଥାଏ । ଏପ୍ରିଲ୍ ଏବଂ ମେ ମାସ, ପ୍ରଚଣ୍ଡ ଖରା, ଯା ନିକଟକୁ ଯାଉଥାଏ ସେମାନେ କହନ୍ତି, ଏତେବଡ଼ ପ୍ରଜେକ୍ଟ କାହିଁକି ହାତକୁ ନେଉଛ ? ଗଳ୍ପ କିମ୍ବା କବିତା ଲେଖୁନ ? ଯାହାହେଉ 'ତଥ୍ୟ' ସଂଗ୍ରହ ଚାଲିଥାଏ ଲେଖାମଧ ଚାଲିଥାଏ, ତା' ସହିତ ଅଧ୍ୟୟନ ମଧ ଚାଲିଥାଏ । ଦୈନିକ ସମ୍ବାଦ ପତ୍ର 'ସମାଜ'ରେ ପ୍ରକାଶ ପାଉଥିବା ଉପାଦେୟ ପ୍ରବନ୍ଧ ଏବଂ ସମାଜର ବାର୍ଷିକ ସଂଖ୍ୟା ଗୁଡ଼ିକରେ ପ୍ରକାଶିତ ଜାତୀୟ ଦାବୀ ପ୍ରବନ୍ଧ ଗୁଡ଼ିକରୁ ମୁଁ ବହୁ ଉପାଦେୟ ବିଷୟ ବସ୍ତୁ ଆହରଣ କରିଅଛି ।

ସମ୍ବଲପୁର ଭାଷା ଆନ୍ଦୋଳନ ଏବଂ ଚନ୍ଦ୍ରଶେଖର ବେହେରାଙ୍କ ଉପରେ ଲେଖା ଚାଲିଥାଏ । ସେଥିରେ ମୋର ସହକର୍ମୀ ଶ୍ରୀଯୁକ୍ତ ବ୍ରଜ କିଶୋର ପାଢୀ ଟିକିଏ ଟିକିଏ ସହଯୋଗ କରୁଥାନ୍ତି । ଦିନକର କଥା, ତାଙ୍କ ବାପା ଶ୍ରୀଯୁକ୍ତ ଜଗବନ୍ଧୁ ପାଢୀ ତାଙ୍କ ଘରକୁ ଆସିଥାନ୍ତି । ତେଣୁ ବ୍ରଜବାବୁ ମୋତେ କହିଲେ, ସମ୍ବଲପୁର ଉପରେ ଯାହାକିଛି ଲେଖିଛନ୍ତି ତାଙ୍କ ବାପାଙ୍କୁ ପଢାଇବା ପାଇଁ । ଶ୍ରୀଯୁକ୍ତ ଜଗବନ୍ଧୁ ପାଢୀ ହେଉଛନ୍ତି ସମ୍ବଲପୁର ଜିଲ୍ଲା ହାଇସ୍କୁଲର ଜଣେ ଅବସର ପ୍ରାପ୍ତ ଶିକ୍ଷକ । ମହାଶୟ ପଢିସାରି କହିଲେ, 'ଏଥିରେ ଯାହା ସବୁ ଲେଖା ଅଛି ସମ୍ବଲପୁର ଲୋକବି ଜାଣି ନଥିବେ ।' ଆପଣ ଲେଖନ୍ତୁ ଈଶ୍ୱର ସହାୟ ହେବେ ।

ବାସ୍ତବିକ୍ ସେହିଦିନଠାରୁ ମୋର ଲେଖିବାର ସ୍ପୃହା ଅଧିକରୁ ଅଧିକତର ହୋଇଥିଲା । ହିନ୍ଦୋଳ ଗଡ଼ଜାତ ଉପରେ ଲେଖିବା ସମୟରେ ମୋତେ ତଥ୍ୟ ସଂଗ୍ରହ କରିବାରେ ଅଧିକ ଶ୍ରମ କରିବାକୁ ପଡ଼ିଥିଲା । ହିନ୍ଦୋଳ ଉପରେ ବହୁ ତଥ୍ୟ ଥିଲେ ମଧ ତାହା ଲୁକ୍‌କାୟିତ ଭାବରେ ରହି ଯାଇଅଛି । ତା'କୁ ହିନ୍ଦୋଳର ଲୁପ୍ତ ବୈଭବ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାହା ଲୋକ ଚକ୍ଷୁକୁ ଆସିବା ଦରକାର । ଓଡ଼ିଶାରେ ଥିବା ୨୬

ଗୋଟି ଗଡ଼ଜାତରେ ଐତିହାସିକ ବୈଭବ ଲୋକ ଲୋଚନକୁ ଆସିପାରି ନାହିଁ। ସାଧୀନତାର ୬୪ ବର୍ଷ ବିତିଯାଇଥିଲେ ମଧ ସମସ୍ତ ଗଡ଼ଜାତ ଗୁଡ଼ିକର ଐତିହାସିକ ବୈଭବ ପୁନରୁଦ୍ଧାର ନିତ୍ୟାନ୍ତ ଆବଶ୍ୟକ। କାରଣ ଇତିହାସ ହେଉଛି ଜାତୀୟ ବୈଭବ। ଏଠାରେ ପୁଣ୍ୟାତ୍ମା ଉତ୍କଳ ମଣି ଗୋପବନ୍ଧୁ ଦାସଙ୍କର ପଦଟିଏ ମନକୁ ଆସେ:

"ସର୍ବଗ୍ରାସୀ କାଳ ପ୍ରାଚୀନ ଉତ୍କଳ
କଳା କଉଶଳ ହରେ ଗରାସ
ବୈଭବ – କଙ୍କାଳ ବିଲୋକି ଅନିଳ
ପାଇଥିବ ମନେ ଗଭୀର ପ୍ରାସ।

(ଗୋପବନ୍ଧୁ)

ଆଶାକରେ ପୁସ୍ତକଟି ପାଠକ ମାନଙ୍କର ଗ୍ରହଣ ଯୋଗ୍ୟ ହୋଇ ପାରିବ। ଅନେକ ଐତିହାସିକ ତଥ୍ୟ ହସ୍ତଗତ ହୋଇଥିଲେ ମଧ ପୁସ୍ତକର କଳେବର ଦୃଷ୍ଟିରୁ ଦିଆ ଯାଇ ପାରିନାହିଁ। ପୁସ୍ତକ ପାଇଁ ଯୋଗାଇ ଥିବା ତଥ୍ୟ ଉପରେ ଯଦି କୌଣସି ପୁସ୍ତକ ବା ବ୍ୟକ୍ତି ବିଶେଷଙ୍କ ନାମ ଭୁଲବସତଃ ଛାଡ଼ି ଦିଆ ଯାଇଥାଏ ମୋତେ କ୍ଷମା କରିବେ। ପୁସ୍ତକର ଦୋଷ ତ୍ରୁଟି ପାଇଁ ହସ୍ତ ଯୋଡ଼ି କ୍ଷମା ମାଗୁଅଛି।

ତଥ୍ୟଗତ ତ୍ରୁଟି ପାଇଁ କ୍ଷମା ଦେବାକୁ ଅନୁରୋଧ। ଜନ ସାଧାରଣ ପୁସ୍ତକଟି ପାଠ କରି କିଛି ଜାତୀୟ ପ୍ରେମରେ ଉଦ୍‌ବୋଧ ହେବେବୋଲି ଆଶା ଏବଂ ବିଶ୍ୱାସ।

ବିନୀତ
ଲେଖକ
ଦଣ୍ଡଧର ପତି
ଗ୍ରାମ : ପଞ୍ଚପଡ଼ା
ହିନ୍ଦୋଳ, ଢେଙ୍କାନାଳ।

ଖାଇଲା ପରି ଲାଗୁଥାଏ । ସାଙ୍ଗରେ ନେଇଥିବା କମଳା ଛଡ଼ାଇ ତାକୁ ଖୁଆଇ ଦେବା ସଙ୍ଗେ ସଙ୍ଗେ ପଚାରିଲି କହ କା ଉପରେ ବହି ଲେଖିବା ? ଗଳ୍ପ, କବିତା, ଉପନ୍ୟାସ କିମ୍ବା କାହାଣୀ ? ନାଁ, ହିନ୍ଦୋଳ ଗଡ଼ଜାତ ଉପରେ ଲେଖାଯାଉ, ସେ କହିଲା, ମୁଁ ପ୍ରତିଶ୍ରୁତି ଦେଇ ଫେରି ଆସିଲି ।

ତା'ପରେ ଆରମ୍ଭ ହେଲା ମନ ଭିତରେ ଝଡ଼ । ମୁଁ କ'ଣ ଈଶ୍ୱରଙ୍କ ନିକଟରେ ଦ୍ରୋହୀ ହେବି ? ମନର ଝଡ଼ ଥମୁ ନଥାଏ ।

ଇତିହାସ ଲେଖିବାରେ 'ତଥ୍ୟ'ର ଆବଶ୍ୟକତା ଥାଏ । ତେଣୁ 'ତଥ୍ୟ' ସଂଗ୍ରହ ପାଇଁ ପ୍ରତ୍ୟେକ ରବିବାର ଦିନ ବାହାରକୁ ଯିବାକୁ ପଡ଼ିଥାଏ । ଏପ୍ରିଲ୍ ଏବଂ ମେ ମାସ, ପ୍ରଚଣ୍ଡ ଖରା, ଯା ନିକଟକୁ ଯାଉଥାଏ ସେମାନେ କହନ୍ତି, ଏତେବଡ଼ ପ୍ରଜେକ୍ଟ କାହିଁକି ହାତକୁ ନେଉଛ ? ଗଳ୍ପ କିମ୍ବା କବିତା ଲେଖୁନ ? ଯାହାହେଉ 'ତଥ୍ୟ' ସଂଗ୍ରହ ଚାଲିଥାଏ ଲେଖାମଧ ଚାଲିଥାଏ, ତା' ସହିତ ଅଧ୍ୟୟନ ମଧ ଚାଲିଥାଏ । ଦୈନିକ ସମ୍ବାଦ ପତ୍ର 'ସମାଜ'ରେ ପ୍ରକାଶ ପାଉଥିବା ଉପାଦେୟ ପ୍ରବନ୍ଧ ଏବଂ ସମାଜର ବାର୍ଷିକ ସଂଖ୍ୟା ଗୁଡ଼ିକରେ ପ୍ରକାଶିତ ଜାତୀୟ ଦାବୀ ପ୍ରବନ୍ଧ ଗୁଡ଼ିକରୁ ମୁଁ ବହୁ ଉପାଦେୟ ବିଷୟ ବସ୍ତୁ ଆହରଣ କରିଅଛି ।

ସମ୍ବଲପୁର ଭାଷା ଆନ୍ଦୋଳନ ଏବଂ ଚନ୍ଦ୍ରଶେଖର ବେହେରାଙ୍କ ଉପରେ ଲେଖା ଚାଲିଥାଏ । ସେଥିରେ ମୋର ସହକର୍ମୀ ଶ୍ରୀଯୁକ୍ତ ବ୍ରଜ କିଶୋର ପାଢୀ ଟିକିଏ ଟିକିଏ ସହଯୋଗ କରୁଥାନ୍ତି । ଦିନକର କଥା, ତାଙ୍କ ବାପା ଶ୍ରୀଯୁକ୍ତ ଜଗବନ୍ଧୁ ପାଢୀ ତାଙ୍କ ଘରକୁ ଆସିଥାନ୍ତି । ତେଣୁ ବ୍ରଜବାବୁ ମୋତେ କହିଲେ, ସମ୍ବଲପୁର ଉପରେ ଯାହାକିଛି ଲେଖିଛନ୍ତି ତାଙ୍କ ବାପାଙ୍କୁ ପଢାଇବା ପାଇଁ । ଶ୍ରୀଯୁକ୍ତ ଜଗବନ୍ଧୁ ପାଢୀ ହେଉଛନ୍ତି ସମ୍ବଲପୁର ଜିଲ୍ଲା ହାଇସ୍କୁଲର ଜଣେ ଅବସର ପ୍ରାପ୍ତ ଶିକ୍ଷକ । ମହାଶୟ ପଢିସାରି କହିଲେ, 'ଏଥିରେ ଯାହା ସବୁ ଲେଖା ଅଛି ସମ୍ବଲପୁର ଲୋକବି ଜାଣି ନଥିବେ ।' ଆପଣ ଲେଖନ୍ତୁ ଈଶ୍ୱର ସହାୟ ହେବେ ।

ବାସ୍ତବିକ୍ ସେହିଦିନଠାରୁ ମୋର ଲେଖିବାର ସ୍ପୃହା ଅଧିକରୁ ଅଧିକତର ହୋଇଥିଲା । ହିନ୍ଦୋଳ ଗଡ଼ଜାତ ଉପରେ ଲେଖିବା ସମୟରେ ମୋତେ ତଥ୍ୟ ସଂଗ୍ରହ କରିବାରେ ଅଧିକ ଶ୍ରମ କରିବାକୁ ପଡ଼ିଥିଲା । ହିନ୍ଦୋଳ ଉପରେ ବହୁ ତଥ୍ୟ ଥିଲେ ମଧ ତାହା ଲୁକ୍‌କାୟିତ ଭାବରେ ରହି ଯାଇଅଛି । ତା'କୁ ହିନ୍ଦୋଳର ଲୁପ୍ତ ବୈଭବ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାହା ଲୋକ ଚକ୍ଷୁକୁ ଆସିବା ଦରକାର । ଓଡ଼ିଶାରେ ଥିବା ୨୬

ଗୋଟି ଗଡ଼ଜାତର ଐତିହାସିକ ବୈଭବ ଲୋକ ଲୋଚନକୁ ଆସିପାରି ନାହିଁ । ସାଧୀନତାର ୬୪ ବର୍ଷ ବିତିଯାଇଥିଲେ ମଧ ସମସ୍ତ ଗଡ଼ଜାତ ଗୁଡ଼ିକର ଐତିହାସିକ ବୈଭବ ପୁନରୁଦ୍ଧାର ନିତ୍ୟାନ୍ତ ଆବଶ୍ୟକ । କାରଣ ଇତିହାସ ହେଉଛି ଜାତୀୟ ବୈଭବ । ଏଠାରେ ପୁଣ୍ୟାତ୍ମା ଉତ୍କଳ ମଣି ଗୋପବନ୍ଧୁ ଦାସଙ୍କର ପଦଟିଏ ମନକୁ ଆସେ:

"ସର୍ବଗ୍ରାସୀ କାଳ ପ୍ରାଚୀନ ଉତ୍କଳ
କଳା କଉଶଳ ହରେ ଗରାସ
ବୈଭବ – କଙ୍କାଳ ବିଲୋକି ଅନିଳ
ପାଇଥିବ ମନେ ଗଭୀର ତ୍ରାସ ।

(ଗୋପବନ୍ଧୁ)

ଆଶାକରେ ପୁସ୍ତକଟି ପାଠକ ମାନଙ୍କର ଗ୍ରହଣ ଯୋଗ୍ୟ ହୋଇ ପାରିବ । ଅନେକ ଐତିହାସିକ ତଥ୍ୟ ହସ୍ତଗତ ହୋଇଥିଲେ ମଧ ପୁସ୍ତକର କଳେବର ଦୃଷ୍ଟିରୁ ଦିଆ ଯାଇ ପାରିନାହିଁ । ପୁସ୍ତକ ପାଇଁ ଯୋଗାଇ ଥିବା ତଥ୍ୟ ଉପରେ ଯଦି କୌଣସି ପୁସ୍ତକ ବା ବ୍ୟକ୍ତି ବିଶେଷଙ୍କ ନାମ ଭୁଲବସତଃ ଛାଡ଼ି ଦିଆ ଯାଇଥାଏ ମୋତେ କ୍ଷମା କରିବେ । ପୁସ୍ତକର ଦୋଷ ତ୍ରୁଟି ପାଇଁ ହସ୍ତ ଯୋଡ଼ି କ୍ଷମା ମାଗୁଅଛି ।

ତଥ୍ୟଗତ ତ୍ରୁଟି ପାଇଁ କ୍ଷମା ଦେବାକୁ ଅନୁରୋଧ । ଜନ ସାଧାରଣ ପୁସ୍ତକଟି ପାଠ କରି କିଛି ଜାତୀୟ ପ୍ରେମରେ ଉଦ୍‌ବୋଧ ହେବେବୋଲି ଆଶା ଏବଂ ବିଶ୍ୱାସ ।

ବିନୀତ
ଲେଖକ
ଦଣ୍ଡଧର ପତି
ଗ୍ରାମ : ପଞ୍ଚପଡ଼ା
ହିନ୍ଦୋଳ, ଢେଙ୍କାନାଳ ।

# ସୂଚୀପତ୍ର

# ପ୍ରଥମ ପରିଚ୍ଛେଦ

## ଭାରତୀୟ ସଂସ୍କୃତି ଏବଂ ଜାତୀୟତା

ଭାରତୀୟ ଧର୍ମ ହେଉଛି ମାନବ ସଭ୍ୟତାର ପ୍ରାଚୀନତମ ଧର୍ମ । ମାନବିକତା ହିଁ ହେଉଛି ଏହି ଧର୍ମର ଯଥାର୍ଥ ସ୍ୱରୂପ । ଏହି ଧର୍ମ ପାଳନରେ ମାନବିକତାର ଚରମ ଉତ୍କର୍ଷ ସାଧିତ ହେଉଥିବାରୁ ଏହା ମାନବ ଧର୍ମ ରୂପେ ପ୍ରତିଷ୍ଠିତ । ବୈଦିକ ଯୁଗରୁ ଧର୍ମ ହିଁ ଥିଲା ଭାରତୀୟ ଜନଜୀବନର ଆଧାର । ସେଥିନିମିତ୍ତ ଭାରତୀୟ ଧର୍ମ ଓ ସଂସ୍କୃତିରେ ଆଧାତ୍ମିକ ସାଧନ ପରଂପରାର ମହତ୍ୱପୂର୍ଣ୍ଣ ଭୂମିକା ରହିଛି । ଜୀବନ, ଆତ୍ମା, ପରମାତ୍ମା ସମ୍ବନ୍ଧୀୟ ଚିନ୍ତନ ତଥା ବିଚାର ବିଶ୍ଳେଷଣର ଗଭୀର ଅନୁଶୀଳନ ହିଁ ଭାରତୀୟ ଧର୍ମ ଓ ସଂସ୍କୃତିର ବୈଶିଷ୍ଟ୍ୟ । ଭାରତୀୟ ଜନମାନସରେ ସାକାର, ନିରାକାର, ଆସ୍ତିକ ଏବଂ ନାସ୍ତିକ ପ୍ରଭୃତି ବିଭିନ୍ନ ସାଧନ ଧାରାର ବିଭିଦତା ସତ୍ତ୍ୱେ ଏକ ପରମାତ୍ମାଙ୍କୁ ସର୍ବତ୍ର ଅନୁଭବର ଆଖ୍ୟା ମହତ୍ତ୍ୱପୂର୍ଣ୍ଣ । ପରିବର୍ତ୍ତନଶୀଳ ବିଶ୍ୱର ଅପରିବର୍ତ୍ତନୀୟ ସତ୍ତାର ଅନ୍ୱେଷଣରେ ବିଭିନ୍ନ ମନୀଷୀ ଭିନ୍ନ ଭିନ୍ନ ପଥ ଅନୁସରଣ କରିଥିଲେ ହେଁ ସଭିଙ୍କର ଲକ୍ଷ୍ୟ ଏକ । ଭାରତୀୟ ଧର୍ମର ପ୍ରବକ୍ତା ମହର୍ଷି ମନୁ ଧର୍ମର ଦଶଗୋଟି ଲକ୍ଷଣ ବ୍ୟକ୍ତ କରିଅଛନ୍ତି ।

ଧୃତି କ୍ଷମା ଦମୋସ୍ତେୟଂ ଶୌଚମିନ୍ଦ୍ରିୟ ନିଗ୍ରହଃ,<br>
ଧୀର୍ବିଦ୍ୟା ସତ୍ୟମକ୍ରୋଧ ଦଶକଂ ଧର୍ମ ଲକ୍ଷଣମ୍ ।

ଅର୍ଥାତ୍ ଧୈର୍ଯ୍ୟ, ସହନଶୀଳତା, କାମ ଓ ଲୋଭ ଉପରେ ସଂଯମ, ଚୋରି ନ କରିବା, ପବିତ୍ରତା, ଇନ୍ଦ୍ରିୟ ସମୂହ ଉପରେ ଅଧିକାର, ଜ୍ଞାନ, ଅଧ୍ୟୟନଶୀଳତା, ସତ୍ୟାଚରଣ ଏବଂ ଅକ୍ରୋଧ ଏହି ଦଶଗୋଟି ହେଉଛି ଧର୍ମର ଲକ୍ଷଣ ବା ଶ୍ରେଷ୍ଠ ଆଚରଣ । ଏହାର ଆଚରଣ ଦ୍ୱାରା ସକଳ ଦୁର୍ଗୁଣ ଅନ୍ତର୍ହିତ ହୋଇ ସଦ୍‌ଗୁଣାବଳୀର ବିକାଶ ଘଟେ, ହୃଦୟରେ ସାର୍ବଜନୀନ ଭାବ ସଞ୍ଚାର ହୋଇଥାଏ ଏବଂ ମନୁଷ୍ୟ ସର୍ବାତ୍ମଭାବ ଚେତନାରେ ଉଦ୍‌ବୁଦ୍ଧ ହୋଇଥାଏ ।

ଶାସ୍ତ୍ର କହନ୍ତି "ଯେନାତ୍ମନସ୍ତଥାନ୍ୟେଷାଂ ଜୀବନଂ ବର୍ଦ୍ଧନଞ୍ଚାପି ଧ୍ରିୟତେ ସ ଧର୍ମଃ" । ଅର୍ଥାତ୍ ଯେଉଁ ଆଚରଣ, ବାକ୍ୟ କର୍ମର ଅନୁସରଣରେ ମଣିଷ ନିଜେ ତାହାର ପରିବେଶ ସହିତ ସୁସ୍ଥ ଭାବରେ ବଞ୍ଚିପାରେ ଏବଂ ସର୍ବତୋମୁଖୀ ଉନ୍ନତି ପଥରେ ଅଗ୍ରସର ହୋଇଚାଲେ, ତାହା ହିଁ ଧର୍ମ । ଏହାକୁ ହିଁ କହନ୍ତି ସଦ୍ଧର୍ମ ବା ବାସ୍ତବ ଜୀବନ ଧର୍ମ 'ଈଶ୍ୱର ହିଁ ସମଗ୍ର

ସୃଷ୍ଟିର ଉତ୍ସ ସ୍ୱରୂପ' । ସାରାଜଗତରେ ତାଙ୍କର ବାସ୍ତବ ସ୍ଥିତି ପରିବ୍ୟାପ୍ତ ହୋଇ ରହିଛି । ତେଣୁ ମାନବ ଜୀବନର ଅଭିବୃଦ୍ଧି ନିମନ୍ତେ ଈଶ୍ୱର ଭକ୍ତିର ପ୍ରୟୋଜନ ଅପରିହାର୍ଯ୍ୟ । ତେଣୁ ଈଶ୍ୱର ଉପାସନା ଧର୍ମର ଏକ ବିଶେଷ ଦିଗ ହୋଇଥାଏ ।

ପବିତ୍ର ଭାରତବର୍ଷରେ ବୈଦିକ ଯୁଗରୁ ମାନବଧର୍ମର ଅବିଚ୍ଛିନ୍ନ ଧାରା ପ୍ରବାହିତ । ବିଶ୍ୱର ଅପରିବର୍ତ୍ତନୀୟ ଅବିନାଶୀ ସନାତନୀ ସତ୍ତା ହିଁ ଏହି ଧର୍ମର କେନ୍ଦ୍ରବିନ୍ଦୁ । ମାନବ ନିର୍ମାଣର ପ୍ରଚ୍ଛନ୍ନ ସୂତ୍ର ଧର୍ମୀୟ ଅନୁଶାସନ ରୂପେ ବିଶ୍ୱର ଏହି ପ୍ରାଚୀନତମ ଧର୍ମରେ ଉଦ୍‌ଘୋଷିତ । ମହନୀୟ ମାନବୀୟ ଗୁଣଦ୍ୱାରା ବିଭିନ୍ନ ବ୍ୟକ୍ତି, ପରିବାର, ସମାଜ ଓ ରାଷ୍ଟ୍ର ନିର୍ମାଣ ହିଁ ଏହାର ଦିବ୍ୟସନ୍ଦେଶ । ଆତ୍ମାର ସର୍ବବ୍ୟାପକତା ଓ ବିଶ୍ୱାତ୍ମଭାବ ସଂଚାର କରାଇବାରେ ଏହି ଧର୍ମର ଭୂମିକା ଉଲ୍ଲେଖନୀୟ । ଏହି ଧର୍ମର ଉଚ୍ଚାଙ୍ଗ ବିଚାରବୋଧକୁ କେନ୍ଦ୍ରକରି ଭାରତରେ ଏକ ଗୌରବୋଜ୍ଜ୍ୱଳ ସମନ୍ୱୟାତ୍ମକ ସଂସ୍କୃତିର ଉନ୍ମେଷ ଘଟିଥିଲା । ଉଦାର ଓ ମହାନ ଅନ୍ତଃପ୍ରେରଣାରେ ଦୀପ୍ତିମନ୍ତ ଏହି ସଂସ୍କୃତିର ବୌଦ୍ଧିକ ସୃଜନଶୀଳତା । ଏହାକୁ ବିଶ୍ୱ-ଦରବାରରେ ସ୍ୱତନ୍ତ୍ର ଆସନରେ ଅଧିଷ୍ଠିତ କରି ପାରିଥିଲା ।

ଧର୍ମ ଓ ସଂସ୍କୃତିର ଅଚାର ବୋଧରେ ଉଦ୍‌ବୁଦ୍ଧ ହୋଇ ଭାରତୀୟ ପ୍ରଚେଷ୍ଟା ବୃନ୍ଦ ଆପଣାର ଦିବ୍ୟଦୃଷ୍ଟିରେ ପରିବର୍ତ୍ତନଶୀଳ ସଂସାରର ଅପରିବର୍ତ୍ତନୀୟ ଦିବ୍ୟସତ୍ତାର ସାକ୍ଷାତକାରକୁ ଜୀବନର ପରମଲକ୍ଷ୍ୟ ବିବେଚନା ପୂର୍ବକ ଯେଉଁ ବିଚାର ବିଶ୍ଳେଷଣ କରିଯାଇଛନ୍ତି ତାହାହିଁ ଭାରତୀୟ ଦର୍ଶନ । ପିଣ୍ଡ ଓ ବ୍ରହ୍ମାଣ୍ଡ ତଥା ଆତ୍ମା ଓ ପରମାତ୍ମାଙ୍କର ଐକ୍ୟ ପ୍ରତିପାଦନ କରୁଥିବା ଭାରତୀୟ ଦର୍ଶନର ଧାରା ସୁଦୂର ବୈଦିକ କାଳରୁ ନିରବଚ୍ଛିନ୍ନ ଭାବରେ ପ୍ରବାହିତ । ମହନୀୟତା, ଭାରତୀୟ ଦର୍ଶନ, ଜନଜୀବନ, ଧର୍ମ ଓ ସଂସ୍କୃତି ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ହୋଇ ବିଶେଷ ଲୋକପ୍ରିୟତା ଲାଭ କରିଅଛି । ସଂକ୍ଷେପରେ ଉଲ୍ଲେଖ କଲେ, ଭାରତୀୟ ଧର୍ମ, ସଂସ୍କୃତି ଓ ଦର୍ଶନର ବ୍ୟାପକତା, ଉଦାର ହୃଦୟତା ତଥା ସତ୍ୟାନ୍ୱେଷଣ ପ୍ରତି ଶ୍ରଦ୍ଧା ଅନନ୍ୟ ଓ ଅନୁପମ ।

ବୈଦିକ କାଳୀନ ଜୀବନଚର୍ଯ୍ୟା, ରୀତିନୀତି, ଚଳଣି, ପରମ୍ପରା, ଉପାସନା, ଆଚାର ବିଚାର ପ୍ରଭୃତିକୁ ନେଇ ଗଢି ଉଠିଥିଲା ଭାରତୀୟ ସଂସ୍କୃତି । ଏହା ବିଶ୍ୱର ପ୍ରାଚୀନତମ୍ ସଂସ୍କୃତି । ତେଣୁ କୁହାଯାଇଛି 'ସା ପ୍ରଥମା ସଂସ୍କୃତି ବିଶ୍ୱବାରା' । ଭାରତୀୟମାନଙ୍କ ସନାତନୀ ବିଚାର ଶକ୍ତି ସହିତ ବିକଶିତ ବୈଶିଷ୍ଟ୍ୟ ଦ୍ୱାରା ଅଭିପୂରିତ ଜୀବନଶୈଳୀରେ ଏହି ସଂସ୍କୃତି ପରିପୁଷ୍ଟ ଥିଲା । ଏଥିରେ ଚିନ୍ତନଠାରୁ ବ୍ୟବହାରିକ ଜୀବନ ତଥା ମାନବୀୟ ସମ୍ବେଦନ

ଠାରୁ ସମଷ୍ଟିଗତ ଏକତା ପର୍ଯ୍ୟନ୍ତ ସକଳ ସାରସ୍ୱତ ଅନ୍ତର୍ନିହିତ । ମହନୀୟତା ହେଉଛି, ଏହାକୁ ମାନବକୁ ଦେବତାରେ ପରିଣତ କରିବାରେ କଳାକୌଶଳରେ ସମୃଦ୍ଧ । ଧାର୍ମିକ ଓ ସାଂସ୍କୃତିକ ଜୀବନର ସମନ୍ୱୟରେ ଆଧ୍ୟାତ୍ମିକ ଜୀବନ ଦର୍ଶନ ହିଁ ଭାରତୀୟ ସଂସ୍କୃତିର ସିଦ୍ଧାନ୍ତ । ମାନବୀୟ ପ୍ରଜ୍ଞାର ଉନ୍ନତ ରୁଚି ଓ ସଂସ୍କାରବୋଧ ଦ୍ୱାରା ଉଜ୍ଜ୍ୱଳବନ୍ତ ଏହି ସଂସ୍କୃତି ଶତାବ୍ଦୀ ଶତାବ୍ଦୀ ଧରି ଭାରତବାସୀଙ୍କ ଜୀବନଚର୍ଯ୍ୟାକୁ ସୁନ୍ଦର, ସମୃଦ୍ଧ, ସୃଜନଶୀଳ ଓ ପରିପୂର୍ଣ୍ଣ କରିଆସିଛି ।

ଆହୁରି ମଧ୍ୟ ଭାରତୀୟମାନେ ସମଗ୍ର ବିଶ୍ୱବାସୀଙ୍କୁ ଆପଣା ସଂସ୍କୃତିରେ ଉଦ୍‌ବୋଧ କରାଇ 'କୃତାନ୍ତ ବିଶ୍ୱମାର୍ଯ୍ୟମ୍' ଧ୍ୱନି ସଂଚାରଣ କରିଯାଇଛନ୍ତି । ସମଗ୍ର ବିଶ୍ୱକୁ ଗୋଟିଏ ପରିବାର ବିଶ୍ୱକଲ୍ୟାଣ ମନ୍ତ୍ର :

**"ଅୟଂ ନିଜ ପରୋବେତ ଗଣାନାଂ ଲଘୁଚେତସାମ୍,**
**ଉଦାର ଚରିତା ନାସ ତୁ ବସୁ ଧୈବ କୁଟୁମ୍ବକମ୍ ।" ॥**

ଥିଲା ଭାରତୀୟ ସଂସ୍କୃତିର ମହାମନ୍ତ୍ର । 'ସର୍ବେ ଭବନ୍ତୁ ସୁଖିନଃ' ଥିଲା ଏହି ସଂସ୍କୃତିର ଦିବ୍ୟବାର୍ତ୍ତା । ସମଗ୍ର ବିଶ୍ୱର ମାନବ ଜାତିକୁ ସାମ୍ୟବୋଧରେ ଅନୁପ୍ରାଣୀତ କରିବା ନିମିତ୍ତ ଆର୍ଯ୍ୟ ପ୍ରଚେଷ୍ଟତାବୋଧ ଗାଇ ଉଠିଥିଲେ :-

**"ସମାନଃ ମନ୍ତ୍ରଃ ସିମିତି ସମାନୀ**
**ସମାନଂ ମନଃ ସହ ଚିତ୍ତମେଷାମ୍**
**ସମାନଂ ମନ୍ତ୍ରଭିମନ୍ତ୍ରୟେ ବଃ**
**ସମାନେନ ବୋ ହବିଷା ଜୁହୋମି ।"**

ଭାରତୀୟ ସଂସ୍କୃତିରେ ସର୍ବଦା ଜଣକ କଥା ଚିନ୍ତା କରା ନ ଯାଇ ଗଣ ଚେତନାକୁ ପ୍ରାଧାନ୍ୟ ଦିଆଯାଇଛି । ସଂକ୍ଷେପରେ ଉଲ୍ଲେଖ କଲେ, ଭାରତୀୟ ସଂସ୍କୃତି ସଂସ୍କାର ଦ୍ୱାରା ସୁନ୍ଦର, ଅନ୍ତଶ୍ଚେତନାରେ ସଂଜୀବିତ ତଥା ମାନବବାଦରେ ସମୃଦ୍ଧ ଥାଇ ବିଶ୍ୱଶାନ୍ତି ଓ ବିଶ୍ୱ କଲ୍ୟାଣକାରୀ ସଂସ୍କୃତି ସ୍ୱରୂପରେ ବିଶ୍ୱର ଶ୍ରେଷ୍ଠ ଆସନ ଅଳଙ୍କୃତ କରିଥିଲା । ଭାରତର ଦୀର୍ଘ ନିରବଚ୍ଛିନ୍ନ ସାଂସ୍କୃତିକ ଧାରା ପୃଥିବୀର ଅନ୍ୟ କୌଣସି ଭୂଖଣ୍ଡରେ ପରିଲକ୍ଷିତ ହୁଏ ନାହିଁ । ଭାରତରେ ଧର୍ମ ସହିତ ଦର୍ଶନରେ ଗଭୀର ସମ୍ବନ୍ଧ ଥିବାରୁ ଯିଏ ଯେଉଁ ମତବାଦୀ ହୁଅନ୍ତୁ ପଛେ ଜୀବନର ଐକ୍ୟବୋଧର ସର୍ବଦା ଅବଗାହନ କରୁଥାନ୍ତି । ସେଥିନିମିତ୍ତ ଭାରତୀୟ ଧର୍ମ ଓ ସଂସ୍କୃତିରେ ଆଧ୍ୟାତ୍ମିକ ସାଧନ ପରଂପରାର ମହତ୍ୱପୂର୍ଣ୍ଣ ଭୂମିକା ରହିଛି ।

ବୈଦିକ ଯୁଗ ପରେ ଆର୍ଯ୍ୟ ସଂସ୍କୃତି ସହିତ ଦ୍ରାବିଡ଼ ଏବଂ ନାଗ ପ୍ରଭୃତି ସଂସ୍କୃତିର ମିଶ୍ରଣ ସଂଘଟିତ ହୋଇ ଭାରତୀୟ ସଂସ୍କୃତି ଧାରାରେ ବୈପ୍ଲବିକ ପରିବର୍ତ୍ତନ ପରିଲକ୍ଷିତ ହେଉଥିଲେ ହେଁ ଜାତୀୟ ଏକତା ଅକ୍ଷୁର୍ଣ୍ଣ ରହିଥିଲା । ଏହି ଧାରା ବିଚିତ୍ରବର୍ଣ୍ଣା ହେଉଥିଲେ ମଧ ସମନ୍ୱୟାତ୍ମକ ସାଂସ୍କୃତିକ ଚେତନା ଏହାକୁ ଉର୍ଦ୍ଧ୍ୱଗାମୀ କରିଥିଲା । ଏପରିକି ଜନଚେତନାରେ ଜୈନ, ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବ, ସୌର ଏବଂ ଗାଣପତ୍ୟ ପ୍ରଭୃତି ମତ ସୃଷ୍ଟି ହୋଇଥିଲେ ହେଁ ଜାତୀୟ ଏକତା ଭେଦ, ବାଦ, ହିଂସା ଆଦି ଦ୍ୱାରା ଖଣ୍ଡ ବିଖଣ୍ଡିତ ହୋଇ ନ ଥିଲା । ସେହି ସମୟରେ ରଚିତ ପୁରାଣ ସାହିତ୍ୟକୁ ଭାରତୀୟ ଜୀବନାଦର୍ଶ, ସଭ୍ୟତା, ସଂସ୍କୃତି ଓ ବିଦ୍ୟାବୈଭବର ଉତ୍କର୍ଷ ଉପଲବ୍ଧ ହୋଇଥାଏ । ଭକ୍ତି, ଜ୍ଞାନ, ବୈରାଗ, ଯଜ୍ଞ ସଦାଚାର ଥିଲା ଭାରତୀୟ ସଂସ୍କୃତିର ଭୂଷଣ । ସମାଜର ଭିନ୍ନ ଭିନ୍ନ ଗୋଷ୍ଠୀ ବିଭିନ୍ନ ପର୍ବପର୍ବାଣୀ, ଓଷାବ୍ରତ, ମେଳାଉତ୍ସବାଦି ପାଳନ କରୁଥିଲେ ହେଁ ସମସ୍ତେ ସମନ୍ୱୟ ଚେତନାରେ ଉଦ୍‌ବୁଦ୍ଧ ଥିଲେ । ବହୁମତ ବହୁଭାଷା ବହୁ ବର୍ଣ୍ଣ ବିବିଧତା ସତ୍ତ୍ୱେ ଐକ୍ୟ ମନୋଭାବ ସଂସ୍କୃତିକୁ ଜୀବନ୍ତ ରଖିଥିଲା । କ୍ରମାଗତ ସଂସ୍କାର ଓ ଉତ୍ତରଶୀଳତା ଏହାକୁ ଅଗ୍ରଗାମୀ କରିଥିଲା । ବିଭିନ୍ନ ସାଂପ୍ରଦାୟିକ ଶକ୍ତି ଓ ବିଚ୍ଛିନ୍ନତାବାଦୀ ବାରମ୍ବାର ଏହି ସଂସ୍କୃତି ଉପରେ କୁଠାରଘାତ କରିଥିଲେ ମଧ ଦୀର୍ଘକାଳ ଧରି ଏହାର ସାଂସ୍କୃତିକ ଧାରା ଅବ୍ୟାହତ ରହିଛି ।

ଭାରତୀୟ ଧର୍ମ, ସଂସ୍କୃତି ଓ ଦର୍ଶନର ସାଧନ ପରଂପରାରେ ଦୁଇଗୋଟି ମୁଖ୍ୟମାର୍ଗ ସ୍ୱୀକୃତ । ପ୍ରଥମଟି ଜ୍ଞାନମୂଳକ ଅଦ୍ୱୈତ୍ୟଧାରା ଏବଂ ଦ୍ୱିତୀୟଟି ଭକ୍ତିମୂଳକ ବୈଷ୍ଣବ ଧାରା । ଅଦ୍ୱୈତ ଓ ବୈଷ୍ଣବ ଉଭୟଧାରାର ଉଦ୍‌ଗମସ୍ଥଳ ହିଁ ପରଂବ୍ରହ୍ମ । ଅନେକ ସଂପ୍ରଦାୟର ମତ ଆଧାରିତ ଅନେକ ଧର୍ମୀୟ ସଂସ୍ଥା ଗଠନ କରିଥିଲେ ହେଁ ସକଳ ସଂସ୍ଥାର ମୂଳକେନ୍ଦ୍ର ପରଂବ୍ରହ୍ମ ଅଟନ୍ତି । ଅଗଣିତ ଜୀବଙ୍କ ମୁକ୍ତି ହିଁ ସଂପ୍ରଦାୟ ସମୂହର ପରମଲକ୍ଷ୍ୟ । ଏତଦ୍‌ଭିନ୍ନ ପବିତ୍ର ଭାରତ ଭୂଖଣ୍ଡରେ ମହନୀୟତା ହେଉଛି ସକଳ ମତ ଓ ପଥର ପରମଲକ୍ଷ୍ୟ, ଦୁଃଖ ଜଞ୍ଜାଳ ପରିପୂର୍ଣ୍ଣ ମାୟାଗ୍ରସ୍ତ ସଂସାର ସାଗରରେ ନିମଗ୍ନ ଜୀବକୁ ଆପଣାର ଯଥାର୍ଥ ସ୍ୱରୂପ ଉପଲବ୍ଧି କରାଇବା କିମ୍ବା ଆତ୍ମୋପଲବ୍ଧି କରିବା ।

ଭାରତୀୟ ଧର୍ମ, ସଂସ୍କୃତି ଓ ଦର୍ଶନ ମାନବ ଜାତିର କଲ୍ୟାଣ କାମନାରେ ଯୁଗେ ଯୁଗେ ମାନବିକ ମୂଲ୍ୟବୋଧ ତଥା ଆତ୍ମଦର୍ଶନ ପ୍ରଚାର ଓ ପ୍ରସାର କରିଆସିଛି । ଜୀବନ ସହିତ ଭାରତୀୟ ଧର୍ମ, ସଂସ୍କୃତି ଓ ଦର୍ଶନର ଗଭୀର ସମ୍ବନ୍ଧ ରହିଥିବାରୁ ଏହା ବିଶ୍ୱଦରବାରରେ

ବିଶେଷ ଲୋକ ପ୍ରିୟତା ଲାଭ କରିଛି । ତ୍ରିବିଧତାପରେ ସମସ୍ତ ଜୀବର ଶାନ୍ତି ଓ ମୁକ୍ତି ନିମିତ୍ତ ଏଥିରେ ସୁଚିନ୍ତିତ ରାଜମାର୍ଗ ପ୍ରଦର୍ଶିତ । ଉଲ୍ଲେଖଯୋଗ୍ୟ ଯେ ସୁଦୂର ବୈଦିକ ଯୁଗରୁ ପବିତ୍ର ଭାରତ ବର୍ଷରେ ଧର୍ମ, ସଂସ୍କୃତି ଓ ଦର୍ଶନର ନିରବଚ୍ଛିନ୍ନ ଧାରା ପ୍ରବାହିତ । ସମୟକ୍ରମେ ଏହି ପ୍ରବାହମାନ ଧାରାରେ ଭିନ୍ନ ଭିନ୍ନ ଶାଖା ସୃଷ୍ଟି ହୋଇଥିଲେ ହେଁ ବ୍ରହ୍ମାନୁଭୂତିର ଦିବ୍ୟ ଚେତନାରେ ପ୍ରତ୍ୟେକଟି ଶାଖା ଅମୃତଧାରା ସ୍ୱରୂପରେ ପ୍ରତିଭାତ । ସଂକ୍ଷେପରେ ଉଲ୍ଲେଖ କଲେ ଭାରତୀୟ ଧର୍ମ, ସଂସ୍କୃତି ଓ ଦର୍ଶନର ପ୍ରାଚୀନତା, ସ୍ୱତନ୍ତ୍ରତା, ସମନ୍ୱୟତା, ବିବିଧରୂପତା, ଉଦାର ହୃଦୟତା, ବ୍ୟାପକତା, ସର୍ବାଙ୍ଗୀନତା, ସାର୍ବଜନୀନତା, ତଥା ସତ୍ୟାନ୍ୱେଷଣ ପ୍ରତି ଶ୍ରଦ୍ଧାଳୁତା ବିଭିନ୍ନ ଆଧ୍ୟାତ୍ମିକ ପ୍ରବୃତ୍ତିଶୀଳ ଜୀବସମୂହଙ୍କ ସାଧନମାର୍ଗକୁ ସରଳ, ସୁଲଭ ଓ ପରମ ରମଣୀୟ କରିପାରିଛି ।

ଆମେ ଆମର ଧର୍ମ, ସଂସ୍କୃତି ଓ ଦର୍ଶନ ବିଷୟରେ ସାମ୍ୟକ ଭାବରେ ଆଲୋଚନା କଲେ । ଏଇ ଭାରତୀୟ ସଂସ୍କୃତି ଯେ କେବଳ ଭାରତର ତା ନୁହେଁ ଏହା ବିଶ୍ୱର ବୋଲି ଆମେ ଦର୍ଶାଇଲେ । କିନ୍ତୁ ଯେଉଁଠି ସଂସ୍କୃତି ଆଦର୍ଶଚ୍ୟୁତ ହୁଏ, କେବଳ କଳ୍ପନାଶ୍ରିତରେ ସଂସ୍କୃତି ଦେଖାଯାଇଥାଏ ଏବଂ ତାର ଆଭିମୁଖ୍ୟ ସ୍ପଷ୍ଟ ରୁହେ ନାହିଁ ତାହା ଜାତିର ସଂସ୍କୃତି ପଦବାଚ୍ୟ ହୋଇ ନଥାଏ । ସଂସ୍କୃତି ସାମାଜିକ ଜୀବନକୁ ଉଦ୍‌ବୁଦ୍ଧ କରିବା ସଙ୍ଗେ ସଙ୍ଗେ ଜାତୀୟତାର ଫଲ୍‌ଗୁ ପ୍ରବାହରେ ଗୁରୁତ୍ୱ ପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ଏପରି ସଂସ୍କୃତିର ସଂସ୍କାରକ ଗଣ ଯୁଗେ ଯୁଗେ ଜାତିର ନମସ୍ୟ ହୋଇଥାଆନ୍ତି । ଆମର ବେଦ ମଧ୍ୟରେ ଏହିପରି ଜାତୀୟତାର ବଳିଷ୍ଠ ଆଭିମୁଖ୍ୟ ରହିଅଛି । ବେଦ ମଧ୍ୟରେ ଯେ ଜାତୀୟତା ରହିଛି ତାହା ଜ୍ଞାନଦୀପ୍ତ ଜାତିପ୍ରାଣ ପ୍ରଚେତା ବୃନ୍ଦ ପ୍ରମାଣିତ କରିପାରିଥିଲେ । ଏପରି ମାନସିକ ଆବଶ୍ୟକତା ଉପଲବ୍ଧିରୁ ଜାତୀୟ ଚେତନା ସୃଷ୍ଟିର ସାକାର ରୂପ ନେଇଥିଲା । ସେଥିପାଇଁ ସଂସ୍କୃତି ଜାତୀୟ ଚେତନା ସୃଷ୍ଟି କରିବାର ସଂସ୍କାରକ ମାନଙ୍କୁ ସଚେତନ କରାଇବା ସଙ୍ଗେ ସଙ୍ଗେ ଆତ୍ମଶକ୍ତିର ଉଦ୍ଦୀପତି କରାଇବା ଉଚିତ୍ । ସେଥିପାଇଁ ଏ ଯୁଗୀୟ ସଂସ୍କୃତିର ସଂସ୍କାର ଆବେଦନ ଅତ୍ୟନ୍ତ ଗଭୀର ଓ ଗମ୍ଭୀର । ଗତି ହିଁ ଇତିହାସକୁ ବାନ୍ଧି ରଖିଥାଏ । ପ୍ରଗତିଶୀଳ ଚେତନା ଏ ଯୁଗର ସଂସ୍କାରକ ମାନଙ୍କୁ ଇତିହାସ ଓ ପରଂପରା ପ୍ରତି ଅଧିକ ସଚେତନ ହେବା ଉଚିତ୍ ।

ବେଦର ସେହି ଗୁରୁଗମ୍ଭୀର ପଦଟି ଜାତୀୟ ଚେତନାର ପରିଚାୟକ ବୋଲି ମନେହୁଏ ।

ଯାମଶ୍ୱିନାବମି ମାତାଂ ବିଷ୍ଣୁର୍ଯ୍ୟସ୍ୟାଂ ବିଚକ୍ରମେ,
ଇନ୍ଦୋ ଯାଂ ଚକ ଅତ୍ମନେଽନ ମିତ୍ରାଂ ଶଚିପତିଃ
ସାନୋ ଭୂମି ବିସୃର୍ଜତାଂ ମାତା ପୁତ୍ରାୟ ମେ ପୟଃ ।

ଅର୍ଥବ ବେଦ
୧୦/୧/୧୦

ଅଶ୍ୱନୀକୁମାର ଯେଉଁ ଭୂମିର କରିଛନ୍ତି ନାମକରଣ, ସୂର୍ଯ୍ୟ ପରିକ୍ରମା ଯେଉଁ ଭୂମିରେ କରନ୍ତି, ତାହା ହିଁ ହେଉଛି ମୋର ମାତୃଭୂମି । ମା ଯେପରି ଦୁଗ୍ଧ ଦେଇ ସନ୍ତାନ ମାନଙ୍କୁ ପାଳନ କରିଥାଏ, ସେହିପରି ପୃଥିବୀ ଆମକୁ ପାଳନ କରୁ ।

ବେଦରେ ମାତୃଭୂମି ପ୍ରତି ମମତାର ଗାନ କରୁଥିଲେ ବୈଦିକ ଋଷିଗଣ । ଏହାଥିଲା ମାତୃଭୂମି ପ୍ରତି ସେମାନଙ୍କ କଣ୍ଠରେ ଏକାତ୍ମ ବୋଧର ବାର୍ତ୍ତା । ମଣିଷ ମଣିଷ ଭିତରେ ନିବିଡ଼ ବନ୍ଧୁତ୍ୱ । ଆଦିମ ଯୁଗରୁ ମଣିଷ ଅନ୍ତର ଭିତରେ ଘନିଷ୍ଠ ଭାବ । ଏହି ମଣିଷ ମନ ଭିତରେ ଥିବା ଅସୁମାରୀ ବନ୍ଧୁତ୍ୱକୁ କାଳ ଭିନ୍ନ ଭିନ୍ନ ଭାବରେ ପରିପ୍ରକାଶ କରାଇଥାଏ ।

ଆମେ ମାତୃ ଗର୍ଭରୁ ପଦାକୁ ଆସି କୁଆଁରାବ ସଙ୍ଗେ ସଙ୍ଗେ ପୃଥିବୀର ପ୍ରଥମ ଆଲୋକ ଦେଖୁ ଏବଂ ଗ୍ରହଣ କରିନେଉ ପୃଥିବୀର କୋଳ । ଥୁରୁ ଥୁରୁ ହୋଇ ତାରି ବକ୍ଷରେ ଚାଲି ଶିଖୁ । ଥର କୁ ଥର ତାରି ବକ୍ଷରେ ଖସି ପଡୁ ଏବଂ ସେ ଆମକୁ କୋଳେଇ ନିଏ । ଖନେଇ ଖନେଇ କଥା ଶିଖୁ । ଜାଣିବାକୁ ପାଉ ସମାଜ ଏବଂ ସମାଜ ଭିତରେ ବଞ୍ଚି ରହିବାର କଳା । ଧୀରେ ଧୀରେ ତାରି ପାଣି ପବନରେ ବଢି ବଞ୍ଚିବାର ଉପଯୋଗକୁ ଆଦରିନେଉ । ତା'ପରେ ଆମ ମନରେ ଉଙ୍କିମାରେ ବିଭିନ୍ନ ଆକାଂକ୍ଷା, ଆମେ ବାଛିନେଉ ବଞ୍ଚିବାର ଶୈଳୀ, ବଞ୍ଚିବା ଭିତରେ ଗ୍ରହଣ କରୁ ଜୀବନର ଭାବାଦର୍ଶ, ନିଜକୁ ଚିହ୍ନିବା ସଙ୍ଗେ ସଙ୍ଗେ ଅନ୍ୟକୁ ଚିହ୍ନିବାକୁ ପ୍ରେରଣା ପାଉ । ଜନ୍ମଦାତ୍ରୀ ମା' ଶାରୀରିକ ପୋଷଣ କରିବା ସଙ୍ଗେ ସଙ୍ଗେ, ମାନସିକ ଓ ତାତ୍ତ୍ୱିକ ପୋଷଣ ଘଟିଥାଏ ମାତୃଭୂମି ଦ୍ୱାରା । ତେଣୁ ଜନ୍ମଦାତ୍ରୀ ମା'ପରି ମାତୃଭୂମି ସହିତ ମଣିଷ ଜୀବନର ଆତ୍ମିକ ବନ୍ଧନ ରହିଛି । ଯାହାକୁ ସରଳ ଭାଷାରେ କୁହାଯାଇଛି ଦେଶାତ୍ମବୋଧ, ଜାତୀୟତାବୋଧ, ଏହା ଏକ ମଣିଷ ମନର ଉର୍ଦ୍ଧ୍ୱମୁଖୀ ଚେତନା ଯାହାର ରୂପରେଖ ନାହିଁ । ଏହାର ସ୍ଥିତି କେବଳ ମଣିଷ ହୃଦୟରେ । ମଣିଷ ହୃଦୟରେ ଏହି ଚେତନା ଯେତେବେଳେ ଦିବ୍ୟ ଚେତନାରେ ପରିଣତ ହୁଏ ସେତେବେଳେ ଭଲପାଇବାର ପ୍ରବୃତ୍ତି ଜନ୍ମାଏ । ଏହି ଜନ୍ମମାଟିକୁ ମା' ନ୍ୟାୟରେ ମାନବ

ସମାଜକୁ ଦେଶଜାତି ପାଇଁ କର୍ମ କରିବାକୁ ଆହ୍ୱାନ ଦେଇଥାଏ । ଫଳରେ ଏହା ପ୍ରଭାବିତ କରେ ତା'ର ସାମାଜିକ ଅର୍ଥନୈତିକ ଓ ସାଂସ୍କୃତିକ ପୃଷ୍ଠଭୂମିକୁ । ଫଳରେ ଦେଶପ୍ରୀତି ଓ ଜାତୀୟତାବୋଧର କଳାତ୍ମକ ପ୍ରକାଶ ପାଇଁ ସ୍ରଷ୍ଟାମାନେ ଆଗେଇ ଆସନ୍ତି । ନିଜର ଦେଶପ୍ରତି ଜାତିପ୍ରତି ନିଷ୍ଠା ନିଃସ୍ୱାର୍ଥପରତା ବଳରେ ସେମାନେ ଅନ୍ୟମାନଙ୍କ ହୃଦୟରେ ଜାତୀୟଚେତନାର ନିର୍ଝରିଣୀ ଧାରା ବୁହାଇ ଦିଅନ୍ତି । ଫଳରେ ସମସ୍ତେ ଜାତୀୟଚେତନାରେ ଉଦ୍‌ବୋଧ ହୋଇଯାନ୍ତି । ସେଥିପାଇଁ କୁହାଯାଏ 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ' । ଏଣୁ ଜାତୀୟଚେତନାରେ ମା ଏବଂ ମା' ମାଟିକୁ ସ୍ୱର୍ଗଠାରୁ ଉଚ୍ଚସ୍ଥାନ ଦିଆଯାଇଛି । ସେମାନେ ଜାତୀୟତା ବହ୍ନିରେ ଜନସାଧାରଣ ପ୍ରାଣକୁ ଆପ୍ଳୁତ କରନ୍ତି ଏବଂ ମିଶାଇ ଦିଅନ୍ତି ଜାତୀୟ ନିର୍ଝରିଣୀର ପ୍ରବାହମାନ ଧାରାରେ । ପରିଶେଷରେ ସେମାନେ ମାତୃଭୂମି ଏବଂ ମାତୃଭାଷାକୁ ବନ୍ଦନା କରନ୍ତି ।

ଏକ ବୀଜ ମଧ୍ୟରେ ଅରଣ୍ୟର ଆଦିମ ଉତ୍ସ ସନ୍ନିହିତ ଥାଏ । ଏଇ ବୀଜ ହିଁ ଦିନେ ବଂଶ ବିସ୍ତାର କରି ଅରଣ୍ୟକୁ ରୁଦ୍ର ସୁନ୍ଦର କରିଦିଏ; ପ୍ରକୃତିକୁ ପ୍ରାଣମୟ କରିଦିଏ ସବୁଜ ସୁଷମାର ସମ୍ମୋହନରେ । ଏ ସବୁ ପଛରେ ନିଜକୁ ସୁଜିବାର ଅଫୁରନ୍ତ ଆଶାର ଆଲୋଡ଼ନ ଉଦ୍ଭିଦକୁ ହିଁ ଜଣା । ଏଣୁ ମାଟି ଚିରି ମୁକୁଳିବାର ମୋହକୁ ଉଦ୍ଭିଦ ହିଁ ଠିକ୍ ଅନୁଭବ କରିଛି ସୃଷ୍ଟିର ରହସ୍ୟ ମଧ୍ୟରେ ଗୋଟେ ସ୍ରଷ୍ଟାର ଲେଖନୀ ମୂନରେ ନିଜକୁ ମୁକୁଳେଇ ଦେବାର ଅଜସ୍ର ସାଧନା ପରି । ଜଣେ ସତ୍ୟଦ୍ରଷ୍ଟା ହିଁ ସଫଳ ସ୍ରଷ୍ଟାର ଗୌରବରେ ନିଜ ଚୌହଦୀକୁ, ପରିବେଶ ଓ ପାରିପାର୍ଶ୍ୱିକ ଅବସ୍ଥାକୁ ସୃଷ୍ଟିମୂଖର କରିପାରେ । ବୀଜ, ଅରଣ୍ୟାନୀ ସୃଷ୍ଟି କଲାପରି କିମ୍ବା ବୀଜ ମୂଳରେ ଅରଣ୍ୟାନୀର ସତ୍ତା ଲୁଚି ରହିଲାପରି ଭାରତୀୟ ସଂସ୍କୃତି ମଧ୍ୟରେ ଭାରତୀୟ ଜାତୀୟ ଚେତନା ଲୁଚି ରହିଛି । ଆମ ସଂସ୍କୃତିକୁ ଯଦି ଆମେ ଆପଣେଇ ନେବା, ଆମର ନିରବଚ୍ଛିନ୍ନ ସାଧନା, ସମାଜ ପ୍ରତି ଆମର ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ ଆମ ମନରେ ଜାତୀୟ ଚେତନା ସୃଷ୍ଟି କରିଥାଏ । ସେତେବେଳେ ମଣିଷ ଭୁଲିଯାଏ ନିଜର ସ୍ୱାର୍ଥ, ଅହଂମିକା ଏବଂ ଗର୍ବ ଇତ୍ୟାଦି । ଜାତିର ପ୍ରଖର ସ୍ରୋତରେ ସେ ନିଜକୁ ମିଶାଇ ଦେଇଥାଏ ।

ଭାରତୀୟ ସସ୍କୃତିରେ ସୃଷ୍ଟି ଓ ସ୍ରଷ୍ଟାଙ୍କ ବିଷୟରେ ଜନସାଧାରଣଙ୍କ ମନରେ ଚିନ୍ତା ଚେତନା ନିଶ୍ଚିନ୍ତ ଭାବରେ ରହିଛି । ହୁଏତ କା'ର ଅଧିକ ଥାଇପାରେ କିମ୍ବା କା'ର କମ୍ ଥାଇପାରେ । କିନ୍ତୁ ତାହାକୁ ଅଧିକ ଉନ୍ନତ ଓ ସମୃଦ୍ଧି କରିବା ପାଇଁ ପ୍ରତ୍ୟେକ ମଣିଷ

ଶରୀରରେ ମନ, ବୁଦ୍ଧି, ଅଂହକାର, ଇଚ୍ଛାଶକ୍ତି ଓ ଧୈର୍ଯ୍ୟ ସୃଷ୍ଟିକର୍ତ୍ତା ଯୋଗାଇ ଦେଇଛନ୍ତି । ଏହା କିନ୍ତୁ ପ୍ରତ୍ୟେକଙ୍କଠାରୁ ପ୍ରତ୍ୟେକଙ୍କର ଭିନ୍ନ । ଏଥିପାଇଁ ଏ ସୃଷ୍ଟି ଏତେ ବିଭିନ୍ନ, ବିଚିତ୍ର, ମହନୀୟ ଓ ମହିମାମୟ ହୋଇପାରିଛି । ଅଭାବ ଅସୁବିଧା ଜନସାଧାରଣଙ୍କର ଚିର ସାଥୀ । ସେମାନଙ୍କ ମଧ୍ୟରେ ତାହା ଥିଲା, ଅଛି ଏବଂ ରହିବ ମଧ୍ୟ । କିନ୍ତୁ ଲୋକଙ୍କ ଆବଶ୍ୟକତାକୁ ଆଖି ଆଗରେ ରଖି ଯେଉଁ ହୃଦୟବାନ ମଣିଷ ନିଜକୁ ସେଥିପାଇଁ ତିଳ ତିଳ ଦଗ୍ଧୀଭୂତ କରି ଅସୁବିଧାର ଆଶୁ ସମାଧାନ ପାଇଁ ଉଦ୍ୟମ କରିଥାଏ, ସେ ବ୍ୟକ୍ତି ଭିନ୍ନ ଏବଂ ସେଥିପାଇଁ ସୃଷ୍ଟିକର୍ତ୍ତା ସେମାନଙ୍କ ପାଇଁ ସର୍ବଜନ ହୃଦୟରେ ଭିନ୍ନ ସ୍ଥାନ ନିର୍ଦ୍ଦିଷ୍ଟ କରିଥାନ୍ତି ।

ଏହି ପରୋପକାରିତା ବିଷୟରେ ଆଗେ ଗୋଟିଏ ଛୋଟ ଉଦାହରଣ ନେଇପାରିବା । 'ଶଗଡ' ଶବ୍ଦ ସମଗ୍ର ଭାରତ ବର୍ଷରେ ଖୁବ୍ ଭଲଭାବରେ ପରିଚିତ । ବଳଦ ଗାଡ଼ି ବା ଶଗଡ଼ କହିଲେ ଏହା ସମସ୍ତେ ଜାଣନ୍ତି । ଆଜିର ଯନ୍ତ୍ର ଯୁଗରେ ଯଦିଓ ଶଗଡ଼ର ବ୍ୟବହାର କମିଯାଇଛି ତଥାପି ଶଗଡ଼ ସହିତ ଆମ୍ଭେମାନେ ସମସ୍ତେ ପରିଚିତ । ଅଦ୍ୟାବଧି କଟକ ମହାନଗରରେ ମାଲ୍‌ଗୋଦାମ ଅଞ୍ଚଳରେ ଗୋଟିଏ ଶଗଡ଼କୁ ଗୋଟିଏ ବଳଦ ଟାଣୁଥିବାର ଦୃଶ୍ୟ ଦେଖାଯାଏ । ଏହି ଶଗଡ଼ ଭାରତୀୟ ସଂସ୍କୃତି ଏବଂ ପରମ୍ପରାର ମୂକସାକ୍ଷୀ । ଯେତେବେଳେ ଯାନବାହନର ପ୍ରଚଳନ ନଥିଲା ସେତେବେଳେ ବାହାଘର ଠାରୁ ଆରମ୍ଭ କରି ଝିଅର ପୁଆଣୀ ଘର ପର୍ଯ୍ୟନ୍ତ ଏବଂ ମଣିଷ ଠାରୁ ଆରମ୍ଭ କରି ଜିନିଷ ପତ୍ର ବୋହିବା ପର୍ଯ୍ୟନ୍ତ ଶଗଡ଼ ହିଁ ଥିଲା ଗୋଟଏ ମାଧ୍ୟମ । ଏହା କେବେହେଲେ ଆମେ ଅସ୍ୱୀକାର କରିପାରିବା ନାହିଁ । ତେଣୁ ଶଗଡ଼ର ସ୍ୱତନ୍ତ୍ର ପରିଚୟ ଥିଲା ବାହନ ରୂପରେ । ଆଜିର ବିଜ୍ଞାନ ଯୁଗରେ ଯଦିଓ ଯାନର ସଂଖ୍ୟା ବଢିଚାଲିଛି ତଥାପି ବାହନର ନାମଟି ଯାନ ସହିତ ଯୋଡ଼ି ହୋଇରହିଛି – 'ଯାନବାହନ' । କିନ୍ତୁ ଅତୀତର ସେଇ ଶଗଡ଼ ସଂସ୍କୃତିକୁ ଧୀରେ ଧୀରେ ଆମେ ଭୁଲିଗଲେଣି ।

ଶଗଡ଼ ଚଳାଉଥିବା ଲୋକଟିକୁ କୁହାଯାଏ ଶଗଡ଼ିଆ । ସତେ ଯେମିତି ତା'ର ଜୀବନର ସାଥି ହେଉଛନ୍ତି ଜୋଚା ଯାଇଥିବା ବଳଦ ଦୁଇଟି । ଶଗଡ଼ିଆ ପାଟିର ଟାକରା ଏବଂ ତା'ର ବେଶୁରିଆ ସଂଗୀତର ଲହରୀ ବଳଦକୁ ଉତ୍ସାହିତ କରିଥାଏ ଆଗକୁ ବଢିବାକୁ । ଶଗଡ଼ ଅଖର ମଧ୍ୟ ଭାଗରେ ଝୁଲୁଥାଏ ଲଣ୍ଠନ । ରାତିହେଲେ ସେ ଲଣ୍ଠନକୁ ଶଗଡ଼ିଆ ଜଳାଇ ଦିଏ । କିନ୍ତୁ ସେ ଲଣ୍ଠନର ଆଲୁଅ ଶଗଡ଼ିଆକୁ ରାସ୍ତା ଦେଖାଇବାରେ ବିଶେଷ

ସାହାଯ୍ୟ କରିନଥାଏ କିମ୍ବା ସେହି କ୍ଷୀଣ ଆଲୋକ ବଳଦକୁ ଆଗକୁ ବଢ଼ିବାକୁ ସାହାଯ୍ୟ କରିନଥାଏ । ତଥାପି ଶଗଡ଼ ତଳେ ଲଣ୍ଠନଟି ଜଳୁଥାଏ । ଶଗଡ଼ିଆ ଏବଂ ବଳଦକୁ ସାହାଯ୍ୟ ନକଲେ ବି ସୁଦ୍ଧା ସେହି କ୍ଷୀଣ ଆଲୋକ ନିଜର ଉପସ୍ଥିତି ବିଷୟରେ ଅନ୍ୟକୁ ଜଣାଇ ଦେଇଥାଏ । ଏହା ଏକ ସାଧାରଣ କଥା । ଭାବିଲେ ତା ଭିତରେ ଲୁଚି ରହିଛି ଅନେକ ତତ୍ତ୍ୱ, ନ ଭାବିଲେ କିଛି ନାହିଁ । ଶଗଡ଼ ତଳେ ଆଲୋକ ଥାଇ ଏହା ଶଗଡ଼କୁ ନଦେଖାଇ ଦେଖାଇଥାଏ ଅନ୍ୟକୁ । ଅନ୍ୟମାନଙ୍କୁ ଚେତେଇ ଦେବାପାଇଁ । ନିଜର ଉପସ୍ଥିତି ବିଷୟରେ ଅନ୍ୟକୁ ଜଣାଇ ଦେବାପାଇଁ । ଏହା ଆମ ଭାରତୀୟ ସଂସ୍କୃତିର ଏକ ବଳିଷ୍ଠ ଉଦାହରଣ ।

ଆମ ପୂର୍ବ ସୂରୀ ମାନଙ୍କର ଚିନ୍ତାଧାରା ଥିଲା ସେଇ ଶଗଡ଼ ତଳର ଲଣ୍ଠନ ପରି । ସେମାନେ ଅନ୍ୟମାନଙ୍କ ପାଇଁ ଦିବ୍ୟ ସତ୍ତାର ଜ୍ଞାନ ଧାରଣ କରୁଥିଲେ । ଜ୍ଞାନୀଲୋକଙ୍କର କଠୋର ସାଧନା ଦ୍ୱାରା ଅର୍ଜିତ ଜ୍ଞାନ ସମାଜ ପାଇଁ ହିଁ ଉଦ୍ଦିଷ୍ଟ ଥିଲା । ନେବାରେ ନାହିଁ ଦେବାରେ ହିଁ ସେମାନେ ଆନନ୍ଦ ଉପଲବ୍ଧି କରୁଥିଲେ । ଏଣୁ ଆମର ସଂସ୍କୃତି ତ୍ୟାଗ ଉପରେ ଆଧାରିତ । ଭୋଗ ଉପରେ ନୁହେଁ । ଶଗଡ଼ ତଳର ଲଣ୍ଠନ ପରି ଆମ ସଂସ୍କୃତି ସମଗ୍ର ବିଶ୍ୱପାଇଁ ଉଦ୍ଦିଷ୍ଟ ଥିଲା । ଆଧୁନିକ ସଭ୍ୟତାର ବାର୍ତ୍ତାବହ ସାଜିଥିବା ଯାନ୍ତ୍ରିକ ସଂସ୍କୃତିର ଉଗ୍ରତା ଏବଂ ଭ୍ରଷ୍ଟାଚାରିତା ମଧ୍ୟରେ ଶଗଡ ସଂସ୍କୃତିର ଉଦାରତା ଓ ପରୋପକାରିତା ଲୋପ ପାଇବାକୁ ବସିଲାଣି । ଯାନ୍ତ୍ରିକ ସଂସ୍କୃତି ମଧ୍ୟରେ ଦିଗହରା ହୋଇପଡ଼ିଥିବା ଲଣ୍ଠନ ସଂସ୍କୃତି ନିରୀହ ପଥିକଟିଏ ପରି ପାଶ୍ଚାତ୍ୟ ସଭ୍ୟତାରେ କଣ୍ଠରୋଧ ହୋଇଯାଇଛି ଭାରତୀୟ ସଂସ୍କୃତି ଏବଂ ପରମ୍ପରା । ଏହି ଉଦାହରଣଟିକୁ ଉପଲବ୍ଧି କରି ଆଜି ଆମ୍ଭେମାନେ ସଜାଗ ହେବା ଉଚିତ୍ ।

ସମଗ୍ର ପୃଥିବୀରେ ଭାରତ ତା'ର ପ୍ରାଚୀନ ସଂସ୍କୃତି ଓ ଉଚ୍ଚ ମୂଲ୍ୟବୋଧ ପାଇଁ ସମ୍ମାନିତ । ଆମର ବେଦ ବେଦାନ୍ତ ଏବଂ ଉପନିଷଦ ଇତ୍ୟାଦି ଭାରତୀୟ ସଂସ୍କୃତିର ଅକ୍ଷୟ ଭଣ୍ଡାର । ପରାଧୀନ ଭାରତର ଜନଗଣ ଆଶା କରିଥିଲେ ଯେ, ସ୍ୱାଧୀନତା ଲାଭ ପରେ ଆମ ସଂସ୍କୃତି ଅଧିକ ସ୍ୱୀକୃତି ଲାଭ କରିବ । କିନ୍ତୁ ଦୁଃଭାଗ୍ୟର ବିଷୟ ଏ ଆଶା ଆମର ଧୂଳିସାତ୍ ହୋଇଯାଇଛି । ଯଦି ଏହାର ବିଭିନ୍ନ ଦିଗ ଉପରେ ଧ୍ୟାନ ନ ଦିଆଯାଏ ତାହାହେଲେ ଏହା ଏପରି ନିମ୍ନଗାମୀ ହୋଇଯିବ ଯେ ପରବର୍ତ୍ତୀ ସମୟରେ ତାକୁ ଉଦ୍ଧାର କରିବା ଅସମ୍ଭବ ହୋଇପଡିବ । 'ତମସୋ ମା ଜ୍ୟୋତିର୍ଗମୟ' ମନ୍ତ୍ରଦ୍ରଷ୍ଟା ଭାରତୀୟ ଋଷିମାନଙ୍କର ଏଇ ହେଉଚି ପରଂବ୍ରହ୍ମଙ୍କ ନିକଟରେ ପ୍ରାର୍ଥନା । ଏ ବାଣୀ ଯୁଗେ ଯୁଗେ ଭାରତୀୟ ସଂସ୍କୃତିର

ନିର୍ଯ୍ୟାସ ବହନ କରି ସାଧୁସନ୍ଥ ଦାର୍ଶନିକ ଓ ମହାପୁରୁଷମାନଙ୍କୁ ଆଧାତ୍ମିକ ସାଧନା ପଥରେ ଅନୁପ୍ରେରିତ କରିଆସିଛି । ଦୀପାବଳି ଅମାବାସ୍ୟାରେ ସମଗ୍ର ଭାରତବର୍ଷରେ ଅଗଣିତ ପ୍ରଦୀପର ଶିଖା ଏଇ ଦିବ୍ୟ ପ୍ରେରଣାର ପ୍ରତୀକ ଆମ ଅନ୍ତରରେ ଜ୍ଞାନ ଓ ଧର୍ମର ଶିଖା ପ୍ରଜ୍ଜ୍ୱଳିତ କରି ଏ ଜାତି ସତ୍ୟ, ସେବା ଓ ଅହିଂସାର ମନ୍ତ୍ର ସମଗ୍ର ବିଶ୍ୱରେ ପ୍ରଚାର କରିଛି । ଗତ ଶତାବ୍ଦୀରେ ଏ ଜାତିର ମହାମନିଷୀ ମାନଙ୍କର, ଆମର ବ୍ୟକ୍ତି ତଥା ରାଷ୍ଟ୍ରୀୟ ଜୀବନର ଉତ୍କର୍ଷର ଏଇ ସ୍ୱପ୍ନ ଯେପରି ବିଡ଼ମ୍ବିତ ହୋଇଚାଲିଛି । ଆମ ସଂସ୍କୃତିର ମୂଲ୍ୟବୋଧ ଗୁଡ଼ିକ ଯେପରି ଆମର ଚିନ୍ତା ଓ ଆଚରଣରୁ ଅପସରି ଯାଇଛି ଏଥିରେ ସନ୍ଦେହ ନାହିଁ ।

ଏଇ ହେଉଛି ଆମର ସେହି ଜନ୍ମଭୂମି ଭାରତ । ଯେଉଁ ଦେଶର ପବିତ୍ରରେ, ଯେଉଁ ଦେଶର ମୁନିଋଷି ମାନଙ୍କର ପାଦଧୂଳିରେ, ଯେଉଁ ମାନଙ୍କର ଧ୍ୟାନ, ଯୋଗ ଏବଂ ସତ୍ୟସନ୍ଧାନୀ ଚେତନାରୁ ଉଦ୍‌ଘୋଷିତ ହୋଇଥିବା ଲିପିବଦ୍ଧ ସତ୍ୟକୁ 'ବେଦ'ର ଆଖ୍ୟା ଦିଆଯାଇଥାଏ । ଆମ ଦେଶର ତତ୍ତ୍ୱଜ୍ଞାନ ଏବଂ ଆଧାତ୍ମିକ ପ୍ରଚାର ଜଡ଼ରାଜ୍ୟର ସ୍ରୋତସ୍ୱିନୀ ଏବଂ ସାଗର ସଦୃଶ୍ୟ । ସମଗ୍ର ବିଶ୍ୱର ହେଉଛି ସେହିମାଟି ଯେଉଁଠି ସର୍ବପ୍ରଥମେ ଅନ୍ତଃଜଗତର ରହସ୍ୟ ଉଦ୍‌ଘାଟନର ପ୍ରଚେଷ୍ଟା ହୋଇଥିଲା । ଏହିଠାରେ ହିଁ ଜୀବାତ୍ମାର ଅମରତ୍ୱ, ଅନ୍ତର୍ଯ୍ୟାମୀ, ଈଶ୍ୱର, ବ୍ରହ୍ମସତ୍ୟ ଜଗତ୍‌ମିଥ୍ୟା ଏବଂ ମାନବ ହୃଦୟରେ ଥିବା ପରମାତ୍ମା ସମ୍ବନ୍ଧୀୟ ମତବାଦ ପ୍ରଥମେ ଉଦ୍‌ଘୋଷିତ ହୋଇଥିଲା । ଏହିଠାରୁ ଭାରତର ଧର୍ମ ଏବଂ ଦାର୍ଶନିକ ତତ୍ତ୍ୱ ସମୂହ ବନ୍ୟାପରି ସମଗ୍ର ବିଶ୍ୱକୁ ପ୍ଲାବିତ କରିଛି । ଏହିଠାରୁ ହିଁ ପୁଣି ସେହି ପ୍ରକାର ତରଙ୍ଗ ଉତ୍‌ଥିତ ହୋଇ ନିସ୍ତେଜ ଜାତି ସମୂହ ମଧ୍ୟରେ ଜୀବନ ଓ ତେଜ ସଞ୍ଚାର କରିବ । ଏହି ଆମ ଭାରତବର୍ଷ ଯାହା ଶତ ଶତାବ୍ଦୀର ଅତ୍ୟାଚାର, ଶତ ଶତ ବୈଦେଶିକ ଆକ୍ରମଣ ଏବଂ ଶତ ପ୍ରକାରର ରାଜନୀତିର ବିପର୍ଯ୍ୟୟ ସହ୍ୟ କରି ମଧ୍ୟ ଅକ୍ଷୁର୍ଣ୍ଣ ରହିଛି । ଆମ୍ଭମାନଙ୍କର ଶାସ୍ତ୍ରୋପଦିଷ୍ଟ ଆତ୍ମା ଯେପରି ଅନାଦି, ଅନନ୍ତ ଓ ଅମୃତ ସ୍ୱରୂପ ଆମ୍ଭମାନଙ୍କ ଜୀବନ ସେହିପରି ଅମୃତମୟ ଏବଂ ଆମେ ସମସ୍ତେ ଅମୃତର ସନ୍ତାନ । ଅମୃତସ୍ୟ ପୁତ୍ରାଃ . . . . . ।

ଜଣେ ବ୍ୟକ୍ତି ତା'ର ପୂର୍ବ ଐତିହ୍ୟ ଏବଂ ପୂର୍ବ ସ୍ମୃତିକୁ ନିଶ୍ଚିତଭାବେ ମନେ ରଖିବା ଉଚିତ୍ । କାରଣ ଅତୀତ ଗର୍ଭରୁ ଭବିଷ୍ୟତ୍ୟ ଜନ୍ମ ନେଇଥାଏ । ଏହି ସିଂହାବଲୋକନ ପ୍ରତି ବ୍ୟକ୍ତି ପକ୍ଷରେ ନିତ୍ୟାନ୍ତ ଆବଶ୍ୟକ । ନଚେତ୍ ଆମ୍ଭେମାନେ ଆମର ଦେଶ, ଜାତି, ଭାଷା ଏବଂ ସଂସ୍କୃତିକୁ ଚିହ୍ନି ପାରିବା ନାହିଁ । ଆମ ମନ ମଧ୍ୟରେ ଦେଶ ଏବଂ ଜାତି ପ୍ରତି ଦୂରଦୃଷ୍ଟି ଆସିପାରିବ ନାହିଁ । ଜଣେ ଚିନ୍ତାଶୀଳ ବ୍ୟକ୍ତି ଯଦି ଦେଶର ବାଣିଜ୍ୟ, ଅର୍ଥନୀତି, ସଂସ୍କୃତି,

ସାମ୍ପ୍ରଦାୟିକତା, ହିଂସା ଏବଂ ଦୁର୍ନିତୀ ବିଷୟରେ ଚିନ୍ତନ କରି ଅନ୍ୟକୁ ସତ୍‌ମାର୍ଗର ରାସ୍ତା ନଦେଖାଇବ ଏବଂ ବସ୍ତୁବାଦୀ ମୁନାଫାଖୋର ବ୍ୟକ୍ତି ସମୂହକୁ ପଛକୁ ଫେରାଇ ସତ୍‌ମାର୍ଗ ନଦେଖାଇବ ତାହାହେଲେ ଦେଖାଇବ କିଏ ?

କହିବାର ଉଦ୍ଦେଶ୍ୟ ହେଉଛି ଯେଉଁ ଭାରତୀୟ ସମାଜ ବା ସଂସ୍କୃତି ସମଗ୍ର ବିଶ୍ୱକୁ ଏକାକାର ମଣିଥାଏ ଆଜି ସେଇ ବିଶ୍ୱ ଆମର ଭାବନା ଭିତରେ ଖଣ୍ଡ ବିଖଣ୍ଡିତ ହୋଇଯାଇଛି । ସମଗ୍ର ବିଶ୍ୱକୁ ଗୋଟିଏ ପରିବାର ମନେକରୁଥିବା ମହାପୁରୁଷଙ୍କ ଦୃଷ୍ଟିକୋଣ ଏହିପରି ମହନୀୟ ହୋଇଥାଏ । ଏହାଥିଲା ଆମ ସଂସ୍କୃତି ଏବଂ ଅଛି ମଧ୍ୟ । ଯାହା ହେଉନା କାହିଁକି ତଥାପି ମଣିଷ ଭୁଲି ପାରେନି ଜନ୍ମ ନେଇଥିବା ସେଇ ଛୋଟ ପଲ୍ଲୀଟିକୁ, ଭୁଲିପାରେନି ତା'ର ସେଇ ଏନ୍ତୁଡ଼ିଶାଳ, ଏବଂ ତା'ଗାଁର ସେଇ ମଶାଣି ଭୂଇଁକୁ । ଗାଁ ଚାଟଶାଳୀ, ଅବଧାନଙ୍କ ବେତମାଡ଼, ଗାଁ ସାଙ୍ଗସାଥି, ଅଙ୍କାବଙ୍କା ନଈ, ଗାଁର ପର୍ବ ପର୍ବାଣୀ ଏବଂ କୁଆଁର ପୁନେଇ ପର୍ବଆଦିକୁ କେବେହେଲେ ଜୀବନରେ ଭୁଲି ହୁଏନି । ଯେଉଁ କବି ଏବଂ କଥାକାର ମାନଙ୍କର ଅମର ଲେଖନୀ ଆଜି ଓଡ଼ିଆ ସାହିତ୍ୟ ଜଗତକୁ ଋଦ୍ଧିମନ୍ତ କରିପାରିଛି, ସେହି ସାହିତ୍ୟ ସମ୍ଭାର ଦିନେ ଜନ୍ମ ନେଇଥିଲା କବି ଏବଂ କଥାକାର ମାନଙ୍କର ପଲ୍ଲୀ ଚେତନାରୁ । ପଲ୍ଲୀ ଜୀବନ, ପଲ୍ଲୀ ଦୃଶ୍ୟ ଏବଂ ପଲ୍ଲୀ ପ୍ରକୃତିକୁ ସେମାନେ ଜୀବନ୍ତ କରି ତୋଳିଥିଲେ ଓଡ଼ିଆ ସାରସ୍ୱାତ ଜଗତକୁ । ଯଦି ତାଙ୍କର ସେଇ ପଲ୍ଲୀ ଜୀବନ ଉପରେ କିମ୍ବା ମା'ମାଟି ଉପରେ ଅନ୍ୟ କାହାର ଲୋଲୁପ ଦୃଷ୍ଟି ପଡ଼େ କିମ୍ବା ତା'ଉପରେ ଯଦି କିଏ ଅଧିକାର ସାବ୍ୟସ୍ତ କରେ, ତାହାହେଲେ ତାକୁ ଉଦ୍ଧାର କରିବା ପାଇଁ ନିଜର ପ୍ରାଣବଳି ଦେବାକୁ କେବେ କେହି କୁଣ୍ଠାବୋଧ କରିବେ ନାହିଁ । ଦେଶ ମାତୃକାକୁ ଉଦ୍ଧାର କରିବା ପାଇଁ ଏକରୁ ଅନେକ ସ୍ୱର ଉତ୍ତୋଳନ କରନ୍ତି । ଆରମ୍ଭ ହୁଏ ଆନ୍ଦୋଳନ । ଡ଼ାକରା ପଡ଼େ ମା'ମାଟିର ଉଦ୍ଧାର ପାଇଁ । ଝଡ଼ ସୃଷ୍ଟି ହୁଏ ସାଧାରଣ ଜନତାଙ୍କ ମନରେ, ଝଡ଼ ସୃଷ୍ଟି ହୁଏ କବି ଏବଂ ଲେଖକ ମାନଙ୍କର ଲେଖନୀ ମୂନରେ । ଉଠ କଙ୍କାଳ ଛିଡ଼ୁ ଶୃଙ୍ଖଳ ଜାଗ ଦୁର୍ବଳ ଆଜି । ପାଣି ପବନ ସମୁଦ୍ରର ଉତ୍ତାଳ ତରଙ୍ଗ ଡ଼ାକ ଦିଏ, ପ୍ରେରଣା ଦିଏ ଏବଂ ଆହ୍ୱାନ କରେ ଆନ୍ଦୋଳନକୁ । ଆରମ୍ଭ ହୁଏ ସଂଗ୍ରାମ । ସ୍ୱାଧୀନତା ସଂଗ୍ରାମ ନିଜର ଅଧିକାରକୁ ସାବ୍ୟସ୍ତ କରିବା ପାଇଁ ଉପୁଜେ ଦାବ ବିବାଦ । ମଣିଷ ମଣିଷ ମଧ୍ୟରେ ଭୁଲିଯାନ୍ତି ମାନବିକ ମୂଲ୍ୟବୋଧ । କେହି କାହାକୁ ହତ୍ୟା କରିବାକୁ ମଧ୍ୟ ପଛାନ୍ତି ନାହିଁ । ମଣିଷ ମଣିଷ ପ୍ରତି ବର୍ବରଚିତ୍ତ ଆକ୍ରମଣରେ ବହିଯାଏ ରକ୍ତନଦୀ । ହିଂସା ପ୍ରତିହିଂସାର ଜ୍ୱଳନ ସୃଷ୍ଟିକରେ ବିଭୀଷିକାମୟ ପରିସ୍ଥିତି । ଯେଉଁମାନେ ଏଥିରେ ପ୍ରାଣ ବିସର୍ଜନ କରନ୍ତି ସେମାନେ ହୁଅନ୍ତି ଶହୀଦ୍ । ଏହିପରି ଭାବେ

ଆମେ ପର୍ଯ୍ୟାଲୋଚନା କଲେ ପୃଥିବୀ ଇତିହାସ ମଧ୍ୟରେ କେତେ ଯେ କେତେ ଅଲିଭା ଗାର ରହିଯାଇଛି ତାର ହିସାବ ନାହିଁ । କେବଳ ଯେ ଥିଲା ତାହାନୁହେଁ । ଏବେ ବି ମଧ୍ୟ ଧର୍ମ ରହିଛି ।

ଏହି ପୃଥିବୀ ଇତିହାସରୁ ଆମ ଦେଶ ଭାରତବର୍ଷ ମଧ୍ୟ ବାଦ ପଡ଼ିନି । ନିଜ ଅଙ୍ଗେ ଲିଭାଇଥିବା ଅନୁଭୂତିକୁ ବହନ କରି ଏବେବି ମଧ୍ୟ ବଞ୍ଚିରହିଛନ୍ତି ଅନେକ । ସେମାନେ କହନ୍ତି ସେମାନଙ୍କ ଅଙ୍ଗେ ଲିଭେଇଥିବା ଭାରତ ସ୍ୱାଧୀନତା ଆନ୍ଦୋଳନର କରୁଣ କାହାଣୀ । କେତେକଙ୍କୁ ପଚାରିଲେ ସୋମନେ ସେମାନଙ୍କର ପିଠି ଏବଂ ପିଚାର ଆବରଣ ଟେକି ଦେଖାଇ ଦିଅନ୍ତି ସେହି ଅଲିଭା ଦାଗକୁ । ଯେଉଁ ଦାଗ ଦିନେ ସୃଷ୍ଟି କରିଥିଲା ଇଂରେଜ ଶାସକ ମାନଙ୍କର ଲାଠିମାଡ଼ ଏବଂ ବନ୍ଧୁକ ଡ଼ିହ ଇତ୍ୟାଦି ଇତ୍ୟାଦି । କେତେ ଯେ ପରିବାର ଭିଟାମାଟିରୁ ନିଶ୍ଚିହ୍ନ ହୋଇ ଯାଇଛନ୍ତି କେତେ ଯେ ପୁନର୍ବାର ସ୍ୱଗୃହକୁ ନଫେରି ରଣକ୍ଷେତ୍ରରେ ପ୍ରାଣ ବିସର୍ଜନ କରିଚନ୍ତି ତାର ହିସାବ ନାହିଁ । ଭାରତର ସ୍ୱାଧୀନତା ସଂଗ୍ରାମର ପ୍ରବଳ ସ୍ରୋତରେ ନିଜର ଆତ୍ମା ବିସର୍ଜନ କରିଛନ୍ତି ତା'ର ହିସାବ କିଏ ବା ରଖିବ ? ଏଇ ଜନ୍ମଭୂମି ପାଇଁ କେତେ ଯେ ସଂଗ୍ରାମୀ ହସି ହସି ଫାଶୀ ଖୁଣ୍ଟରେ ଝୁଲି ଯାଇଛନ୍ତି ତାଙ୍କ କରୁଣ କାହାଣୀ ଆଜି ଇତିହାସ ହିଁ କହିବ । ଜୟୀ ରାଜଗୁରୁ ଓ ବକ୍ସି ଜଗବନ୍ଧୁଙ୍କର ବିଭତ୍ସ ଦଣ୍ଡାଦେଶର ମୂକସାକ୍ଷୀ କେବଳ ଇତିହାସ । କେତେ ଯେ କାରାବରଣ କରି ତା' ମଧ୍ୟରେ ଶେଷ ନିଶ୍ୱାସ ତ୍ୟାଗକରିଛନ୍ତି ତାହା ହିଁ ଇତିହାସ କହିବ । ଆଉ କେତେକ କାରାବରଣ କରିସାରି ଆସି ପୁଣି ସ୍ୱାଧୀନତା ସଂଗ୍ରାମର ସ୍ରୋତରେ ଝାସ ଦେଇଛନ୍ତି । ପୁଣି କେତେକ କାରାବରଣ କରିନଥିଲେ ମଧ୍ୟ ପରଦା ଆଡୁଆଳରେ ରହି ମା'ମାଟିର ମୁକ୍ତି ପାଇଁ ଜୀବନ ସଂଗ୍ରାମ କରିଛନ୍ତି । ଆଉ ମଧ୍ୟ ଦେଖିଲେ ପୁଣି କେତେକ ସ୍ୱାଧୀନତା ସଂଗ୍ରାମରେ ସାମିଲ ହୋଇ ସ୍ୱାଧୀନତାର ପରବର୍ତ୍ତୀ ସମୟରେ ରାଜନୀତିରେ ପଦମଣ୍ଡନ କରି ଦେଶ ମାତୃକାର ସେବା ମଧ୍ୟ କରିଛନ୍ତି । ଏହିପରି ସ୍ୱାଧୀନତା ସଂଗ୍ରାମୀ ମାନଙ୍କର ଅନେକ ଦୃଷ୍ଟାନ୍ତ ଦେଖିବାକୁ ମିଳିଥାଏ । ଆଉ କେତେକ ସ୍ୱାଧୀନତା ସଂଗ୍ରାମରେ ସାମିଲି ନ ହୋଇ ମଧ୍ୟ ସ୍ୱାଧୀନତାର ପରବର୍ତ୍ତି ପରିସ୍ଥିତିରେ ନିଜକୁ ସାମିଲି କରି ରାନୈତିକ ପଦ ପଦବିକୁ ଅଧିକାର କରିବା ପାଇଁ ଜନସାଧାରଣଙ୍କୁ ଧୂଆଁ ମଧ୍ୟ ବୁଲାଇଛନ୍ତି । କିନ୍ତୁ ଅନେକ ଦେଶପ୍ରେମୀ ଛାତ୍ର ଜୀବନକୁ ଦ୍ୱାହି ଦେଇ ଜାତିର ଜନକ ଗାନ୍ଧିଜୀଙ୍କର ଡ଼ାକରାରେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଛନ୍ତି । ଓଡ଼ିଶାର ସ୍ୱାଧୀନତା ସଂଗ୍ରମର ଇତିହାସରେ ବହୁ ଦୃଷ୍ଟାନ୍ତ ଦେଖିବାକୁ

ମିଳିଥାଏ । ଓଡ଼ିଶାର ମୁଖ୍ୟତଃ ରେଭେନସା କଲେଜରେ ପଢୁଥିବା ଅନେକ ଛାତ୍ରଙ୍କ ଜୀବନରେ ଏହା ଘଟିଅଛି । କେତେକ ଏହି ସୁଯୋଗ ନେଇ ସ୍ୱାଧୀନତା ପରେ ପରେ ରାଜନୈତିକ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିପାରିଛନ୍ତି । ଆଉମଧ୍ୟ କେତେକଙ୍କୁ ଜୀବନରେ ସର୍ମସ୍ୱାନ୍ତ ହେବାକୁ ପଡ଼ିଛି । ଏହାର ଦୃଷ୍ଟାନ୍ତ ଅନେକ କ୍ଷେତ୍ରରେ ଦେଖିବାକୁ ମିଳିଥାଏ ।

୧୯୪୮ ମସିହାରେ ଗଡ଼ଜାତ ମିଶ୍ରଣ ପରେ ଗଡ଼ଜାତ ମାନଙ୍କରେ ଅନେକ ସ୍ୱାଧୀନତା ପ୍ରେମୀ ଏବଂ ସ୍ୱାଧୀନତା ସଂଗ୍ରାମୀ ଅଲୋଡ଼ା ହୋଇ ରହିଯାଇଛନ୍ତି । ୬୪ ବର୍ଷ ସ୍ୱାଧୀନତା ପରେ ମଧ୍ୟ ଆମେ ଯେତେବେଳେ ଆଲୋଚନା ମାଧ୍ୟମକୁ ଆସୁ ଆମେ ଉପଲବ୍ଧି କରୁ ଯେ, ତତ୍‌କାଳୀନ ସ୍ୱାଧୀନତା ଆନ୍ଦୋଳନ ସମୟରେ ଓଡ଼ିଶାରେ ଇଂରେଜ ସରକାରଙ୍କ ଦ୍ୱାରା ନିର୍ଯ୍ୟାତନା ଅପେକ୍ଷା ଗଡ଼ଜାତ ଅଞ୍ଚଳରେ ଥିବା ସ୍ୱାଧୀନତା ସଂଗ୍ରାମୀମାନେ ଅଧିକ ଅତ୍ୟାଚାରିତ ହେଉଥିଲେ । ଯଦିଓ ସେମାନେ ଅଧିକ ସଂଖ୍ୟକ ପ୍ରତ୍ୟକ୍ଷ ଭାବରେ ରାଜରାଜୁଡ଼ାଙ୍କ ସାମ୍ନାକୁ ଆସୁନଥିଲେ, ତଥାପି ପରୋକ୍ଷଭାବରେ ଗଡ଼ଜାତରେ ପ୍ରଜା ଆନ୍ଦୋଳନର ମଶାଲରେ ଅଗ୍ନି ସଂଯୋଗ କରୁଥିଲେ । ସହର ମାନଙ୍କରେ ଘଟିଥିବା ଘଟଣାବଳୀକୁ ନେଇ ସୃଷ୍ଟି ହେଲା ଇତିହାସ, ସମ୍ବାଦପତ୍ର ମାନଙ୍କରେ ସେମାନଙ୍କ ନାମ ଏବଂ ସେମାନଙ୍କର ଘଟଣାବଳୀ ପ୍ରସାରିତ ହେଲା, ପାଇଲେ ସେମାନେ ସମ୍ମାନ, ପ୍ରତିବଦଳରେ ପାଇଲେ ସଂଗ୍ରାମୀ ଭତ୍ତା, ଇତିହାସ ପୃଷ୍ଠା ଉନ୍ମୋଚନରେ ପାଇଲେ ସେମାନେ ଭୂରି ଭୂରି ପ୍ରଶଂସା । ସେମାନଙ୍କର ଅନ୍ତେ ଆମେ ତାଙ୍କର ଦାୟଦ ଭାବରେ ପରିଚୟ ଦେଇ ସରକାରୀ ସୁଯୋଗକୁ ହାତଛଡ଼ା ନକରି ସବୁ ଆପଣେଇ ନେଲେ । କିନ୍ତୁ ଗ୍ରାମାଞ୍ଚଳରେ ଯେଉଁମାନେ ସ୍ୱାଧୀନତା ସଂଗ୍ରାମର ପିତାମହ ଭୀଷ୍ମ ଥିଲେ ସେମାନେ ବଣମଲ୍ଲୀ ପରି ରହିଗଲେ ବଣରେ । ସେମାନଙ୍କର ବାସ୍ନା ଜନସମାଜରେ ଚହଟି ପାରିଲାନି । ଗଡ଼ଜାତର ଅନ୍ଧରୀ ମୂଳକରେ ବାସକରି ସେମାନଙ୍କର ଭୂରି ଭୂରି ପ୍ରଶଂସା କରିବ କିଏ ? ଗାଁ ଗହଳିରେ ଏହିପରି ଅନେକ ପବିତ୍ର ପ୍ରଧାନ ରହି ଯାଇଛନ୍ତି । ଆମେ ଆଲୋଚନା ମାଧ୍ୟମରେ ଲୁଚି ରହିଥିବା କିଛି ସ୍ୱାଧୀନତା ସଂଗ୍ରାମୀ, ସ୍ୱାଧୀନତାର ଘଟଣାବଳୀ, କିଛି ଅମ୍ଳାନ ପ୍ରତିଭାଙ୍କୁ ଉଦ୍ଧାର କରି ଏଇ ପୁସ୍ତକରେ ସ୍ଥାନ ଦେଇ ଲୋକ ଲୋଚନକୁ ଆଣିବା ସଙ୍ଗେ ସଙ୍ଗେ ପରବର୍ତ୍ତୀ ପୀଢ଼ିମାନଙ୍କୁ ପ୍ରେରଣା ଯୋଗାଇବା ଆମର ଲକ୍ଷ୍ୟ । ସ୍ୱାଧୀନତା ହାସଲ କରିବାର ଦୁଃଖଦ ଘଟଣାବଳୀ ଏବଂ ଆଜିର ଗଣତନ୍ତ୍ରର ସମସ୍ୟା, ବସ୍ତୁବାଦୀ ଜନସମୂହଙ୍କ ହୃଦୟରେ ଥିବା ଦେଶ ମାତୃକାର ହୀନମନ୍ୟତା, ଆଧୁନିକତା'ର ଅନ୍ଧ ଗଳିରେ ଦିଗଭ୍ରଷ୍ଟ ଆଜିର

ମଣିଷ, ବିଶେଷ କରି ଯୁବ ସମାଜକୁ ଏହା ସଂପୂର୍ଣ୍ଣ ନିରର୍ଥକ ଓ ହାସ୍ୟାସ୍ପଦ ମନେହେଉଛି । ଏହି ପୁସ୍ତକଟି ଆଜିର ଜନସାଧାରଣ ତଥା ଯୁବ ସମାଜକୁ ପ୍ରେରଣା ଯୋଗାଇବାର ଆଶା ନେଇ ଏବଂ କିଛି ସତ୍ୟ ଘଟଣାକୁ ଉନ୍ମୋଚନ କରି ଲୋକଲୋଚନକୁ ଆଣିବା ଆମର ଲକ୍ଷ୍ୟ । ଆଜିର ଯୁବ ସମାଜ ଜାତୀୟତାର ବିମୂଖ ହେଉଥିବା ବେଳେ ସେମାନଙ୍କୁ ଜାତୀୟ ସ୍ରୋତକୁ ଟାଣିଆଣିବା ଓ ଜନସାଧାରଣଙ୍କ ହୃଦୟରେ ଜାତୀୟତାର ଭାବ ଉଦ୍ରେକ କରିବା ଆମର ମୁଖ୍ୟ ଉଦ୍ଦେଶ୍ୟ ।

ସତ୍ୟ ଦିନେ ନା ଦିନେ ଉନ୍ମୋଚନ ହୋଇଥାଏ । ସତ୍ୟ କେବେ ଲୁଚି ରହେନା । କଥାରେ କହନ୍ତି ସତ୍ୟ ସାତତାଳ ପଙ୍କ ମଧ୍ୟରୁ ବି ବାହାରି ଥାଏ । ସତ୍ୟକୁ କେବେ କେହି କଣ୍ଠରୋଧ କରିପାରି ନଥାନ୍ତି । ଟିକିଏ ଡ଼େରି ହେଲେ ମଧ ଗଡ଼ଜାତ ଆନ୍ଦୋଳନ ହିଁ ଥିଲା ଭାରତୀୟ ଜାତୀୟ ଆନ୍ଦୋଳନର ଅଂଶବିଶେଷ । ଜାତିର ପିତା ଗାନ୍ଧିଜୀ ସହର ଠାରୁ ଆରମ୍ଭ କରି ଗ୍ରାମ ପର୍ଯ୍ୟନ୍ତ ବୁଲି ବୁଲି ଜନସାଧାରଣଙ୍କୁ ସ୍ୱାଧୀନତାର ଅର୍ଥ ବୁଝାଇବା ସଙ୍ଗେ ସଙ୍ଗେ ସମାଜର ମଙ୍ଗଳ କାମରେ ନିଜର ଶକ୍ତି ବିନିଯୋଗ କରିଥିଲେ । ହରିଜନ ବସ୍ତି ସଫେଇ ଠାରୁ ଆରମ୍ଭ କରି କୁଷ୍ଠୋରୋଗୀଙ୍କ ସେବା ପର୍ଯ୍ୟନ୍ତ ସମାଜର ବହୁବିଧ ମଙ୍ଗଳ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ସମାଜ ସେବା ସହିତ ରାଷ୍ଟ୍ର ଗଠନ ପ୍ରତ୍ୟେକ ନାଗରିକଙ୍କର କର୍ମ ଏବଂ ଧର୍ମ ହେଉ, ଏହା ମଧ ସେ ଭାରତୀୟ ଜନସାଧାରଣଙ୍କୁ ବୁଝାଉଥିଲେ । ଭାରତବର୍ଷର ଚତୁର୍ଦ୍ଦିଗରୁ ବହୁଳ ଭାଷାର ବାଡ଼ ଡ଼େଇଁ ବିଭିନ୍ନ ସମ୍ପ୍ରଦାୟ ପ୍ରାଚୀରକୁ ଅତିକ୍ରମ କରି ଜନଗଣଙ୍କ ମଧ୍ୟରେ ସୃଷ୍ଟି କରିପାରିଥିଲେ ଏକ ଅଭୂତପୂର୍ବ ସଂଯୋଗ । କୋଟି କୋଟି ନିର୍ବାକ ଜନତାଙ୍କର ମନକୁ ଭେଦକରି ସେମାନଙ୍କ ହୃଦୟ ରାଜ୍ୟରେ ନିଜକୁ ଉପସ୍ଥାପିତ କରିପାରିଥିଲେ ଗାନ୍ଧିଜୀ । ଗାନ୍ଧିଜୀଙ୍କର ଏହି ପ୍ରତିଭା ସଂପନ୍ନତା ପାଇଁ ଆଜି ତାଙ୍କର ଜନ୍ମମାଟି ଏକ କ୍ଷୁଦ୍ର ପୋରବନ୍ଦର ଆଜି ବିଶ୍ୱ ବିଦିତ ହୋଇପାରିଛି । କହିବା ବାହୁଲ୍ୟ ହେବ ଯେ, ଏହି ଗାନ୍ଧିବାଦୀ ଦର୍ଶନରେ ଅନୁପ୍ରାଣୀତ ହୋଇ ଅଦ୍ୟାବଧି ସୁଦ୍ଧା ନିଜର ଜୀବନଶୈଳୀ ଏବଂ ଦର୍ଶନକୁ ଆଧୁନିକତାର ପରିପାଟୀ ସହିତ ମିଶାଇ ପାରିନାହାନ୍ତି । ପାଦରେ ପିନ୍ଧି ନାହାନ୍ତି ଚପଲ ହଳେ । ଜୀବନ ବିତାଇ ଦେଇଛନ୍ତି ପୁଙ୍ଗୁଳା ଦେହରେ । ପ୍ରକୃତରେ ସେହିମାନେ ହିଁ ଥିଲେ ଗାନ୍ଧିବାଦୀ ଏବଂ ଗାନ୍ଧି ଦର୍ଶନର ପୃଷ୍ଟପୋଷକ । ସ୍ୱାଧୀନତା ସଂଗ୍ରାମରେ ଗଡ଼ଜାତ ଅଞ୍ଚଳର କିଛି ବ୍ୟକ୍ତିବିଶେଷ ଏବଂ ଘଟଣାବଳୀକୁ ଜନ ସାଧାରଣଙ୍କ ଲୋକ ଲୋଚନକୁ ଆଣିବା ପାଇଁ ଉକ୍ତ ପୁସ୍ତକ ମାଧ୍ୟମରେ ଆମର ପ୍ରୟାସ ଜାରି ରଖିବା ପାଇଁ ଆମେ ଉଚିତ୍ ମନେକରୁ ।

ଆଜିର ବସ୍ତୁବାଦୀ ମଣିଷ ତା'ର ଜୀବନ ଭିତରେ ନିଜର ସ୍ୱାର୍ଥ ରକ୍ଷା ଲାଗି ସଦାସର୍ବଦା ଚେଷ୍ଟିତ ଥାଏ । ଅମେ ଯଦି ଟିକିଏ ତଳେଇ ଚାହିଁବା ତାହାହେଲେ ଦେଖିପାରିବା ଯେ କେତେକ ବ୍ୟକ୍ତି ସେମାନଙ୍କ ଜୀବନ ସାରା ସ୍ୱାର୍ଥଚିନ୍ତାରେ ହିଁ ନିଜ ଜୀବନକୁ ବିତେଇ ଦେଇଥାନ୍ତି । ନିଜର ସ୍ୱାର୍ଥ ବ୍ୟତୀତ ତାଙ୍କ ଜୀବନରେ ସେମାନଙ୍କୁ ଆଉ କିଛି ଦେଖାଯାଇ ନଥାଏ । ଜୀବନର ଶେଷ ସୋପାନରେ ମଧ୍ୟ କିଛି ସ୍ୱାର୍ଥ ଜନିତ କର୍ମ ବାକି ରହିଗଲା ବୋଲି ଭାବିଥାନ୍ତି । ଏହି ଅଶୁମାରୀ ସ୍ୱାର୍ଥ ଜନିତ ଚିନ୍ତାଧାରାକୁ ପୂରଣ କରିବା ପାଇଁ ପରବର୍ତ୍ତୀ ପୀଢ଼ିକୁ ମଧ୍ୟ ସୂଚନା ଦେଇଥାନ୍ତି । ଏହା ଆଜି ନୁହେଁ ସମାଜରେ ଯୁଗେ ଯୁଗେ ରହିଆସିଅଛି । ମଣିଷ ନିଜ ସ୍ୱାର୍ଥରୁ ବିଚ୍ୟୁତ ହେବା ସହଜସାଧ୍ୟ ନୁହେଁ । ଏହା କେବଳ ସେହିମାନଙ୍କ ଦ୍ୱାରା ସମ୍ଭବ ଯେଉଁମାନେ ଦେବ ଅଂଶୀ । ଯେଉଁମାନେ ଦେବତ୍ୱ ଗୁଣ ନେଇ ଧରାପୃଷ୍ଠକୁ ଆସିଥାନ୍ତି । ସେମାନଙ୍କୁ ସ୍ୱାର୍ଥ କେବେ ବାନ୍ଧି ରଖି ପାରିନଥାଏ । ବାଲ୍ୟକାଳରୁ ଏହି ବୃତ୍ତି କାଳକ୍ରମେ ପରିମାର୍ଜିତ ହୋଇ ପରିଶେଷରେ ସେମାନଙ୍କୁ ଏକ ଏକ ମହା ମାନବରେ ପରିଣତ କରିଥାଏ । ସେମାନଙ୍କର ସମଗ୍ର ଜୀବନ ଉଦ୍ଦିଷ୍ଟ ହୋଇଥାଏ ଜନଜୀବନର ହିତ ସକାଶେ । ଜୀବନ ସେମାନଙ୍କର ଧନ୍ୟ ହୋଇଯାଏ । ଜୀବନର ସାର୍ଥକତା ସେମାନେ ଲାଭ କରିପାରିଥାନ୍ତି । ଏହିପରି ମହାମାନବ ଭାରତ ବର୍ଷରେ ଅନେକ ଜନ୍ମ ନେଇଥିଲେ । ଯେଉଁ ମାନଙ୍କର ସ୍ୱାର୍ଥତ୍ୟାଗ ଫଳରେ ଆଜି ଆମ୍ଭେମାନେ ସ୍ୱାଧୀନତାର ସ୍ୱାଦ ଅନୁଭବ କରିପାରିଛେ । ସେ ସମୟ ଥିଲା ଦେଶର ହା' ହୁତାଶର ସମୟ । ରାଜତନ୍ତ୍ରର ଅତ୍ୟାଚାର, ପ୍ରଜା ପ୍ରପୀଡ଼ନ, ବେଠି, ବେଗାରି, ଗୋତିପ୍ରଥା, ମରୁଡ଼ି, ବନ୍ୟା, ମହାମାରୀ ଏବଂ ବସନ୍ତ ମେଲେରିଆ ପରି ପ୍ରାକୃତିକ ବିପଦର ଅଭାବ ନଥିଲା । ଗୋଟିଏ ଗୋଟିଏ ଗାଁ ଜନଶୂନ୍ୟ ହୋଇଯାଉଥିଲା । ଶବ ବାହାକମାନେ ଶ୍ମଶାନରୁ ଫେରିଆସି ପାରୁନଥିଲେ । ଖ୍ରୀ:ପୂ ୨୬୧ ମସିହାରେ ସମ୍ରାଟ ଅଶୋକ କଳିଙ୍ଗର କୁଢ଼ କୁଢ଼ ଶବ ଉପରେ କଳିଙ୍ଗ ସିଂହାସନ ରୂଢ଼ ହେଲେ । ଓଡ଼ିଶାରେ ପାଇକ ବିଦ୍ରୋହର ଜୀବନ ହାନି ଏବଂ ଆଜୀବନ କାରାଦଣ୍ଡ ବିତାଉଥିବା ସଂଗ୍ରାମୀ ମାନଙ୍କର ହିସାବ କିଏ ବା ରଖିଛି ? ୧୮୬୬ ମସିହାର ନ'ଅଙ୍କ ଦୁର୍ଭିକ୍ଷର କରୁଣ କାହାଣୀ ଅଦ୍ୟାବଧି ବି ଓଡ଼ିଶା ଇତିହାସ ଗାଉଛି । ସେହି ଇତିହାସର ମୁହଁ କିଏ ହେଲେ କେବେ ବି ବନ୍ଦ କରିପାରିବେ ନାହିଁ । ଓଡ଼ିଶାର ଏଭଳି ଦୁଃଖଦ ଘଟଣା ସମୂହ ଇତିହାସର କାଳ ଗର୍ଭରେ ଲୀନ ହୋଇଯାଇଛି ସତ ତଥାପି ତାର କିଞ୍ଚିତ ଅଂଶ ଆଜିର ଇତିହାସ ଲେଖକ ମାନଙ୍କୁ ପ୍ରେରଣା ଯୋଗାଇବା ସଙ୍ଗେ ସଙ୍ଗେ ମାନବ ଜୀବନର ମୂଲ୍ୟବୋଧକୁ ଉପଲବ୍ଧି କରାଇପାରୁଛି ।

ଏହି ଜାତି ଏତେ ପରିମାଣରେ ଅତ୍ୟାଚାରିତ ହୋଇ ତା'ର ମେରୁଦଣ୍ଡ ଭାଙ୍ଗି ଯାଇଥିଲା ଯେ ୧୮୦୩ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସରେ ମାତ୍ର ୫୦ ଜଣ ଇଂରେଜ ସିପାହି ବୀର ଓଡ଼ିଆର ଅତୀତ ଗୌରବ ବାରବାଟୀ ଦୁର୍ଗକୁ ଦଖଲ କଲାବେଳେ ସମାନ୍ୟ ଯୁଦ୍ଧର କିମ୍ବା ରକ୍ତପାତର ବି ଆବଶ୍ୟକତା ପଡ଼ି ନଥିଲା । ଦୀର୍ଘଦିନର ପରାଧୀନତାର ଚାପରେ ଏ ଜାତି ଏପରି ହୀନବଳ ହୋଇଥିଲା ଯେ ବୀର ଜୟୀ ରାଜଗୁରୁ ବା ବୀର ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱକୁ ବି ଏ ଜାତି ଠିକ୍ ଭାବରେ ଗ୍ରହଣ କରିପାରିଲା ନାହିଁ । ଜାତୀୟ ଗୌରବ ମଧୁସୂଦନଙ୍କ ନେତୃତ୍ୱ ପର୍ଯ୍ୟନ୍ତ ନେତାହୀନ ଭାବରେ ଏ ଜାତି ଖାଲି ବିଳାପ କରିଛି । ଯେତେବେଳେ ମାଟିକୁ ମା' କହିବାର ମମତା ହୃଦୟରେ ସ୍ୱତସ୍ପୃତ ଭାବରେ ଜାଗୁରିତ ହୁଏ, ତା'ପ୍ରତି ମମତା ଆସେ, ସ୍ୱାଭିମାନ, ଦୃଢ ମନୋବଳ ଆଉ ଉଜ୍ଜଳ ବ୍ୟକ୍ତିତ୍ୱର ସଂଯୋଗ ହେଲେ ଜଣେ ବ୍ୟକ୍ତି ନେତୃତ୍ୱ ନେବାପାଇଁ ସମର୍ଥ ହୋଇଥାଏ । ସେହିମାନଙ୍କ ପାଇଁ ସ୍ୱାଧୀନତା ଥିଲା ଏକ ଜାତୀୟ ମୂଲ୍ୟବୋଧର ପ୍ରତୀକ । ସେଥିପାଇଁ ସେମାନଙ୍କର ଅନ୍ତରାତ୍ମାରୁ ମହାନ୍ ଜାତୀୟତାର ପଦ ବାହାରି ଆସିବା ସଙ୍ଗେ ସଙ୍ଗେ ସେମାନଙ୍କ ଲେଖନୀ ମୂନରୁ ନିସୃତ ହୋଇଥାଏ ଜାତୀୟତାର ଝରଣା । ପଣ୍ଡିତ ଗୋପବନ୍ଧୁଙ୍କ ଭାଷାରେ :

" ସ୍ୱାଧୀନତା ମାନବର ଜନ୍ମ ଅଧିକାର
ସ୍ୱାଧୀନ ଭାଷଣ ଆଉ ସ୍ୱାଧୀନ ବିହାର
ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତି
ଚାରିସ୍ତମ୍ଭେ ମାନବର ସମାଜ ସଂସ୍ଥିତି ।'

× × × × × ×

"ପ୍ରଜାଲାଗି ରଜା ପ୍ରଜା
ହିତେ ରାଜନୀତି
ପ୍ରଜା ଇଚ୍ଛା ଅଭିମତ
ରାଜ୍ୟ ମୂଳଭିତ୍ତି ।"

ଜାତୀୟ ବାଦୀତା ଉପରେ ଆମେ ପୁରାଣରୁ ଗୋଟିଏ ଆଖ୍ୟାୟିକା ନେଇ ପାରିବା । ମହାରାଜା ରନ୍ତିଦେବ ତପସ୍ୟା କରୁଥିଲେ । ତାଙ୍କର ପ୍ରଚଣ୍ଡ ତପସ୍ୟା ଫଳରେ ଇନ୍ଦ୍ରଙ୍କ ସିଂହାସନ ଟଳମଳ ହେଲା । ପ୍ରଜାପତି ବ୍ରହ୍ମା ତାଙ୍କ ନିକଟରେ ପ୍ରକଟ ହେବା ପାଇଁ ବାଧ

ହେଲେ ଓ ବର ମାଗିବାକୁ ଅନୁମତି ଦେଲେ । ସେ କହିଲେ ତୁମ ତପସ୍ୟା ଯୋଗୁଁ ମୁଁ ଅତ୍ୟଧିକ ପ୍ରସନ୍ନ । ତୁମ ଇଚ୍ଛା ଅନୁସାରେ ବରମାଗ । ମହାରାଜ କହିଲେ, ପ୍ରଭୁ ! ମୋର ରାଜ୍ୟରେ କେବଳ ନୁହେଁ ସମଗ୍ର ପୃଥିବୀରେ କେହି ପୀଡ଼ିତ, କ୍ଷୁଧିତ, ଶୋଷିତ ଓ ଧନହୀନ ଅବସ୍ଥାରେ ନ ରହୁ । ପୃଥିବୀ ହିରଣ୍ୟ ଗର୍ଭା ଅଟେ । କାହା ମନରେ ଶତ୍ରୁତା, କଳହ, ଦ୍ୱେଷ ଓ ଦୁର୍ଭାବନା ନରହୁ । ପରସ୍ପର ମଧ୍ୟରେ ଆତ୍ମୀୟତା ଓ ସୋହାର୍ଦ୍ଦ୍ୟ ବୃଦ୍ଧି ପାଉ । କେହି ରୋଗୀ ନ ହେଉ । କେହି ଦୁଃଖୀ ନହେଉ । ଏହା ଦେଖିବା ମୋର କର୍ତ୍ତବ୍ୟ ଏବଂ ସେ କର୍ତ୍ତବ୍ୟ ପାଳନ କରିବା ସକାଶେ ମୋତେ ଶକ୍ତି ଦିଅନ୍ତୁ । କେବଳ ରାଷ୍ଟ୍ର ମୁଖ୍ୟଙ୍କର ନୁହେଁ । ଏ ଆଦର୍ଶ ସମସ୍ତଙ୍କର ଅନୁସରଣ ଯୋଗ୍ୟ । ଆମେ ସମସ୍ତେ ଗୋଟିଏ ମା'ର ସନ୍ତାନ । ରାଜାଙ୍କର ଏହି ଭାବ ହିଁ ଥିଲା ଜାତୀୟତାର ଲକ୍ଷଣ । ସେହି ପୁରାଣ ଯୁଗର କାହାଣୀ ଆମକୁ ଆଜି ସୁଦ୍ଧା ଜାତୀୟତା ପଥରେ ଅନୁଗାମୀ କରାଉ ଅଛି ।

ସାମ୍ପ୍ରତିକ କାଳର ନେତାମାନଙ୍କୁ ଆମେ ଯେପରି ଭାବରେ ଅଭିହିତ କରିଥାଉ ବାସ୍ତବରେ ଏହା ନେତାଙ୍କ ସଂଜ୍ଞା ନୁହେଁ । ସ୍ୱାଧୀନତାର ପୂର୍ବବର୍ତ୍ତୀ ନେତା ଏବଂ ସ୍ୱାଧୀନତାର ପରବର୍ତ୍ତୀ ନେତା ମଧ୍ୟରେ ଅନେକ କିଛି ପାର୍ଥକ୍ୟତା ରହିଅଛି । ଯଦିଓ ତତ୍‌କାଳୀନ ଏବଂ ସାମ୍ପ୍ରତିକ କାଳର ରାଜନୈତିକ ସାମାଜିକ ଓ ଅର୍ଥନୈତିକ ପରିବେଶ ଓ ପରିସ୍ଥିତି ଅଲଗା, ତଥାପି ଜଣେ ପ୍ରକୃତ ନେତାର ସଂଜ୍ଞା ଗୋଟିଏ । ଗୋଟିଏ ପାଖରେ ସବଳ ନେତୃତ୍ୱ ଓ ଅନ୍ୟପକ୍ଷରେ ଦୁର୍ବଳ ନେତୃତ୍ୱ । ଉଭୟ ନେତୃତ୍ୱ ପାଇଁ ଜନସାଧାରଣଙ୍କ ଆଶା ପ୍ରଥମରୁ ଅତୁଟ ରହିଥାଏ । କିନ୍ତୁ ଦୁର୍ବଳ ନେତୃତ୍ୱ ଅଧିକ ଦିନ ତିଷ୍ଠି ରହିପାରି ନଥାଏ । ସବଳ ନେତୃତ୍ୱ ଅଧିକ ଦିନ ରହି କାର୍ଯ୍ୟ ହାସଲ କରିଥାଏ । ଯେତେବେଳେ ଦୁର୍ବଳ ନେତୃତ୍ୱ ପ୍ରତି ଜନସାଧାରଣ ଆସ୍ଥାଶୀଳ ହୋଇ ନ'ଥାନ୍ତି ସେତେବେଳେ ସେ ନେତୃତ୍ୱରୁ ଜନ ସାଧାରଣ ଓହରି ଆସନ୍ତି । କିନ୍ତୁ ବଳିଷ୍ଠ ନେତୃତ୍ୱ ସବୁ ସମୟରେ ଆଗକୁ ଆଗକୁ ବଢ଼ି ଚାଲିଥାଏ ତାର ଗନ୍ତବ୍ୟ ପଥରେ । ଅସୁମାରୀ ଜନସାଧାରଣଙ୍କ ବିଶ୍ୱାସ ଓ ଆନ୍ତରିକତାକୁ ନେଇ ବଳିଷ୍ଠ ନେତୃତ୍ୱ ତାର ସ୍ଥିତି ବଜାୟ ରଖିଥାଏ । ଜଣେ ବଳିଷ୍ଠ ନେତା ବୋଲି ଆମେ ସେତେବେଳେ ତାକୁ ଆଖ୍ୟା ଦେଇପାରିବା ଯେତେବେଳେ ତା'ର ହୃଦୟରେ ଜାତୀୟ ଭାବଧାରାର ସ୍ରୋତସ୍ୱିନୀ ତା'ର ହୃଦୟରୁ ସ୍ୱତସ୍ଫୁତ ଭାବେ ବାହାରି ଆସେ ଏବଂ ସେଥିରେ ଧୋଇ ହୋଇଯାଏ ତା'ମଧ୍ୟରେ ଥିବା ଅହଂଭାବ, ଗରିମା ଏବଂ ମୁଁକାର ଭାବ । ସେ ଜନ ସାଧାରଣଙ୍କ ମନରେ ଭରିଦିଏ ଅଦ୍ୟମ ଉତ୍ସାହ, ଜାତିପ୍ରେମ । ନିଜେ ତ୍ୟାଗର ନମୁନା ରୂପେ ଦଣ୍ଡାୟମାନ

ହୁଏ । ନିଦ୍ରିତ ଜନତାଙ୍କୁ ଜାଗ୍ରତ କରାଏ । ଜନତାଙ୍କର ଆସ୍ଥା ଭାଜନ ହୁଏ । ଜାତିର ସମସାମୟିକ ହେଉ କିମ୍ବା ଅତୀତର ଘଟଣାବଳୀ ସମୂହକୁ ଦେଶ ଓ ଜାତିର ଗୌରବମୟ ରୀତିରେ ଉପସ୍ଥାପନା କରାଇ ପାରିଥାଏ । ଫଳରେ ଜନସାଧାରଣଙ୍କର ନିକଟବର୍ତ୍ତୀ ହୋଇ ପାରିଥାଏ । ଅଷ୍ଟାଦଶ ଶତାବ୍ଦୀର ଶେଷ ଓ ଉନ୍ନବିଂଶ ଶତାବ୍ଦୀର ଅୟମାରମ୍ଭ ବେଳକୁ ହୁଏତ ଏହିପରି ଆବଶ୍ୟକୀୟ ନେତାର ଅଭାବ ଥାଇପାରେ କିମ୍ବା ଉପସ୍ଥିତ ନେତା ସମସାମୟିକ କ୍ଳାନ୍ତ ନିଦ୍ରିତ ଜନତାଙ୍କର ନିଦ ଭାଙ୍ଗି ପାରି ନଥିଲେ, ହୁଏତ ସମସାମୟିକ ଅବସ୍ଥା ତାଙ୍କୁ ଶୁଆଇ ପାରିନଥିଲା । ଓଡ଼ିଶା ପଡ଼ୋଶୀ ରାଜ୍ୟମାନଙ୍କର ଗୃଧ୍ର ଦୃଷ୍ଟି ଅନେକ ଦିନ ଧରି ଓଡ଼ିଶାର ବିଭିନ୍ନ ଅଞ୍ଚଳ ଉପରେ ଆକ୍ରମଣ ପରେ ଆକ୍ରମଣ ସର୍ବୋପରି ପରାଧୀନତାର ବେଡ଼ିରେ ଛନ୍ଦି ହୋଇ ପଡ଼ିଥିବା ଓଡ଼ିଆଙ୍କୁ ନେତୃତ୍ୱ ଦେବା ଏତେ ସହଜ ନ ଥିଲା ।

ସ୍ୱାଧୀନତାର ୬୪ ବର୍ଷ ପରେ ବି ଗଡ଼ଜାତ ମୂଳକର ୫୦ ପ୍ରତିଶତ ଲୋକ ଅଣ୍ଟାକୁ ସିଧାକରି ଚାଲି ପାରିନାହାନ୍ତି । ନା ଅଛି ଜାତୀୟତା, ନା ଅଛି ଦେଶପ୍ରାଣ । ଏଇତ ହେଲା ସ୍ୱାଧୀନତାର ପରବର୍ତ୍ତୀ ଅବସ୍ଥା । ପୂର୍ବବର୍ତ୍ତୀ କଥା ଉପରେ କ'ଣ ଆଲୋଚନା କରିବା । ରାଜା କପିଳେନ୍ଦ୍ରଦେବ ବୀର ମୁକୁନ୍ଦଦେବଙ୍କ ପରେ ଏ ଜାତି ନେତୃତ୍ୱ ହୀନ ହୋଇ ପଡିଥିଲା । ଗୀତାର ସେହି ସର୍ବ ଧର୍ମାନ୍ ପରିତ୍ୟଜ ପରି ଆତ୍ମହରା ହୋଇ ସେହି ଅମର କବିଙ୍କର ଅମର ଲେଖନୀରେ ଉଦ୍‌ଜୀବିତ ହୋଇ ଉଠିଥିଲା "ଉତ୍କଳର ନେତା ନିଜେ ନାରାୟଣ" । ଏଇ କେଇ ପଦ ନିଦ୍ରିତ ଧର୍ମଭୀରୁ ଉତ୍କଳ ବାସୀଙ୍କୁ ନିଦରୁ ଉଠାଇବାରେ ସାହାଯ୍ୟ କରିଥିଲା । ନେତୃତ୍ୱ ବିହୀନ ଏ ଓଡ଼ିଆ ଜାତିକୁ କେନ୍ଦ୍ର କରି ସେମାନଙ୍କ ମନରେ ଅଶୁମାରୀ ଆଶାର ସଞ୍ଚାର କରାଇଥିଲେ । ମଧୁବାବୁ ଦେଶର ଅଧିକାଂଶ ଜାଗାରେ ଇଂରାଜୀରେ ଭାଷଣ ଦେଉଥିଲେ । ଘରେ ବାହାରେ କଥାବାର୍ତ୍ତା ବଂଗାଳୀ ଭାଷାରେ । ତଥାପି ଏ ଜାତିକୁ ଜାଗ୍ରତ କରିବା ପାଇଁ ମର୍ମସ୍ପର୍ଶୀ ଗୀତି କବିତା ରଚନା କରି ଓଡ଼ିଆଙ୍କ ପ୍ରାଣକୁ ଦୋହଲାଇ ଦେଇଥିଲେ ।

ଏହି ସମ୍ମିଳନୀ ଜାତିପ୍ରାଣ ସିନ୍ଧୁ
କୋଟି ପ୍ରାଣବିନ୍ଦୁ ଧରେ
ତୋର ପ୍ରାଣବିନ୍ଦୁ ମିଶାଇ ଦେ ଭାଇ
ଡ଼େଇଁ ପଡ଼ି ସିନ୍ଧୁନୀରେ ।

ଆଉ ମଧ :-

ଦେଶର ଉନ୍ନତି ହେବକିରେ ଭାଇ

ସ୍ୱାର୍ଥକୁ ଜଗତ ମଣି

ଗୋଦର ଗୋଡ଼ରେ ମାଉଁସ ଲାଗିଲେ,

ଦେହର କି ଶୋଭାଗଣି ।

ଜାତି ନନ୍ଦିଘୋଷ ଚଳିବନି ଭାଇ

ସ୍ୱାର୍ଥକୁ ସାରଥି କଲେ,

ଟାଣେକିରେ ଗାଡ଼ି ଦାନାର ତୋବଡ଼ା

ଘୋଡାମୁହେଁ ବନ୍ଧାଥିଲେ ।

ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଓ ଓଡ଼ିଆକୁ ଏକ ସ୍ୱତନ୍ତ୍ର ଭାଷାର ମର୍ଯ୍ୟଦା ଦେବାପାଇଁ ଓଡ଼ିଶାର ଯେଉଁ କେତେଜଣ କୃତୀ ସନ୍ତାନ ନିରବଚ୍ଛିନ୍ନ ଭାବେ ସଂଗ୍ରାମ ଜାରି ରଖିଥିଲେ, ସେମାନଙ୍କ ମଧରେ ଉତ୍କଳ ଗୌରବ ମଧୁସୂଦନ ଦାସ ଥିଲେ  ଅଗ୍ରଗଣ୍ୟ । ୧୮୭୮ ମସିହାରେ  ଖଣ୍ଡବିଖଣ୍ଡିତ ଉତ୍କଳର ସୁରକ୍ଷା ଏବଂ ଉନ୍ନତି କଳ୍ପେ 'ଉତ୍କଳ ସଭା' ନାମରେ ଏକ ଅନୁଷ୍ଠାନ ଗଠନ କରିଥିଲେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ  ନବ ଜାଗରଣ ସୃଷ୍ଟି କରିବା ଏହାର ମୂଳ ଲକ୍ଷ୍ୟ ଥିଲା । ୧୯୦୩ ମସିହାରେ ଉତ୍କଳରେ ଭାଷା ଓ ସଂସ୍କୃତିର ସୁରକ୍ଷା ନିମନ୍ତେ ମଧୁସୂଦନ ଦାସଙ୍କର ପ୍ରଚେଷ୍ଟାରେ କଟକଠାରେ 'ଉତ୍କଳ ସମ୍ମିଳନୀ' ପ୍ରତିଷ୍ଠା କରାଯାଇଥିଲା । ଓଡ଼ିଶାରେ ଅର୍ଥନୈତିକ ଭାବଧାରାକୁ ଆଖି ଆଗରେ ରଖି ତଥା ଓଡ଼ଶାରେ ଶିଳ୍ପର ବିକାଶ ନିମିତ୍ତ ଗଢିଥିଲେ 'ଉତ୍କଳ ଟ୍ୟାନେରୀ' ବେପାର ବଣିଜ ହିଁ ସମାଜର ଆର୍ଥିକ ପରିସ୍ଥିତିକୁ ସୁଦୃଢ କରିବା ସଙ୍ଗେ ସଙ୍ଗେ ସମାଜର ଗଠନ ମୂଳକ କାର୍ଯ୍ୟରେ ସହମତି ପ୍ରଦାନ କରିହୁଏ, ଏକ ସୁସ୍ଥ ସମାଜ ଗଠନ କରିହୁଏ । ଉତ୍କୃଷ୍ଟ କଳାର ଉତ୍କଳକୁ ଆଖି ଆଗରେ ରଖି ସୁନାରୂପାର ତାରକସି  କାମରେ ପ୍ରସାର ଏକ ଉଦ୍ୟୋଗ ପ୍ରତିଷ୍ଠା କରିଥିଲେ । କିନ୍ତୁ ସତ୍ୟକୁ ଆଧାର କରି ଏ ସବୁ ଅନୁଷ୍ଠାନ ଚାଲି ପାରି ନଥିଲା ।

ଭାରତ ବର୍ଷର ବିଭିନ୍ନ ପ୍ରାନ୍ତରରୁ ମାରୁଆଡ଼ି, ଗୁଜୁରାଟି ଏବଂ ପଞ୍ଜାବୀମାନେ ଓଡ଼ିଶାକୁ ବ୍ୟବସାୟ କରିବାକୁ ଆସିଥାନ୍ତି । ସୋମନେ ଯେଉଁ ବାସୋପଯୋଗୀ ଗୃହ ଓ ଦୋକାନ ପାଇଁ ଯେଉଁ ଘର ଭଡ଼ା ସୂତ୍ରରେ ନେଇଥାନ୍ତି କାଳକ୍ରମେ ସେମାନେ ସେ ଘରର ମାଲିକ

ହୁଅନ୍ତି ଏବଂ ପୂର୍ବରୁ ମାଲିକ ଥିବା ଲୋକଙ୍କୁ ନିଜ ନିକଟରେ ଚାକର ରଖିଥାନ୍ତି । କିଛି ଦିନ ପରେ ସେମାନେ ଭଡ଼ା ସୂତ୍ରରେ ନେଇଥିବା ଘରର ମାଲିକ ହୋଇଯାନ୍ତି । ଯାହାର ଦୃଷ୍ଟାନ୍ତ କଟକ ଠାରୁ ଛୋଟ ଛୋଟ ସହର ପର୍ଯ୍ୟନ୍ତ ଦୃଷ୍ଟାନ୍ତର ଅଭାବ ନାହିଁ । ମୋଟ ଉପରେ କହିବାକୁ ଗଲେ ଅଦ୍ୟାବଦ୍ଧିବି ଆମେ ନିଦ୍ରିତ ।

ଆଜି ଯେଉଁମାନଙ୍କୁ ଆମେ ଦେଶର ଏବଂ ଜାତିର ଭବିଷ୍ୟତ ବୋଲି ଆଶା କରିଛେ ସେମାନଙ୍କ ଜୀବନ ଅଧୁନା ବିଜ୍ଞାନ ସହ ଜଡ଼ିତ ହୋଇ ସେମାନଙ୍କୁ ଯୋଗାଇ ଦେଇଛି ଅପୂର୍ବ ଭୋଗ ବିଳାସ । ସୁଖସ୍ୱାଛନ୍ଦ୍ୟ ଭରା ଜୀବନ ଏବଂ ସେମାନଙ୍କଠାରୁ ଛଡ଼େଇ ନେଇଛି ଜୀବନର ଆବେଗ, ଆନନ୍ଦ, ଆସ୍ଥା ଓ ଉଲ୍ଲାସ । ଏକବିଂଶ ଶତାବ୍ଦୀର ବସ୍ତୁନିଷ୍ଠ ଜ୍ଞାନ ଆମକୁ ଯୋଗାଇ ଦେଇଛି ଆବିଷ୍କାର ଏବଂ ଉଦ୍‌ଭାବନାର ନୂତନ ଦିଗନ୍ତ କିନ୍ତୁ ଛଡ଼େଇ ନେଇଛି ଆମ ଜୀବନର ଚିରନ୍ତନ ପ୍ରେମ, ଐକାନ୍ତିକ ଉପଲବ୍ଧି, ସୃଜନ ଶୀଳତା, ଭୂମି ସଂଲଗ୍ନ ସଂସ୍କୃତି ଏବଂ ଋଷିତୁଲ୍ୟ ନୀତିନିଷ୍ଠ ଆଦର୍ଶ । ଆଜିର ଧନପିପ୍‌ସା ମଣିଷ ବସ୍ତୁନିଷ୍ଠ ଜ୍ଞାନର ବନ୍ଧନୀରୁ ମୁକ୍ତ ହୋଇ ପାରିନି । ଆଜିର ଭୌତିକ ଅଗ୍ରଗତି ସମାଜରେ ସୃଷ୍ଟି କରିଛି ଘୋର ଦୁର୍ଦ୍ଦିନ । ଆଜିର ଆଧୁନିକ ଶିକ୍ଷା କେବଳ ଡ଼ାକ୍ତର, ଇଞ୍ଜିନିୟର, ଅଧ୍ୟାପକ, ପ୍ରଶାସକ ଓ ବୈଜ୍ଞାନିକ ଇତ୍ୟାଦି ସୃଷ୍ଟି କରିଚାଲିଛି । କିନ୍ତୁ ଭଲ ମଣିଷଟିଏ ଗଢିପାରିନି । ପ୍ରକୃତ ଶିକ୍ଷାର ଉଦ୍ଦେଶ୍ୟ ହେଉଛି - ଆତ୍ମିକ ଉତ୍ତରଣ, ସେବା, ତ୍ୟାଗ ଓ ଚରିତ୍ର ଗଠନ ପାଇଁ । ଶିକ୍ଷାର ପ୍ରକୃତ ମାନଦଣ୍ଡ ଆଜି ଆମେ ସମସ୍ତେ ଭୁଲି ଯାଇଥିବା ହେତୁ ଆଜି ଆମେ ଆମର ଐତିହ ଏବଂ ପରମ୍ପରାକୁ ହରାଇ ବସିବା ସଙ୍ଗେ ସଙ୍ଗେ ଆଜିର ସମାଜ ମୁଖ୍ୟତଃ ଦୁର୍ନୀତିର ଜାଲରେ ଛନ୍ଦି ହୋଇପଡ଼ିଛି । ଆୟ ବର୍ହିଭୂତ ସଂପତ୍ତି ଠୁଳରେ ସମାଜରେ ବଡ଼ପଣ୍ଡା ବୋଲାଉ ଥିବା ଲୋକମାନେ ଅଭିଯୁକ୍ତ । ସମାଜରେ କଳଙ୍କିତ ଘଟଣାବଳୀ ଆଜି ନିତିଦିନିଆରେ ପରିଣତ ହୋଇଯାଇଛି । ତେଣୁ ଆଜି ସମାଜରେ ମଣିଷପରି ମଣିଷଟିଏ ଖୋଜିବାର ଆବଶ୍ୟକତା ପଡ଼ିଛି । କାରଣ ସଂସ୍କୃତି ହେଉଛି ସଭ୍ୟତାର ପ୍ରାଣ । ଶିକ୍ଷା ଏବଂ ତାର ପ୍ରୟୋଗ ନୀତିର ଶ୍ରେଷ୍ଠତା ହେଉଛି ସଂସ୍କୃତି । ଯେ କୌଣସି ଅଧିବାସୀ ମାନଙ୍କର ସ୍ୱାତନ୍ତ ସେମାନଙ୍କ ମଧ୍ୟରେ ପ୍ରଚଳିତ ସଂସ୍କୃତିରୁ ବାରି ହୋଇପଡ଼େ ।

ଆଧୁନିକତାର ଅନ୍ଧଗଳିରେ ଦିଗଭ୍ରଷ୍ଟ ଆଜିର ମଣିଷ । ବିଶେଷକରି ଯୁବ ସମାଜକୁ ଏହା ସମ୍ପୂର୍ଣ୍ଣ ନିରର୍ଥକ ଓ ହାସ୍ୟାସ୍ପଦ ମନେହେଉଛି । ଯେଉଁମାନଙ୍କୁ ଆମେ ଦେଶ ଏବଂ ଜାତିର ଭବିଷ୍ୟତ ବୋଲି ଆଶା କରୁଛେ ସେମାନଙ୍କୁ ମୋର ବିନମ୍ର ଅନୁରୋଧ ସେମାନେ

ରାଷ୍ଟ୍ରର (ରାଜ୍ୟର ମଧ୍ୟ) ଭାଷା, ସାହିତ୍ୟ, କଳା, ଇତିହାସ ଏବଂ ସଂସ୍କୃତିର ଗୌରବମୟ ଐତିହ୍ୟକୁ ମନେ ପକାଇବା ସଙ୍ଗେ ସଙ୍ଗେ ତାର ରକ୍ଷଣା ବେକ୍ଷଣ ଏବଂ ପୁନରୁଦ୍ଧାର ପାଇଁ ସଚେତନ ହେବା ନିତ୍ୟାନ୍ତ ଆବଶ୍ୟକ । ଉକ୍ତ ଅଧ୍ୟାୟରେ ଆମେ ଯାହା ଆଲୋଚନା କଲେ ପରବର୍ତ୍ତୀ ଅଧ୍ୟାୟ ଗୁଡ଼ିକରେ ତାର ସତ୍ୟାସତ୍ୟ ସଂକ୍ଷିପ୍ତ ଆକାରରେ ବର୍ଣ୍ଣନା କରାଯାଇଅଛି । ସ୍ୱାଧୀନତାର ବୁକୁଫଟା ଘଟଣାବଳୀ, ଆମ ରାଜ୍ୟ ଓଡ଼ିଶା ଉପରେ ତାର ପ୍ରଭାବ, ଓଡ଼ିଶାର ଭାଷା, ଇତିହାସ ଏବଂ ତାର ପୁନର୍ଗଠନ, ଓଡ଼ିଶାର ଗଡ଼ଜାତ ଆନ୍ଦୋଳନ ଏବଂ ଗଡ଼ଜାତିଆ ଜୀବନ ଚିତ୍ରର ଅନୁସନ୍ଧିତ୍ସା, ସ୍ୱାଧୀନତାର ପୂର୍ବବର୍ତ୍ତୀ ଏବଂ ପରବର୍ତ୍ତୀ ଗଡ଼ଜାତର ଶିକ୍ଷା ଏବଂ ସଂସ୍କୃତିର ବିକାଶ, ଇତିହାସର ସମାଧି ତଳୁ ବାହାର କରିଥିବା କିଛି ଘଟଣାବଳୀ ଆଶାକରେ ଆଜିର ବାସ୍ତୁବାଦୀ ସମାଜକୁ ପ୍ରେରଣା ଯୋଗାଇ ପାରିବା ସଙ୍ଗେ ସଙ୍ଗେ ତତ୍କାଳୀନ ରାଷ୍ଟ୍ରର ଚିରନମସ୍ୟ ଏବଂ ପୂଜ୍ୟ ମହାମନୀଷୀ ମାନଙ୍କୁ ମନେ ପକାଇ ସେମାନଙ୍କର ପଦାନୁସରଣ କରିପାରିବା ।



# ଦ୍ୱିତୀୟ ପରିଚ୍ଛେଦ

## ପ୍ରାକ୍ ଜାତୀୟ ଆନ୍ଦୋଳନର ପୃଷ୍ଠଭୂମି

ଅଷ୍ଟାଦଶ ଶତାବ୍ଦୀ ଥିଲା ଭାରତବର୍ଷର ଏକ ଘଟଣାବହୁଳ ଇତିହାସ । ସ୍ୱଦେଶୀ ରାଜାମାନଙ୍କ ମଧ୍ୟରେ ହେଉ କିମ୍ବା ମୋଗଲ ସାମ୍ରାଜ୍ୟର ଅରାଜକତା ଦୃଷ୍ଟିରୁହେଉ, ସେହି ସମୟରେ ଭାରତର ରାଜନୈତିକ ପଟ୍ଟଭୂମି ଦୁର୍ବଳ ହୋଇ ପଡ଼ିଥିଲା । ଭାସ୍କୋଡ଼ାଗାମାଙ୍କର ଭାରତ ଆବିଷ୍କାର ପରେପରେ ୟୁରୋପ ମହାଦେଶରୁ ଛୋଟବଡ଼ ଅନେକ ବ୍ୟବସାୟୀ ଜାତି ଭାରତ ଭୂମିରେ ଅବତୀର୍ଣ୍ଣ ହୋଇ ନିଜନିଜର ବ୍ୟବସାୟ ପେଣ୍ଠମାନ ଖୋଲିଥିଲେ । ସେମାନଙ୍କ ମଧ୍ୟରେ ମୁଖ୍ୟଥିଲେ ଇଂରେଜ ଏବଂ ଫରାସୀ । ଏହି ଉଭୟ ବ୍ୟବସାୟୀ ଜାତିଙ୍କ ମଧ୍ୟରେ ବ୍ୟବସାୟର ପ୍ରତିଯୋଗିତା ତୀବ୍ରତର ହେଲା ଏବଂ ସମଗ୍ର ଭାରତ ବର୍ଷକୁ ପ୍ରସାରିତ ହେଲା । ଫଳରେ ଛୋଟ ଛୋଟ ବ୍ୟବସାୟୀ ଗୋଷ୍ଠୀ ଅପସରି ଗଲେ । ଏହା ଏତେ ତୀବ୍ରତର ହେଲା ଯେ, ଫଳରେ ଉଭୟ ଇଂରେଜ ଏବଂ ଫରାସୀ ମାନଙ୍କ ମଧ୍ୟରେ ଗୃହଯୁଦ୍ଧ ଲାଗି ରହିଲା । ତତ୍କାଳୀନ ଦୁର୍ବଳ ଏବଂ ବିଶୃଙ୍ଖଳିତ ରାଜନୈତିକ ବାତାବରଣ ସେମାନଙ୍କୁ ଖୋରାକ ଯୋଗାଇ ଥିଲା । ଫଳରେ ସମଗ୍ର ଭାରତବର୍ଷକୁ ଏକ ବିଶୃଙ୍ଖଳିତ କଳା ବାଦଲ ଢାଙ୍କି ରଖିଲା । ଫରାସୀ ଏବଂ ଇଂରେଜ ମାନଙ୍କ ମଧ୍ୟରେ ଲାଗିଥିବା ସଂଘର୍ଷ ଦୀର୍ଘଦିନଧରି ଚାଲିଲା ଏବଂ ପରିଶେଷରେ ଫରାସୀ ମାନେ ପରାଜୟ ବରଣକରି ଭାରତରୁ ବିଦାୟ ନେଲେ । ଫରାସୀ ମାନଙ୍କପରେ କେବଳ ରହିଲେ ଇଂରେଜ ଜାତି । ଭାରତରେ ଆଉ ସେମାନଙ୍କର ପ୍ରାୟ କେହି ପ୍ରତିଯୋଗୀ ନଥିବାରୁ ତାଙ୍କର ବ୍ୟବସାୟ ସୁଚାରୁ ରୂପେ ଚାଲିଲା ଏବଂ ଭାରତ ବର୍ଷର ସବୁ ଅଞ୍ଚଳକୁ ପ୍ରସାରିତ ହେଲା । ଏହି ଘଡ଼ିସନ୍ଧି ମୂହୁର୍ତ୍ତରେ ଅର୍ଥାତ୍ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ଜଣେ ପ୍ରତିଭାବାନ୍ ଇଂରେଜ ଭାରତରେ ପଦାର୍ପଣ କଲେ । ତାଙ୍କର ବିଶେଷ ବୁଦ୍ଧିବଳରେ ସେ ଭାରତରେ ଇଂରେଜ ସାମ୍ରାଜ୍ୟର ଭିତ୍ତି ପ୍ରସ୍ତର ସ୍ଥାପନ କରିଥିଲେ । ଫଳରେ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରୁ ଆମଦେଶ ପରାଧୀନତାର ଶୃଙ୍ଖଳରେ ଶୃଙ୍ଖଳିତ ହୋଇ ଯାଇଥିଲା । ପ୍ରଥମେ ଇଂରେଜ ମାନେ ବଂଗଦେଶରୁ ଇଂରେଜ ଶାସନର ଅୟମାରମ୍ଭ କରିଥିଲେ । ଯାହାଙ୍କର ବିଚକ୍ଷଣ ବୁଦ୍ଧି ବଳରେ ଭାରତରେ ଇଂରେଜ ଶାସନର ମୂଳଦୁଆ ସ୍ଥାପନ କରାଯାଇଥିଲା । ସେ ଥିଲେ "ରବର୍ଟ କ୍ଲାଇବ୍" ।

ମୋଗଲ ସାମ୍ରାଜ୍ୟର ଶେଷ ସମ୍ରାଟ ଥିଲେ ଆଉରଙ୍ଗଜେବ । ମୋଗଲ ସାମ୍ରାଜ୍ୟର ପତନ ପରେପରେ ଭାରତର ମୋଗଲ ଶାସନ ବ୍ୟବସ୍ଥା ଦୁର୍ବଳ ହୋଇ ପଡ଼ିଲା । ସେତେବେଳକୁ, ଭାରତର ପୂର୍ବ ଓ ଦକ୍ଷିଣରେ ମୋଗଲ ସାମ୍ରାଜ୍ୟର ଦୃଢ ଦୁର୍ଗମାନ ଥିଲା । ପୂର୍ବରେ ବଂଗ ଏବଂ ଦକ୍ଷିଣରେ ମହିଶୂର । ୧୭୦୭ ଖ୍ରୀଷ୍ଟାବ୍ଦରେ ଆଉରଙ୍ଗଜେବଙ୍କ ମୃତ୍ୟୁ ପରେ ବଂଗର ରାଜନୈତିକ ପରିସ୍ଥିତି ଓ ଘଟଣାବଳୀର ବହୁ ଅବନତି ଘଟିଲା । ଅବିଶ୍ୱାସର ଛାୟା ଭିତରେ ଗୃହଯୁଦ୍ଧ ଲାଗିରହିଲା । ଶେଷରେ ୧୭୪୦ ଖ୍ରୀଷ୍ଟାବ୍ଦରୁ ୧୭୫୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବଂଗର ଅପ୍ରତିଦ୍ୱନ୍ଦୀ ଶାସକ ଥିଲେ ଆଲିବର୍ଦ୍ଦି ଖାଁ । ବଂଗ, ବିହାର ଓ ଓଡ଼ିଶାରେ ସେ ନିଜର ପ୍ରଭୁତ୍ୱ ବିସ୍ତାର କରିବାରେ ଥିଲେ ଜଣେ ଅପ୍ରତିଦ୍ୱନ୍ଦୀ ଶାସକ । ତାଙ୍କର ଶାସନ ସମୟରେ ଭାରତର ପୂର୍ବାଞ୍ଚଳ ତଥା ବଙ୍ଗ ଏବଂ ବିହାରରେ କିଛି କାରଖାନା ସ୍ଥାପନା ପାଇଁ ଏବଂ ବାଣିଜ୍ୟ ବ୍ୟବସାୟ ପାଇଁ ଅନୁମତି ପାଇଥିଲେ । ତା ପୂର୍ବରୁ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଦଶକରେ ତତ୍‌କାଳୀନ ମୋଗଲ ସମ୍ରାଟ ଇଷ୍ଟଇଣ୍ଡିଆ କମ୍ପାନୀକୁ ବିନା ଶୁଳ୍କରେ ବଙ୍ଗରେ ବାଣିଜ୍ୟ କରିବା ପାଇଁ ଅନୁମତି ଦେଇଥିଲେ । ଏଣୁ କାରଖାନାର ପଣ୍ୟଦ୍ରବ୍ୟ ପରିବହନ ନିମନ୍ତେ 'ଦସ୍ତକ' ନାମକ ମୁକ୍ତ ବାଣିଜ୍ୟ ଅନୁମତି ପତ୍ର ପ୍ରଦାନ କରିବାର ବ୍ୟବସ୍ଥା ରହିଥିଲା । ଏହା ଫଳରେ କର୍ମଚାରୀ ମାନେ ଏହି 'ଦସ୍ତକ' କୁ ନିଜନିଜ ବ୍ୟବସାୟରେ ଲଗାଇବା ଆରମ୍ଭ କଲେ । 'ଦସ୍ତକ'ର ଏହି ଅପବ୍ୟବହାର ଫଳରେ ରାଜସ୍ୱ ଆଦାୟ କମି ଯିବାରୁ ରାଜ କୋଷର ଅଭୂତ ପୂର୍ବ କ୍ଷତି ଘଟିଥିଲା । ଫଳରେ ବଙ୍ଗ ନବାବ ଏହାର ପ୍ରତିବାଦର ସ୍ୱର ଉଠାଇ ଥିଲେ ମଧ୍ୟ ଇଂରେଜ ମାନେ ଏହକୁ ଭ୍ରୂକ୍ଷେପ କରିନଥିଲେ । ଏହା ଫଳରେ ଉଭୟଙ୍କ ମଧ୍ୟରେ ଶତ୍ରୁତା ସୃଷ୍ଟିପାତ ହୋଇଥିଲା । ଏହିପରି ଅନେକ କାରଣକୁ ନେଇ ବଙ୍ଗର ନବାବ ସିରାଜଉଦ୍ଦୌଲା ଏବଂ ଇଂରେଜ ମାନଙ୍କ ମଧ୍ୟରେ ଯୁଦ୍ଧ ସଂଗଠିତ ହୋଇଥିଲା । ଯାହାକୁ କୁହାଯାଏ ପଲାସୀ ଯୁଦ୍ଧ । ଯାହାହେଉ ବଙ୍ଗର ନଦିଆ ଜିଲ୍ଲାର ଭାଗୀରଥି ନଦୀକୂଳରେ ସଂଘଠିତ ହୋଇଥିଲା ପଲାସୀ ଯୁଦ୍ଧ । ବିଶ୍ୱାସଘାତକତାର କୁପରିଣାମ ପାଇଁ ୧୭୫୭ ଜୁନ୍ ୨୩ ତାରିଖରେ ସିରାଜ ଯୁଦ୍ଧରେ ପରାଜୟ ହେଲେ ଏବଂ ଇଂରେଜମାନେ ଭାରତରେ ଇଂରେଜ ସାମ୍ରାଜ୍ୟର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ । ଫଳରେ ଇଷ୍ଟଇଣ୍ଡିଆ କମ୍ପାନୀ କଲିକତାର ଦକ୍ଷିଣରେ ଥିବା ୨୪ ପ୍ରଗଣା ସମେତ ୯୦୦ ବର୍ଗ ମାଇଲ ବିସ୍ତୃତ ଅଞ୍ଚଳ ନିଜ ଅଧୀନକୁ ନେଇଯାଇ ପାରିଥିଲେ । ପଲାସୀ ଯୁଦ୍ଧର ବିଜୟ ପରେ ଇଷ୍ଟଇଣ୍ଡିଆ କମ୍ପାନୀର ରାଜନୈତିକ ଅଭିବୃଦ୍ଧି ଘଟିଥିଲା । କ୍ଲାଇବଙ୍କୁ ବ୍ରିଟିଶ ଅଞ୍ଚଳର ଗଭର୍ଣ୍ଣର ପଦବୀ ଉପହାର ଦିଆ ଯାଇଥିଲା । ଫଳରେ ବଙ୍ଗରାଜ୍ୟ ଅନ୍ୟାନ ୟୁରୋପୀୟ

ରାଜଶକ୍ତି ସଂପୂର୍ଣ୍ଣ ଭାବେ ଲୋପ ପାଇ ଯାଇଥିଲା । କ୍ଲାଇବ ଗଭର୍ଣ୍ଣର ହେଲାପରେ ଇଂରେଜ ରାଜଶକ୍ତିକୁ ସମଗ୍ର ଭାରତ ବର୍ଷରେ ପ୍ରସାରିତ କରିବାର ମସୁଧା ହାସଲ କରିପାରିଥିଲେ ଏବଂ ଭାରତର ବହୁ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳକୁ ଅଧିକାର କରିନେଇଥିଲେ ।

ପଲାସୀ ଯୁଦ୍ଧ ପରେ ପରେ ବଙ୍ଗ ପ୍ରଦେଶରେ ସଂଘଠିତ ହୋଇଥିଲା ଆଉ ଏକ ରାଜନୈତିକ ଅଧ୍ୟାୟ । ଯାହାକୁ କୁହାଯାଏ ବକ୍ସାର ଯୁଦ୍ଧ । ବକ୍ସାର ଯୁଦ୍ଧର ସମୟ ଥିଲା ୧୭୬୪ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସ ୨୩ ତାରିଖ । ଏହି ଯୁଦ୍ଧ ଫଳରେ ଇଂରେଜ ମାନେ ବଙ୍ଗ ବିହାର ଓଡ଼ିଶା ସମେତ୍ ସମଗ୍ର ଅଯୋଧ୍ୟା ରାଜ୍ୟରେ ସେମାନଙ୍କର କାୟା ବିସ୍ତାର କରିପାରିଥିଲେ । କହିବାକୁ ଗଲେ ବକ୍ସାର ଭାରତରେ ଇଂରେଜ ସାମ୍ରାଜ୍ୟର ଭିତ୍ତିପ୍ରସ୍ତର ସ୍ଥାପନ କରି ପାରିଥିଲା ଏବଂ ଭାରତବର୍ଷର ସମଗ୍ର ପୂର୍ବାଞ୍ଚଳରେ ଇଂରେଜ ମାନେ ତାଙ୍କର କର୍ତ୍ତୃତ୍ୱ ଜାହିର କରି ପାରିଥିଲେ । ସେ ସମୟରେ ଭାରତର ରାଜନୈତିକ ଅବସ୍ଥା ସେତେ ଭଲ ନଥିଲା । ରାଜା ରାଜା ମାନଙ୍କ ମଧ୍ୟରେ ଉତ୍ତମ ବୁଝାମଣାର ଅଭାବରୁ ପ୍ରତି ରାଜ୍ୟାକାଶରେ ଅରାଜକତାର କଳା ବାଦଲ ଦେଖା ଦେଇଥିଲା । ଉତ୍ତର ଏବଂ ପୂର୍ବ ଭାରତରେ ଦୃଢ ଶାସନର ଅଭାବ ଦେଖା ଦେଇଥିଲା । କେବଳ ସେହି ସମୟରେ ଭାରତ ବର୍ଷରେ ମରହଟ୍ଟା ରାଜ୍ୟଥିଲା ସବୁଠାରୁ ଶକ୍ତିଶାଳୀ । ତତ୍ ସଙ୍ଗେ ସଙ୍ଗେ କର୍ଣ୍ଣାଟ ରାଜ୍ୟ, ମହୀଶୂର ରାଜ୍ୟ ଏବଂ ହାଇଦ୍ରାବାଦର ନିଜାମ ଏମାନେ ଥିଲେ ଭାରତବର୍ଷର ଶକ୍ତିଶାଳୀ ଶାସକ । କର୍ଣ୍ଣାଟ ରାଜ୍ୟ ଏବଂ ମହିଶୂର ରାଜ୍ୟର ଗୃହଯୁଦ୍ଧ ଫଳରେ ଇଂରେଜ – ମହୀଶୂର ତିନି ତିନୋଟି ଯୁଦ୍ଧ ପରେ ଉଚ୍ଚାଭିଳାଷୀ ଟିପୁ ସୁଲତାନ ଧରାଶାୟୀ ହୋଇଥିଲେ । ହାଇଦ୍ରାବାଦର ନିଜାମ ଫରାସୀମାନଙ୍କ ଠାରୁ ଭିତିରିଆ ଆନୁଗତ୍ୟ ପାଇ ଫ୍ରାନ୍ସର ପ୍ରଖ୍ୟାତ ବୀର ନେପୋଲିଅନ ବୋନାପାର୍ଟ ଭାରତ ଆକ୍ରମଣ ପାଇଁ ଯୋଜନା କରୁଥିଲେ । ଭାରତ ପାଇଁ ଏହି ଦୁଇ ୟୁରୋପୀୟ ରାଜ୍ୟ ଫ୍ରାନ୍ସ ଏବଂ ଇଂଲଣ୍ଡ ମଧ୍ୟରେ ତୀବ୍ର ପ୍ରତିଯୋଗୀତା ଦେଖା ଯାଇଥିଲା । ଏ ପର୍ଯ୍ୟନ୍ତ ସୁଦ୍ଧା ଇଂରେଜ ମାନେ ଓଡ଼ିଶାକୁ ଅଧିକାର କରି ପାରିନଥିଲେ । ଏହି ଘଡିସନ୍ଧି ମୂହୁର୍ତ୍ତରେ ୧୭୯୮ ଖ୍ରୀଷ୍ଟାବ୍ଦରେ ଭାରତରେ ଗଭର୍ଣ୍ଣର ଜେନରୋଲ ଭାବେ ଯୋଗ ଦେଲେ 'ଲର୍ଡ଼ ୱେଲସଲି' । ତତ୍କାଳୀନ ଭାରତର ରାଜନୈତିକ ଦୂରାବସ୍ଥାର ସୁଯୋଗ ନେଇ ଏବଂ ନୂତନ ପ୍ରଥା ପ୍ରଚଳନ କରାଇ ବ୍ରିଟିଶ ସାମ୍ରାଜ୍ୟର ଦ୍ରୁତ ପ୍ରସାରଣରେ ଅସାଧାରଣ କୃତିତ୍ୱ ଅର୍ଜନ କରି ପାରିଥିଲେ । ତାହାଥିଲା 'ସାମନ୍ତ ସନ୍ଧି' । ସାମନ୍ତ ସନ୍ଧି କହିଲେ ସେହି ସମୟରେ ଭାରତୀୟ ଦେଶୀୟ ରାଜ୍ୟ ଗୁଡିକର ଆଭ୍ୟନ୍ତରିଣ ହେଉ କିମ୍ବା

ବାହ୍ୟ ପରିସ୍ଥିତି ହେଉ ସୁରକ୍ଷା ଦୃଷ୍ଟିରୁ ଏହା ନିଶ୍ଚିନ୍ତ ଭାବେ ବିପଦ ପୂର୍ଣ୍ଣ ଥିଲା । ଦେଶୀୟ ରାଜାମାନେ ବାହ୍ୟ ବିପଦରୁ ରକ୍ଷା ପାଇବା ପାଇଁ ଇଂରେଜ ମାନଙ୍କ ସହ ଏକ ସନ୍ଧିର ବ୍ୟବସ୍ଥା କରିଥିଲେ । ଏହି ବ୍ୟବସ୍ଥା ଅନୁଶାରେ ଦେଶୀୟ ରାଜ୍ୟର ଶାସନଭାର ରାଜାଙ୍କ ହାତରେ ରହିବ କିନ୍ତୁ ରାଜ୍ୟର ସୁରକ୍ଷା ଦୃଷ୍ଟିରୁ ଏକ ଇଂରେଜ ସେନା ବାହିନୀ ଅବସ୍ଥାପିତ କରାଯିବ । ଏହାର ସମସ୍ତ ଖର୍ଚ୍ଚ ରାଜ୍ୟ ବହନ କରିବ । ଉକ୍ତ ରାଜ୍ୟରେ ଜଣେ ଲେଖାଏଁ ଇଂରେଜ ପ୍ରତିନିଧି ରହିବେ । ରାଜ୍ୟ ଅନ୍ୟ ରାଜ୍ୟ ସହିତ ରାଜନୈତିକ ସମ୍ପର୍କ ଇଂରେଜ ସରକାରଙ୍କର ବିନା ଅନୁମତିରେ ରଖି ପାରିବେ ନାହିଁ । ଏହି ସାମନ୍ତ ସନ୍ଧି ଫଳରେ ଦେଶୀୟ ରାଜ୍ୟ ଗୁଡ଼ିକରେ ଥିବା ବହୁ ଦିନର ବିବାଦର ପରସମାପ୍ତି ଘଟିଥିଲା । ଏହି ସାମନ୍ତ ସନ୍ଧି ଦ୍ୱାରା ଆବଦ୍ଧ ହୋଇଥିବା ଦେଶୀୟ ରାଜ୍ୟ ଗୁଡ଼ିକର ନିଜର ସ୍ୱାଧୀନତା ହରେଇ ବସିଲେ । ପରିବେଶ ଏବଂ ପରିସ୍ଥିତିର ସୁଯୋଗ ନେଇ ଇଂରେଜ ମାନେ ଏହି ରାଜ୍ୟ ଗୁଡ଼ିକୁ ସେମାନଙ୍କ ସାମ୍ରାଜ୍ୟ ସହିତ ମିଶାଇ ଦେଇଥିଲେ । ଏହିପରି ଘଟଣା ଡେଲହାଉସୀଙ୍କ ଶାସନ କାଳରେ ଏହାହିଁ କାର୍ଯ୍ୟକାରୀ ହୋଇଥିଲା ।ଏହିପରି ଅନେକ ଗୁଡ଼ିଏ ଦେଶୀୟ ରାଜ୍ୟ ଇଂରେଜ ଶାସନ ଅଧୀନକୁ ଆସି ଯାଇଥିଲା ।

୧୮୪୮ ମସିହାରେ ଭାରତକୁ ଗଭର୍ଣ୍ଣର ଜେନେରାଲ ଭାବରେ ଆସିଥିଲେ ଲର୍ଡ଼ ଡ଼େଲହାଉସୀ । ଲର୍ଡ଼ ୱେଲସଲିଙ୍କ 'ସାମନ୍ତ ସନ୍ଧି' ପରି ଲର୍ଡ଼ ଡେଲହାଉସୀ ତାଙ୍କର 'ରାଜସ୍ୱତ୍ୱ ଲୋପ ନୀତି' ଆଇନ ବଳରେ ଆକୁମାରୀ ହିମାଚଳରେ ବ୍ରିଟିଶ୍ ଜାତିର ପତାକା ଉଡ଼ାଇବାରେ ସୌଭାଗ୍ୟ ଅର୍ଜନ କରି ପାରିଥିଲେ । 'ରାଜସ୍ୱତ୍ୱ ଲୋପନୀତି' କ'ଣ ଆମେ ଏଠାରେ ଆଲୋଚନା କରିବା ଉଚିତ ମନେକରେ । ଏହା ଥିଲା ବ୍ରିଟିଶ୍ ଶାସନର ରାଜ୍ୟ ବିସ୍ତାର ପାଇଁ ଏକ କୌଶଳ ଏବଂ ହିନ୍ଦୁ ଧର୍ମ ଉପରେ ଏକ ଅଙ୍କୁଶ ଥିଲା । ବୈଦିକ ଯୁଗରୁ ହିନ୍ଦୁ ଧର୍ମରେ ପ୍ରଚଳିତ ଥିଲା ଯେ, ନିଃସନ୍ତାନ ହିନ୍ଦୁମାନେ ନିଜର ଆତ୍ମୀୟ ମାନଙ୍କ ଠାରୁ ସେମାନଙ୍କ ସନ୍ତାନଙ୍କୁ ନିଜର ପୁତ୍ର ରୂପରେ ଗ୍ରହଣ କରୁଥିଲେ । ଯାହାକୁ କୁହାଯାଏ 'ପୋଷ୍ୟପୁତ୍ର' । ଏହାଥିଲା ହିନ୍ଦୁ ମାନଙ୍କର ଧର୍ମୀୟ ପରମ୍ପରା । ପୋଷ୍ୟପୁତ୍ର ପରେ ଏମାନେ ଯେ କେବଳ ପୋଷ୍ୟ ବ୍ୟକ୍ତିର ସଂପତିର ଉତ୍ତରାଧିକାରୀ ନଥିଲେ, ତାହା ନୁହେଁ, ମୃତ ବ୍ୟକ୍ତିର ଆତ୍ମାର ସଦ୍‌ଗତି ନିମନ୍ତେ ପିତୃ ତର୍ପଣ କରିବା ଥିଲା ପୋଷ୍ୟ ପୁତ୍ର ଗ୍ରହଣର ଅନ୍ୟ ଏକ ଉଦ୍ଦେଶ୍ୟ । ଏହି ପ୍ରଥା ପ୍ରତ୍ୟେକ ହିନ୍ଦୁ ପରିବାର ସହିତ ଅଙ୍ଗାଙ୍ଗି ଭାବେ ଜଡ଼ିତ ଥିଲା । କିନ୍ତୁ ଡେଲାହାଉସୀଙ୍କ ଆଗମନ ପରେ ସେ ଯେଉଁ ରାଜସତ୍ୱ ଲୋପ ନୀତି ପ୍ରଣୟନ

କରିଥିଲେ ସେଥିରେ ବହୁ ଦେଶୀୟ ରାଜା ଏବଂ ଜମିଦାର ମାନେ ନିଜର ସର୍ବସ୍ୱ ହରାଇ ବସିଥିଲେ । ଏହି ନୀତି ପ୍ରଣୟନ କରିବାର ମୁଖ୍ୟ ଉଦ୍ଦେଶ୍ୟ ହେଲା ତତ୍‌କାଳୀନ ଛୋଟ ଛୋଟ ରାଜ୍ୟ ଗୁଡ଼ିକ ଇଂରେଜ ଶାସନ ଅଧିନରେ ନଥିଲା । କୌଣସି ଉପାୟରେ ସେମାନଙ୍କୁ କରଗତ କରି ବ୍ରିଟିଶ ସାମ୍ରାଜ୍ୟରେ ଅଙ୍ଗୀଭୂତ କରି ବ୍ରିଟିଶ ସାମ୍ରାଜ୍ୟକୁ ପରିବୃଦ୍ଧି କରିବାର ପ୍ରୟାଶ କରିଥିଲେ । ଏହି ନୀତିର ଧାରା ଥିଲା:- ଯଦି କୌଣସି ରାଜ୍ୟ ଇଂରେଜ ଅଧୀନରେ ଥାଇ ରାଜା ବା ଶାସକ ଅପୁତ୍ରିକ ଥିଲେ ସେମାନେ ପୋଷ୍ୟପୁତ୍ର ଗ୍ରହଣ କରି ପାରିବେ ନାହିଁ । ରାଜା ବା ଶାସକଙ୍କର ମୃତ୍ୟୁ ହେଲେ ସେ ରାଜ୍ୟ ବ୍ରିଟଶ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେବ । ଯଦି କୌଣସି ରାଜ୍ୟ ପୋଷ୍ୟ ପୁତ୍ର ଗ୍ରହଣ କରିବା ପାଇଁ ଆଗ୍ରହୀ ଥାଆନ୍ତି ତାହା ବ୍ରିଟିଶ ସରକାରଙ୍କର ଅନୁମତି ସାପେକ୍ଷ । ଏହାଥିଲା ରାଜସ୍ୱତ୍ୱ ଲୋପ ନୀତି । ଏହା ଫଳରେ ଅନେକ ଦେଶୀୟ ରାଜ୍ୟ ବ୍ରିଟିଶ୍ ରାଜ୍ୟ ସହିତ ସାମିଲି ହୋଇଗଲା । ଫଳରେ ଓଡ଼ିଶାର ସମ୍ବଲପୁର ଜିଲ୍ଲାକୁ ୧୮୪୯ ଖ୍ରିଷ୍ଟାବ୍ଦରେ ବ୍ରିଟିଶ ସାମ୍ରାଜ୍ୟ ସହିତ ମିଶାଇ ଦିଆଯାଇଥିଲା । କାରଣ ରାଜା ନାରାୟଣ ସିଂହ ପୋଷ୍ୟପୁତ୍ର ଗ୍ରହଣ ନକରି ଇହଧାମକୁ ତ୍ୟାଗ କରିଥିଲେ । ଏହିପରି ଭାବରେ୧୭୫୭ ଖ୍ରୀଷ୍ଟାବ୍ଦରୁ ୧୮୫୬ ଖ୍ରୀଷ୍ଟାବ୍ଦ ମଧ୍ୟରେ ବହୁ ଅସ୍ୱାଭାବିକ ନୀତି ପ୍ରଣୟନ କରି ଭାରତରେ ଏକ ବିଶାଳ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ ।

ଏହିନୀତିର ପ୍ରୟୋଗ ସମୟରେ ଭାରତର ବହୁ ଦେଶୀୟ ରାଜା ଅପୁତ୍ରିକ ହୋଇ ମୃତ୍ୟୁ ବରଣ କରିଥିଲେ ଏବଂ ଯେଉଁମାନେ ଅପୁତ୍ରିକ ଥିଲେ ସେମାନଙ୍କୁ ପୋଷ୍ୟପୁତ୍ର ଗ୍ରହଣ କରିବା ପାଇଁ ଉଦ୍ଦେଶ୍ୟ ପ୍ରଣୋଦିତ ଭାବରେ ଅନୁମତି ପ୍ରଦାନ କରାଯାଇ ନଥିଲା । ଫଳରେ ଅନେକ ରାଜ୍ୟ ବ୍ରିଟିଶ ରାଜ୍ୟ ସହିତ ସାମିଲ ହୋଇଗଲା । ଏହି ନୀତିର ପ୍ରଥମ ଶୀକାର ହୋଇଥିଲା ମରହଟ୍ଟା ରାଜ୍ୟର 'ସାତାରା' । ଏହାଥିଲା ପ୍ରକ୍ଷାତ ମରହଟ୍ଟା ଶାସକ ଶିବାଜୀଙ୍କ ଉତ୍ତରାଧିକାରୀ ମାନଙ୍କର ରାଜ୍ୟ । ସାତାରାର ରାଜା ଆପ୍‌ପା ସାହେବ ପୋଷ୍ୟପୁତ୍ର ଗ୍ରହଣ କରିଥିଲେ ସୁଦ୍ଧା ଏହାକୁ ବେଆଇନ ଘୋଷଣା କରି ବ୍ରିଟିଶ ସାମ୍ରାଜ୍ୟରେ ସାତାରାକୁ ଅର୍ନ୍ତଭୁକ୍ତ କରାଇଥିଲେ । ପରବର୍ତ୍ତୀ ସମୟରେ ଝାନ୍‌ସୀ, ନାଗପୁର ଆଦି ମରହଟ୍ଟା ରାଜ୍ୟ ଗୁଡିକୁ ବ୍ରିଟିଶ ସାମ୍ରାଜ୍ୟରେ ଅର୍ନ୍ତଭୁକ୍ତ କରାଇଥିଲେ । ଏହିପରି ଅନେକଗୁଡ଼ିଏ ଦେଶୀୟ ରାଜ୍ୟ ବ୍ରିଟିଶ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇ ଏକ ବିଶାଳ ରାଜ୍ୟରେ ପରିଣତ ହୋଇଥିଲା । ରାଜସ୍ୱତ୍ୱ ଲୋପ ନୀତିର ସଫଳ ପ୍ରୟୋଗ ପରେ ପରେ ଆଉ ଏକ କ୍ରୁର ନୀତିର ପ୍ରୟୋଗ କରା ଯାଇଥିଲା । ତାହାଥିଲା "ଉପାଧି ଓ ବୃତ୍ତିର ଉଚ୍ଛେଦ ସାଧନ" । ବ୍ରିଟିଶ ଶାସନ

ସମୟରେ ଅନେକ ଭାରତୀୟ ରାଜାଙ୍କୁ କୌଣସି କାରଣ ବଶତଃ ଉପାଧି ଓ ବୃତ୍ତି ପ୍ରଦାନ କରାଯାଇଥିଲା । ଫଳରେ ପୁରୂଷାନୁକ୍ରମିକ ସେମାନଙ୍କର ଉତ୍ତରାଧିକାରୀ ମାନେ ଏହାକୁ ଭୋଗକରି ଆସୁଥିଲେ । କିନ୍ତୁ ଏଥିରେ ସେମାନଙ୍କର କୌଣସି ଅଧିକାର ନଥିବାରୁ ଯୁକ୍ତି ଦେଖାଇ ଏହାକୁ ଉଚ୍ଛେଦ କରିଥିଲେ । ଉପାଧି ଓ ବୃତ୍ତି ସଂଯୁକ୍ତ ରାଜାଙ୍କ ମୃତ୍ୟୁପରେ ମଧ୍ୟ ତାଙ୍କ ଉତ୍ତରାଧିକାରୀ ମାନଙ୍କୁ ଏହି ସୁଯୋଗରୁ ବଞ୍ଚିତ କରି ଦିଆଯାଇଥିଲା । ଏହି ନୀତି ପ୍ରୟୋଗ ଫଳରେ ତତ୍‌କାଳୀନ ଇଂରେଜ ସରକାରଙ୍କୁ ସାହାଯ୍ୟ କରି ଯେଉଁ ରାଜାମାନେ ଏହି ଉପାଧି ଏବଂ ବୃତ୍ତିର ସୁଯୋଗ ଉତ୍ତରାଧିକାରୀ ସୂତ୍ରରେ ଉପଭୋଗ କରି ଆସୁଥିଲେ ଏହି ନୀତି ବଳରେ ସେମାନେ ବଳି ପଡ଼ିଲେ । ଏହିପରି ଭାବରେ ବିଭିନ୍ନ ଆଳ ଦେଖାଇ ୧୭୫୭ ଖ୍ରୀଷ୍ଟାବ୍ଦରୁ ୧୮୫୬ ଖ୍ରୀଷ୍ଟାବ୍ଦ ମଧ୍ୟରେ ବହୁ ଦେଶୀୟ ରାଜ୍ୟକୁ ମିଶ୍ରଣ କରି ଭାରତରେ ଏକ ବିଶାଳ ବିଟ୍ରିଶ ସାମ୍ରାଜ୍ୟ ପ୍ରତିଷ୍ଠା କରି ପାରିଥିଲେ । ଏହି ଶହେ ବର୍ଷର ବ୍ରିଟିଶ ଶାସନ ମଧ୍ୟରେ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ରାଜାଙ୍କଠାରୁ ଆରମ୍ଭକରି ପ୍ରଜା ପର୍ଯ୍ୟନ୍ତ ସମସ୍ତେ ଅନ୍ୟାୟରେ ଅତିଷ୍ଠ ହୋଇ ପଡିଥିଲେ । ସାମ୍ରାଜ୍ୟ ନିଶାରେ ଉନ୍ମତ୍ତ ହୋଇ ଡେଲହାଉସୀ ଉକ୍ତ ରାଜ୍ୟକୁ ବ୍ରିଟିଶ ସମ୍ରାଜ୍ୟରେ ଅଙ୍ଗୀଭୁତ କରାଇ ଥିଲେ । ଇଷ୍ଟଇଣ୍ଡିଆ କମ୍ପାନୀ ଗୋଟିଏ ସାମାନ୍ୟ ବଣିକ ଗୋଷ୍ଠୀରୁ ଏକ ବିରାଟ ଶକ୍ତିରେ ପରିଣତ ହୋଇ ପାରିଥିଲା ।

ଏହି ପରିବର୍ତ୍ତନଶୀଳ ଦୁନିଆରେ ପରିବର୍ତ୍ତନ ହେଉଛି ସ୍ୱାଭାବିକ । ସ୍ଥାୟୀତ୍ୱ ବୋଲି କିଛି ନଥାଏ । ଧନ, ଯୌବନ, ସମୟ, ସାହିତ୍ୟ, ଇତିହାସ ଏବଂ ଦେଶ ଦୁନିଆରେ ଭୌଗଳିକ ପରିସ୍ଥିତି ସବୁକିଛିର ପରିବର୍ତ୍ତନ ଘଟିଥାଏ । ମୋଟ ଉପରେ ଦେଖିବାକୁ ଗଲେ ବେଳେବେଳେ ସମୟ ପରିବେଶ ପରିସ୍ଥିତି ଓ ଘଟଣାବଳୀକୁ ଆଖି ଆଗରେ ରଖି କିଛି ପରିବର୍ତ୍ତନର ଆଶା ମଧ୍ୟ କରା ଯାଇଥାଏ । ଏଣୁ ପରିବର୍ତ୍ତନର ଧାରା ଏହା ଆଦିମ କାଳରୁ ଅଦ୍ୟାବଧି ପର୍ଯ୍ୟନ୍ତ ରହି ଆସିଅଛି । ବିଶ୍ୱ ଇତିହାସର ପୃଷ୍ଠା ଲେଉଟାଇଲେ ଇତିହାସର ପରିବର୍ତ୍ତନ ଆମେ ବେଶ୍ ଉପଲବ୍ଧି କରିଥାଉ । ପରିବର୍ତ୍ତନ ତ ଇତିହାସ ସହିତ ଅଙ୍ଗାଙ୍ଗି ଭାବେ ଜଡ଼ିତ । ପରିବର୍ତ୍ତନ ତ ଏକ ସ୍ୱଭାବିକ ଅବସ୍ଥା । ଏହି ଦେବଭୂମି ଭାରତବର୍ଷର ଦୁର୍ଦ୍ଦିନରେ ପରିବର୍ତ୍ତନ ନଆସନ୍ତା କିପରି ? ପୂର୍ବୋକ୍ତ ଆଲୋଚନାରୁ ଆମେ ଅବଶ୍ୟ ଉପଲବ୍ଧି କରିପାରିବାଯେ ତତ୍‌କାଳୀନ ଭାରତର ପରିସ୍ଥିତି କ'ଣ ଥିଲା ଏବଂ ଇଷ୍ଟିଇଣ୍ଡିଆ କମ୍ପାନୀ ବାଣିଜ୍ୟ ଆଳରେ କିପରି ସମଗ୍ର ଭାରତବର୍ଷକୁ ଅକ୍ତିଆର କରିନେଇ ଏବଂ ରାଜା ଠାରୁ

ପ୍ରଜା ପର୍ଯ୍ୟନ୍ତ ଏହି ଦୁର୍ଦ୍ଦିନ ଅବସ୍ଥାର ସମୀକ୍ଷା କିଏ ବା କରିବ ? କିନ୍ତୁ ସମୟ ଆସିଲେ ବ୍ରିଟିଶ ରାଜତ୍ୱର ଦୀପ୍ତିମନ୍ତ ସୂର୍ଯ୍ୟ ୧୭୫୭ ମସିହାରେ ଅସ୍ତମିତ ହେବାକୁ ଲାଗିଲା । ସମୟର ଧାରା ପ୍ରବାହ ବଡ଼ ବିଚିତ୍ର । ସେ ପ୍ରବାହରେ ବହୁ ନୂତନତାର ସମାରୋହ ହୋଇଥାଏ । ଉକ୍ତ ସମୟରେ ଭାରତବର୍ଷର ରାଜନୈତିକ, ଅର୍ଥନୈତିକ, ସାମାଜିକ ଓ ଆଧ୍ୟାତ୍ମିକ ସ୍ୱାଧୀନତା ବିପର୍ଯ୍ୟସ୍ତ ହୋଇ ପଡ଼ିଲା । ଏହା ଉପରେ ରାଜା ଠାରୁ ପ୍ରଜା ପର୍ଯ୍ୟନ୍ତ କାହାରି ସ୍ୱାଧୀନତା ରହିଲା ନାହିଁ । ଶୋଚନୀୟ ଭାବେ ପତନ ଓ ବିପର୍ଯ୍ୟୟ ଭାରତବାସୀଙ୍କୁ ମର୍ମାହତ କରିଥିଲା । ତତ୍‌କାଳୀନ 'ସାମନ୍ତ ସନ୍ଧି', 'ରାଜ ସ୍ୱତ୍ୱ ଲୋପ ନୀତି', ଏବଂ 'ଉପାଧି ଓ ବୃତ୍ତି' ର ଉଚ୍ଛେଦ ନୀତିର ପ୍ରୟୋଗ କରି ବ୍ରିଟିଶ୍ ସାମ୍ରାଜ୍ୟକୁ ପରିବୃଦ୍ଧି କରିବାର କୌଶଳ ଭାରତୀୟ ରାଜା ଏବଂ ଜନ ସାଧାରଣଙ୍କ ହୃଦୟରେ ଅସନ୍ତୋଷର ବୀଜବପନ କରିବା ସଙ୍ଗେ ସଙ୍ଗେ ଅଶାନ୍ତ ଓ ଅସ୍ଥିରତା ସୃଷ୍ଟି କରିଥିଲା । ରାଜସ୍ୱତ୍ୱ ଲୋପ ନୀତି ବଳରେ ମରହଟ୍ଟା ରାଜବଂଶର ବିଲୋପ ସାଧନ, କର୍ଣ୍ଣାଟର ନବାବ, ତାଞ୍ଜୋର ର ରାଜା ପ୍ରଭୃତିଙ୍କ ଉପାଧି ଓ ବୃତ୍ତିର ଉଚ୍ଛେଦ ଯୋଗୁଁ ସେମାନେ ମଧ୍ୟ ବ୍ରିଟିଶ ବିରୁଦ୍ଧରେ ଖଡଗ ଉତ୍ତୋଳନ କରିଥିଲେ । ଏହା ଫଳରେ ରାଜ ଦରବାରରେ କାମ କରୁଥିବା ପାରିଷଦ ମାନେ ସେମାନଙ୍କର ବୃତ୍ତି ହରାଇବାକୁ ପଡ଼ିଲା । ଫଳରେ ସେମାନଙ୍କୁ ଦାଣ୍ଡର ଭୀକାରୀ ହେବାକୁ ପଡିଲା । ତେଣୁ ସବୁ ସ୍ତରର ଲୋକେ ବ୍ରିଟଶ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । କେବଳ ଯେ ହିନ୍ଦୁ ନୁହଁ ମୁସଲମାନ ମାନେ ମଧ୍ୟ ଏହି ନୀତିର ଶିକାର ହୋଇ ହିନ୍ଦୁମାନଙ୍କ ସହିତ ମିଳିତ ଭାବରେ ସ୍ୱର ଉତ୍ତୋଳନ କରିଥିଲେ । ମୁସଲମାନ ଅଧ୍ୟୁଷିତ ରାଜ୍ୟ ମହିଶୂର ଓ ଅଯୋଧ୍ୟାର ଶୋଚନୀୟ ପରିଣତି ଉଦାହରଣ ସାପେକ୍ଷ । କେବଳ ରାଜନୈତିକ ପରିସ୍ଥିତି ପାଇଁ ନୁହେଁ ଅର୍ଥନୈତିକ ପରିସ୍ଥିତି ମଧ୍ୟ କେତେକାଂଶରେ ଦାୟି ଥିଲା । ଯେ କୌଣସି ଜାତି, ଗୋଷ୍ଠୀ, ସମାଜ, ସଂସ୍କୃତି ବା ରାଜ୍ୟର ଉତ୍‌ଥାନ ପତନ ପାଇଁ ଅର୍ଥନୈତିକ ପରିସ୍ଥିତି ମଧ୍ୟ ଦାୟି ହୋଇଥାଏ । ଆଗରୁ ଆମେ ଆଲୋଚନା କରିଛେ ଯେ, ଇଷ୍ଟଇଣ୍ଡିଆ କମ୍ପାନୀ ଭାରତରେ ବାଣିଜ୍ୟ ବସତି କରିବା ପୂର୍ବରୁ ଅନେକ ଗୁଡ଼ିଏ ଇୟୁରୋପୀୟ ବାଣିଜ୍ୟ ଗୋଷ୍ଠୀ ଆମଦେଶରେ ବାଣିଜ୍ୟ କାରବାର କରି ଆସୁଥିଲେ । ଭାରତୀୟ ଅର୍ଥନୀତି ଉପରେ କିନ୍ତୁ ଇଂରେଜୀ ବଣିକ ମାନଙ୍କର ଉଦ୍ଦେଶ୍ୟ ଥିଲା ଅଲଗା । ସେହି ସମୟରେ ୟୁରୋପ ମହାଦେଶରେ ଶିଳ୍ପ ବୀପ୍ଳବର ପ୍ରସାର ଘଟିଥିଲା । ଫଳରେ ଇଂରେଜମାନେ ଭାରତରୁ କଞ୍ଚାମାଲ କମ୍ ଦାମ୍‌ରେ କ୍ରୟକରି ଇଂଲଣ୍ଡକୁ ପ୍ରେରଣ କରୁଥିଲେ ଏବଂ ସେଠାରେ ପ୍ରସ୍ତୁତ କରୁଥିବା ଦ୍ରବ୍ୟ ଗୁଡ଼ିକୁ ଆଣି ଭାରତୀୟ ବଜାରରେ ବିକ୍ରୟ କରୁଥିଲେ । ଫଳରେ ଭାରତୀୟ

କୁଟୀର ଶିଳ୍ପଗୁଡ଼ିକ ପ୍ରତିଯୋଗିତାର ସମ୍ମୁଖୀନ ହୋଇ ନପାରି କାଳକ୍ରମେ ଧ୍ୱଂସ ପାଇଗଲା । ଫଳରେ ଇଂଲଣ୍ଡର ରାଜକୋଷ ପରିବୃଦ୍ଧି ଘଟିବା ସଙ୍ଗେ ସଙ୍ଗେ ଭାରତ ପାଇଁ ଏହା ଥିଲା କ୍ଷତିକାରକ । ଫଳରେ ଭାରତୀୟ ଜନସାଧାରଣ ମାନଙ୍କର ଆର୍ଥିକ ଅବସ୍ଥା ଶୋଚନୀୟ ହୋଇ ପଡ଼ିଥିଲା । ଲର୍ଡ଼ କର୍ଣ୍ଣୱାଲିସଙ୍କ ଦ୍ୱାରା ପ୍ରଚଳିତ ଚିରସ୍ଥାୟୀ ବନ୍ଦୋବସ୍ତ, ବଂଗ ଓ ଓଡ଼ିଶାର ଜମିଦାରୀ ଲୋପ, ଅତ୍ୟଧିକ ରାଜସ୍ୱ ହାର ଏବଂ ବ୍ରିଟିଶ କର୍ମଚାରୀ ମାନଙ୍କର ଅନ୍ୟାୟ ଭାବରେ ରାଜସ୍ୱ ଆଦାୟ ଭାରତୀୟ ଜନସାଧାରଣଙ୍କର ଆର୍ଥିକ ମେରୁଦଣ୍ଡ ଭାଙ୍ଗି ଦେଇଥିଲା । ଫଳରେ ଭାରତୀୟ ମାନଙ୍କ ମନରେ ବ୍ରିଟିଶ ଶାସନ ପ୍ରତି ଏକ ଘୃଣା ଭାବ ପ୍ରକଟିତ ହୋଇଥିଲା ।

ଭାରତୀୟ ସମାଜ, ସଂସ୍କୃତି, ଅଚାର ବିଚାର ମୁଖ୍ୟତଃ ଧର୍ମ ଉପରେ ପର୍ଯ୍ୟବସିତ ହୋଇଥାଏ । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ତାର ସବୁଠାରୁ ପ୍ରିୟ ହେଉଛି ତାର ଧର୍ମ । ଜନ୍ମ ଦେଇଥିବା ବାପା ମା'ଙ୍କୁ ଉପେକ୍ଷା କରି ଧର୍ମ ଉପରେ ମଧ ଭାରତୀୟ ମାନେ ଅଧିକ ଗୁରୁତ୍ୱ ଦେଇଥାନ୍ତି । ଏହି ଭାରତ ମାଟିରେ ବୈଦେଶିକ ଆକ୍ରମଣ ଠାରୁ ଆରମ୍ଭ କରି କେତେ ରାଜବଂଶ କେତେ ସମ୍ରାଟଙ୍କର ଉତ୍ଥାନ ପତନର କାହାଣୀ ଆଜିର ଇତିହାସ ପୃଷ୍ଠା ମଣ୍ଡନ କରିଛି । କିନ୍ତୁ ଭାରତୀୟ ଧର୍ମ ଉପରେ କେହିହେଲେ ପ୍ରଭାବ ପକାଇ ନଥିଲେ । କିନ୍ତୁ ବ୍ରିଟିଶ ଶାସକ ଗଣ ତାଙ୍କ ସାମ୍ରାଜ୍ୟର ପରିବୃଦ୍ଧି ସଙ୍ଗେ ସଙ୍ଗେ ତାଙ୍କର ଖ୍ରୀଷ୍ଟ ଧର୍ମର ଧର୍ମୀୟ ଭାବ ଧାରାକୁ ଭାରତୀୟ ଜନସାଧାରଣଙ୍କ ଉପରେ ଲଦି ଦେଇଥିଲେ । ଫଳରେ ଖ୍ରୀଷ୍ଟଧର୍ମର ପ୍ରଚାରକ ମାନେ ବଳପୂର୍ବକ ଭାରତୀୟ ମାନଙ୍କୁ ଖ୍ରୀଷ୍ଟ ଧର୍ମରେ ଦୀକ୍ଷିତ କରାଉ ଥିଲେ । ମାଗଣାରେ ଶିକ୍ଷା ଏବଂ ଖାଦ୍ୟପେୟ ଦେଇ ଖ୍ରୀଷ୍ଟ ଧର୍ମ ପ୍ରତି ପିଲାମାନଙ୍କୁ ଆକୃଷ୍ଟ କରାଉ ଥିଲେ । ବହୁ ପୂର୍ବରୁ ଭାରତବର୍ଷରେ ଧର୍ମାନ୍ତରକୁ ପ୍ରତିରୋଧ କରିବା ପାଇଁ ଏକ ନିୟମ ଗଢା ଯାଇଥିଲା । ଅନ୍ୟଧର୍ମ ଗ୍ରହଣ କରୁଥିବା ବ୍ୟକ୍ତି ତା ନିଜ କିମ୍ବା ପୈତ୍ରିକ ସଂମ୍ପତ୍ତିର ଅଧିକାରରୁ ବଞ୍ଚିତ ହେଉଥିଲା । କିନ୍ତୁ ୧୮୫୬ ଖ୍ରୀଷ୍ଟାବ୍ଦରେ ଲର୍ଡ଼ କ୍ୟାନିଂ ଏକ ନୁତନ ଆଇନ ପ୍ରଣୟନ କରାଇ ଥିଲେ ଯେ, ଖ୍ରୀଷ୍ଟ ଧର୍ମ ଗ୍ରହଣ କରୁଥିବା ବ୍ୟକ୍ତିଙ୍କ ସଂପତ୍ତି ଉପରେ ସେମାନଙ୍କର ଅଧିକାର ବଜାଇ ରହିବ । ଯଦିଓ ଭାରତୀୟ ସଂସ୍କୃତିରେ ସେ ସମୟରେ ଇଂରେଜ ମାନେ କିଛିଟା ସଂସ୍କାର ଆଣିଥିଲେ ଯଥା, ସତୀଦାହ ପ୍ରଥା, ନରବଳି, ବିଧବା ବିବାହ, ବାଲ୍ୟ ବିବାହ ଇତ୍ୟାଦି ରେ ବହୁ ସଂସ୍କାର ଆଣିଥିଲେ ମଧ ଧର୍ମପ୍ରିୟ ହିନ୍ଦୁମାନେ ଏହାକୁ ସକାରାତ୍ମକ ଭାବେ ଗ୍ରହଣ କରି ନଥିଲେ । କାରଣ ଏହାଥିଲା ହିନ୍ଦୁ

ସଂସ୍କୃତିର ବିରୋଧୀ । ଫଳରେ ଜନସାଧାରଣ ମଧ୍ୟ ଇଂରେଜ ବିରୋଧୀ ସ୍ୱର ଉତ୍ତୋଳନ କରିଥିଲେ ।

ସିପାହି ବିଦ୍ରୋହର ଅନ୍ୟ ଏକ ମୁଖ୍ୟ କାରଣ ହେଲା ଭାରତୀୟ ସିପାହି ମାନଙ୍କର ଅସନ୍ତୋଷତା । ଭାରତୀୟ ସିପାହି ମାନଙ୍କ ପ୍ରତି ବ୍ରିଟିଶ ସରକାରଙ୍କର ଅମାନୁଷିକ ବ୍ୟବହାର ସିପାହି ମାନଙ୍କୁ ଉତ୍ୟକ୍ତ କରାଇଥିଲା । ଜଣେ ଭାରତୀୟ ସୈନ୍ୟ ଦକ୍ଷ ହେଲେ ମଧ୍ୟ ୟୁରୋପୀୟ ସୈନ୍ୟ ମାନଙ୍କ ଅପେକ୍ଷା ଅଧିକ ବେତନ ପାଉ ନଥିଲେ । ପଦୋନ୍ନତି କ୍ଷେତ୍ରରେ ଖୁବ୍ ବେଶୀହେଲେ ସୁବେଦାର ପଦ ପର୍ଯ୍ୟନ୍ତ ଯାଇ ପାରୁଥିଲେ । ୧୮୫୬ ମସିହାରେ ସୈନ୍ୟ ବାହିନୀର ଖର୍ଚ୍ଚକାଟ ବ୍ୟବସ୍ଥା କରାଯାଇଥିଲା । ଭାରତୀୟ ମାନଙ୍କର ବିଶ୍ୱାସ ଥିଲା ଯେ ସମୁଦ୍ର ପାରିହେଲେ ଧର୍ମହାନୀ ହୁଏ । ତେଣୁ ଭାରତୀୟ ସୈନ୍ୟମାନଙ୍କୁ ସମୁଦ୍ର ପାରି ହେବାକୁ ବାଧ୍ୟ କରାଯାଇଥିଲା । ଏହିପରି ଅନେକ ଗୁଡ଼ିଏ ଛୋଟବଡ ଘଟଣାକୁ ନେଇ ସୀପାହିମାନେ ଯାହା ବିଦ୍ରୋହ କଲେ ବି ସୁଦ୍ଧା ବ୍ରିଟିଶ କର୍ତ୍ତୃପକ୍ଷ ସେଥିପ୍ରତି ଆଦୌ କର୍ଣ୍ଣପାତ କରୁନଥିଲେ । ଫଳରେ ସିପାହି ମାନଙ୍କ ମଧ୍ୟରେ ବିଦ୍ରୋହର ଅଗ୍ନିଦାହ ସାମଗ୍ରୀ ଗୁଡ଼ିକ ପୁଞ୍ଜିଭୂତ ହୋଇ ରହିଥାଏ । କେବଳ ବାକିଥାଏ ଅଗ୍ନି ସଂଯୋଗ । ଏହି ସମୟରେ ଏନ୍‌ଫିଲଡ୍ ବନ୍ଧୁକ ନାମରେ ଗୋଟିଏ ନୂଆ ପ୍ରକାର ବନ୍ଧୁକ ପ୍ରଚଳନ କରାଯାଇଥିଲା । ଏଥିରେ ଟୋଟାର ଅଗ୍ରଭାଗକୁ ଦାନ୍ତରେ ଛିଣ୍ଡାଇବାକୁ ପଡୁଥିଲା । ଏହି ସମୟରେ ଲୋକ ମୁଖରୁ ଏକ ଗୁଜବ ଶୁଣା ଗଲାଯେ, ଟୋଟାର ଅଗ୍ର ଭାଗରେ ଗାଈ ଏବଂ ଘୁଷୁରୀର ଚର୍ବି ଲେପନ କରାଯାଇଛି । ହିନ୍ଦୁମାନେ ଗୋମାତାକୁ ପୂଜା କରୁଥିବାରୁ ଟୋଟା ଗୁଡ଼ିକୁ ଚର୍ବି ଯୁକ୍ତ କରା ଯାଇଛି ବୋଲି ଏହି ଧାରଣା ସିପାହୀ ମାନଙ୍କ ମନରେ ସୃଷ୍ଟି ହୋଇଥିଲା । ଏକଥା ବ୍ରିଟିଶ ସରକାରଙ୍କୁ ଆପତ୍ତି କରିଥିଲେ ମଧ୍ୟ ସରକାର କର୍ଣ୍ଣପାତ କରିନଥିଲେ । ବ୍ରିଟିଶ ଶାସନ ବିରୁଦ୍ଧରେ ବିଦ୍ରୋହ କରିବା ପାଇଁ ସିପାହି ମାନଙ୍କୁ ଏହା ପ୍ରେରଣା ଦେଇଥିଲା । ଏହି ସବୁ କାରଣ ବ୍ରିଟିଶ ଶାସନ ବିରୁଦ୍ଧରେ ସ୍ୱରଉତ୍ତୋଳନ କରିବା ପାଇଁ ସିପାହି ମାନଙ୍କୁ ପ୍ରୋତ୍ସାହିତ କରିଥିଲା । ପୁଞ୍ଜିଭୂତ ହୋଇ ରହିଥିବା ଅଗ୍ନିଦାହ ସାମଗ୍ରୀ ଗୁଡ଼ିକରେ ହଠାତ୍ ଚର୍ବିଯୁକ୍ତ ଟୋଟାରେ ଅଗ୍ନି ସଂଯୋଗ କରିଥିଲା । ଫଳରେ ସଂଘଠିତ ହୋଇଥିଲା ୧୮୫୭ ସମିହା ମାର୍ଚ୍ଚ ୨୯ ତାରିଖ ସେନା ଛାଉଣୀରୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ "ସିପାହି ବିଦ୍ରୋହ" ବ୍ରିଟିଶ ସରକାର ବିରୁଦ୍ଧରେ ସିପାହି ମାନଙ୍କର ଏହି ବିଦ୍ରୋହ ଏକ ଜାତୀୟ ବିପ୍ଳବର ରୂପ ନେଇଥିଲା ।

ଭାରତର ପ୍ରଥମ ସ୍ୱାଧୀନତା ଆନ୍ଦୋଳନର ପ୍ରଥମ ବିଗୁଲ ବାଜିଥିଲା ୧୮୫୭ ସମିହା ମାର୍ଚ୍ଚ ୨୮ ତାରିଖ ଏକ ଐତିହାସିକ ସକାଳରୁ । ପ୍ରଥମ ରଣ ହୁଙ୍କାର ଶୁଭିଥିଲା ବଂଗ ରେଜିମେଣ୍ଟରୁ । ରଣ ହୁଙ୍କାର ଦେଇଥିଲେ ଜଣେ ବ୍ରାହ୍ମଣ ସିପାହି 'ମଙ୍ଗଳ ପାଣ୍ଡେ' । ସେହି ଐତିହାସିକ ସକାଳରେ ସେ ତାଙ୍କର ଜଣେ ଉପରିସ୍ଥ ଇଂରେଜ କର୍ମଚାରୀଙ୍କୁ ଗୁଳିକରି ହତ୍ୟାକଲେ । ହତ୍ୟାପରେ ସେ ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହେବା ପରେ ପରେ ବିଦ୍ରୋହର ତାଣ୍ଡବ ଲୀଳା ଖେଳି ଯାଇଥିଲା ଆଗ୍ରା, ଝାନ୍‌ସୀ, ଦିଲ୍ଲୀ, ମିରଟ, ଲକ୍ଷ୍ନୌ ଏବଂ ବରେଲି ଇତ୍ୟାଦି ଭାରତ ବର୍ଷର ବହୁ ସ୍ଥାନରେ । ଫଳରେ ବହୁ ସ୍ଥାନରେ ବହୁ ୟୁରୋପୀୟ ମାନଙ୍କୁ ହତ୍ୟା କରାଗଲା । ସମଗ୍ର ଭାରତ ବର୍ଷରେ ଏକ ତାଣ୍ଡବର ଛାୟା ଦେଖା ଦେଲା । ସେହି ସମୟରେ କାନପୁରର ନାନା ସାହେବ, ଝାନ୍‌ସୀ ଠାରେ ରାଣୀ ଲକ୍ଷ୍ମୀବାଈ, ବିହାରର ଆରାଠାରେ କୁନ୍‌ୱାର ସିଂହ ବିଦ୍ରୋହର ନେତୃତ୍ୱ ନେଇଥିଲେ । ବିଦ୍ରୋହର ଅଗ୍ର ଭାଗରେ ଥିଲେ ନାନା ସାହେବ ଏବଂ ତାଙ୍କ ମନ୍ତ୍ରୀ ତାନ୍ତିଆ ଟୋପି । ମୁସଲମାନ ମାନଙ୍କ ମଧ୍ୟରେ ଥିଲେ ଆଜିମୁଲ୍ଲା ଖାଁ ଏବଂ ଅହମ୍ମଦ ସାହା । ଝାନ୍‌ସୀର ରାଣୀ ଲକ୍ଷ୍ମୀବାଇ ଭାରତ ଇତିହାସରେ ଜଣେ ନାରୀ ନେତ୍ରୀଭାବେ ଚିର ବନ୍ଦନୀୟା । ସେ ଅପୂର୍ବ ବୀରତ୍ୱ ପ୍ରଦର୍ଶନ କରି ମଧ୍ୟ ଶେଷରେ ନିହତ ହେଲେ । ଅନେକ ଫାଶୀ ମଧ୍ୟ ପାଇଲେ । ଏହି ସମୟରେ ବଙ୍ଗ ରେଜିମେଣ୍ଟରୁ ଏହି ବିଦ୍ରୋହାଗ୍ନି ପ୍ରଜ୍ୱଳିତ ହୋଇ ଥିବାରୁ ବଙ୍ଗ ରେଜିମେଣ୍ଟ ଉପରୁ ଭରସା ତୁଟାଇ ପଞ୍ଜାବରେ ଏକ ନୂତନ ଶିଖ୍ ରେଜିମେଣ୍ଟ ଗଠନ କରି ତାରି ସହାୟତାରେ ଏହି ଜାତୀୟ ବିଦ୍ରୋହକୁ ଦମନ କରିଥିଲେ । ଫଳରେ ୧୮୫୭ର ସେହି ମହାନ୍ ଜାତୀୟ ବିପ୍ଳବର ମହାନ୍ ଦୁଃଖ ଦାୟକ ଭାବେ ପରିସମାପ୍ତି ଘଟିଥିଲା ।

## ବିଦ୍ରୋହର ଫଳାଫଳ

ସିପାହି ବିଦ୍ରୋହର ଫଳାଫଳ ଯେ କେତେ ଭୟାବହ ଥିଲା, କେତେ ହୃଦୟ ବିଦାରକ ଥିଲା ତାହାହିଁ ଜାତିର ଚିନ୍ତା ନାୟକ ମାନେହିଁ ଉପଲବ୍ଧି କରି ପାରିବେ । କେତେ ଫାଶୀ ପାଇଲେ, କେତେ ବନ୍ଧୁକ ମୂନରେ ପ୍ରାଣ ହରାଇଲେ, କେତେଯେ ବିଶ୍ୱାସ ଘାତକତାର କୁପରିଣାମ ଭୋଗିଲେ । ଇଂରେଜ ସରକାରଙ୍କର ପ୍ରଲୋଭନରେ ପ୍ରଲୋଭିତ ହୋଇ ମଧ୍ୟ କୁପରିଣାମ ଭୋଗିଲେ ତାର ହିସାବ କିଏ କହିବ ? ସେ ଯାହା ହେଉନା କାହିଁକି ଏହି ବିଦ୍ରୋହ ଫଳରେ ଭାରତୀୟ ମାନଙ୍କ ମନରେ ଏକ ଚିନ୍ତା ଓ ଚେତନାର ଅଭ୍ୟୁଦୟ ଘଟିଥିଲା । ୧୮୫୮ ସମିହାରେ ଏକ ନୂତନ ଆଇନର ପ୍ରଣୟନ କରାଗଲା । ତାହାଥିଲା

'ଭାରତ ଶାସନ ଆଇନ' । ଏହି ଆଇନ ଫଳରେ ଭବିଷ୍ୟତରେ ଇଂଲଣ୍ଡ ରାଣୀଙ୍କ ନାମରେ ଏବଂ ରାଣୀଙ୍କ ଦ୍ୱାରା ଭାରତ ଶାସିତ ହେବ । ଇଷ୍ଟଇଣ୍ଡିଆ କମ୍ପାନୀ ହାତରୁ ସମସ୍ତ ଶାସନ ଭାର କାଢ଼ି ନିଆଯାଇ ବ୍ରିଟିଶ ସରକାରଙ୍କ ହାତରେ ରହିବ । ଭାରତର ଶାସନ ପାଇଁ ସ୍ୱତନ୍ତ୍ର ସଚିବ ନିଯୁକ୍ତି ହେବେ । ତାଙ୍କୁ ଶାସନ କ୍ଷେତ୍ରରେ ସାହାଯ୍ୟ କରିବା ପାଇଁ ଗୋଟିଏ ଶାସନ ପରିଷଦ ରହିବ । ଭାରତର ରାଜସ୍ୱ ଭାରତର ଉନ୍ନତି କଳ୍ପେ ବ୍ୟୟିତ ହେବ । ଇଂଲଣ୍ଡର ରାଜାଙ୍କ ଦ୍ୱାରା ଭାରତର ଗଭର୍ଣ୍ଣର ଜେନେରାଲ, ଭାଇସ୍‌ରାୟ ଏବଂ ପ୍ରଦେଶ ଗୁଡ଼ିକର ଗଭର୍ଣ୍ଣରମାନେ ନିଯୁକ୍ତି ପାଇବେ । ଭାରତ ସରକାରଙ୍କ ସମସ୍ତ ଦାୟିତ୍ୱ ଇଂଲଣ୍ଡ ସରକାରଙ୍କ ଉପରେ ନ୍ୟସ୍ତ ରହିବ । ଭାରତ ବର୍ଷରେ ଇଷ୍ଟଇଣ୍ଡିଆ କମ୍ପାନୀର ୧୦୦ ବର୍ଷର ଶାସନର ପରିସମାପ୍ତି ଘଟାଇ ଏକ ନୂତନ ଯୁଗର ସୂତ୍ରପାତ ହେଲା ।

ଏହି ସବୁ ପରିବର୍ତ୍ତନକୁ ଏକ ଲିଖିତ ଆକାରରେ ଘୋଷଣା କରାଗଲା । ଯାହାକୁ କୁହାଯାଏ 'ମହାରାଣୀ ଭିକ୍ଟୋରିଆଙ୍କ ଘୋଷଣା ପତ୍ର' । ଲର୍ଡ଼ କ୍ୟାନିଂ ଏହି ଘୋଷଣା ପତ୍ରକୁ ୧୮୫୮ ସମିହା ନଭେମ୍ବର ୫ ତାରିଖ ଦିନ ଏହ୍ଲାବାଦ ଠାରେ ଏକ ଦରବାରରେ ପାଠ କରିଥିଲେ । ଭାରତର ଗୁରୁତ୍ୱ ପୂର୍ଣ୍ଣ ସ୍ଥାନ ମାନଙ୍କରେ ମଧ୍ୟ ଇଂରାଜୀ ଏବଂ ଆଞ୍ଚଳିକ ଭାଷା ମାଧ୍ୟମରେ ଏହି ଘୋଷଣାଟି ପାଠକରି ଶୁଣାଇ ଦିଆଯାଇଥିଲା । ଏହି ଘୋଷଣା ନାମାରେ ଆଉ ଏକ ଗୁରୁତ୍ୱ ପୂର୍ଣ୍ଣ ବିଷୟ ରହିଥିଲା ଯେ, ଦେଶୀୟ ରାଜାମାନଙ୍କ ସହିତ ଯେଉଁ ସନ୍ଧି ଚୁକ୍ତି ହୋଇଥିଲା ତାକୁ ସମ୍ପୂର୍ଣ୍ଣ ରୂପେ ପାଳନ କରାଯିବ ଏବଂ ସେମାନେ ପୁନଶ୍ଚ ପୋଷ୍ୟପୁତ୍ର ଗ୍ରହଣ କରି ପାରିବେ । କାହାରି ଧର୍ମ ଉପରେ ହସ୍ତକ୍ଷେପ କରାଯିବ ନାହିଁ । ନିଜ ନିଜର ଧର୍ମ ଭିତ୍ତିରେ ସମସ୍ତେ ଈଶ୍ୱର ଉପାସନା କରି ପାରିବେ । ବ୍ରିଟିଶ ସରକାର ସହିତ ଭାରତୀୟ ଜନସାଧାରଣଙ୍କ ସମ୍ବନ୍ଧ ଉତ୍ତମ ଭାବରେ ରହିବ । ଏହା ଘୋଷଣା ନାମାରେ ବିସ୍ତୃତଭାବରେ ବର୍ଣ୍ଣନା କରାଯାଇ ଥିଲା । କିନ୍ତୁ ଶେଷରେ ଭାରତୀୟ ମାନେ ଉପଲବ୍ଧି କରିଥିଲେ ଯେ, ଏହି ଘୋଷଣା ନାମା କେବଳ ଭାରତୀୟ ମାନଙ୍କୁ ଆକୃଷ୍ଟ କରିବା ପାଇଁ ଥିଲା, କାମ ପାଇଁ ନଥିଲା । ପଲ୍ଲାସୀ ଯୁଦ୍ଧ ଏବଂ ସିପାହି ବିଦ୍ରୋହ ବଂଗ ଭୂମିରୁ ଆରମ୍ଭ ହୋଇଥିବାରୁ ବ୍ରିଟିଶ ସରକାର ବଙ୍ଗଭୂମି ଉପରେ ବିଶ୍ୱାସ ହରେଇ ବସିଲେ । ଫଳରେ ସୈନ୍ୟ ବାହିନୀରେ ବଙ୍ଗୀୟ ରେଜିମେଣ୍ଟକୁ ଭାଙ୍ଗି ଦିଆଯାଇ ଶିଖ୍, ଜାଠ, ପଞ୍ଜାବୀ, ମୁସଲମାନ ଏବଂ ଗୁର୍ଖା ଆଦି ନୂତନ ରେଜିମେଣ୍ଟ ଗଠନ କରାଯାଇଥିଲା ।

ବ୍ରିଟିଶ ସରକାର ଭାରତର ଶାସନ ଭାର ନେଲା ପରେ ପରେ କିଛି ଗଠନ ମୂଳକ କାର୍ଯ୍ୟକଳାପ ପାଇଁ ଉଦ୍ୟମ କରିବା ସଙ୍ଗେ ସଙ୍ଗେ କିଛି କାର୍ଯ୍ୟରେ ସଂସ୍କାର ଆଣିବା ପାଇଁ ଉଦ୍ୟମ କରିଥିଲେ । ସିପାହି ବିଦ୍ରୋହ ପରେ ପରେ ଇଷ୍ଟଇଣ୍ଡିଆ କମ୍ପାନୀ ହାତରୁ ଶାସନ ଭାର ଚାଲିଯିବା ପରେ ସେମାନଙ୍କର ଅର୍ଥନୈତିକ ପରିସ୍ଥିତିରେ ସଙ୍କଟ ଦେଖା ଦେଇ ଥିଲା । ସେହି ଅର୍ଥ ନୈତିକ ସଙ୍କଟରୁ ଉଦ୍ଧାର ପାଇବା ପାଇଁ ବାଣିଜ୍ୟ କ୍ଷେତ୍ରରେ ଶୁଳ୍କ ହାର ବୃଦ୍ଧି କରାଯାଇଥିଲା । ବିଭିନ୍ନ ପ୍ରକାର ବ୍ୟବସାୟ ଉପରେ ପଞ୍ଜିକରଣକୁ ବାଧ୍ୟତା ମୂଳକ କରାଯାଇ ଅଧିକ ମାତ୍ରାରେ କର ଆଦାୟ କରା ଯାଉଥିଲା । ପ୍ରତ୍ୟେକ ପ୍ରଦେଶରେ ଗୋଟିଏ ଲେଖାଏଁ ଶିକ୍ଷା ବିଭାଗ ଗଠନ କରାଯାଇଥିଲା । ପ୍ରାଥମିକ ଶିକ୍ଷାର ପ୍ରସାର ପାଇଁ ସଂପୂର୍ଣ ରୂପେ ପଦକ୍ଷେପ ନିଆଯାଇ ଡାଇରେକ୍ଟର ଓ ପରିଦର୍ଶନକାରୀ ମାନଙ୍କୁ ନିଯୁକ୍ତି ଦିଆଯାଇଥିଲା । ବଳକା ରାଜସ୍ୱକୁ ଶିକ୍ଷାର ଉନ୍ନତି ନିମନ୍ତେ ବ୍ୟୟ କରାଯାଉଥିଲା । ଆଇନ ଶୃଙ୍ଖଳା ପରିସ୍ଥିତିକୁ ସୁଦୃଢ କରିବା ପାଇଁ ଶାସନ ବିଭାଗ ଗୁଡ଼ିକ ଉପରେ ସଂସ୍କାର ଅଣାଯାଇଥିଲା । ୧୮୬୧ ସମିହାରେ ସୁପ୍ରିମକୋଟ ପରିବର୍ତ୍ତେ ହାଇକୋଟ ଆଇନ ଗୃହୀତ ହୋଇ ବମ୍ବେ, ମାନ୍ଦ୍ରାଜ ଓ କଲିକତା ଠାରେ ଗୋଟିଏ ଲେଖାଁଏ ହାଇକୋଟ ପ୍ରତିଷ୍ଠା କରାଯାଇ ଥିଲା । ସେହିପରି ପୋଲିସ ଆଇନରେ ସଂସ୍କାର ଆଣି ପ୍ରତି ପ୍ରଦେଶରେ ଜଣେ ଇନ୍‌ସପେକ୍ଟର ଜେନେରାଲଙ୍କ ଅଧକ୍ଷତାରେ ଗୋଟିଏ ଲେଖାଏଁ ପୋଲିସ ବିଭାଗ ସୃଷ୍ଟି ହୋଇଥିଲା । ତାଙ୍କୁ ସାହାଯ୍ୟ କରିବା ପାଇଁ ତାଙ୍କ ତଳେ ଜଣେ ଲେଖାଏଁ ଡ଼େପୁଟି ଇନ୍‌ସପେକ୍ଟର ଜେନେରାଲ ନିଯୁକ୍ତି ପାଉଥିଲେ । ଏହା ଛଡା ପ୍ରତ୍ୟେକ ଜିଲ୍ଲାରେ ଜଣେ ଲେଖାଏଁ ପୋଲିସ୍ ସୁପରିଟେଣ୍ଡେଣ୍ଟ ନିଯୁକ୍ତି ହୋଇଥିଲେ । କିନ୍ତୁ ଏ ସମସ୍ତ କର୍ମଚାରୀ ଥିଲେ ୟୁରୋପୀୟ । ତେଣୁ ଶାସନର ନ୍ୟାୟ ଅନ୍ୟାୟ ଭଲମନ୍ଦ ପ୍ରଜା ପାଳନ ଏବଂ ପ୍ରଜା ପୀଡ଼ିନ ସବୁ ସେମାନଙ୍କ ଉପରେ ନିର୍ଭର କରୁଥିଲା । ବ୍ରିଟିଶ ସରକାର ହେଲେ ଭାରତୀୟ ରାଜା ମହାରାଜା ମାନଙ୍କ ଠାରୁ ଆରମ୍ଭ କରି ସାଧାରଣ ଜନତା ପର୍ଯ୍ୟନ୍ତ ସମସ୍ତଙ୍କର ଭାଗ୍ୟ ବିଧାତା ।

ଏହି ସିପାହି ବିଦ୍ରୋହ ଉପରେ ଆମେ ସମ୍ୟକ ଭାବରେ ଆଲୋଚନା କଲେ । ଏହାର ପରିବେଶ ପରିସ୍ଥିତି ସାଧାରଣ ଉନ୍ମାଦନା, ଅର୍ଥନୈତିକ, ରାଜନୈତିକ ବାତାବରଣ ଏବଂ ଏହି ମହାନ ବିପ୍ଳବର ଦମନ ଉପରେ ଇଂରେଜ ସରକାରଙ୍କର ପ୍ରଣୋଦିତ କୌଷଳ ଇତ୍ୟାଦି ଯାହା ହେଉନା କାହିଁକି ପରିଶେଷରେ ସିପାହି ବିଦ୍ରୋହ ଆମର ଲକ୍ଷ ହାସଲ କରି ପାରି ନଥିଲା । ଆମର ଲକ୍ଷ୍ୟ ହାସଲ କରି ନପାରେ, ଆମର ଧନ ଜୀବନ ଆମେ ଜାତି ପାଇଁ ଉତ୍ସର୍ଗ କରି ଥାଇ ପାରୁ, କିନ୍ତୁ ଭାରତ ଇତିହାସ ଯଦିଓ ହାରିବା ଜିତିବା ଉପରେ

ନିରବ ରହିଛି କିନ୍ତୁ ଆମେ ସମ୍ମତି ପ୍ରଦାନ କରି ପାରିବା ନାହିଁ ଯେ, 'ଆମେ ସିପାହି ବିଦ୍ରୋହରେ ହାରି ଯାଇଛୁ' । ଆମର ପରାଜୟ ହୋଇନି କାରଣ ସେଥିରୁ ଭାରତୀୟ ମାନଙ୍କୁ ଯେଉଁ ମହାନ୍ ଜାତୀୟତାର ଶିକ୍ଷା ମିଳିଥିଲା ତାହା ହିଁ ଆମର ପ୍ରକୃତ ଜୟ । ଆମେ ଏଥିରୁ ଯେଉଁ ଜାତୀୟ ଚେତନା ପାଇଲୁ ଆମେ ଶିକ୍ଷା ଲାଭ କଲୁ ଯେ, ସ୍ୱାଧୀନତା ହାସଲ କରିବା ନିମନ୍ତେ ଏକ ସଂଗଠିତ ଯୁଦ୍ଧର ଆବଶ୍ୟକତା ଥିଲା । ଦ୍ୱିତୀୟ ସଂଗ୍ରାମ ପାଇଁ ଏହାଥିଲା ସଫଳତାର ପ୍ରଥମ ପାହାଚ । ସ୍ୱାଧୀନତା ସଂଗ୍ରାମ ରୂପକ ନାଟକର ଏହା ଥିଲା ପୂର୍ବଭାଗ । ପରାଧୀନତାର ଘନ ଅନ୍ଧକାର ଭିତରେ ପରବର୍ତ୍ତି ପିଢିଙ୍କୁ ପଥ ପ୍ରଦର୍ଶିତ କରିବା ପାଇଁ ଦେଶ ଓ ଜାତି ପାଇଁ ଆତ୍ମୋତ୍ସର୍ଗ କରିଥିବା ଶହୀଦ ମାନଙ୍କର ଏହା ଥିଲା ଆଲୋକ ବର୍ତ୍ତିକା । ମଙ୍ଗଳ ପାଣ୍ଡେଙ୍କର ପ୍ରଥମ ବଂଧୁକର ଶବ୍ଦ ଠାରୁ ନାଥୁରାମ ଗଡ଼ସେଙ୍କର ଶେଷ ବନ୍ଧୁକର ଶବ୍ଦ 'ହେ ରାମ' ପର୍ଯ୍ୟନ୍ତ ଘଟଣା ବଳୀକୁ ଭାରତର ଇତିହାସ ପୃଷ୍ଠାରୁ କେହିହେଲେ ଲିଭାଇ ପାରିବେ ନାହିଁ । ଆଜିର ବସ୍ତୁବାଦୀ ଯୁବ ସମାଜ ହୃଦୟରେ ସେହି ଐତିହାସିକ ଚେତନାର ଅଫୁରନ୍ତ ଉଚ୍ଛ୍ୱାସ କାହିଁକି ଯେ ଯାଗ୍ରତ ହୁଏନି ତାକୁ ଅନୁଭବ କରିବା ଏକ ଦୂରହ ବ୍ୟାପାର, ଯାଣିବା କଷ୍ଟକର ମଧ୍ୟ ।

## ଭାରତରେ ଜାତୀୟ ଚେତନା ଓ ତାର ବିକାଶ

ସମଗ୍ର ବିଶ୍ୱରେ ଭାରତ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ତାର ଇତିହାସ, ତାର ଭୌଗଳିକ ସ୍ଥିତି, ତାର ସାହିତ୍ୟ, ତାର ସଂସ୍କୃତି ଏବଂ ତାର କଳା ସମଗ୍ର ବିଶ୍ୱ ବିଦିତ । ଏଥିରେ ଆକୃଷ୍ଟ ହୋଇ ଆମେ ବହୁ ବୈଦେଶୀକ ଆକ୍ରମଣର ଶୀକାର ହୋଇଛୁ ତାର ଇୟତା ନାହିଁ । ସେହି ଆକ୍ରମଣକାରୀ ମାନଙ୍କ ମଧ୍ୟରେ ଥିଲେ ମୋଗଲ, ଆରବିକ, ଗ୍ରୀକ୍ ଏବଂ ତୁର୍କି ମାନଙ୍କର ନାମ ଉଲ୍ଲେଖ ଯୋଗ୍ୟ । ଏହିପରି ଅନେକ ଜାତି ବାଣିଜ୍ୟ ବ୍ୟବସାୟ ପାଇଁ ଭାରତରେ ପଦାର୍ପଣ କରିଥିଲେ । କିନ୍ତୁ ସମସ୍ତେ ଯେ ଆକ୍ରମଣକାରୀ ଥିଲେ ତାହା ନୁହେଁ । ସେମାନେ ବ୍ୟବସାୟୀ ହୁଅନ୍ତୁ କିମ୍ବା ଲୁଣ୍ଠନକାରୀ ହୁଅନ୍ତୁ ସେମାନେ ସମସ୍ତେ ଭାରତର ମହାନ୍ ସଂସ୍କୃତି ନିକଟରେ ନିଜ ନିଜର ସତ୍ତା ହରାଇ ବସିଥିଲେ । କିନ୍ତୁ ପରିବେଶ ଓ ପରିସ୍ଥିତିକୁ ନେଇ ଇଂରେଜ ମାନଙ୍କ ବ୍ୟତୀତ ଅନ୍ୟ ଜାତିମାନେ ଭାରତରୁ ଅପସରି ଯାଇଥିଲେ । ଅନ୍ୟମାନେ ଅପସରି ଯିବା ପରେ ଇଂରେଜ ମାନେ ଏଠାରେ ତାଙ୍କ ସ୍ଥିତି ଦୃଢକରି ସୁଦୂର ଇଂଲଣ୍ଡରୁ ଭାରତକୁ ନିୟନ୍ତ୍ରଣ କଲେ ଏବଂ ଆମେ ଆମର ସ୍ୱାଧୀନତା ହରେଇ ବସିଲୁ । ଏହି ଉତ୍ଥାନ ପତନ ଭିତରେ ଊନବିଂଶ ଶତାବ୍ଦୀର ଶେଷ ଦଶକରେ

ଭାରତୀୟମାନଙ୍କ ହୃଦୟରେ ସ୍ଥାନ ପାଇଥିଲା ସ୍ୱଦେଶ ଚିନ୍ତା, ସ୍ୱଦେଶାନୁରାଗ, ନିଜ ସଂସ୍କୃତି ପ୍ରତି ସାଂସ୍କୃତିକ ପିପାସା, ବିଦେଶୀ ଶାସନ ଶୃଙ୍ଖଳରୁ ମୁକ୍ତି ପାଇବାର ବାସନା । ଭାରତୀୟ ମାନଙ୍କ ମନରେ ଥିବା ପରାଧୀନତାର ଆବେଗକୁ ସେମାନେ ପରିପ୍ରକାଶ କରିବାକୁ ଚାହିଁଲେ । ଫଳରେ ସୃଷ୍ଟିହେଲା ଏକ ସମୂହ ଚେତନା ଯାହାକୁ କୁହାଗଲା ଭାରତୀୟ ଜାତୀୟ ଚେତନା । ଏହି ପରିପ୍ରେକ୍ଷୀରେ ପ୍ରତିଷ୍ଠା କରାଗଲା ଜାତୀୟ କଂଗ୍ରେସ । ଏହି ଜାତୀୟ ଆନ୍ଦୋଳନର ପ୍ରଥମ ସାହାନାଇ ବାଜି ଉଠିଥିଲା ୧୮୮୫ ଖ୍ରୀଷ୍ଟାବ୍ଦରେ । ଇଂଲଣ୍ଡରୁ ସିଧା ସଳଖ ଭାରତ ଶାସିତ ହେଉଥିଲେ ମଧ୍ୟ ଭାରତୀୟ ମାନଙ୍କ ମଧ୍ୟରେ ଏକ ଜାତୀୟ ଏକତା ସୃଷ୍ଟି ହୋଇ ପାରିଥିଲା । ସେ ସମୟରେ ଭାରତର ଶହଶହ ଖଣ୍ଡ ରାଜ୍ୟ ଗୋଟିଏ ପରିବାରରେ ପରିଣତ ହୋଇଥିଲା । ରାଜ୍ୟ ରାଜ୍ୟ ମଧ୍ୟରେ ଥିବା ଅନ୍ତଃ ଦ୍ୱନ୍ଦ୍ୱକୁ ଭୁଲିଯାଇ ଆମେ ସମସ୍ତେ ଭାରତବାସୀ ଏବଂ ଆମେ ଭାରତ ମା'ର ସନ୍ତାନ । ଆମେ ହେଉଛୁ ଭାରତୀୟ ଗୋଟିଏ ଜାତି । ଏ ଜାତି ଭିତରେ ହିନ୍ଦୁ, ମୁସଲମାନ, ରାଜା ପ୍ରଜା, ଧନୀ ଦରିଦ୍ର, ଗୁଜୁରାଟି, ମରାଠୀ କୌଣସି ପ୍ରଭେଦ ରହିଲା ନାହିଁ । ଫଳରେ ଭାରତୀୟଙ୍କ ମଧ୍ୟରେ ଐକ୍ୟ ଭାବ ସୃଷ୍ଟି ହୋଇଥିଲା ଏବଂ ଜାତୀୟ ଚେତନାର ବିକାଶ ମଧ୍ୟ ଘଟିଥିଲା ।

ଏହି ଜାତୀୟ ଚେତନାର ମୂଳରେ ଏକତ୍ୱ ଭାବ, ସମନ୍ୱୟର ପରିବେଶ ଓ ପରିସ୍ଥିତି ମଧ୍ୟ ବହୁ ପରିମାଣରେ ଏହି ଏକତ୍ୱ ଭାବକୁ ଖୋରାକ ଯୋଗାଇ ଥିଲା । ସେ ସମୟରେ ଗମନା ଗମନର ବହୁ ସୁବିଧା ହୋଇ ଯାଇଥିଲା । ଯାନବାହନର ବ୍ୟବସ୍ଥା, ରେଳଗାଡ଼ିର ପ୍ରଚଳନ ଫଳରେ ଦୂରତ୍ୱର ହ୍ରାସ ପାଇବା ସଙ୍ଗେ ସଙ୍ଗେ ବିଭିନ୍ନ ପ୍ରକାର ଲୋକଙ୍କ ମଧ୍ୟରେ ମିଳନ, ଆପୋଷ ଆଲୋଚନା ମଧ୍ୟ ସମ୍ଭବ ହୋଇ ପାରିଲା । ଡାକ ଏବଂ ତାରର ବହୁଳ ପ୍ରଚଳନ ଫଳରେ ସମ୍ବାଦ ସରବରାହ ର ଅଧିକ ସୁଯୋଗ ମିଳିଥିଲା । ବେତାର ଯନ୍ତ୍ର ମାଧ୍ୟମରେ ବହୁ ଦୂର ଦୂରାନ୍ତର ସମ୍ବାଦ ନିମିଷକ ମଧ୍ୟରେ ପାଇ ପାରୁଥିଲେ । ଫଳରେ ବିଭିନ୍ନ ସଂସ୍କୃତି, ଭାଷା ଏବଂ ଭାବର ଆଦାନ ପ୍ରଦାନ ହୋଇ ପାରିଲା । ତେଣୁ ସମସ୍ତଙ୍କ ହୃଦୟରୁ ସଂକୀର୍ଣ୍ଣତା ର ଚିନ୍ତାଧାରା ଦୂରେଇ ଯାଇ ଏକ ଜାତୀୟ ମନୋଭାବର ଅଙ୍କୁରୋଦ୍‌ଗମ ହୋଇଥିଲା ଭାରତୀୟ ଜାତୀୟ ଜୀବନରେ ।

ଏହା ଉପରେ ତତ୍‌କାଳୀନ ଶିକ୍ଷା ପ୍ରଣାଳୀର ଭୂମିକା ଥିଲା ଅତୀବ ଗୁରୁତ୍ୱ ପୂର୍ଣ୍ଣ । ଇଂରେଜୀ ଶିକ୍ଷାର ବହୁଳ ପ୍ରଚଳନ ଫଳରେ ଇଂରେଜୀ କହିବା ଏବଂ ପଢିବା ଏକ ସାଧାରଣରେ ପରିଣତ ହୋଇ ଥିଲା । ତେଣୁ ଭାରତୀୟମାନେ ପାଶ୍ଚାତ୍ୟ ଲେଖା ଗୁଡ଼ିକ

ପଢ଼ିବା ପାଇଁ ସୁଯୋଗ ପାଇଥିଲେ । ବିଶ୍ୱ ଇତିହାସ ବୈପ୍ଳବିକ ଗନ୍ତାଘର, ପ୍ରେରଣାର ଅସରନ୍ତି ଉତ୍ସ ରୂପେ ପରିଚିତ ଆମେରିକାର ସ୍ୱାଧିନତା ସଂଗ୍ରାମ, ଫରାସୀ ବିପ୍ଳବ ଓ ଇଟାଲୀୟ ସ୍ୱାଧୀନତା ସଂଗ୍ରାମ ଓ ଶିଖ ଆଦି ପାଶ୍ଚାତ୍ୟ ଦେଶ ଗୁଡ଼ିକର ଲୋମ ହର୍ଷଣ କାହାଣୀ ଆଦି ପାଠ କରି ଭାରତୀୟ ମାନେ ଅନୁପ୍ରାଣିତ ହେବା ସଙ୍ଗେ ସଙ୍ଗେ ସେମାନଙ୍କ ଜାତୀୟତା ଭାବକୁ ପରସ୍ପର ମଧ୍ୟରେ ସୁଦୃଢ଼ କରୁଥିଲେ । ସାମ୍ୟ ମୁକ୍ତି ଓ ଭାତୃତ୍ୱ ଆଦି ମୌଳିକ ଚିନ୍ତାଧାରାର ପ୍ରେରଣାରେ ନିଜକୁ ଭରି ଦେଇଥିଲେ । ୟୁରୋପୀୟ ଇତିହାସ, ଦର୍ଶନ, ସାହିତ୍ୟ ଇତ୍ୟାଦିକୁ ଭାରତୀୟ ମାନେ ଯେତିକି ଅଧିକ ପଠନ କରୁଥିଲେ ଏମାନଙ୍କ ହୃଦୟରେ ସେତିକି ଜାତୀୟ ଏକତା ଏବଂ ଜାତୀୟ ମନୋଭାବ ସେତିକି ବୃଦ୍ଧି ପାଉଥିଲା ଏବଂ ସ୍ୱାଧୀନତା ହାସଲ କରିବାର ଜିଜ୍ଞାସା ସେତିକି ବଳବତ୍ତର ହୋଇ ଉଠୁଥିଲା । ୟୁରୋପୀୟ ସାହିତ୍ୟକୁ ଅନୁକରଣ କରି ଭାରତୀୟ ସ୍ୱଦେଶୀ ସାହିତ୍ୟ ଏବଂ ସମ୍ବାଦ ପତ୍ର ଜନ୍ମ ନେଇଥିଲା । ଏହି ସମ୍ବାଦ ପତ୍ର ମାଧ୍ୟମରେ ଜାତୀୟ ଜାଗରଣକୁ ତୀବ୍ରତର କରାଯାଇ ପାରିଥିଲା । ଭାରତୀୟ ସମ୍ବାଦ ପତ୍ରର ଜନ୍ମଦାତା ଥିଲେ ରାଜା ରାମ ମୋହନ ରାୟ । ତାଙ୍କର ପ୍ରଥମ ସାପ୍ତାହିକ ସମ୍ବାଦ ପତ୍ର ଥିଲା 'ସମ୍ବାଦ କୈମୁଦୀ' ଏହା ପରେ ପରେ ପ୍ରକାଶିତ ହୋଇଥିଲା 'ବମ୍ବେ ସମାଚାର', 'ବଂଗ ଦୂତ, 'ବଙ୍ଗ ଦର୍ଶନ', 'କେଶରୀ', 'ଅମୃତ ବଜାର ପତ୍ରିକା, ନିୟୁ ଇଣ୍ଡିଆ' ଇତ୍ୟାଦି । ଏହି ସମ୍ବାଦ ପତ୍ର ମାଧ୍ୟମରେ ଭାରତୀୟମାନେ ନିଜର ଅଭାବ ଅସୁବିଧାକୁ ଦର୍ଶାଇବା ପାଇଁ ସୁଯୋଗ ପାଇପାରିଥିଲେ । ଇଂରେଜ ସରକାରଙ୍କର ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସ୍ୱରଉତ୍ତୋଳନ କରି ସମ୍ବାଦ ପତ୍ର ମାଧ୍ୟମରେ ପ୍ରକାଶ କରି ପାରୁଥିଲେ । ଫଳରେ ଗୋଟିଏ ଅଞ୍ଚଳର ଭାବଧାରାକୁ ଅନ୍ୟ ଅଞ୍ଚଳରେ ଥିବା ଲୋକମାନେ ଜାଣି ପାରୁଥିଲେ । ଫଳରେ ଏକତାର ସ୍ୱର ପରିପ୍ରକାଶ ହୋଇ ପାରୁଥିଲା । ସେହିପରି ସ୍ୱଦେଶୀ ସାହିତ୍ୟର ଅବଦାନ ମଧ୍ୟ କୌଣସି ଗୁଣରେ କମ ନଥିଲା । ବଙ୍କିମ ଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କର ଉପନ୍ୟାସ 'ଆନନ୍ଦ ମଠ' ଏବଂ ତାଙ୍କ କବିତା 'ବନ୍ଦେ ମାତରଂ' ଅଦ୍ୟାବଧିବି ଜନଗଣ ମନରେ ଅଲିଭା ହୋଇ ରହିଛି । ଆଉ ମଧ୍ୟ କେତେକ ଲେଖକ ବଙ୍ଗ ଭୂମିରେ ସାହିତ୍ୟ ସୃଷ୍ଟିକରି ତାଙ୍କ ଲେଖନୀ ମାଧ୍ୟମରେ ଭାରତୀୟ ମାନଙ୍କର ସ୍ୱାଧୀନ ଚିନ୍ତା ଓ ଚେତନାକୁ ଉନ୍ନତ କରି ପାରିଥିଲେ । ସେମାନଙ୍କ ମଧ୍ୟରେ ରବିନ୍ଦ୍ର ନାଥ ଠାକୁର, କେଶବ ଚନ୍ଦ୍ର ସେନ୍ ଏବଂ ଇଶ୍ୱର ଚନ୍ଦ୍ର ବିଦ୍ୟାସାଗର ଇତ୍ୟାଦି ଅଦ୍ୟାବଧି ପ୍ରାତଃ ସ୍ମରଣୀୟ ।

ଭାରତୀୟମାନେ ଇଂରେଜୀ ଭାଷାର ଅଧିକାରୀ ହେଲା ପରେ ପରେ ୟୁରୋପୀୟ ସାହିତ୍ୟ ଇତିହାସ ତାଙ୍କାରେ ଆମ ଦେଶରେ ସାହିତ୍ୟ ଏବଂ ଇତିହାସ ସୃଷ୍ଟି ହେବା ସଙ୍ଗେ ସଙ୍ଗେ ଭାରତୀୟ ଧର୍ମ ଏବଂ ଦର୍ଶନ ଉପରେ ମଧ୍ୟ କିଛି ପ୍ରଭାବ ପଡିଥିଲା । ଫଳରେ ଆମର ଧର୍ମ ଦର୍ଶନ ଉପରେ କିଛି ସଂସ୍କାର ମଧ୍ୟ ଆସିଥିଲା । ଏହି ଭାରତୀୟ ବୌଦ୍ଧିକ ଆକାଶରେ କେତେଜଣ ଧର୍ମ ସଂସ୍କାରକଙ୍କ ଅବିର୍ଭୁତ ହୋଇଥିଲେ । ସେମାନେ ଭାରତୀୟ ମାନଙ୍କୁ ସେମାନଙ୍କର ପ୍ରାକ୍ ଐତିହ୍ୟ ଓ ପରମ୍ପରା ବିଷୟରେ ଅବଗତ କରାଇ ସେମାନଙ୍କ ମନରେ ଆତ୍ମ ବିଶ୍ଳେଷଣର ଭାବଧାରା ସଂଚାର କରାଇଥିଲେ । ସେହି ମହାନ୍ ମନୀଷୀଙ୍କ ମଧ୍ୟରେ ଥିଲେ ବ୍ରାହ୍ମ ସମାଜର ପ୍ରତିଷ୍ଠାତା ରାଜା ରାମମୋହନ ରାୟ ଓ ଆର୍ଯ୍ୟସମାଜର ପ୍ରତିତାଷ୍ଠା ଦୟାନନ୍ଦ ସରସ୍ୱତୀ । ଭାରତର ପୂର୍ବ ଗୌରବକୁ ଲେଖା ଓ ଭାଷଣ ମାଧ୍ୟମରେ ଜନସାଧାରଣଙ୍କ ମନରେ ପ୍ରେରଣା ଯୋଗାଇ ଆମର ହତ ଗୌରବ ଏବଂ ଗତ ଗୌରବକୁ କିପରି ଫେରି ପାଇବା ସେଥିପାଇଁ ଦେଶବାସୀଙ୍କୁ ଉତ୍ସାହିତ କରୁଥିଲେ ଏବଂ ଭାରତୀୟ ଆନ୍ଦୋଳନରେ ଏହା ଆନ୍ଦୋଳନକାରୀଙ୍କୁ ପ୍ରେରଣା ଯୋଗାଉଥିଲା । ଏହି ସଂସ୍କାର ଆନ୍ଦୋଳନ ପଛରେ ଥିଲେ ରାମକୃଷ୍ଣ ପରମହଂସ ଏବଂ ବିବେକା ନନ୍ଦ । ଏହିପରି ଜନସାଧାରଣଙ୍କ ମନରେ ଜାତୀୟ ଚେତନା ସୃଷ୍ଟି କରୁଥିବା ସମାଜ ସଂସ୍କାରକ ଥିଲେ ବଙ୍ଗର ଶଶୀପଦ ବନ୍ଦୋପାଧ୍ୟାୟ, ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର, ମହାରାଷ୍ଟ୍ରର ଏମ୍.ଜି.ରାନାଡ଼େ, ମାଲବାରୀ, ନାରାୟଣ ଚନ୍ଦ୍ର ଭାରକର, ଦକ୍ଷିଣ ଭାରତର ରଘୁନାଥ ରାଓ ଏବଂ ନଟରାଜନ୍ ଆଦି ଅନେକ ସମାଜ ସଂସ୍କାରକ । ଆସନ୍ତୁ ଜଣେ ମହାମନୀଷୀ ତଥା ଯୋଗ ଗୁରୁ ଏବଂ ସ୍ୱାଧୀନତା ସଂଗ୍ରାମୀଙ୍କ ଉପରେ ଆଲୋଚନା କରିବା ।

ଭାରତର ସ୍ୱାଧୀନତା ସଂଗ୍ରାମ ସମୟରେ ଭାରତର ବହୁ ସଂସ୍କାରକ, ତୁଙ୍ଗନେତା ଏବଂ ସ୍ୱାଧୀନତା ସଂଗ୍ରାମୀ ମାନଙ୍କୁ ଆଧ୍ୟାତ୍ମିକ ଶକ୍ତି ମାଧ୍ୟମରେ ପ୍ରେରଣା ଯୋଗାଉଥିଲେ ।।ସେମାନଙ୍କ ମଧ୍ୟରେ ଶ୍ରୀ ଅରବିନ୍ଦ ଥିଲେ ଅନ୍ୟତମ । ତାଙ୍କର ଯୋଗ ସାଧନାର ମହାତ୍ମ ସ୍ୱାଧୀନତା ସଂଗ୍ରାମୀ ମାନେ ଉପଲବ୍ଧି କରୁଥିଲେ । ଆସନ୍ତୁ ସେହି ଯୋଗୀ ଏବଂ ସେହି ସ୍ୱାଧୀନତା ସଂଗ୍ରାମୀଙ୍କ ଉପରେ ଟିକିଏ ଆଲୋକ ପାତ କରିବା ।

ଶ୍ରୀ ଅରବିନ୍ଦ କଲିକତା ନଗରୀରେ ୧୮୭୨ ମସିହା ଅଗଷ୍ଟ ୧୫ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ଏବେ ମଧ୍ୟ ଏହି ଭବନଟି ଶ୍ରୀ ଅରବିନ୍ଦ ଭବନ ନାମରେ ପରିଚିତ । ତାଙ୍କର ପିତା ଥିଲେ ଶ୍ରୀକୃଷ୍ଣଧନ ଘୋଷ ଏବଂ ମାତା ଥିଲେ ଶ୍ରୀମତୀ ସ୍ୱର୍ଣ୍ଣଲତା ଘୋଷ ।

ବାପା କୃଷ୍ଣଧନ ଘୋଷ ପେଷାରେ ଥିଲେ ଜଣେ ଡ଼ାକ୍ତର । ୧୮୭୭ ମସିହା ପର୍ଯ୍ୟନ୍ତ ଶ୍ରୀ ଅରବିନ୍ଦ ପିତାଙ୍କ ସହ ରହୁଥିଲେ । ତା'ପରେ ସେ ଦର୍ଜିଲିଂର ଲରେଟୋ କନ୍‌ଭେଣ୍ଟ ସ୍କୁଲ (Loretto Convent School) ରେ ନାମ ଲେଖାଇ ଥିଲେ । ସେ ସେଠାରେ ପ୍ରାଥମିକ ଶିକ୍ଷା ଅର୍ଜନ କରିଥିଲେ । ୧୮୭୯ ମସିହାରେ ଡାକ୍ତର କୃଷ୍ଣଧନ ଘୋଷ ତାଙ୍କର ପରିବାର ସହ ଇଂଲଣ୍ଡକୁ ଯାତ୍ରାକରି ଥିଲେ । ତାଙ୍କ ସହିତ ତାଙ୍କ ସ୍ତ୍ରୀ, ତିନିପୁଅ ଏବଂ ଝିଅ ସରୋଜିନୀ ମଧ୍ୟ ଯାଇଥିଲେ । ଶ୍ରୀଅରବିନ୍ଦ ଇଂଲଣ୍ଡର ଏକ ପାଦ୍ରୀ ପିରବାର ଡ୍ରୁୟେଟ୍ (Drewett) ର ଦମ୍ପତିଙ୍କ ଗୃହରେ ରହି ଶିକ୍ଷାଲାଭ କଲେ । ମିଃ ଡ୍ରୁୟେଟ୍ ଲାଟିନ୍ ଭାଷାରେ ସୁପଣ୍ଡିତ ଥିଲେ । ତେଣୁ ସେ ଶ୍ରୀଅରବିନ୍ଦଙ୍କୁ ଲାଟିନ୍ ଭାଷା ଶିକ୍ଷା ଦେଇଥିଲେ । ମିଃ ଡ୍ରୁୟେଟ୍‌ଙ୍କ ଘରେ ରହି ସେ ପାଠ ପଢ଼ିବା ସମୟରେ ମଧ୍ୟ ଅନ୍ୟାନ୍ୟ ବହି ପଢ଼ିବା ପାଇଁ ବହୁତ ସମୟ ପାଉଥିଲେ । ୧୮୮୪ ମସିହା ସେପ୍ଟେମ୍ବର ମାସରେ ଶ୍ରୀ ଅରବିନ୍ଦ ଲଣ୍ଡନର ସେଣ୍ଟ ପଲ୍‌ସ୍ (St. Paul's) ସ୍କୁଲରେ ନାମ ଲେଖାଇଲେ । ଏହି ବିଦ୍ୟାଳୟରେ ଗ୍ରୀକ୍ ଓ ଲାଟିନ୍ ଭାଷାରେ ସେ ବିଶେଷ ପାରଦର୍ଶିତା ଲାଭ କରିଥିଲେ । ୧୬ ବର୍ଷ ବୟସରେ ସେ ଇଂରାଜୀ ଭାଷାରେ କବିତା ଲେଖିବାକୁ ଆରମ୍ଭ କରିଥିଲେ । ସେ ସେଣ୍ଟ ପଲସ୍ ସ୍କୁଲରୁ ଉତୀର୍ଣ୍ଣ ହେବା ପରେ ୧୮୯୦ ମସିହା ଅକ୍ଟୋବର ମାସରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ କିଙ୍ଗସ (King's) କଲେଜରେ ବୃତ୍ତିପ୍ରାପ୍ତ ଛାତ୍ରରୂପେ ପ୍ରବେଶ କଲେ ।

୧୮୯୨ ମସିହାରେ ଶ୍ରୀ ଅରବିନ୍ଦ ଆଇ.ସି.ଏସ୍ (I.C.S) ଚାକିରି ପାଇଁ ଅଯୋଗ୍ୟ ବିବେଚିତ ହେବା ସମୟରେ ବରୋଦାର ରାଜା ଶ୍ରୀସୟାଜି ରାଓ ଲଣ୍ଡନରେ ଥିଲେ । ତାଙ୍କ ସହିତ ଶ୍ରୀ ଅରବିନ୍ଦଙ୍କର ପରିଚୟ ହେଲାପରେ ଶ୍ରୀ ଅରବିନ୍ଦ ବରୋଦା ରାଜସରକାରଙ୍କ ଚାକିରିରେ ଯୋଗଦାନ କରିବା ପାଇଁ ଇଂଲଣ୍ଡ ତ୍ୟାଗ କଲେ । ସେ ଭାରତରେ ପଦାର୍ପଣ କରି ୧୮୯୩ ସମିହା ଫେବୃଆରୀ ୮ ତାରିଖ ଦିନ ବରୋଦାର ରାଜସରକାରଙ୍କ ଚାକିରିରେ ଯୋଗଦାନ କଲେ । ସେ ପ୍ରଥମେ ବରୋଦା ରାଜସରକାରଙ୍କର ଶାସନ ବିଭାଗରେ କାର୍ଯ୍ୟ କରିଥିଲେ । ତତ୍ପରେ ବରୋଦା କଲେଜର ଇଂରାଜୀ ଅଧ୍ୟାପକରୂପେ କାର୍ଯ୍ୟକଲେ । ୧୯୦୪ ମସିହାରେ ସେ ବରୋଦା କଲେଜରେ ସହ ଅଧ୍ୟକ୍ଷରୂପେ ଏବଂ ୧୯୦୫ ମସିହାରେ ଅସ୍ଥାୟୀଭାବେ କଲେଜର ଅଧ୍ୟକ୍ଷରୂପେ ନିଯୁକ୍ତି ପାଇଥିଲେ । ଏହିପରି ଭାବରେ ଶ୍ରୀ ଅରବିନ୍ଦ ବରୋଦାରେ ଦୀର୍ଘ ୧୩ ବର୍ଷଧରି କାର୍ଯ୍ୟ କରିଥିଲେ । ୧୮୯୮-୯୯ ମସିହାରେ ବଙ୍ଗ ଦେଶର ଜଣେ ପ୍ରବୀଣ ସାହିତ୍ୟକ ଦୀନେନ୍ଦ୍ର କୁମାର ରାୟ ବରୋଦାରେ ଶ୍ରୀ ଅରବିନ୍ଦଙ୍କ

ସହିତ ରହୁଥିଲେ । ତେଣୁ ସେତେବେଳେ ତାଙ୍କର ପ୍ରଧାନ କାର୍ଯ୍ୟଥିଲା ବଙ୍ଗଳା ଭାଷା ଶିକ୍ଷାକରି କଥୋପକଥନରେ ଅଭ୍ୟାସ କରାଇବା । ବରୋଦାରେ ଚାକିରୀ କରିବା ସମୟରେ ସେ ରାଜନୀତିରେ ଯୋଗ ଦେବାକୁ ସୁଯୋଗ ପାଉନଥିଲେ । ୧୯୦୨ ମସିହା ପରେ ତାଙ୍କର ଚାକିରି ଉପରେ ବିରାଗ ଆସିଲା ଏବଂ ରାଜନୈତିକ କ୍ଷେତ୍ରରେ କାର୍ଯ୍ୟ କରିବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ । ୧୯୦୫ ମସିହା ଅକ୍ଟୋବର ମାସରେ ବଙ୍ଗ ବିଭାଜନ ହେତୁ ବଙ୍ଗ ଦେଶରେ ପ୍ରବଳ ରାଜନୈତିକ ଆନ୍ଦୋଳନ ଆରମ୍ଭ ହୋଇଥିଲା । ସେତେବେଳେ ଲର୍ଡ଼ କର୍ଜନ ଭାରତର ବଡ଼ଲାଟ ଥିଲେ । ବଙ୍ଗ ଦେଶର ପୂର୍ବବଙ୍ଗ ଏବଂ ଆସାମକୁ ପୃଥକ କରାଗଲା । ତଥା ଗୋଟିଏ ନୂତନ ପ୍ରଦେଶ ଗଠିତ ହେଲା । ବିହାର ଏବଂ ଓଡ଼ିଶା ସହିତ ପଶ୍ଚିମ ବଙ୍ଗ ଅନ୍ୟଏକ ପ୍ରଦେଶ ହେଲା । ଫଳରେ ବଙ୍ଗ ଦେଶରେ ପ୍ରବଳ ରାଜନୈତିକ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଶ୍ରୀ ଅରବିନ୍ଦ ବଙ୍ଗ ବିଭାଜନ ବିରୋଧୀ ଆନ୍ଦୋଳନରେ ଅଂଶ ଗ୍ରହଣ କରୁଥିବା ଜାତୀୟବାଦୀ କର୍ମୀ ମାନଙ୍କ ମଧ୍ୟରେ ପ୍ରବଳ ଉତ୍ତେଜନା ସୃଷ୍ଟି କରିଥିଲେ । ବଙ୍ଗ ଦେଶର ଏହି ସ୍ୱଦେଶୀ ଆନ୍ଦୋଳନ ସମଗ୍ର ଭାରତରେ ବ୍ୟାପକ ହେଲା ଏବଂ ଦେଶ ହିତୈଷି ଦେଶାତ୍ମବୋଧ ସଂପନ୍ନ ଦେଶଭକ୍ତ ମାନଙ୍କ ଉପରେ ବିଶେଷ ପ୍ରଭାବ ବିସ୍ତାର କରିଥିଲା । ସେହି ସମୟରେ ଶ୍ରୀ ଅରବିନ୍ଦଙ୍କର ଏକ ବାଣୀ ଥିଲା "ଦେଶର ସ୍ୱାର୍ଥ ଓ ନିଜର ସ୍ୱାର୍ଥ ଅଭିନ୍ନ" । ଏହି ମହତ ଜ୍ଞାନ ସମଗ୍ର ଭାରତୀୟ ମାନଙ୍କୁ ଉଦ୍‌ବୋଧିତ କରିଥିଲା । ସେ ଲେଖିଥିଲେ "ମୁଁ ସ୍ୱଦେଶକୁ ମା' ବୋଲି ଜାଣେ, ଭକ୍ତିକରେ, ପୂଜା କରେ" । ବଙ୍କିମ ଚନ୍ଦ୍ରଙ୍କର ଅପୂର୍ବ ମନ୍ତ୍ର "ବନ୍ଦେ ମାତରମ୍" ଭାରତ ବାସୀଙ୍କୁ ସଞ୍ଜୀବିତ କଲା । ଶ୍ରୀଅରବିନ୍ଦ ବଙ୍ଗଦେଶକୁ ନେତା ରୂପେ ଆସିନଥିଲେ । ଆସିଥିଲେ ଜାତୀୟ ଜଜ୍ଞର ପୁରୋହିତ ରୂପେ ।

ଶ୍ରୀଅରବିନ୍ଦଙ୍କ ସହକର୍ମୀ ସୁବୋଧ ମଲ୍ଲିକଙ୍କ ଦାନ ସାହାଯ୍ୟରେ କଲିକତାରେ ବଙ୍ଗ ଦେଶୀୟ ଜାତୀୟ ମହାବିଦ୍ୟାଳୟ (Bengal National College) ସ୍ଥାପିତ ହୋଇଥିଲା । ବରୋଦା ରାଜ ସରକାରଙ୍କ ଚାକିରିରୁ ଇସ୍ତଫାଦେଇ ଶ୍ରୀଅରବିନ୍ଦ ୧୯୦୬ ମସିହା ଅଗଷ୍ଟ ୧୫ ତାରିଖରେ ଉକ୍ତ କଲେଜର ଅଧ୍ୟକ୍ଷରୁପେ ନିଯୁକ୍ତି ହେଲେ । ଏହାଫଳରେ ଦେଶ ସେବା ପାଇଁ ତାଙ୍କୁ ଅଧିକ ସମୟ ମିଳିଥିଲା । ସେହି ସମୟରେ ବଙ୍ଗଳାର ବିପିନ ଚନ୍ଦ୍ରପାଲ "ବନ୍ଦେ ମାତରମ୍" ନାମକ ଏକ ଇଂରାଜୀ ସାପ୍ତାହିକ ପତ୍ରିକା ପ୍ରକାଶ କରିଥିଲେ । ଏହି ପତ୍ରିକାର ସଂପାଦନା ପ୍ରତି ଶ୍ରୀଅରବିନ୍ଦଙ୍କର ଅଦମ୍ୟ ଉତ୍ସାହ ରହିଥିଲା । ଏହି ପତ୍ରିକାର ଉଦ୍ଦେଶ୍ୟ ଥିଲା – ଦେଶର କର୍ମୀ ମାନଙ୍କୁ ଅସହଯୋଗ ଆନ୍ଦୋଳନ, ବିଦେଶୀ ଦ୍ରବ୍ୟ

ବର୍ଜ୍ଜନ, ଜାତୀୟ ଶିକ୍ଷା ପଦ୍ଧତି ପ୍ରଚଳନ, ସରକାରୀ ଅଦାଲତର ସାହାଯ୍ୟ ବିନା ମକଦ୍ଦମାର ସାଲିସ କରିବା ଇତ୍ୟାଦି ବିଷୟରେ ଜ୍ଞାନ ଦାନ କରିବା ଓ ସେମାନଙ୍କୁ ଜାତୀୟ ଆନ୍ଦୋଳନରେ ଉପଯୁକ୍ତ କରି ତିଆରି କରିବା । କାଳକ୍ରମେ ବଙ୍ଗ ଦେଶରେ ଜାତୀୟତାବୋଧ ଆନ୍ଦୋଳନର ପ୍ରଧାନ ପରିଚାଳକ ରୂପେ ଶ୍ରଦ୍ଧେୟ ଶ୍ରୀଅରବିନ୍ଦ ଅଭ୍ୟର୍ଥିତହେଲେ । ଭାରତୀୟ ଜାତୀୟ କଂଗ୍ରେସର ଗୋଟିଏ ଜରୁରୀ ଅଧିବେଶନ ଦାଦାଭାଇ ନୌରଜୀଙ୍କର ସଭାପତିତ୍ୱରେ କଲିକତା ଠାରେ ୧୯୦୬ ମସିହା ଡ଼ିସେମ୍ବର ମାସରେ ଅନୁଷ୍ଠିତ ହୋଇଥିଲା । ସର୍ବ ପ୍ରଥମେ ଭାରତରେ ଏହି ଅଧିବେଶନର ପ୍ରସ୍ତାବ ଗୃହୀତ ହୋଇ ଥିଲା ଯେ, ଭାରତୀୟ ଜାତୀୟ ଆନ୍ଦୋଳନର ମୁଖ୍ୟ ଉଦ୍ଦେଶ୍ୟ ଭାରତର "ପୂର୍ଣ୍ଣ ସ୍ୱାଧୀନତା" ଲାଭ । ୧୯୦୮ ମସିହାରେ କଲିକତାରେ ସ୍ୱାଧୀନତା ଆନ୍ଦୋଳନ ତୀବ୍ରତର ହୋଇଥିଲା । ତେଣୁ ରାଜନୈତିକ ବିପ୍ଳବୀ ସମାଜର ବହୁ ବ୍ୟକ୍ତିଙ୍କୁ ଗିରଫ କରାଯାଇଥିଲା । ସେହିଦିନ ଶ୍ରୀଅରବିନ୍ଦ ଏବଂ ତାଙ୍କ ଭାଇ ବାରୀନ୍ଦ୍ର ମଧ ଅନ୍ୟାନ୍ୟ ସହକର୍ମୀଙ୍କ ସହ ଗିରଫ ହୋଇଥିଲେ । ୧୯୦୮ ମସିହା ମେ ମାସ ୫ ତାରିଖରେ ବିଚାରାଧିନ ଅପରାଧୀ ରୂପେ ଶ୍ରୀଅରବିନ୍ଦ ଆଲିପୁର (କଲିକତା) ଜେଲରେ କାରାରୁଦ୍ଧ ହେଲେ । ସେ ୧୯୦୯ ମସିହା ମେ ୫ ତାରିଖ ପର୍ଯ୍ୟନ୍ତ ବିଚାରାଧିନ ଅପରାଧୀ ରୂପେ ରହି ୬ ତାରିଖ ଦିନ ଆଲିପୁର ଜେଲରୁ ମୁକ୍ତହେଲେ ।

ଶ୍ରୀଅରବିନ୍ଦ ବିଭିନ୍ନ ସଭାସମିତିରେ ଜାତୀୟ ଭାବ ଜାଗ୍ରତ କରିବା ଉଦ୍ଦେଶ୍ୟରେ ଭାଷଣମାନ ଦେଉଥିଲେ । ଶ୍ରୀଅରବିନ୍ଦଙ୍କର ପ୍ରଧାନ ଲକ୍ଷଥିଲା ଭାରତର "ପୂର୍ଣ୍ଣ ସ୍ୱାଧୀନତା" । ଏହି ବାର୍ତ୍ତା ସେ ଦୃଢତାର ସହ ଘୋଷଣା କରିଥିଲେ ଏବଂ ଏହି ଲକ୍ଷ ପ୍ରାପ୍ତି ବିଷୟରେ ସେ ଏକନିଷ୍ଠ ଦୃଢପ୍ରତିଜ୍ଞ ଥିଲେ । ମାନବ ସମାଜରେ ଆଧାତ୍ମିକ ଜୀବନକୁ ସାଫଲ୍ୟ ମଣ୍ଡିତ କରିବା ପାଇଁ ତାଙ୍କ ଦୃଷ୍ଟିରେ ଭାରତର ପୂର୍ଣ୍ଣ ସ୍ୱାଧୀନତା ଅପରୀହାର୍ଯ୍ୟ ଥିଲା । ବର୍ତ୍ତମାନ ସ୍ୱାଧୀନ ଭାରତର ଏହାହିଁ ମୁଖ୍ୟ ଉଦ୍ଦେଶ୍ୟ ।

ଶ୍ରୀଅରବିନ୍ଦ ଦିନେ ହଠାତ୍ ଖବର ପାଇଲେ ଯେ, ତାଙ୍କୁ ଗିରଫ କରିବା ପାଇଁ ପୁଲିସ ଖୋଜୁଛନ୍ତି, ତେଣୁ ହଠାତ୍ ତାଙ୍କୁ କୁହାଗଲା ଚନ୍ଦନ ନଗରକୁ ଯାଇ ଆତ୍ମଗୋପନ କରିବା ପାଇଁ । ତାପରେ ସେ ସେଠାକୁ ଯାଇ ତାଙ୍କର ଘନିଷ୍ଠ ବନ୍ଧୁ ମୋତିଲାଲ ରାୟଙ୍କ ଗୃହରେ ନିଭୃତ ଭାବରେ ବାସ କରୁଥିଲେ । ସେହି ସମୟରେ ସେ ପୁନର୍ବାର ପ୍ରତ୍ୟାଦେଶ ପାଇଲେ "ପଣ୍ଡିଚେରୀ ପ୍ରସ୍ଥାନ କର" । ଫଳରେ ସେ ୧୯୧୦ ମସିହା ମାର୍ଚ୍ଚମାସ ୩୧ ତାରିଖରେ ପଣ୍ଡିଚେରୀ ଯାତ୍ରା କଲେ ଏବଂ ଏପ୍ରିଲ୍ ୪ ତାରିଖ ଅପରାହ୍ଣ ୪ ଘଟିକାରେ

ପଣ୍ଡିଚେରୀରେ ପହଞ୍ଚିଲେ । ସେ ସେଠାରେ ନିଜର ବାକି ଜୀବନ ଆଧ୍ୟାତ୍ମିକ ମାର୍ଗରେ ବିତାଇ ଥିଲେ ।

ପରିଶେଷରେ ଆମେ ଜାଣିରଖିବା ଉଚିତ ଯେ ଆମ ଜନ୍ମମାଟିରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଠାରୁ ଆରମ୍ଭ କରି ୧୯୦୫ ମସିହାରେ ବଙ୍ଗ ବିଭାଜନ ପର୍ଯ୍ୟନ୍ତ ଭାରତ ଭୂମିରେ ଯେଉଁ ଉତ୍‌ଥାନ ପତନ ସୃଷ୍ଟି ହୋଇଥିଲା, ଭାରତୀୟ ମାନେ ଯାହା କିଛି ନିର୍ଯ୍ୟାତିତ ହେଉଥିଲେ (ଆମର ପୂର୍ବବତ୍ ବର୍ଣ୍ଣନା ଅନୁସାରେ) ତାଠାରୁ ଅଧିକ ମାତ୍ରାରେ ଦେଖାଦେଇଥିଲା ଗଭର୍ଣ୍ଣର ଜେନେରାଲ ଭାବେ ନିଯୁକ୍ତି ପାଇଥିବା ଲର୍ଡ଼ କର୍ଜନ ଓ ଲର୍ଡ଼ ଲିଟନ୍‌ଙ୍କ ସମୟରେ । ଇଂରେଜ ମାନଙ୍କର ବର୍ଣ୍ଣ ବୈଷମ୍ୟ ନୀତି ଭାରତୀୟ ମାନଙ୍କ ପ୍ରତି ହୀନମନ୍ୟତା ଭାରତୀୟ ଜାତୀୟ ଜାଗରଣର ଅନ୍ୟ ଏକ କାରଣ ରୂପେ ଦଣ୍ଡାୟମାନ ହୋଇଥିଲା । ଭାରତୀୟ ଶକ୍ତି ଓ ସାମର୍ଥ୍ୟକୁ ସେମାନେ ଉପହାସ କରି ଉଚ୍ଚ ପଦବୀ ଗୁଡ଼ିକରୁ ଭାରତୀୟ ମାନଙ୍କୁ ବଞ୍ଚିତ କରି ୟୁରୋପୀୟ ମାନଙ୍କୁ ନିଯୁକ୍ତି ଦିଆ ଯାଉଥିଲା । ୧୯୦୬ ମସିହାରେ କଲିକତା ବିଶ୍ୱବିଦ୍ୟାଳୟର ଦୀକ୍ଷାନ୍ତ ଭାଷଣରେ ଲର୍ଡ଼ କର୍ଜନ କହିଲେ ଯେ, "ଭାରତୀୟ ଜାତିବୋଲି ଗୋଟାଏ ଶବ୍ଦ ନାହିଁ" । ୧୯୦୫ ମସିହାରେ ତାଙ୍କ ବଙ୍ଗ ବିଭାଜନ ବ୍ୟବସ୍ଥା ବଙ୍ଗୀୟ ମାନଙ୍କ ଏକତା ଉପରେ ଏକ ନଗ୍ନ ଆକ୍ରମଣ ବ୍ୟତୀତ ଆଉ କିଛି ବୋଲି ଭାରତୀୟ ମାନଙ୍କ ଦ୍ୱାରା ବିବେଚିତ ହୋଇଥିଲା । ଲର୍ଡ଼ ଲିଟନ୍ ଏବଂ ଲର୍ଡ଼ କର୍ଜନ ଶାସନ ସମୟରେ ଭାରତୀୟ ବିରୋଧୀ ପଦକ୍ଷେପ ଜାତୀୟତା ବୃଦ୍ଧି କରିବା ଦିଗରେ ଅଶେଷ ସହାୟକ ହୋଇଥିଲା । ଇଂରେଜ ଓ ଭାରତୀୟ ମାନଙ୍କ ମଧ୍ୟରେ ଭେଦଭାବ ବୃଦ୍ଧି ପାଇଥିଲା କେବଳ ଇଂରେଜ ମାନଙ୍କର "ବର୍ଣ୍ଣ ବୈଷମ୍ୟ" ନୀତି ଯୋଗୁଁ । ଆମର ଆଲୋଚ୍ୟ ଏହି କାରଣ ଗୁଡ଼ିକ ପାଇଁ ଭାରତୀୟ ମାନଙ୍କର ଅସନ୍ତୋଷତା ବୃଦ୍ଧି ଯୋଗୁଁ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ସୂତ୍ରପାତ ହୋଇଥିଲା ।

## ଭାରତର ସ୍ୱାଧୀନତା ସଂଗ୍ରାମ

ଭାରତର ସ୍ୱାଧୀନତା ଆନ୍ଦୋଳନ ହେଉ କିମ୍ବା ସ୍ୱରାଜ ଆନ୍ଦୋଳନ ହେଉ, ଭାରତୀୟ ଜନମାନସ ପଟ୍ଟରେ ଧୂମକେତୁ ଭଳି ଗାନ୍ଧିଜୀଙ୍କ ଆବିର୍ଭାବ ଭାରତୀୟ ଜନମାନସକୁ ଉଦ୍‌ଭାଷିତ କରିବା ସଙ୍ଗେ ସଙ୍ଗେ ତାଙ୍କର ଘଟଣା ବହୁଳ ଇତିହାସ ସବୁ ଭାରତବର୍ଷ ଇତିହାସର ପୃଷ୍ଠା ମଣ୍ଡନ କରିଥିଲା । ତାଙ୍କର ନେତୃତ୍ୱ, ସଚ୍ଚରିତ୍ର ଏବଂ ଆକର୍ଷଣୀୟ

ବ୍ୟକ୍ତିତ୍ୱ ଭାରତୀୟ ଜନସାଧାରଣଙ୍କୁ ନୂତନ ପ୍ରେରଣା ଯୋଗାଇବା ସଙ୍ଗେ ସଙ୍ଗେ ଭାରତୀୟ ଜନ ଆନ୍ଦୋଳନକୁ ନୂତନ ଦିଗ୍‌ଦର୍ଶନ ଯୋଗାଇ ଥିଲା । ଏହି ସମୟର ଘଟଣା ପ୍ରବାହ ଇତିହାସର ଅଗ୍ରଦୂତ ଥିଲେ ଗାନ୍ଧିଜୀ । କେତେକ ଐତିହାସିକଙ୍କ ମତରେ ଏହା ଥିଲା 'ଗାନ୍ଧି ଯୁଗ' । ଅହିଂସା ଓ ଅସହଯୋଗକୁ ମୂଳ ମନ୍ତ୍ର କରି ସମସ୍ତ ଭାରତୀୟ ମାନଙ୍କୁ ଆହ୍ୱାନ ଦେଇ ଏକତାର ରଜ୍ଜୁରେ ବନ୍ଧନ କରି ବ୍ରିଟିଶ ଶାସନ ବିରୁଦ୍ଧରେ ଗଣ ଆନ୍ଦୋଳନକୁ ତେଜିଆନ କରି ରଖିଥିଲା । ତାଙ୍କର ବ୍ୟକ୍ତିତ୍ୱ ଓ ନେତୃତ୍ୱ କେବଳ ରାଜନୈତିକ ଘଟଣା ସମୂହ ମଧ୍ୟରେ ସୀମିତ ନଥିଲା । ମାନବ ସମାଜର ସାମାଜିକ, ଅର୍ଥନୈତିକ ଏବଂ ରାଜନୈତିକ ସମସ୍ୟା ସହିତ ମାନବିକ ଅଧିକାର ଜନିତ ସମସ୍ୟା ଉପରେ ମଧ୍ୟ ସ୍ୱର ଉତ୍ତୋଳନ କରି ତାରି ମାଧ୍ୟମରେ ଅବିଭକ୍ତ ଭାରତବର୍ଷରେ ଜନ ସମାଜର ପୁନର୍ଗଠନ କରିବାକୁ ଚେଷ୍ଟା ଜାରି ରଖିଥିଲେ । ଦୁଇ ଦୁଇଟି ବିଶ୍ୱ ଯୁଦ୍ଧର ପରିଣାମ ଅଙ୍ଗେ ଲିଭାଇବା ପରେ କୌଣସି ସମସ୍ୟାକୁ ଯୁଦ୍ଧ ରହିତ କରି ଅହିଂସା ଓ ଶାନ୍ତି ପୂର୍ଣ୍ଣ ଭାବରେ ସମାଧାନ କରିବା ମାନବ ସମାଜ ପାଇଁ ଏହା ଥିଲା ତାଙ୍କର ଏକ ମହାନ୍ ଅବଦାନ । ଏହି ପରିପ୍ରେକ୍ଷୀରେ ସତ୍ୟ ଏବଂ ଅହିଂସାକୁ ଆଖି ଆଗରେ ରଖି ଯୁଦ୍ଧ ଏବଂ ବିପ୍ଳବର ଧାରାରେ ଯେଉଁ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲା ତାହା ଭାରତୀୟ ଚିନ୍ତା ଧାରାକୁ ନିଶ୍ଚିନ୍ତ ଭାବରେ ଆଲୋଡ଼ିତ କରି ପାରିଥିଲା । ସ୍ୱାଧୀନତା ବ୍ୟତୀତ ସମାଜର ଅନ୍ୟାନ୍ୟ ଧାରା ଉପରେ ଯେ ତାଙ୍କର ଗଭୀର ଚିନ୍ତାଧାରା ନଥିଲା ତାହା ନୁହେଁ, ଗ୍ରାମସ୍ୱରାଜ, ମୌଳିକ ଶିକ୍ଷା, ଦଳ ବିହୀନ ଗଣତାନ୍ତ୍ରିକ ବ୍ୟବସ୍ଥା, ଏବଂ ଜନସାଧାରଣଙ୍କର ଅର୍ଥନୈତିକ ଅବସ୍ଥାର ଉନ୍ନତି ଉପରେ ଆଧାରିତ ସାମାଜିକ ଉନ୍ନତି ପାଇଁ ସେ ସମସ୍ତ କାର୍ଯ୍ୟ କ୍ରମର ଉନ୍ନତି ସାଧନ କରୁଥିଲେ । ଭାରତୀୟ ସମାଜରେ ଅହିଂସା ମାର୍ଗରେ ସମତା ଆଣି ଏବଂ ସମାଜରେ ବ୍ୟକ୍ତିର ମର୍ଯ୍ୟାଦା ବୋଧକୁ ଅଧିକ ଗୁରୁତ୍ୱ ଦେଇ ପ୍ରଚଳିତ ସମାଜ ବ୍ୟବସ୍ଥାରେ କିଛି ପରିବର୍ତ୍ତନ ଆଣିବାର ପ୍ରଚେଷ୍ଟାକୁ ସେ ଜୀବନର ଆଦର୍ଶ ରୂପେ ଗ୍ରହଣ କରିଥିଲେ । ପ୍ରଚଳିତ ସମାଜରେ ସଂସ୍କାର ଆଣିବା ସଙ୍ଗେ ସଙ୍ଗେ ଗ୍ରାମୀଣ ଜୀବନରେ କିପରି ଅର୍ଥନୈତିକ ଉନ୍ନତି ହୋଇ ପାରିବ ତାହା ସମସ୍ତଙ୍କୁ ହୃଦୟଙ୍ଗମ କରାଇବା ଥିଲା ଜୀବନର ମୂଳମନ୍ତ୍ର । ଏଥିପାଇଁ ସେ ବାରମ୍ବାର ସ୍ୱର ଉତ୍ତୋଳନ କରୁଥିଲେ 'କୁଟି ଖାଅ କାଟି ପିନ୍ଧ' । ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଲାଗି 'ସତ୍ୟାଗ୍ରହର' ଯେଉଁ ଭାବନା ବିଶ୍ୱ ସମାଜକୁ ଯେଉଁ ବାଣୀ ଶୁଣାଇ ଗଲେ ତାହା ବିଶ୍ୱ ସମାଜ ପାଇଁ ଏକ ମହନୀୟ ଅବଦାନ ।

କେବଳ ଯେ ଭାରତୀୟ ସ୍ୱାଧୀନତା ସଂଗ୍ରାମ ପାଇଁ ନୁହେଁ ଧର୍ମ ଜାତି ଏବଂ ସମାଜ ସମସ୍ତ ସୀମାରେଖାକୁ ଅତିକ୍ରମ କରି ସେ ଜଣେ ମହାନ କ୍ରାନ୍ତିକାରୀ ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତି ଲାଭ କରିବା ସଙ୍ଗେ ସଙ୍ଗେ ବିଶ୍ୱ ଇତିହାସର ପୃଷ୍ଠା ମଣ୍ଡନ କରି ପାରିଛନ୍ତି । ସେ ସଂକୀର୍ଣ୍ଣତା ବାଦର ବହୁ ଉର୍ଦ୍ଧ୍ୱରେ ରହି ଜାତୀୟତାବାଦକୁ ନେଇ ସେ ଜୀବନରେ ଯେଉଁ ସଂଗ୍ରାମ କରିଛନ୍ତି ତାହା ରାଜନୈତିକ ଓ ଅର୍ଥନୈତିକ ଶୋଷଣରୁ ମୁକ୍ତି କରି ଏକ ସର୍ବୋଦୟ ସମାଜର ଉତ୍ପତ୍ତି କରିବାକୁ ବିଶ୍ୱସ୍ତରୀୟ ପ୍ରୟାସ କରିଥିଲେ । ବିଶ୍ୱରେ ପ୍ରତି ସମାଜରେ ପ୍ରତ୍ୟେକ ବ୍ୟକ୍ତିର ଆଶନୁରୂପକ ବିକାଶ, ଶୋଷଣହୀନ ଅର୍ଥନୀତି, ବ୍ୟକ୍ତି ମର୍ଯ୍ୟଦା ଭିତ୍ତିକ ସାମାଜିକ ବ୍ୟବସ୍ଥା ଇତ୍ୟାଦି ଏହି ଭାରତୀୟ ସ୍ୱାଧୀନତା ଭିତରେ ସେ ବିଶ୍ୱ ଐ୍ୟତିହ୍ୟର ସ୍ୱପ୍ନ ଦେଖିଥିଲେ ।

ସେ ବହୁତ ଧର୍ମ ବିଶ୍ୱାସୀ ଥିଲେ ଏବଂ ତାଙ୍କ ରାଜନୀତିକୁ ତାଙ୍କ ଜୀବନର ଧର୍ମୀୟ ଭାବଧାରା ସହିତ ସେ ମିଶାଇ ଦେଇଥିଲେ । ଧର୍ମକୁ ସେ ସାର୍ବଜନୀନ ମୂଲ୍ୟ ବୋଧର ପ୍ରତିକ ଭାବେ ନେଇଥିଲେ ଏବଂ ତାହା ସହିତ ରାଜନୀତିକୁ ସମିଶ୍ରଣ କରି ଏକ ନୂତନ ସମାଜର ଉତ୍ପତ୍ତି କରିଥିଲେ । କୌଣସି ଧର୍ମର ଉପଚାର ପ୍ରତି ସେ ଆକୃଷ୍ଟ ନହୋଇ ଏହାର ଅନ୍ତର୍ନିହିତ ମୂଲ୍ୟ ବୋଧକୁ ହୃଦୟଙ୍ଗମ କରି ଅନ୍ୟକୁ ବୁଝାଉଥିଲେ । କୌଣସି ଧର୍ମପ୍ରତି କିମ୍ବା ଧର୍ମାବଲମ୍ବୀ ମାନଙ୍କ ପ୍ରତି ତିଳେ ହେଲେ ବିଦ୍ୱେଷଭାବ ନଥିଲା । ସେ ସବୁ ଧର୍ମର ମୂଳ ମନ୍ତ୍ରକୁ ସମାନ ବୋଲି ଗ୍ରହଣ କରି 'ଦିନ୍ ଇଲ୍ଲାହି' ବୋଲି କହୁଥିଲେ ଏବଂ ଗାଉଥିଲେ 'ଇଶ୍ୱର ଆଲ୍ଲା ତେରେ ନାମ, ସବ୍‌କୋ ସନମତି ଦେ ଭଗବାନ' । ସେ ପ୍ରତ୍ୟେକ ଧର୍ମର କଠୋର ଓ କୁତ୍ସିତ ପରମ୍ପରାକୁ ସେ ସଂସ୍କାର ଆଣିବା ପାଇଁ ଜୀବନବ୍ୟାପି ଉଦ୍ୟମ ଜାରି ରଖିଥିଲେ । ସେ ଯାହାହେଉ ଏହି ଭାରତୀୟ ସ୍ୱାଧୀନତା ସଂଗ୍ରାମର ମହାସ୍ରୋତର କର୍ଣ୍ଣଧାର ଥିଲେ ଏବଂ ମୁକ୍ତି ସଂଗ୍ରାମରେ ଅହିଂସାର ମୁକ୍ତି ମନ୍ତ୍ର ପ୍ରତୀକ ଭାବରେ ଦଣ୍ଡାୟମାନ ଥିଲେ ଜାତିର ଜନକ ମୋହନ ଦାସ କରମ ଚାନ୍ଦ ଗାନ୍ଧୀ ।

ଭାରତର ସ୍ୱାଧୀନତା ସଂଗ୍ରାମର ଏହି ଶୁଭମୂହୁର୍ତ୍ତରେ ବିଶ୍ୱମାନବ ମହାତ୍ମା ଗାନ୍ଧୀଙ୍କର ଆବିର୍ଭାବ ତତ୍‌କାଳୀନ ଭାରତୀୟ ମାନଙ୍କ ପାଇଁ ଏକ ମହାର୍ଘ୍ୟ ଆଣି ଦେଇଥିଲା । ଏହି ପରାଧୀନତାର ପ୍ରତିକୂଳ ପରିବେଶରେ ସ୍ୱାଧୀନତା ପାଇଁ ଯେଉଁ ଜନଜାଗରଣ ସୃଷ୍ଟି ହୋଇଥିଲା, ଗୋଟିଏ ପରାଧୀନ ଦଳିତ ନିଷ୍ପେଷିତ ଜାତି ସଂଘବଦ୍ଧହୋଇ ଏକତାର ରଜ୍ଜୁରେ

କିପରି ସ୍ୱାଧୀନତା ହାସଲ କରି ପାରିଲେ ଏବଂ ତାର ଅଗ୍ର ଭାଗରେ ସେହି ନିଷ୍ପେଷିତ ଜାତିର ନାୟକ ମହାତ୍ମା ଗାନ୍ଧୀଙ୍କ ବିଷୟରେ ଜାଣିବା ଆମ ପକ୍ଷେ ନିତ୍ୟାନ୍ତ ଅପରିହାର୍ଯ୍ୟ ।

ଜାତିର ଜନକ ମହାତ୍ମା ଗାନ୍ଧୀଙ୍କର ପୁରା ନାମ ଥିଲା ମୋହନ ଦାସ କମରଚାନ୍ଦ ଗାନ୍ଧୀ । ଗୁଜୁରାଟ ପ୍ରଦେଶରେ କାଠିଆ-ଓ୍ୱାର୍ଡସ୍ଥ ପୋରବନ୍ଦରର ଏକ ବୈଶ୍ୟ ପରିବାରରେ ୧୮୬୯ ମସିହା ଅକ୍ଟୋବର ୨ ତାରିଖରେ ପିତା କରମଚାନ୍ଦ ଗାନ୍ଧୀ ଏବଂ ମାତା ପୁତୁଲିବାଈଙ୍କର କୋଳ ମଣ୍ଡନ କରିଥିଲେ । ତତ୍‌କାଳୀନ ସାମାଜିକ ପରମ୍ପରା ଅନୁସାରେ ସେ ୧୩ ବର୍ଷରେ କସ୍ତୁରବାଙ୍କ ସହିତ ବିବାହ ବନ୍ଧନରେ ଆବଦ୍ଧ ହୋଇଥିଲେ । ବାଲ୍ୟାବସ୍ଥାରେ କୁସଙ୍ଗୀ ମାନଙ୍କ ସଂସ୍ପର୍ଶରେ ଆସି କେତେକ ମନ୍ଦ ଅଭ୍ୟାସରେ ଜଡିତ ହେଲେ ସୁଦ୍ଧା ତାଙ୍କର ଦୃଢ ଇଶ୍ୱର ବିଶ୍ୱାସ ଏବଂ ମାନସିକ ଦୃଢତା ଫଳରେ ସେ ସେସବୁ କର୍ମରୁ ନିବୃତ ହୋଇଥିଲେ । ସତ୍ୟ ଅହିଂସା ଏବଂ ଇଶ୍ୱର ବିଶ୍ୱାସ ଥିଲା ତାଙ୍କ ବାଲ୍ୟକାଳୁ ତାଙ୍କ ଜୀବନର ମୂଳମନ୍ତ୍ର । ସବୁ ଧର୍ମପ୍ରତି ସଦ୍‌ଆଚରଣ ଏବଂ ସମଭାବ ତାଙ୍କର ପିଲାବେଳୁ ଅଭ୍ୟାସ ଥିଲା । ୧୮୮୮ ମସିହାରେ ଗାନ୍ଧୀଜୀ ଉଚ୍ଚ ଶିକ୍ଷାପାଇଁ ଇଂଲଣ୍ଡ ଯାଇଥିଲେ ଏବଂ ସେଠାରେ ବାରିଷ୍ଟରୀ ପରୀକ୍ଷାରେ କୃତିତ୍ୱ ଅର୍ଜନ କରି ୧୮୯୩ ସମିହାରେ ଭାରତକୁ ପତ୍ୟାବର୍ତ୍ତନ କରିଥିଲେ ।

ଶିକ୍ଷାପରେ ସେ ବମ୍ବେଠାରେ ଓକିଲାତି ବ୍ୟବସାୟ ଆରମ୍ଭ କରିଥିଲେ । ଓକିଲାତି ବ୍ୟବସାୟରେ ସେ ସେତେଟା ଆଶାନୁରୂପକ ଫଳବତୀ ହୋଇ ପାରିନଥିଲେ ସୁଦ୍ଧା ସେ ନିଜ କର୍ମରେ ରତ ଥିଲେ । ସେ ଦକ୍ଷିଣ ଆଫ୍ରିକାର ଏକ ଭାରତୀୟ ସଂସ୍ଥା ସପକ୍ଷରେ ଲଢିବା ପାଇଁ ସୁଯୋଗ ପାଇ ଦକ୍ଷିଣ ଆଫ୍ରିକା ଯାଇଥିଲେ ଏବଂ ସେଠାରେ ମଧ ସେ ମୋକଦ୍ଦମାରେ କୃତିତ୍ୱ ହାସଲ କରି ଦକ୍ଷିଣ ଆଫ୍ରିକାରେ ଏକ କ୍ଷାତିନାମା ଓକିଲ ଭାବେ ଗୌରବର ଅଧିକାରୀ ହୋଇଥିଲେ । ସେତେବେଳେ ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣବୈଷମ୍ୟ ନୀତି ଓ ଶ୍ୱେତାଙ୍ଗ ଗୋଷ୍ଠୀ ଭାରତୀୟ ମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରୁଥିବାର ଦେଖି ଗାନ୍ଧିଜୀ ଦୁଃଖ ପ୍ରକାଶ କରିଥିଲେ । ସେଠାକାର ବର୍ଣ୍ଣ ବୈଷମ୍ୟ ନୀତିରେ ସେ ନିଜେ ମଧ ବାଦ ପଡିନଥିଲେ । ସେ ନିଜେ ରେଳଗାଡ଼ିର ପ୍ରଥମ ଶ୍ରେଣୀ ଟିକଟ କରି ମଧ ତାଙ୍କୁ ବସିବାର ଅନୁମତି ଦିଆଯାଇ ନଥିଲା । କେବଳ ୟୁରୋପୀୟ ମାନଙ୍କୁ ରେଳ ଗାଡ଼ିର ପ୍ରଥମ ଶ୍ରେଣୀରେ ଯାତ୍ରା କରିବାକୁ ଅନୁମତି ଦିଆ ଯାଉଥିଲା । ଭାରତୀୟ ମାନେ ପ୍ରଥମ ଶ୍ରେଣୀରେ ଯାତ୍ରା କରି ପାରିବେ ନାହିଁ କାରଣ ସେମାନେ କୁଲି । ଦକ୍ଷିଣ ଆଫ୍ରିକାରେ ଏପରି ବର୍ଣ୍ଣ

ବୈଷମ୍ୟ ନୀତିର ଦୂରିକରଣ ନିମନ୍ତେ ସେ ସେଠାରେ କିଛି ଦିନ ରହି ସୁଯୋଗକୁ ଅପେକ୍ଷା କଲେ ।

୧୯୦୬ ମସିହାରେ ଏକ ସୁଯୋଗ ତାଙ୍କର ହସ୍ତଗତ ହୋଇଥିଲା । ବ୍ରିଟିଶ ସରକାର ସେହିବର୍ଷ ଗୋଟିଏ ରେଜିଷ୍ଟ୍ରିକରଣ ଆଇନ ପ୍ରଚଳନ କରିଥିଲେ । ଏହି ଆଇନ ବଳବନ୍ତର ଫଳରେ ଦକ୍ଷିଣ ଆଫ୍ରିକାର ବସବାସ କରୁଥିବା ସମସ୍ତ ଭାରତୀୟ ସମେତ୍ ଏସିଆ ଦେଶବାସୀଙ୍କୁ ନିଜ ନିଜର ନାମ ରେଜିଷ୍ଟ୍ରେସନ କରିବାକୁ ବାଧ କରାଯାଇଥିଲା । ଏହି ଆଇନ ବଳରେ ସମସ୍ତେ ରେଜିଷ୍ଟ୍ରେସନ କରିବେ ଏବଂ ଅଙ୍ଗୁଳିର ଟିପ ଚିହ୍ନ ଦେବେ । କୌଣସି ବ୍ୟକ୍ତି ନାମ ଦସ୍ତଖତ ଜାଣିଥିଲେ ବି ସୁଦ୍ଧା ସେମାନଙ୍କୁ ଅଙ୍ଗୁଳିର ଟିପଚିହ୍ନ ଦେବାକୁ ବାଧ କରାଯାଉଥିଲା । ଏହି ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରେ ଥିବା ସମସ୍ତ ଭାରତୀୟ ମାନଙ୍କୁ ଟିପଚିହ୍ନ ନଦେବା ପାଇଁ ଅନୁରୋଧ କରିଥିଲେ । ଏହି "ରେଜିଷ୍ଟ୍ରିକରଣ" ଆଇନ ବିରୁଦ୍ଧରେ ଆଇନ ଅମାନ୍ୟ ଆନ୍ଦୋଳନ ଏବଂ ଅସହଯୋଗର ସେ ନେତତ୍ୱ ନେଇଥିଲେ । ଫଳରେ ତାଙ୍କୁ ଜେଲ ଦଣ୍ଡ ଭୋଗିବାକୁ ପଡିଥିଲା । କିନ୍ତୁ ଅବଶେଷରେ ସେ ଭାରତୀୟ ମାନଙ୍କର ଅସୁବିଧାକୁ ଦୂରିଭୂତ କରି ପାରିଥିଲେ । ତାପରେ ସେ ଭାରତକୁ ୧୯୧୪ ମସିହାରେ ପ୍ରତ୍ୟାବର୍ତ୍ତନ କରିଥିଲେ । ଭାରତକୁ ଆସିବା ପରେ ଭାରତୀୟ ମାନଙ୍କର କିଛି କିଛି ସମସ୍ୟା ହାତକୁ ନେଇ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ଆନ୍ଦୋଳନର ଦାନା ବାନ୍ଧିଥିଲେ । ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ସାମିଲ ହେବା ପୂର୍ବରୁ ସେ ଭାରତୀୟ ମାନଙ୍କର ମନୋଭାବ, ଅର୍ଥନୈତିକ ବାତାବରଣ ଓ ପରିବେଶକୁ ପୁଙ୍ଖାନୁପୁଙ୍ଖ ରୂପେ ବିଚାର କରିଥିଲେ । ଭାରତରେ ସେ ଗୋପାଳକୃଷ୍ଣ ଗୋଖେଲଙ୍କୁ ତାଙ୍କର ରାଜନୈତିକ ପରାମର୍ଶଦାତା ରୂପେ ଗ୍ରହଣ କରିଥିଲେ । ସେ ତାଙ୍କର ପରାମର୍ଶ ଅନୁଯାୟୀ କାର୍ଯ୍ୟ ମଧ୍ୟ କରୁଥିଲେ । ଗୋପାଳକୃଷ୍ଣ ଗୋଖଲେ ଗାନ୍ଧିଜୀଙ୍କୁ ଏକ ମହତ୍ୱ ପୂର୍ଣ୍ଣ ଉପଦେଶ ଦେଇ କହିଥିଲେ ଯେ, ରାଜନୀତି ଓ ସମାଜସେବା ଗୋଟିଏ ମୁଦ୍ରାର ଦୁଇ ପାର୍ଶ୍ୱ । ସମାଜ ସେବାକୁ ଗୌଣ କରି ରାଜନୀତି କରାଯାଇ ପାରେନା । ଗୋଖଲେଙ୍କର ଏହି ଦୁଇପଦ କଥାର ମହତ୍ୱକୁ ଗାନ୍ଧିଜୀ ତାଙ୍କ ଜୀବନର ଆଦର୍ଶ ରୂପେ ଗ୍ରହଣ କରିନେଇଥିଲେ । ଗାନ୍ଧିଜୀ ନିଷ୍ପତ୍ତି ନେଇଥିଲେ ଯେ, ପରାଧୀନ ଭାରତକୁ ସ୍ୱାଧୀନ କରିବା ଠାରୁ ଶ୍ରେଷ୍ଠ ରାଜନୀତି କିମ୍ବା ଶ୍ରେଷ୍ଠ ଜନସେବା ଜୀବନରେ ଅଧିକ କଣ ଅବା ଥାଇପାରେ । ଗୋପାଳକୃଷ୍ଣ ଗୋଖଲେଙ୍କର ଏହି ପରାମର୍ଶ କ୍ରମେ ଗାନ୍ଧିଜୀ ପ୍ରଥମେ ଆରମ୍ଭ କରିଥିଲେ ଜନସେବା । ସାଧାରଣ ମଣିଷର ଦୁଃଖ ସୁଖରେ ନିଜକୁ ସାମିଲ କରି ପ୍ରଥମେ ଭାରତୀୟ

ସମାଜରେ ସଂସ୍କାର ଆଣିବା ପାଇଁ ଚେଷ୍ଟା ଜାରି ରଖିଥିଲେ । ସମାଜ ସେବା ସହ ରାଷ୍ଟ୍ର ଗଠନରେ ନିଜକୁ ହଜେଇ ଦେଇ ତଳ ସ୍ତରର ସମାଜ ଠାରୁ ନିଜକୁ ମିଶାଇବା ଆରମ୍ଭ କରିଦେଇ ଅସ୍ପୃଶ୍ୟତାର କାମନା ଏବଂ ଭାବନାକୁ ମନ ମଧ୍ୟରୁ ଲିଭାଇ ଦେବାପାଇଁ ଆହ୍ୱାନ କରି ସେମାନଙ୍କୁ 'ହରିଜନ' ନାମରେ ନାମିତ କରିଥିଲେ । ଗୋଖଲେଙ୍କର ଏହି ଅମୃତ ବାଣୀ ଉପଦେଶ ଗାନ୍ଧିଜୀଙ୍କୁ ସ୍ୱାଧୀନତା ଆନ୍ଦୋଳନର ପଥ ପରିଷ୍କାର କରି ଦେଇଥିଲା । ସମଗ୍ର ଭାରତବର୍ଷର ଜାତି, ଧର୍ମ, ବର୍ଣ୍ଣ, ଧନୀ, ଦରିଦ୍ର ନିର୍ବିଶେଷରେ ସମସ୍ତେ ମହାତ୍ମା ଗାନ୍ଧୀଙ୍କର ଆହ୍ୱାନରେ ନିଜକୁ ସାମିଲ କରିଥିଲେ ।

୧୯୧୫ ମସହିାରେ ଅହମ୍ମଦାବାଦ ଠାରେ ସାବରମତୀ ନଦୀତଟରେ ଗୋଟିଏ ଆଶ୍ରମ ପ୍ରତିଷ୍ଠା କରି ଏହାର ଅନ୍ତେବାସୀ ମାନଙ୍କୁ ସତ୍ୟ, ଅହିଂସା, ସାଧୁତା, ସ୍ୱଦେଶ ପ୍ରେମ ଓ ନିର୍ଭିକତାର ସପଥ ଗ୍ରହଣ କରାଇଥିଲେ । ତତ୍‌କାଳୀନ ଇଂରେଜ ସରକାର ତଥା ଭାରତରେ ଥିବା ରାଜନ୍ୟବର୍ଗ ମାନଙ୍କର ପ୍ରପୀଡନର ସନ୍ତୁଳିତ ହେଉଥିବା ସାଧାରଣ ଜନତାଙ୍କ ଘଟଣା ବହୁଳ ବିଷୟରେ ଉପଲବ୍ଧି କରି ସତ୍ୟ ଏବଂ ଅହିଂସା ବାର୍ତ୍ତା ପ୍ରଚାର କରି କିଛି ଜନସାଧାରଣଙ୍କ ସମସ୍ୟା ସମାଧାନ ପୂର୍ବକ ୧୯୧୯ ମସିହାରେ ଭାରତୀୟ ମାନଙ୍କର ବହୁବିଧ ସମସ୍ୟାକୁ ଉତ୍‌ଥାପନ କରି ଭାରତରେ ସ୍ୱାଧୀନତା ଆନ୍ଦୋଳନର ଆହ୍ୱାନ ଦେଇଥିଲେ ଏବଂ ଭାରତୀୟ  ମାନଙ୍କୁ ଆକୃଷ୍ଟ କରିପାରିଥିଲେ । ଏହାପରେ ପ୍ରକୃତରେ ଆରମ୍ଭ ହୋଇଥିଲା ଗାନ୍ଧିଜୀଙ୍କର ଭାରତରେ ସ୍ୱାଧୀନତା ଆନ୍ଦୋଳନ । ଭାରତ ସ୍ୱାଧୀନତା ଇତିହାସ କୋଳରେ ଯେଉଁ କିଛି ବ୍ୟକ୍ତିତ୍ୱ କାଳଜୟୀ ଭାବେ ଦୀପ୍ତିମନ୍ତହୋଇ ଆଲୋକ ବର୍ତ୍ତିକା ଜଳାଇ ରଖିଯାଉଛନ୍ତି ସେମାନଙ୍କ ମଧ୍ୟରୁ ମହାତ୍ମା ଗାନ୍ଧୀ ହେଉଛନ୍ତି ଅନ୍ୟତମ । ଅନେକ ସମାଜ ସେବୀ, ରାଜନେତା, କବି, ଲେଖକ ଏବଂ ବୈଜ୍ଞାନିକ ସମୟର ଚଲାପଥରେ ବିଲିନ ହୋଇ ଯାଇଛନ୍ତି । ପଦଚିହ୍ନ ଖୋଜିଲେ ଦେଖିବାକୁ ମିଳେନାହିଁ । କ୍ଷମତାର ସହାୟତାରେ ଅକଳନ ସଂପଦର ଅଧିକାରୀ ହୋଇ ମଧ୍ୟ ଇତିହାସ ସେମାନଙ୍କୁ ଧରି ରଖି ପାରିନି । ସାଧାରଣ ଜୀବନରେ ସ୍ୱଚ୍ଛତା କଷ୍ଟକର ହେଲେ ମଧ୍ୟ  ଇତିହାସ ସେମାନଙ୍କୁ ସାଉଁଟି ଧରି ରଖିଥାଏ । ସେହି ସାଉଁଟି ଧରି ରଖିଥିବା ଇତିହାସର ପ୍ରବାଦ ପୁରୁଷ ହେଲେ ମୋହନଦାସ କରମଚାନ୍ଦ ଗାନ୍ଧୀ ।

ଭାରତବର୍ଷରେ ଦୀର୍ଘ ୨୮ ବର୍ଷର ସଂଗ୍ରାମ ଦିନେ ଗାନ୍ଧିଜୀଙ୍କୁ ଏକ ମହାମାନବ ଭାବରେ ଗଢିତୋଳିଥିଲା । ସେ ଥିଲେ ଭାରତୀୟ ଅଗଣିତ ଜନତାର ପଥ ପ୍ରଦର୍ଶକ ଏବଂ

ଭାରତୀୟ ଜାତୀୟ ଆନ୍ଦୋଳନର ମୁଖ୍ୟ କର୍ଣ୍ଣଧାର । କୋଟି କୋଟି ଭାରତୀୟ ଜନତାଙ୍କୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତିକରି ତାଙ୍କର ଚିର ଇପ୍‌ସିତ ସ୍ୱାଧୀନତା ଆଣିଦେଇ ଥିବା ହେତୁ ତାଙ୍କୁ 'ଜାତିର ଜନକ' ପଦରେ ଅଭିହିତ କରାଯାଇଅଛି । ଇଂରେଜ ମାନଙ୍କ ସହିତ ଗାନ୍ଧିଜୀଙ୍କ ରାଜନୈତିକ ସମ୍ବନ୍ଧ ଭାରତରୁ ଆରମ୍ଭ ହୋଇଥିଲା । ତାହା ନୁହେଁ, ଆମେ ପୂର୍ବରୁ ଇଂରେଜ ଶାସନ ପ୍ରତି ଗାନ୍ଧିଜୀଙ୍କର ତିକ୍ତତା ଦକ୍ଷିଣ ଆଫ୍ରିକାରୁ ରହି ଆସିଅଛି ତାହା ଆମେ ଆଲୋଚନା କରିଅଛେ । କିନ୍ତୁ ଭାରତୀୟ ପ୍ରାକ୍ ସ୍ୱାଧୀନତା ଆନ୍ଦୋଳନରେ ବ୍ରିଟିଶ ଶାସନ ପ୍ରତି ଗାନ୍ଧିଜୀ ଅନୁରକ୍ତ ଥିଲେ । ତାହା ମଧ୍ୟ କେତେକ ଐତିହାସିକ ମତବ୍ୟକ୍ତ କରିବା ସଙ୍ଗେ ସଙ୍ଗେ ଗାନ୍ଧିଜୀଙ୍କର କେତେକ ଲେଖାରୁ ଏହା ପ୍ରମାଣିତ ହୁଏ । ସେ ଥରେ ମତବ୍ୟକ୍ତ କରିଥିଲେ ଯେ, "ବ୍ରିଟିଶ ସାମ୍ରାଜ୍ୟର କେତେକ ନିର୍ଦ୍ଦିଷ୍ଟ ଆଦର୍ଶ ଥିବାର ଆବିଷ୍କାର କରି ତା'ର ମୋହରେ ମୁଁ ବଶୀଭୂତ ହୋଇ ପଡ଼ିଥିଲି" । ବୋଧହୁଏ ଏଇଥି ପାଇଁ ଭାରତରେ ଥିବା ବ୍ରିଟିଶ ଶକ୍ତିକୁ ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଗାନ୍ଧିଜୀ ସହାନୁଭୂତି ଜଣାଇ ଥିଲେ ଓ ସାହାଯ୍ୟ କରି ଥିଲେ ମଧ୍ୟ । ସେଥିପାଇଁ ବ୍ରିଟିଶ ସରକାର କୃତଜ୍ଞତା ଜଣାଇ "କାଇଜର-ଇ-ହିନ୍ଦ୍" ଉପାଧି ପ୍ରଦାନ କରିଥିଲେ । ସେଥିପାଇଁ ଭାରତୀୟ କଂଗ୍ରେସର ନେତୃବୃନ୍ଦ ଏହାର ପ୍ରବଳ ବିରୋଧ ମଧ୍ୟ କରିଥିଲେ । ଏହି ଚାପରେ ଗାନ୍ଧିଜୀ ବ୍ରିଟିଶ ମାନଙ୍କ ପ୍ରତି ପ୍ରବଳ ବିଦ୍ୱେଷଭାବ ପୋଷଣ କରି ପରବର୍ତ୍ତି ମୂହୁର୍ତ୍ତରେ ତାଙ୍କ ପ୍ରତି ଅସହଯୋଗ ସ୍ଥାପନ କରିଥିଲେ । ଏହି ଅସହଯୋଗ ମୂଳରେ ଅବସ୍ୟ ଅନେକ କାରଣ ଥିଲା । ତଥାପି ଗାନ୍ଧିଜୀ କହିଥିଲେ ଏଜାତି ହେଉଛି "ଅବିବେକୀ, ନୀତିହୀନ ଓ ଅନ୍ୟାୟୀ" । । ଆମର ଲକ୍ଷ ହେଉଛି ସ୍ୱାଧୀନତା ଲାଭ । ଏଥିପାଇଁ ସଂଘର୍ଷ ଆଜି ହିଂସାତ୍ମକ ପନ୍ଥାର ଆଶ୍ରୟ ନନେଇ ମହତ୍ ପ୍ରଥା ଅବଲମ୍ବନ କରିବା ଉଚିତ୍ । ସତ୍ୟାଗ୍ରହର ତାତ୍ତ୍ୱିକ ଅର୍ଥ ହେଲା 'ସତ୍ୟ ପ୍ରତି ଆସକ୍ତି' । ତେଣୁ ସତ୍ୟାଗ୍ରହ ମାଧ୍ୟମରେ ଆମକୁ ସକଳ ପନ୍ଥା ନିର୍ଦ୍ଧାରଣ କରିବାକୁ ହେବ । ତେଣୁ ଏହି ସତ୍ୟାଗ୍ରହକୁ ପାଥେୟ କରି ଗାନ୍ଧିଜୀ ୧୯୧୯ ମାର୍ଚ୍ଚ ୩୦ ତାରିଖ ଦିନ ଦେଶର ସବୁ ବିଦେଶୀ ଶାସନ କ୍ଷେତ୍ରରେ ପ୍ରଥମ ଥର ପାଇଁ ଅସହଯୋଗର ଅସ୍ତ୍ର ପ୍ରୟୋଗ କରି ସବୁ ସରକାରୀ କଳରୁ ସହଯୋଗ ପ୍ରତ୍ୟାହାର କରିନେଇ ଶାସନକୁ ସଂପୂର୍ଣ୍ଣ ଭାବେ ଅଚଳ କରିଦେବା ଥିଲା ଅସହଯୋଗର ଉଦ୍ଦେଶ୍ୟ । ଫଳରେ ବିଚାରାଳୟ, ବିଧାନସଭା, ବିଦ୍ୟାଳୟ, ମହାବିଦ୍ୟାଳୟ ଓ ବିଦେଶୀ ବସ୍ତ୍ର ବର୍ଜନ ଇତ୍ୟାଦି ସବୁ ଅଚଳ ହୋଇ ପଡିଲା । ବିଦେଶୀ ଦ୍ରବ୍ୟକୁ ପରିତ୍ୟାଗ କରାଗଲା । ସ୍ୱଦେଶ ଆନ୍ଦୋଳନରେ ଗାନ୍ଧିଜୀ ବିଦେଶୀ ଅନୁଷ୍ଠାନ ଗୁଡ଼ିକୁ ଓ ବିଦେଶୀ ଦ୍ରବ୍ୟକୁ ପରିହାର କରି ଭାରତୀୟ ଅନୁଷ୍ଠାନ ଓ ଭାରତୀୟ ଦ୍ରବ୍ୟକୁ

ବ୍ୟବହାର ପାଇଁ ଗାନ୍ଧିଜୀଙ୍କର ଆହ୍ୱାନ ଥିଲା । ଛାତ୍ରମାନଙ୍କୁ ବିଦେଶୀ ଶିକ୍ଷାରୁ ନିବୃତ ରହି ସ୍ୱଦେଶୀ ଶିକ୍ଷାନିମନ୍ତେ ଆହ୍ୱାନ ଦେଲେ । ସରକାରୀ କଚେରୀକୁ ନଯାଇ ନିଜ ଗ୍ରାମରେ ଗ୍ରାମ ସଭା ମାଧ୍ୟମରେ ଓ ପଞ୍ଚାୟତି ବିଚାରାଳୟ ମାଧ୍ୟମରେ ସମସ୍ତ ମାମଲାକୁ ଫଇସଲା କରିବାକୁ ଉପଦେଶ ଦେଉଥିଲେ । ବିଦେଶୀ ବସ୍ତ୍ର ଏବଂ ବିଦେଶୀ ପୋଷାକକୁ ବର୍ଜନ କରି କୁଟି ଖାଅ କାଟି ପିନ୍ଧର ଆହ୍ୱାନ ମଧ୍ୟ ଦେଇଥିଲେ । ଯାହାହେଉ ୧୯୨୦ ମସିହାରେ ଅସହଯୋଗ ଆନ୍ଦୋଳନ ମାଧ୍ୟମରେ ସେ ଆଶାନୁରୂପକ କୃତିତ୍ୱ ଅର୍ଜନ କରି ପାରିଥିଲେ । କିନ୍ତୁ ତାଙ୍କର ସେହି ଗୋଟିଏ ବାଣୀ ଥିଲା ଶାନ୍ତି ଏବଂ ଅହିଂସାକୁ ପାଥେୟକରି ଅସହଯୋଗ ଆନ୍ଦୋଳନ ଚାଲୁରହୁ ।

ଏହି ଜାତୀୟ ରାଜନୀତିରେ ୧୯୧୯ ମସିହାରେ ଗାନ୍ଧୀଙ୍କର ଯୋଗଦାନ ଭାରତୀୟ ଜାତୀୟ ଆନ୍ଦୋଳନର ସ୍ରୋତକୁ ଅଧିକ କ୍ଷୀପ୍ରତର କରି ତୋଳିଥିଲା । ଏହି ମୂଳରେ ଥିଲା ଗାନ୍ଧୀଙ୍କର ସେହି ସତ୍ୟ, ଅହିଂସା, ଆତ୍ମୋତ୍ସର୍ଗ ଏବଂ ସମଭାପନ୍ନ ନୀତି । ଯାହା ଫଳରେ ଅଗଣିତ ଜନତାଙ୍କର ଇପ୍‌ସିତ ଲକ୍ଷ 'ଦେଶର ସ୍ୱାଧୀନତା' ହାସଲ କରି ପାରିଥିଲେ । ଏଠାରେ ଆମେ ଟିକିଏ ଆଲୋଚନା କରିବାଯେ, ଗାନ୍ଧିଜୀ ଅସହଯୋଗ ବ୍ରତୀ ହେଲେ କାହିଁକି ? ଆମେ ପୂର୍ବରୁ ଆଲୋଚନା କରିଛେ ଯେ, ଗାନ୍ଧିଜୀ ଇଂରେଜ ଶାସନକୁ ସମସ୍ତ ପ୍ରକାର ସହଯୋଗ କରି ଆସି ଥିବାରୁ ସେ ଅନ୍ୟ ମାନଙ୍କ ଦ୍ୱାରା ସମାଲୋଚିତ ହେଉଥିଲେ । କିନ୍ତୁ ହଠାତ୍ ଗାନ୍ଧୀଙ୍କର ଏପରି ପରିବର୍ତ୍ତନ ଆସିଲା କାହିଁକି ? ଆମେ ଏଠାରେ ସଂକ୍ଷେପରେ କିଛି ଆଲୋଚନା କରିବା ।

ଏଥି ପୂର୍ବରୁ ଆମେ ଏ ବିଷୟରେ କିଛି ଆଲୋକପାତ କରିଥିଲେ ସୁଦ୍ଧା, ପୁନର୍ବାର ଏହାର କାରଣ ଉପରେ ଆମେ ସଂକ୍ଷେପରେ ଆଲୋଚନା କରିବା । ଗୋପାଳକୃଷ୍ଣ ଗୋଖଲେ ଭାରତର ଜଣେ ଉଦାର ପନ୍ଥି ନେତାଥିଲେ । ଗାନ୍ଧୀ ଦକ୍ଷିଣ ଆଫ୍ରିକାରୁ ଫେରିବା ପରେ ଏବଂ ଭାରତୀୟ ଜାତୀୟ ଆନ୍ଦୋନଳରେ ଅଂଶ ଗ୍ରହଣ କରିବା ପୂର୍ବରୁ ଗୋପଳକୃଷ୍ଣ ଗୋଖଲେଙ୍କ ଠାରୁ କିଛି ଉପଦେଶ ଓ ନୀତିବାଣୀ ଦେଶ ଓ ଜାତି ସମ୍ବନ୍ଧରେ ଗ୍ରହଣ କରିଥିଲେ । ତେଣୁ ଗାନ୍ଧୀ କିଛି କାଂସରେ ବ୍ରିଟିଶ୍ ଶାସନର ପରମ ସହଯୋଗୀ ଥିଲେ । କିନ୍ତୁ ୧୯୧୯ ମସିହାରେ ବ୍ରିଟିଶ୍ ଶାସକ ମାନଙ୍କର କେତେକ ପ୍ରେରଣା ମୂଳକ ଓ ଅମାନୁଷିକ ଘଟଣା ସମୁହକୁ ନେଇ ଗାନ୍ଧୀଜୀ ଅସହଯୋଗ ଆନ୍ଦୋଳନରେ ବ୍ରତୀ ହେବାକୁ ବାଧ ହୋଇଥିଲେ । ତଥାପି ତାଙ୍କର ସତ୍ୟ ଏବଂ ଅହିଂସା ପ୍ରତି ତୀକ୍ଷ୍ଣ ଦୃଷ୍ଟି ରହିଥିଲା । ୧୯୨୦

୮ସିହା ଡ଼ିସେମ୍ବର ମାସରେ ଭାରତୀୟ ଜାତୀୟ କଂଗ୍ରେସର ଏକ ଐତିହାସିକ ଅଧିବେଶନ ନାଗପୁର ଠାରେ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନରେ କଂଗ୍ରେସ ଜାତୀୟବାଦୀ ନେତାମାନେ ଯୋଗଦାନ କରିଥିଲେ । ଏହିଠାରେ ଗାନ୍ଧିଜୀଙ୍କ ଦ୍ୱାରା ପ୍ରଦତ୍ତ ଅସହଯୋଗ ଆନ୍ଦୋଳନଟି ସମର୍ଥନ ଲାଭ କରିଥିଲା । ତେଣୁ ଏହି ଦୃଷ୍ଟିରୁ ନାଗପୁର କଂଗ୍ରେସ ଅଧିବେଶନଟି ଭାରତୀୟ ସ୍ୱାଧୀନତା ଇତିହାସରେ ଥିଲା ଗୁରୁତ୍ୱପୂର୍ଣ୍ଣ ।

ଅସହଯୋଗ ହେଉଛି ସବୁ କ୍ଷେତ୍ରରେ ଇଂରେଜ ସରକାରଙ୍କଠାରୁ ସହଯୋଗ ପ୍ରତ୍ୟାହାର କରିନେବା । ଅର୍ଥାତ୍ କୌଣସି କ୍ଷେତ୍ରରେ ଇଂରେଜ ସରକାରଙ୍କୁ ସହଯୋଗ ନକରିବା । ଅସହଯୋଗର ମୂଳନୀତି ହେଲା ବିଦେଶୀ ଦ୍ରବ୍ୟ ବର୍ଜନ କରିବା । ଗାନ୍ଧିଜୀଙ୍କ ମତ ଅନୁସାରେ ଏହା ଫଳରେ ଇଂରେଜ ସରକାରଙ୍କ ଶାସନ କ୍ଷେତ୍ରରେ ବହୁବିଧ ବାଧା ସୃଷ୍ଟି ହେବ । ସୁଚାରୁ ରୂପେ ଶାସନ ପରିଚାଳନା ହୋଇ ପାରିବ ନାହିଁ । ଶାସନ କଳ ଅଚଳ ହୋଇ ପଡ଼ିବ । ଆଉ ଗୋଟିଏ ମୁଖ୍ୟ କାରଣ ହେଲା ବିଦେଶୀ ଦ୍ରବ୍ୟ ବର୍ଜନ ଦ୍ୱାରା ବିଲାତି ଜିନିଷ ଭାରତୀୟ ବଜାରରେ ବିକ୍ରୟ ହୋଇ ପାରିବ ନାହିଁ । ତେଣୁ ସେମାନଙ୍କର ଅର୍ଥ ନୀତିରେ ନିଶ୍ଚିନ୍ତ ରୂପେ ପ୍ରଭାବ ପକାଇବ ଏବଂ ଅର୍ଥନୀତି ଧ୍ୱଂସାଭିମୁଖୀ ହୋଇଯିବ । ଇଂରେଜମାନେ ନିରୁପାୟ ହୋଇ ଭାରତ ଛାଡିବାକୁ ବାଧ ହେବେ । ଦେଶରେ ଏହାର ମୁଖ୍ୟ ଆହ୍ୱାନକାରୀ ଥିଲେ ଗାନ୍ଧିଜୀ । ଏହାକୁ ସୁଚାରୁ ରୂପେ ଚଳାଇବା ପାଇଁ ଗାନ୍ଧିଜୀ କେତେ ଗୁଡ଼ିଏ ନିୟମ ପ୍ରଚଳନ କରାଇଥିଲେ । ସେ ଗୁଡ଼ିକ ସଂକ୍ଷେପରେ ଦିଆଗଲା ।

୧) ଆଗାମୀ ନିର୍ବାଚନକୁ ବର୍ଜନ କରିବା ।
୨) ସଦସ୍ୟ ମାନେ ବିଧାନ ପରିଷଦ ବର୍ଜନ କରିବେ ।
୩) ସରକାରଙ୍କ ଦ୍ୱାରା କୌଣସି ଉତ୍ସବରେ କେହି ଯୋଗଦେବେ ନାହିଁ ।
୪) ସମ୍ମାନ ସୂଚକ ପଦବୀ ଓ ଉପାଧି ଗୁଡ଼ିକ ସରକାରଙ୍କୁ ଫେରସ୍ତ ଦିଆଯିବ ।
୫) ଛାତ୍ରମାନେ ବିଦ୍ୟାଳୟ ଓ ମହାବିଦ୍ୟାଳୟରେ ନିଜକୁ ପ୍ରତ୍ୟାହାର କରିବେ ।
୬) ଆଇନଜୀବୀ ମାନେ ବିଚାରାଳୟକୁ ଯିବେ ନାହିଁ ।
୭) ଦେଶବାସୀ ବିଦେଶୀ ଦ୍ରବ୍ୟ ବର୍ଜନ କରିବେ ।
୮) ଗ୍ରାମ ଗୁଡ଼ିକରେ ପଞ୍ଚାୟତ ରାଜ ଗଠନ କରି ସବୁ ଘଟଣାର ମିମାଂସା କରାଯିବ ।
୯) ଛାତ୍ରମାନଙ୍କୁ ଶିକ୍ଷାଦେବା ନିମନ୍ତେ ଜାତୀୟ ବିଦ୍ୟାଳୟ ଓ ମହାବିଦ୍ୟାଳୟ ମାନ ସ୍ଥାପିତ କରାଯିବ ।

୧୦) ହାତକଟା ସୂତାରୁ ଖଦୀ ବସ୍ତ୍ର ବ୍ୟବହାର କରାଯିବ ।

୧୧) ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ସମାନ ।

ଏହି ଅସହଯୋଗ ଆନ୍ଦୋଳନର ଆବାହକ ଥିଲେ ଜାତୀୟ ଆନ୍ଦୋଳନର ଜନ ନାୟକ ମହାତ୍ମା ଗାନ୍ଧୀ । ଏହି ଆନ୍ଦୋନଳ ଭାରତବର୍ଷରେ କିପରି ଭାବରେ ଆଦୃତ ଏବଂ ଅନାଦୃତ ଥିଲା ସେ ବିଷୟରେ କିଞ୍ଚିତ୍ ଆଲୋକପାତ କରିବାଟା ବିଧେୟ ମନେକରେ । ପ୍ରଥମେ ଗାନ୍ଧିଜୀଙ୍କୁ ଇଂରେଜ ସରକାରଙ୍କ ଦ୍ୱାରା ପ୍ରଦାନ କରାଯାଇଥିବା ସମ୍ମାନ ସୂଚକ "କାଇଜର-ଇ-ହିନ୍ଦ"କୁ ସେ ଫେରସ୍ତ ଦେଇଥିଲେ । ବେଦେଶୀ ବସ୍ତ୍ର ଗୁଡ଼ିକୁ ସର୍ବସାଧାରଣ ସମ୍ମୁଖରେ ପୋଡ଼ି ଦିଆ ଯାଇଥିଲା । ଛାତ୍ର ମାନଙ୍କ ଦ୍ୱାରା ବିଦ୍ୟାଳୟ ଏବଂ ମହାବିଦ୍ୟାଳୟ ମାନ ବର୍ଜନ କରାଯାଇଥିଲା । ନିର୍ବାଚନରେ ଜାତୀୟ କଂଗ୍ରେସ ଅଂଶ ଗ୍ରହଣ କରି ନଥିଲା । ମୋତିଲାଲ ନେହେରୁ, ବିଠଲ ଭାଇ ପଟେଲ, ଚିତ୍ତରଞ୍ଜନ ଦାସ, ରାଜେନ୍ଦ୍ର ପ୍ରସାଦ, ବଲ୍ଲଭ ଭାଇ ପଟେଲ ଓ ଅନ୍ୟାନ୍ୟ କେତେକ ପ୍ରକ୍ଷାତ ଆଇନଜୀବୀ ଅଦାଲତ ବର୍ଜନ କରି ନିଜ ନିଜର ଓକିଲାତି ବ୍ୟବସାୟ ବର୍ଜନ କରିଥିଲେ । ଫଳରେ ଆଇନଜୀବୀ ମାନଙ୍କର ଭରଣ ପୋଷଣ ପାଇଁ ଯମୁନା ଲାଲ ବାଜାଜ୍ ବାର୍ଷିକ ଏକ ଲକ୍ଷ ଟଙ୍କା ଦାନ ଦେବାପାଇଁ ଘୋଷଣା ମଧ୍ୟ କରିଥିଲେ ।

କେବଳ ସେତିକି ନୁହେଁ ଏହା ସହିତ କେତେକ ଗଠନ ମୂଳକ କାର୍ଯ୍ୟ ମଧ୍ୟ ହାତକୁ ନିଆ ଯାଇଥିଲା । ବଙ୍ଗୀୟ ଜାତୀୟ ବିଶ୍ୱ ବିଦ୍ୟାଳୟ, ଦିଲ୍ଲୀର ଜାମିଆ ମିଲିଆ ବିଶ୍ୱବିଦ୍ୟାଳୟ, ତିଳକ ମହାରାଷ୍ଟ୍ର ବିଦ୍ୟାଳୟ, ବିହାର ବିଦ୍ୟାପୀଠ, ଗୁଜୁରାଟ ବିଦ୍ୟାପୀଠ, ବନାରସ ବିଦ୍ୟାପୀଠ, ଲାହୋର ଜାତୀୟ ମହାବିଦ୍ୟାଳୟ ପରି କେତେକ ଜାତୀୟ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠିତ ହୋଇଥିଲା । ସେଇ ସମୟରୁ ଏକ ପ୍ରତିକ ଭାବରେ ଚରଖାକୁ କଂଗ୍ରେସ ପତାକାରେ ସ୍ଥାନ ପାଇଥିଲା । ଆଉ ଏକ ସ୍ମରଣୀୟ ଘଟଣା ହେଉଛି ସେହି ଦିନ ଠାରୁ ଗାନ୍ଧିଜୀ କୁର୍ତ୍ତା ପରିଧାନ ପରିହାର କରି କେବଳ ଧୋତି ପରିଧାନ କଲେ । ଏହି ଆନ୍ଦୋଳନକୁ ଆର୍ଥିକ ସହାୟତା ଯୋଗାଇବା ପାଇଁ "ତିଳକ ରାଜସ୍ୱ ଫଣ୍ଡ" ନାମରେ ଆର୍ଥିକ ସଂସ୍ଥା ଗଠନ କରାଯାଇଥିଲା । ଖୁବ୍ କମ୍ ସମୟ ମଧ୍ୟରେ କୋଟି କୋଟି ଟଙ୍କା ଉକ୍ତ ସଂସ୍ଥାରେ ଜମା ହୋଇ ପାରିଥିଲା । କୃଷକ ମାନଙ୍କର ମୁଠି ଚାଉଳ ଠାରୁ ଆରମ୍ଭ କରି ମହିଳା ମାନଙ୍କର ନିଜ ନିଜର ଅଳଙ୍କାର ଆଦି ବିନା ଦ୍ୱିଧାରେ ଦାନ କରୁଥିଲେ । ପୁରାଣରେ ସେତୁବନ୍ଧ ପ୍ରତି ଗୁଣ୍ଡୁଚି ମୂଷାର ଦାନ ପରି ପ୍ରତ୍ୟେକ ଭାରତୀୟ କୃଷକ ପରିବାର ନିଜର ଖାଇବା ମଧ୍ୟରୁ ଦିନକୁ ମୁଠାଏ ଲେଖାଁଏ

ଚାଉଳ (ମୁଠି ଚାଉଳ) "ତିଳକ ରାଜସ୍ୱ ଫଣ୍ଡ"କୁ ଆଗ୍ରହ ସହକାରେ ଦାନ କରୁଥିଲେ। ଏହାହିଁ ଥିଲା ଭାରତୀୟ ମାନଙ୍କର ଜାତୀୟତା ପ୍ରୀତି।

ସହର ଠାରୁ ପଡ଼ା ଗ୍ରାମ ପର୍ଯ୍ୟନ୍ତ ଅସହଯୋଗ ଆନ୍ଦୋଳନ ଏବଂ ହରତାଳରେ ସମସ୍ତେ ସାମିଲ ହେବା ଫଳରେ ଆନ୍ଦୋଳନ ବଢି ଚାଲିଲା। ଏହି ଅଭୂତପୂର୍ବ ସଫଳତା ହାସଲ କରି ପାରିଥିବାର ଦେଖି ଇଂରେଜ ସରକାର ଏହାର ଦମନ ପାଇଁ ପଦକ୍ଷେପ ଗ୍ରହଣ କରିଥିଲେ। ଆନ୍ଦୋଳନକାରୀ ନେତା ମାନଙ୍କୁ ବନ୍ଦୀ କରି ବନ୍ଦୀଶାଳାରେ ରଖିଲେ। ଏହା ଫଳରେ ଜନସାଧାରଣ ଅଧିକ ହିଂସାକାଣ୍ଡର ଆଶ୍ରୟ ନେଇଥିଲେ। ୧୯୨୧ ସମିହା ନଭେମ୍ବର ୧୭ ତାରିଖ ଦିନ ୱେଲସର ଯୁବରାଜଙ୍କ ଭାରତ ପରିଦର୍ଶନକୁ ବିଦ୍ରୋହୀମାନେ ବର୍ଜନ କରିବା ଫଳରେ ଇଂରେଜ ମାନେ କ୍ରୋଧାନ୍ୱିତ ହୋଇ ସେମାନଙ୍କର ଦମନର ତାଣ୍ଡବ ଲୀଳା ଜାରି ରଖିଥିଲେ। ସାଧାରଣ ସଭା ବନ୍ଦ କରି ଆନ୍ଦୋଳନ କାରୀଙ୍କୁ ଗିରଫ କରି କାରାଗାର ମଧ୍ୟରେ ନିକ୍ଷେପ କରାଯାଇଥିଲା। କିଛି ନେତା ଏଥିରେ ପ୍ରାଣ ମଧ୍ୟ ହରାଇ ଥିଲେ। ଗାନ୍ଧିଜୀଙ୍କ ବ୍ୟତୀତ ଅନ୍ୟାନ୍ୟ ନେତା ମାନଙ୍କୁ ତଥା ତୁଙ୍ଗ ନେତୃ ବୃନ୍ଦଙ୍କୁ ବନ୍ଦୀଶାଳାରେ ରଖା ଯାଇଥିଲା। ତଥାପି ଆନ୍ଦୋଳନ ଜାରି ରହିଥିଲା।

ଅସହଯୋଗ ଆନ୍ଦୋଳନର ସଫଳତା ଓ ବିଫଳତା ଉପରେ ଦ୍ୱିମତ ଥିଲେ ମଧ୍ୟ ବିଭିନ୍ନ ସ୍ଥାନରେ ହିଂସାକାଣ୍ଡ ଯୋଗୁଁ ଏହାକୁ ହଠାତ୍ ବନ୍ଦକରି ଦିଆଗଲା। ଉତ୍ତର ପ୍ରଦେଶରେ ଗୋରଖପୁର ଜିଲ୍ଲାର ଚୌରୀ ଚୌରା ଠାରେ ଉତ୍ୟକ୍ତ ଲୋକ ମାନେ ଗୋଟିଏ ଥାନାରେ ଅଗ୍ନି ସଂଯୋଗ କରି ୨୧ ଜଣ ପୋଲିସ କର୍ମଚାରୀଙ୍କୁ ଜୀବନ୍ତ ଦଗ୍ଧ କରିଥିଲେ। ଏହିପରି ଅନେକ ହିଂସାକାଣ୍ଡ ଫଳରେ ଗାନ୍ଧିଜୀ ଏହି ଆନ୍ଦୋଳନକୁ ସ୍ଥଗିତ ରଖିଲେ। ଗାନ୍ଧିଜୀଙ୍କର ଏହି ନିଷ୍ପତ୍ତି ଉପରେ କଂଗ୍ରେସର ତୁଙ୍ଗ ନେତାମାନେ ବିରୋଧ କରିଥିଲେ। ଗାନ୍ଧିଜୀ ସମାଲୋଚନାର ଶୀକାର ହେଲେ। ପରିଶେଷରେ ୧୯୨୨ ମସିହା ମାର୍ଚ୍ଚ ୧୦ ତାରଖ ଦିନ ଗାନ୍ଧିଜୀଙ୍କୁ ବନ୍ଦୀ କରାଯିବା ସଙ୍ଗେ ସଙ୍ଗେ ୬ ବର୍ଷ କରାଦଣ୍ଡ ରେ ଦଣ୍ଡିତ କରାଗଲା। କିନ୍ତୁ ତାଙ୍କର ଅସୁସ୍ଥତା ଦୃଷ୍ଟିରୁ ତାଙ୍କୁ ୧୯୨୪ ମସିହା ଫେବୃଆରୀ ୫ ତାରିଖ ଦିନ ମୁକ୍ତି ଦଆଯାଇଥିଲା।

ଗାନ୍ଧିଜୀଙ୍କ ନେତୃତ୍ୱରେ ଏହି ଆନ୍ଦୋଳନ ଯାହା ହେଉନା କାହିଁକି ଭାରତର ସ୍ୱାଧୀନତା ପାଇଁ ଏହି ଆନ୍ଦୋଳନ ଦିନେ ଆନ୍ଦୋଳନ କାରୀଙ୍କୁ ରାଜ ରାସ୍ତା ଦେଖାଇ ଥିଲା ଏଥିରେ ଦ୍ୱିମତ ନାହିଁ। ଭାରତ ଇତିହାସରେ ଏହି ଆନ୍ଦୋଳନ ଏକ ଜ୍ୱଳନ୍ତ ଆଲୋକ ବର୍ତ୍ତିକା ଭାବେ

ରହିଛି ଓ ରହିଥିବ । ଏହି ଆନ୍ଦୋଳନ ଭାରତୀୟ ମାନଙ୍କ ହୃଦୟରେ ଏକ ନୂତନ ଚେତନା ସୃଷ୍ଟି କରି ନିର୍ଭୀକ ଭାବରେ ଗଢି ତୋଳିଥିଲା । ପ୍ରତ୍ୟେକ ଭାରତୀୟ  ମାନଙ୍କ ମଧରେ ସ୍ୱାଧୀନତା ପାଇଁ ଏକ ଆତ୍ମ ବିଶ୍ୱାସ ସୃଷ୍ଟି କରି ପାରିଥିଲା । ମୂଳ କଥା ହେଲା ଏହିଆନ୍ଦୋଳନ ଫଳରେ କଂଗ୍ରେସର ମଧ ବହୁ ପରିବର୍ତ୍ତନ ଦେଖା ଦେଇଥିଲା । 'ସ୍ୱରାଜ' ଏହା କଂଗ୍ରେସର ମୂଖ୍ୟ ଦାବୀଭାବେ ସେମାନେ ଗ୍ରହଣ କରିଥିଲେ । କଂଗ୍ରେସ କେତେକ ମୁଷ୍ଟିମେୟ ବ୍ୟକ୍ତିଙ୍କ ଅନୁଷ୍ଠାନ ପରିବର୍ତ୍ତେ ଏହା ଏକ ସର୍ବସାଧାରଣ ଦଳୀୟ ଅନୁଷ୍ଠାନରେ ପରିଣତ ହୋଇ ପାରିଥିଲା । କଂଗ୍ରେସର ବହୁ ତୁଙ୍ଗ ନେତାମାନେ ମଧ ପରବର୍ତ୍ତି ସ୍ୱାଧୀନତା ଆନ୍ଦୋଳନ ପାଇଁ ଉତ୍ତମ ଶିକ୍ଷା ଆହରଣ କରି ପାରିଥିଲେ । ବିଦେଶୀ ବସ୍ତ୍ରର ପରିହାର ପରେ ଦେଶୀୟ ବସ୍ତ୍ରର ଚାହିଦା ବଢ଼ିଲା । ଫଳରେ ବହୁ ବୁଣାକାର କର୍ମ ସଂସ୍ଥାନ ପାଇପାରିଥିଲେ । ପରବର୍ତ୍ତି ସମୟରେ ଏହି ହାତ ବୁଣା ଖଦଡ଼ ଧୋତି ଭାରତୀୟ ଲୋକଙ୍କ ମଧରେ ଆଦୃତ ଲାଭ କରିବା ଫଳରେ ରାଜନେତା ମାନଙ୍କର ଏହା ଅଦ୍ୟାବଧି ସୁଦ୍ଧା ସମ୍ମାନ ଜନକ ପୋଷାକ ହୋଇ ରହିଅଛି ।

ଆଜିର ସଭ୍ୟ ସମାଜରେ ଯଦି ବିଦେଶୀ ପୋଷାକକୁ ପରିତ୍ୟାଗ କରି କିଛି  ମାତ୍ରାରେ ଖଦଡ଼ ପୋଷାକ ପିନ୍ଧା ଯାଆନ୍ତା ତାହାହେଲେ ଗ୍ରାମୀଣ ଜନସାଧାରଣ ଏବଂ ବୁଣାକାର ମାନଙ୍କର ମଧ ଅର୍ଥନୈତିକ ପରିସ୍ଥିତିକୁ ବଦଳା ଯାଇ ପାରନ୍ତା । କହିବା ବାହୁଲ୍ୟ ଯେ, ଯଦି ସମ୍ବଲପୁରୀ କନାକୁ ଓଡ଼ିଶାରେ ଥିବା କଲେଜ ମାନଙ୍କରେ ଛାତ୍ର ଛାତ୍ରୀ ମାନଙ୍କ ପାଇଁ ତଥା ସମ୍ବଲପୁରୀ ଶାଢୀକୁ ଡ୍ରେସ୍‌କୋଡ଼ ଭାବରେ ବ୍ୟବହାର କରା ଯାଆନ୍ତା ତାହାହେଲେ ଓଡ଼ିଶରେ ସମ୍ବଲପୁରୀ ବସ୍ତ୍ରର ଚାହିଦା ବଢିବା ସଙ୍ଗେ ସଙ୍ଗେ ବୁଣାକାର ମାନେ ମଧ ଉପକୃତ ହୋଇ ପାରନ୍ତେ । ଆଜି ଏହି ଚିନ୍ତାଧାରା ଜନମାନସରେ ନାହିଁ କିନ୍ତୁ ରହିବା ଉଚିତ ।

ଅସହଯୋଗ ଆନ୍ଦୋଳନକୁ ସମାଲୋଚନା ପରିଷରକୁ ନିଆଗଲେ ଦେଶ ଉପରେ ପଡ଼ିଥିବା ତାର କୁପରିଣାମ ମଧ ଦେଖାଯାଏ । ଗାନ୍ଧିଜୀ ଏକ ତରଫା ଭାବରେ ଅସହଯୋଗ ଆନ୍ଦୋଳନକୁ ହଠାତ୍ ବନ୍ଦ କରିଦେବା ଫଳରେ ଲୋକମାନେ ବହୁବିଧ ସମସ୍ୟାର ସମ୍ମୁଖୀନ ହୋଇଥିଲେ । ଏତେବଡ଼ ଆନ୍ଦୋଳନ ଚଲାଇବା ପାଇଁ ଜାତୀୟ କଂଗ୍ରେସ ତାଲିମ ପ୍ରାପ୍ତ ହୋଇନଥିଲା । ଫଳରେ  ଜନତା କଂଗ୍ରେସ ଉପରେ ଆନ୍ଦୋଳନର ଅଶାନୁରୂପକ ଫଳ ପଡ଼ି ନଥିଲା । ଗାନ୍ଧିଜୀଙ୍କର ଅହିଂସା ଆନ୍ଦୋଳନ ହଂସାରେ ପରିଣତ ହୋଇପଡ଼ିଲା । ଅଦାଲତ ବର୍ଜନ କରିଥିବା ଓକିଲ, ଅଧାପନା ଛାଡ଼ିଥିବା ଅଧାପକ ଏବଂ ଚାକିରୀ ଛାଡ଼ିଥିବା

ଚାକିରୀଆ ସେମାନଙ୍କର ଭରଣ ପୋଷଣର ଉପଯୁକ୍ତ ବ୍ୟବସ୍ଥା ହୋଇ ପାରି ନଥିବାରୁ ସେମାନଙ୍କୁ ବହୁତ କଷ୍ଟ ସହିବାକୁ ପଡ଼ିଥିଲା । ଯେଉଁ ଛାତ୍ରମାନେ ମହାବିଦ୍ୟାଳୟ ଏବଂ ବିଶ୍ୱବିଦ୍ୟାଳୟ ବର୍ଜନ କାର୍ଯ୍ୟକ୍ରମରେ ସାମିଲ ହୋଇଥିଲେ ସେମାନଙ୍କୁ ପାଠପଢ଼ା ଛାଡ଼ିବାକୁ ପଡ଼ିଥିଲା । କିଛି ଛାତ୍ର ସର୍ବାନ୍ତ କରଣରେ ମାତୃଭୂମିର ସେବା କଲେ ଓ ଅନ୍ୟ ଛାତ୍ରମାନେ ପରିବାର, ଶିକ୍ଷକ ତଥା ସରକାରୀ କର୍ତ୍ତୃପକ୍ଷଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାରୁ ପାରିବାରିକ ଅଶାନ୍ତି ସୃଷ୍ଟି ହୋଇଥିଲା । ବିଭିର୍ଣ୍ଣ ଦୃଷ୍ଟି କୋଣରୁ ଆଲୋଚନା କଲେ ଏହି ଆନ୍ଦୋଳନର ପ୍ରଭାବ ଜାତୀୟ କଂଗ୍ରେସ ଉପରେ  ଅଧିକ ମାତ୍ରାରେ ପଡ଼ିଥିଲା । କାରଣ ଏହି ଆନ୍ଦୋଳନ ଅଧିକ ଦିନଧରି ଚାଲିଥିଲେ ବ୍ରିଟିଶ ସରକାର ଏହାର ସମାଧାନ ପାଇଁ କଂଗ୍ରେସକୁ ଡ଼ାକି ତାର ସମାଧାନର ସୂତ୍ର  ବାହାର କରିଥାନ୍ତା । ଫଳରେ କଂଗ୍ରେସ ତାର ମାର୍ମିକ ଚିନ୍ତାଧାରାକୁ ବ୍ରିଟିଶ ସରକାରଙ୍କ ନିକଟରେ ବ୍ୟକ୍ତ କରିପାରିଥାନ୍ତା । ଏହିପାଇଁ କଂଗ୍ରେସ ତାର ସୁବର୍ଣ୍ଣ ସୁଯୋଗକୁ ହାତଛଡା କରିବସିଲା । ସେତିକି ନୁହେଁ, କେତେକ ଜାତୀୟ ସ୍ତରର ନେତା ଏହା ଫଳରେ ଗାନ୍ଧିଜୀଙ୍କ ଉପରେ ଆସ୍ଥା ହରାଇ ବସିଥିଲେ । ମୁସଲିମ୍ ଲିଗ୍ ରାଜନୀତି କ୍ଷେତ୍ରରେ ତାର ଫାଇଦା ଉଠାଇ ଥିଲା ।

ଏହି ଅସହଯୋଗ ଆନ୍ଦୋଳନର ସଫଳତା ଏବଂ ବିଫଳତା ଉପରେ ବହୁ ତୁଙ୍ଗ ନେତା ଏବଂ ଐତିହାସିକ ମାନେ ବିଭିନ୍ନ ମତ ପୋଷଣ କରିଥାନ୍ତି । ଜଣେ ଜାତୀୟବାଦୀ ନେତା ଚିତ୍ତରଞ୍ଜନ ଦାସ ଲେଖିଛନ୍ତି, "ମହାତ୍ମାଜୀ ଅଭିଯାନ ଖୁବ୍ ସୁନ୍ଦର ଭାବେ ଆରମ୍ଭ କରିଥିଲେ । ସେ ନିଜର ପନ୍ଥା  ପ୍ରୟୋଗ କରିବା ଫଳରେ ଏହି  ଅଭିଯାନ ଅକୃତକାର୍ଯ୍ୟତା ପରେ କୃତକାର୍ଯ୍ୟତା ହାସଲ କରି ପାରିଥିଲା । ମାତ୍ର ଏହା  ଉତ୍ତମ ସମୟରେ ପହଞ୍ଚିବାବେଳେ ଗାନ୍ଧିଜୀ ଅବ୍ୟବସ୍ଥିତ ଚିତ୍ତରେ କାର୍ଯ୍ୟ କରିଥିଲେ" । ଏହିପରି ଭାବରେ ଏହି ଆନ୍ଦୋଳନକୁ ବିଚାର କଲେ ଆମ ମନରେ ସ୍ୱତଃ ପ୍ରଶ୍ନ ଯାଗ୍ରତ ହୁଏ ଯେ, ବ୍ରିଟିଶ୍ ସରକାରଙ୍କର ଗାନ୍ଧିଜୀଙ୍କ ପ୍ରତି କି ପ୍ରକାର ବିଶ୍ୱାସ ଘାତକତା ଜନ୍ମାଇଥିଲା ଯାହା ଫଳରେ ଗାନ୍ଧୀ ଅସହଯୋଗ ଆନ୍ଦୋଳନକୁ  ଓହ୍ଲାଇ ଆସିଥିଲେ ।  ଏହା ଉପରେ କିଞ୍ଚିତ୍ ଆଲୋଚନା କରିବା ଆମର ବିଧେୟ ମନେହୁଏ । ଆମେ ସମସ୍ତ ବିଷୟ ଆଲୋଚନା ନ କରି କିଛିଟା ଆଲୋଚନା କରିବା । ଗାନ୍ଧିଜୀଙ୍କୁ  ପ୍ରଭାବିତ କରିଥିବା ଘଟଣା ଗୁଡ଼ିକ ମଧ୍ୟରୁ ରାଓ୍ୱଲାଟ ଆଇନ ଅନ୍ୟତମ ।

## ରାଓ୍ୱଲାଟ ଆଇନ

ରାଓ୍ୱଲାଟ ହେଉଛନ୍ତି ବ୍ରିଟିଶ୍ ସରକାରଙ୍କର ଜଣେ ବିଚାରପତି । ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଇଂଲଣ୍ଡ ବିରୁଦ୍ଧରେ ଭାରତର ସନ୍ତ୍ରାସବାଦୀ ମାନଙ୍କର ବିପ୍ଳବାତ୍ମକ ମନୋଭାବର ପ୍ରତିରୋଧ କରିବା ପାଇଁ କାର୍ଯ୍ୟପନ୍ଥା ସ୍ଥିର କରିବା ନିମନ୍ତେ ବିଚାରପତି ରାଓ୍ୱଲାଟଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠନ କରିଥିଲେ । ଏହି କମିଟିର ସୁପାରିଶ ଅନୁଶାରେ ୧୯୧୯ ମସିହାରେ ଏହି ଆଇନ ଗୃହୀତ ହୋଇଥିଲା । ଏହି ଆଇନ ଅନୁସାରେ ଭାରତୀୟ ମାନଙ୍କୁ ବିନା ଓ୍ୱାରେଣ୍ଟରେ ବନ୍ଦିକାରଯାଇ କାରାଦଣ୍ଡ ଦିଆ ଯାଇପାରିବ । ଏହି ଆଇନ ସ୍ୱାଧୀନତା ଆନ୍ଦୋଳନକୁ ଦମନ କରିବା ପାଇଁ ଗଠିତ ହୋଇଥିଲା । ତେଣୁ ଅସହଯୋଗ ଆନ୍ଦୋଳନର ଏହା ଏକ କାରଣ । ରାଓ୍ୱଲାଟଙ୍କ ନାମ ଅନୁଶାରେ ଏହାକୁ ରାଓ୍ୱଲାଟ ଆଇନ କୁହାଯାଏ ।

## ଜାଲିଆନା ଓ୍ୱାଲାବାଗ୍ ହତ୍ୟାକାଣ୍ଡ

ଜାଲିଆନା ଓ୍ୱାଲାବାଗ୍ ହତ୍ୟାକାଣ୍ଡ ଭାରତ ଇତିହାସରେ ଏକ ଅବିସ୍ମରଣୀୟ ଘଟଣା । ଏପରି ଘଟଣା ଭାରତ ଇତିହାସରେ ବିରଳ । ପଞ୍ଜାବର ଦୁଇଜଣ ଲୋକପ୍ରିୟ ନେତା ଡ଼କ୍ଟର ବିଚଲୁ ଏବଂ ଡ଼କ୍ଟର ସତ୍ୟପାଳ ବ୍ରିଟିଶ୍ କର୍ତ୍ତୃପକ୍ଷଙ୍କ ଦ୍ୱାରା ବନ୍ଦୀ ହେବାପରେ ସେମାନଙ୍କର ମୁକ୍ତି ନିମନ୍ତେ ଅମୃତସର ସହରର ଲୋକେ ସମବେତ ହୋଇ ପ୍ରତିବାଦ ଜଣାଇଲେ । ୧୯୧୯ ମସହି ଏପ୍ରିଲ୍ ୧୩ ତାରିଖରେ ଅମୃତସର ଠାରେ ଥିବା ଜାଲିଆନା ଓ୍ୱାଲାବାଗ୍ ନାମକ କ୍ଷୁଦ୍ର ଉଦ୍ୟାନରେ ଏକତିତ୍ର ହୋଇ ଏକ ଶାନ୍ତିପୂର୍ଣ୍ଣ ସଭା କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଥିଲେ । ସେଠାରେ ଆଇନ ଶୃଙ୍ଖଳ ପରିସ୍ଥିତି ରକ୍ଷା କରିବା ନିମନ୍ତେ ବ୍ରିଟିଶ୍ କର୍ତ୍ତୃପକ୍ଷ ଜେନେରାଲ ଡାୟାର ନାମକ ଜଣେ ସାମରିକ ସେନାଧ୍ୟକ୍ଷଙ୍କୁ ଦାୟିତ୍ୱ ଦେଇଥିଲେ । ତେଣୁ ଡାୟାର ଏହି ସଭାକୁ ବେଆଇନ ଘୋଷଣା କରି ଏପ୍ରିଲ୍ ୧୨ ତାରିଖ ଦିନ ଏକ ଆଦେଶ ନାମା ଜାରି କରିଥିଲେ । କିନ୍ତୁ ଏହି ଆଦେଶ ନାମା ୧୨ ତାରିଖ ଦିନ ଠିକଣା ଭାବେ ଜାରି ହୋଇ ପାରି ନଥିଲା । ଫଳରେ ପୂର୍ବ ନିର୍ଦ୍ଧାରିତ ସମୟ ଅନୁସାରେ ଏପ୍ରିଲ୍ ୧୩ ତାରିଖ ଦିନ ପୂର୍ବାହ୍ନରେ ଜାଲିଆନା ଓ୍ୱାଲାବାଗ୍ ଠାରେ ଲୋକ ସମାବେଶ ହେବାକୁ ଲାଗିଲେ । କିନ୍ତୁ ସେମାନଙ୍କୁ କୌଣଷି ପୋଲିସ କିମ୍ୱା ସାମରିକ ବାହିନୀ ପ୍ରତିରୋଧ କରିନଥିଲେ କିମ୍ବା ସଭାକୁ ବେଆଇନ ବୋଲି ମଧ ସୁଚାଇ ନଥିଲେ । ଏହିପରି ଭାବେ ହଜାର ହଜାର ଗଳି ରାସ୍ତାକୁ ଡାୟାର ସୈନ୍ୟ ଅବରୁଦ୍ଧ କରି ଦେଇଥିଲେ । ୨୦ ହଜାର

ନିରୀହ ନିଃସହାୟ ନିରସ୍ତ୍ର ଜନତା ଉପରକୁ ବିନା ସତର୍କ ସୂଚନାରେ ଡାୟାର ଗୁଳି ଚାଳନା କରିବାକୁ ଆଦେଶ ଦେଲେ । ଫଳରେ ଗୁଳି ଚୋଟରେ ଅନେକ ଲୋକ ପ୍ରାଣ ହରାଇଲେ, ଅଧିକାଂଶ ଲୋକ କ୍ଷତ ବିକ୍ଷତ ହେଲେ । ଏହି ଲୋମ ହର୍ଷଣକାରୀ ବିଭତ୍ସ କାଣ୍ଡ ସମଗ୍ର ଦେଶରେ ରାଜନୈତିକ ଭୁକମ୍ପନ ସୃଷ୍ଟି କଲା । ଡାୟାରଙ୍କର ଏହି ଅମାନୁଷିକ ବର୍ବରତା ବିରୁଦ୍ଧରେ ପ୍ରତିବାଦ ଜଣାଇ ରବିନ୍ଦ୍ର ନାଥ ଠାକୁର ବ୍ରିଟିଶ ରାଜକୀୟ ସମ୍ମାନ ପରିହାର କରିଥିଲେ । ସାର୍ ଶଙ୍କରନ୍ ନାୟାର ମଧ୍ୟ ଭାଇସ୍‌ରାୟ ପରିଷଦର ସଭ୍ୟପଦରୁ ଇସ୍ତଫା ପ୍ରଦାନ କରିଥିଲେ । ଫଳରେ ଦେଶବାସୀଙ୍କ ମଧ୍ୟରେ ପ୍ରବଳ ଉତ୍ତେଜନା ଦେଖାଦେଇଥିଲା । ଆନ୍ଦୋଳନର ଉତ୍ତାଳ ତରଙ୍ଗରାଶି ସମଗ୍ର ଦେଶରେ ବିଚ୍ଛୁରିତ ହୋଇଗଲା । ଏହି ରାଜନୈତିକ ଆନ୍ଦୋଳନ ଚରମ ସୀମାରେ ପହଞ୍ଚିବା ପରେ ବ୍ରିଟିଶ ସରକାର ହଣ୍ଟରଙ୍କ ଅଧିକତାରେ ତିନିଜଣ ୟୁରୋପୀୟ ଓ ତିନିଜଣ ଭାରତୀୟଙ୍କୁ ନେଇ ଏକ କମିଶନ ବସାଇଲେ । କମିଶନ ଏହାକୁ ଦୁର୍ଭାଗ୍ୟ ଜନକ କହି ନିନ୍ଦା କରିବା ସଙ୍ଗେ ସଙ୍ଗେ ଜେନେରାଲ ଡାୟାରଙ୍କ ସାହସିକତାକୁ ନେଇ ତାଙ୍କୁ ୨୬୦୦୦ ପାଉଣ୍ଡ ପୁରସ୍କାର ଦେଇଥିଲେ । ଏହା ଥିଲା ବ୍ରିଟିଶ୍ ସରକାରଙ୍କର ସମ୍ପୂର୍ଣ୍ଣ ଅନ୍ୟାୟ । ଏହି ଅନ୍ୟାୟକୁ ନିନ୍ଦାକରି କଂଗ୍ରେସର ତୁଙ୍ଗ ନେତା ମନମୋହନ ମାଲବ୍ୟ, ପଣ୍ଡିତ ମୋତିଲାଲ ନେହେରୁ, ଗାନ୍ଧିଜୀ ଏବଂ ଅନ୍ୟ କେତେଜଣ ସଦସ୍ୟଙ୍କୁ ନେଇ ଗୋଟିଏ ଅନୁସନ୍ଧାନ କମିଟି ଗଢାଯାଇ ଡାୟାରଙ୍କୁ ନିନ୍ଦା କରିବା ସଙ୍ଗେ ସଙ୍ଗେ ମୃତ ଓ ଆହାତ ପରବାରଙ୍କୁ କ୍ଷତି ପୂରଣ ଦେବା ନିମନ୍ତେ ଦାବି କରିଥିଲେ ମାତ୍ର ସରକାର ତାହା କର୍ଣ୍ଣପାତ କରିନଥିଲେ ।

## ଖିଲାଫତ୍ ଆନ୍ଦୋଳନ

ଖିଲାଫତ ଆନ୍ଦୋଳନ ଭାରତୀୟ ମାନଙ୍କ ପ୍ରତି ବ୍ରିଟିଶ ସରକାରଙ୍କର ବିଶ୍ୱାସ ଘାତକତାର ଅନ୍ୟ ଏକ ନମୁନା ଥିଲା ପ୍ରଥମ ବିଶ୍ୱଯୁଦ୍ଧ ସମୟରେ । ତୁର୍କୀର ଖଲିଫା ଯିଏକି ବିଶ୍ୱ ମୁସଲମାନ ମାନଙ୍କର ଆଧ୍ୟାତ୍ମିକ ନେତୃତ୍ୱ ନେଉଥିଲେ । ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଇଂଲଣ୍ଡ ଆଦି ମିତ୍ରଶକ୍ତି ଦଳ ତୁର୍କୀ ସାମ୍ରାଜ୍ୟକୁ ଖଣ୍ଡ ବିଖଣ୍ଡିତ କରି ଖଲିଫାଙ୍କର ବିଲୋପ ସାଧନ ପାଇଁ ସଂକଳ୍ପ ବଦ୍ଧ ଥିଲେ । କାରଣ ତୁର୍କୀ ଥିଲା ଇଂଲଣ୍ଡର ଶତ୍ରୁ ପକ୍ଷର ଏକ ଶକ୍ତି । ତେଣୁ ଭାରତୀୟ ମୁସଲମାନମାନେ ଏଥିରେ ଅସନ୍ତୁଷ୍ଟ ପ୍ରକାଶ କରିଥିଲେ । କିନ୍ତୁ ବ୍ରିଟିଶ ସରକାର ଭାରତୀୟ ମୁସଲମାନ ମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଘୋଷଣା କରିଥିଲେ ଯେ, ଯୁଦ୍ଧ ସମାପ୍ତ ହେବା ପରେ ତୁର୍କୀକୁ ଉପଯୁକ୍ତ ସମ୍ମାନ ଦିଆଯିବ । ହିନ୍ଦୁ ମୁସଲମାନ ସମ୍ପ୍ରଦାୟକୁ

ଦୃଢ଼ିଭୂତ କରିବା ଉଦ୍ଦେଶ୍ୟରେ ଗାନ୍ଧିଜୀ ସେମାନଙ୍କର ନେତୃତ୍ୱ ନେଲେ । ୧୯୧୯ ମସିହା ନଭେମ୍ବର ୨୪ ତାରିଖରେ ଦିଲ୍ଲୀରେ ଏକ ଖିଲାଫତ୍ ସମ୍ମିଳନୀ ଗାନ୍ଧିଜୀଙ୍କ ନେତୃତ୍ୱରେ ବସିଥିଲା । ଏକ ପ୍ରତିନିଧି ଦଳ ଭାଇସରାୟ ନିକଟକୁ ଯାଇ ଖିଲାଫତ ବିଷୟରେ ଅବଗତ କରାଇଥିଲେ । ତାଙ୍କର ପ୍ରତିଶ୍ରୁତି ଅନୁସାରେ ତୁର୍କୀକୁ ସମ୍ମାନ ପ୍ରଦର୍ଶନ କରିବା ପରିବର୍ତ୍ତେ ଏସିଆମାଇନରର ସମ୍ପଦଶାଳୀ ଅଞ୍ଚଳ ତୁର୍କୀଠାରୁ ଛିନ୍ନକରି ନିଆ ଯାଇଥିଲା । ତୁର୍କୀର ସୁଲତାନ ମଧ୍ୟ ଖିଲାଫତ୍ ହରାଇ ବସିଥିଲେ । ବ୍ରିଟିଶ୍ ସରକାରଙ୍କର ଏପରି ଘୃଣ୍ୟ କାର୍ଯ୍ୟକୁ ମୁସଲମାନ ଗୋଷ୍ଠୀ, ଗାନ୍ଧିଜୀ ଏବଂ କଂଗ୍ରେସ ନେତା ମାନେ ନାପସନ୍ଦ କରିଥିଲେ । ଏହା ଫଳରେ ନିଖିଳ ଭାରତ ଖିଲାଫତ୍ କମିଟି ଗାନ୍ଧିଜୀଙ୍କର ଅସହଯୋଗ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିଥିଲେ ।

## ସାଇମନ୍ କମିଶନ୍

୧୯୨୭ ମସିହାରେ ଜନ୍‌ସାଇମନଙ୍କ ଅଧ୍ୟକ୍ଷତାରେ ଅନ୍ୟ ସାତଜଣ ସଦସ୍ୟଙ୍କୁ ନେଇ ଏକ କମିଶନ ଗଠନ କରାଯାଇଥିବାରୁ ଏହାକୁ ସାଇମନ କମିଶନ୍ କୁହାଯାଏ । ଅସହଯୋଗ ଆନ୍ଦୋଳନ ଭାରତୀୟ ସ୍ୱାଧୀନତା ଇତିହାସର ଏକ ଚିର ସ୍ମରଣୀୟ ଅଧ୍ୟାୟ (ଘଟଣା) । ସହର ଠାରୁ ଗାଁ ପର୍ଯ୍ୟନ୍ତ, ନେତା ଠାରୁ କୃଷକ ପର୍ଯ୍ୟନ୍ତ ଗାନ୍ଧିଜୀଙ୍କ ଆହ୍ୱାନରେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଏକ ହୋଇଯାଇଥିଲେ । ଗାନ୍ଧିଜୀଙ୍କ ପ୍ରେରଣାରେ ସମସ୍ତେ ମୋହିତ ହୋଇ ଯାଇଥିଲେ । କିନ୍ତୁ ହଠାତ୍ ଏହି ଆନ୍ଦୋଳନ ବନ୍ଦ ହୋଇଯିବା ଫଳରେ ଗାନ୍ଧିଜୀଙ୍କୁ ଯେତିକି ନିନ୍ଦିତ ହେବାକୁ ପଡ଼ିଥିଲା ୧୯୨୨ ମସିହାରେ ସେ ସେତିକି ପ୍ରସଂସା ଫେରି ପାଇଥିଲେ । ଭାରତ ବର୍ଷରେ ପୁନର୍ବାର ଦେଖା ଦେଇଥିଲା ଆଉ ଏକ ଜାତୀୟ ଆନ୍ଦୋଳନ । ସେହି ଆନ୍ଦୋଳନର ନେତା ଭାବେ ସେ ପୁନର୍ବାର ଅଭିହିତ ହୋଇଥିଲେ । ସ୍ୱାଧୀନତା ଆନ୍ଦୋଳନର ଏହା ଥିଲା ଅନ୍ୟ ଏକ ନୂତନ ଅଧ୍ୟାୟ । ଏହି ଅଧ୍ୟାୟର ଆୟମାରମ୍ଭ ହୋଇଥିଲା ସାଇମନ୍ କମିଶନର ନିଯୁକ୍ତି ଠାରୁ ।

ଭାରତ ଶାସନ ୧୯୧୯ରେ ଦର୍ଶାଯାଇଥିଲା ଯେ, ଦଶବର୍ଷ ପରେ ଏକ ଅନୁସନ୍ଧାନୀ ଦଳ ଭାରତ ଶାସନ କାର୍ଯ୍ୟ, ଶିକ୍ଷା, ଗମନା ଗମନ, ରାସ୍ତା ଇତ୍ୟାଦି ଉପରେ ଏକ ସମୀକ୍ଷା କରିବା ପାଇଁ ଏକ ବୈଧାନିକ କମିଶନ ନିଯୁକ୍ତି କରାଯିବ । କିନ୍ତୁ ଭାରତୀୟ ମାନଙ୍କର ପ୍ରବଳ ଦାବିଯୋଗୁଁ ନିର୍ଦ୍ଦିଷ୍ଟ ସମୟର ଦୁଇବର୍ଷ ପୂର୍ବରୁ ବ୍ରିଟିଶ ସରକାର ଏକ କମିଶନ ନିଯୁକ୍ତି କରିଥିଲେ । ଏହି କମିଶନର ଅଧ୍ୟକ୍ଷ ଥିଲେ ଜନ୍ ସାଇମନ୍ । ୧୯୨୭ ମସିହାରେ

ଅନ୍ୟ ସାତ ଜଣ ସଦସ୍ୟଙ୍କୁ ନେଇ ସେ ଏହି କମିଶନ ଗଠନ କରିଥିଲେ । ଏହି ସାତଜଣ ସଦସ୍ୟ ଇଂଲଣ୍ଡର ବିଭିନ୍ନ ଦଳରୁ ମନୋନିତ କରାଯାଇଥିଲା । କିନ୍ତୁ ଏହି ଦଳରେ କୌଣସି ଭାରତୀୟଙ୍କୁ କମିଶନ କିମ୍ବା ସଦସ୍ୟ ରୂପେ ବିବେଚିତ କରି ନଥିଲେ । ତେଣୁ ଏହା ଭାରତୀୟଙ୍କ ପକ୍ଷେ ଏକ ଅପମାନର ବିଷୟ ହୋଇଥିଲା । ତେଣୁ ଭାରତୀୟ ଜାତୀୟ କଂଗ୍ରେସ ମୁସଲିମ୍ ଲିଗ୍ ଇତ୍ୟାଦି ଭାରତର ସମସ୍ତ ଦଳ ଏହି ଶ୍ୱେତାଙ୍ଗ କମିଶନ ଗଠନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ଏହି କମିଶନ ଭାରତରେ ପହଞ୍ଚିଲା ୧୯୨୮ ମସିହାରେ । ଭାରତର ବିଭିର୍ଣ୍ଣ ସ୍ଥାନରୁ ବିବରଣୀ ସଂଗ୍ରହ କରିବା ପାଇଁ ପରିଭ୍ରମଣ କରିବା ସମୟରେ ପ୍ରତ୍ୟେକ ସ୍ଥାନରେ ସେମାନଙ୍କୁ ସହଯୋଗ ନକରି କଳା ପତାକା ପ୍ରଦର୍ଶନ କରୁଥିଲେ ଏବଂ କହୁଥିଲେ 'ସାଇମନ୍ ତୁମେ ଫେରିଯାଅ' । ଏହି ଧ୍ୱନିରେ ଭାରତର ଗଗନ ପବନ ପ୍ରକମ୍ପିତ ହେଉଥିଲା । ବହୁ ବିରୋଧ ସତ୍ୱେ ଏହି କମିଶନ ନିଜର କାର୍ଯ୍ୟ ସମାପ୍ତ କରି ୧୯୩୦ ଜୁନ୍‌ରେ ଏକ ସୁପାରିଶ ଦାଖଲ କରିଥିଲେ । ପ୍ରାଦେଶିକ ଓ କେନ୍ଦ୍ରୀୟ ସରକାର କିପରି ପରିଚାଳିତ ହେବ ସେହି ସୁପାରିସରେ ସ୍ଥାନ ପାଇଥିଲା । ଭାରତର ଭବିଷ୍ୟତ ବୈଧାନିକ ସ୍ଥିତି ସମ୍ବନ୍ଧୀୟ ମୁଖ୍ୟ ବିଷୟଟି ଉକ୍ତ ରିପୋର୍ଟରେ ସ୍ଥାନ ପାଇ ନଥିବାରୁ ଭାରତୀୟ ନେତାମାନେ ତୀବ୍ର ବିରୋଧ କରୁଥିଲେ । କିନ୍ତୁ ଏହି ସୁପାରିଶ ଉପରେ ଭିତ୍ତିକରି ୧୯୩୫ ମସିହାରେ ଭାରତ ସରକାର ଆଇନ ପ୍ରଣୟନ କରିଥିଲେ ।

## ଆଇନ ଅମାନ୍ୟ ଆନ୍ଦୋଳନ

୧୯୨୯ ମସିହା ଡିସେମ୍ବର ୩୧ ତାରିଖ ଦିନ ଲାହୋର ଠାରେ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ସେଥିରେ ସଭାପତିତ୍ୱ କରିଥିଲେ ଜବାହାରଲାଲ ନେହେରୁ । ଏହି ଅଧିବେଶନରେ ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନିଆ ଯାଇଥିଲା । ସେଦିନ ଅର୍ଦ୍ଧରାତ୍ର ସମୟରେ "ସ୍ୱାଧୀନତା ପ୍ରସ୍ତାବ" ଗୃହୀତ ହୋଇଥିଲା । ସେଦିନ ଜାତୀୟ ପତାକା ଉତ୍ତୋଳନ କରି ସଭାପତି ଏକ ବଜ୍ର ଗମ୍ଭୀର ସ୍ୱରରେ କହିଥିଲେ ଯେ, କଂଗ୍ରେସର ଲକ୍ଷ୍ୟ ହେଉଛି ସମ୍ପୂର୍ଣ୍ଣ ସ୍ୱାଧୀନତା । ୧୯୩୦ ମସିହା ଜାନୁଆରୀ ୨୬ ତାରିଖଟି ସ୍ୱାଧୀନତା ଦିବସ ରୂପେ ନିର୍ଦ୍ଧାରିତ ହୋଇ ପ୍ରତ୍ୟେକ ବର୍ଷ ଏହି ଦିବସଟିକୁ ସ୍ୱାଧୀନତା ଦିବସ ରୂପେ ପାଳିତ କରିବାକୁ ସ୍ଥିର କରାଗଲା । ପୂର୍ଣ୍ଣ ସ୍ୱାଧୀନତା ହାସଲ ନିମନ୍ତେ ଆଇନ ଅମାନ୍ୟ ଆନ୍ଦୋନଳର ପନ୍ଥା ଗ୍ରହଣ କରିବା ପାଇଁ ପ୍ରସ୍ତାବରେ ନିଷ୍ପତି ନିଆ ଯାଇଥିଲା । ଏହା ପରେ ସ୍ୱାଧୀନତା ସଂଗ୍ରାମର ରାଜନୈତିକ ରଂଗମଞ୍ଚରେ ଦୃଶ୍ୟପଟ୍ଟର ପରିବର୍ତ୍ତନ ଦେଖାଯାଇଥିଲା ।

ଲାହୋର ଅଧିବେଶନରେ ଆଇନ ଅମାନ୍ୟ ଆନ୍ଦୋଳନର ଯୁଗାନ୍ତକାରୀ ସିଦ୍ଧାନ୍ତ ପରେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ଇତିହାସରେ ଏକ ଅବିସ୍ମରଣୀୟ ଅଧ୍ୟାୟ ଉନ୍ମୋଚିତ ହୋଇଥିଲା । ଏହାର ମୁଖ୍ୟ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ଗାନ୍ଧିଜୀ । ଏହି ଆଇନ ଅମାନ୍ୟ ଆନ୍ଦୋଳନକୁ ସକାରାତ୍ମକ ଭୂମିକାରେ ପରିଣତ କରିବାକୁ ସେ ଦେଶବାସୀଙ୍କୁ ଆହ୍ୱାନ ଦେଇଥିଲେ । ଏହାଥିଲା ଅସହଯୋଗ ଆନ୍ଦୋଳନ ମୁଦ୍ରାର ଅନ୍ୟପାଖ ।

ଅସହଯୋଗ ଆନ୍ଦୋଳନ ପରେ ଆଇନ ଅମାନ୍ୟ ଆନ୍ଦୋଳନକୁ ଅବତୀର୍ଣ୍ଣ ହେବା ପୂର୍ବରୁ ଦୂରଦ୍ରଷ୍ଟା ଗାନ୍ଧିଜୀ ତତ୍‌କାଳୀନ ରାଜନୈତିକ ପରିସ୍ଥିତିକୁ ଭଲଭାବରେ ଅନୁଧ୍ୟାନ କରିଥିଲେ । କାରଣ ସେ ଅନୁଭବ କରୁଥିଲେ ଯେ ଯାହା କଲେବି ମଧ ବ୍ରିଟିଶ୍ ସରକାର କୌଣସି ରାଜନୈତିକ ସମାଧାନ ଚାହୁଁ ନାହାନ୍ତି । ବ୍ରିଟିଶ୍ ସରକାରଙ୍କ ସହିତ କୌଣସି ବୁଝାମଣା ମଧ ଉଚିତ୍ ପନ୍ଥା ନୁହେଁ । ଦେଶର ଜନସାଧାରଣ ତଥା ନେତାଙ୍କ ଠାରୁ କୃଷକ ପର୍ଯ୍ୟନ୍ତ ସମସ୍ତେ ଧର୍ଯ୍ୟହରା ହୋଇ ଗଲେଣି । ଆନ୍ଦୋଳନ ନାଁଆରେ ବର୍ଷ ବର୍ଷ ଧରି ଚାଲିଛି ପ୍ରଚାର । ତେଣୁ ଆଇନ ଅମାନ୍ୟ ଆନ୍ଦୋଳନ ପୂର୍ବରୁ ଗାନ୍ଧିଜୀ ଜନସାଧାରଣଙ୍କର ପୂର୍ଣ୍ଣ ସମର୍ଥନ ଚାହୁଁଥିଲେ । କିନ୍ତୁ ସେ କୌଣସି ହିଂସାତ୍ମକ ଆନ୍ଦୋଳନ ଚାହୁଁ ନଥିଲେ । ଯାହାହେଉ ଗାନ୍ଧିଜୀ ତାଙ୍କର ଦୂରଦୃଷ୍ଟି ବଳରେ ଦେଶ ଓ ଜନ ସାଧାରଣଙ୍କର ସବୁ ଦିଗକୁ ଦୃଷ୍ଟିରେ ରଖି ନିଷ୍ପତି ନେଇଥିଲେ ଯେ, ସାମ୍ପ୍ରତିକ ପରିସ୍ଥିତିରେ ଆଇନ ଅମାନ୍ୟ ଆନ୍ଦୋଳନ ହେଉଛି ଏକମାତ୍ର ପନ୍ଥା । କିନ୍ତୁ ଆନ୍ଦୋନଳକୁ ଓହ୍ଲାଇବା ପୂର୍ବରୁ ୧୯୩୦ ସମିହା ଜାନୁଆରୀ ୩୦ ତାରିଖ ଦିନ ଏକ ଏଗାର ଦଫା ସମ୍ବଳିତ ଏକ ଶାସନ ସଂସ୍କାର ଘୋଷଣା କରି ଇଂରେଜ ସରକାରଙ୍କୁ ଏହା ଗ୍ରହଣ କରିବା ପାଇଁ ଅନୁରୋଧ କରିଥିଲେ । କିନ୍ତୁ ଇଂରେଜ ସରକାର ଏଥିରେ ସମ୍ମତି ନଜଣାଇବାରୁ ଗାନ୍ଧିଜୀ ଦେଶରେ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରି ଦେଇଥିଲେ । ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବା ପୂର୍ବରୁ ନିମ୍ନ ଲିଖିତ କାର୍ଯ୍ୟକ୍ରମ ସେ ପ୍ରସ୍ତୁତ କରିଥିଲେ ।

୧) ଲବଣ ଆଇନ ଅମାନ୍ୟକୁ ଗାନ୍ଧିଜୀ ପ୍ରଥମ ପର୍ଯ୍ୟାୟ ରୂପେ ଗ୍ରହଣ କରିଥିଲେ । କାରଣ ବହୁ କାଳରୁ ଭାରତୀୟ ମାନେ ସମୁଦ୍ର ଜଳରୁ ଲୁଣ ପ୍ରସ୍ତୁତ କରି ଜୀବିକା ନିର୍ବାହ କରି ଆସୁଥିଲେ । କିନ୍ତୁ ଏହାକୁ ଇଂରେଜ ସରକାର ବନ୍ଦ କରି ଦେଇଥିଲେ । ୧୯୨୩ ସମିହାରୁ ସରକାର ଲୁଣ କରକୁ ଦ୍ୱିଗୁଣିତ ବଢାଇ ଦେଇଥିଲେ । ଫଳରେ ଲୋକ ମାନଙ୍କର ଦୁର୍ଦ୍ଦଶା ବହୁ ପରିମାଣରେ ବଢି ଯାଇଥିଲା । ଲୋକ ମାନଙ୍କର ଏହି

ଶୋଚନୀୟ ଅବସ୍ଥାକୁ ହୃଦୟଙ୍ଗମ କରି ଗାନ୍ଧିଜୀ ପ୍ରଥମେ ଲବଣ ଆଇନକୁ ଭଙ୍ଗ କରିବାକୁ ମନସ୍ଥ କରିଥିଲେ ।

୨)　　ଛାତ୍ରମାନେ ଶିକ୍ଷାନୁଷ୍ଠାନରୁ, ସରକାରୀ କର୍ମଚାରୀମାନେ ନିଜ ନିଜର କର୍ମ କ୍ଷେତ୍ରରୁ ପ୍ରତ୍ୟାହାର କରାଯିବ ।

୩)　　ମାଦକ ଦ୍ରବ୍ୟ ଏବଂ ବିଦେଶୀ ଦ୍ରବ୍ୟ ବିକ୍ରି କରୁଥିବା ଦୋକାନ ସମ୍ମୁଖରେ ଧାରଣା ଦିଆଯିବ ।

୪)　　ବିଦେଶୀ ବସ୍ତ୍ର ପୋଡ଼ିବା ଏବଂ ଇଂରେଜ ସରକାରଙ୍କୁ କର ଦିଆଯିବ ନାହିଁ ।

ଏହି କାର୍ଯ୍ୟ କ୍ରମ ଗୁଡ଼ିକରୁ ଗାନ୍ଧିଜୀ ପ୍ରଥମେ ଲବଣ ଆଇନ ଭାଙ୍ଗିବା ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ । କାରଣ ଲୁଣ ଉପରେ ଦ୍ୱିଗୁଣିତ କର ଧାର୍ଯ୍ୟ କରିବା ଫଳରେ ଜନ ସାଧାରଣଙ୍କର ଦୁଃଖ ଦୁର୍ଦ୍ଦଶା ବହୁ ପରିମାଣରେ ବଢି ଯାଇଥିଲା । ଅନ୍ୟାନ୍ୟ ଆଇନ ଅମାନ୍ୟ ଆନ୍ଦୋଳନ ଗୁଡ଼ିକ ଉପରେ ଗୁରୁତ୍ୱ ଦେଲେ ମଧ ଲବଣ ଆଇନ ଅମାନ୍ୟ ଉପରେ ଅଧିକ ଗୁରତ୍ୱ ଦେବା ଫଳରେ ଏହା ଏକ ଐତିହାସିକ ଆନ୍ଦୋଳନରେ ପରିଣତ ହୋଇଥିଲା ।

## ଲବଣ ସତ୍ୟାଗ୍ରହ ବା ଦାଣ୍ଡିଯାତ୍ରା

ଭାରତବର୍ଷର ସ୍ୱାଧୀନତା ଆନ୍ଦୋଳନ ମଧରେ ସିପାହି ବିଦ୍ରୋହ ଯେପରି ଏକ ମାଇଲଖୁଣ୍ଟ ସୃଷ୍ଟି କରିପାରିଥିଲା, ସେହିପରି ଲବଣ ସତ୍ୟାଗ୍ରହ ବା ଦାଣ୍ଡିଯାତ୍ରା ମଧ ଏକ ଅବିସ୍ମରଣୀୟ ଘଟଣା । ଯେଉଁ ଆନ୍ଦୋଳନ ଫଳରେ ସମଗ୍ର ବ୍ରିଟିଶ ସାମ୍ରାଜ୍ୟର ମୂଳଦୁଆ ଦୋହଲି ଯାଇଥିଲା । ଆମେ ସଂକ୍ଷେପରେ ଏହା ଉପରେ ଆଲୋକପାତ କରିବା । ଯେଉଁ ଲବଣ ସତ୍ୟାଗ୍ରହ ଦିନେ ଭାରତ ବର୍ଷର କୋଟି କୋଟି ଜନତାଙ୍କୁ ଗୋଟିଏ ଡୋରୀରେ ବାନ୍ଧି ରଖିପାରିଥିଲା । ସ୍ୱାଧୀନତା ପରେ ସେହି ଲବଣର ପରିଣତି କିପରି ଘଟିଲା ଏଥିରୁ ଆମେ ବେଶ୍ ଉପଲବ୍ଧି କରି ପାରିବା ।

ତତ୍‌କାଳୀନ ସମୁଦ୍ର ଉପକୂଳବର୍ତ୍ତୀ ଲୋକମାନେ ସମୁଦ୍ର ଜଳରୁ ଲୁଣ ମାରି ଏବଂ ତାକୁ ବ୍ୟବସାୟ ଭିତ୍ତିକ କରି ଗୁଜୁରାଣ ମେଣ୍ଟାଉ ଥିଲେ । ସେଇ ସମୟରେ ଲୁଣ ଏବଂ ଭାତ ଥିଲା ଭାରତୀୟ ମାନଙ୍କର ପ୍ରଧାନ ଖାଦ୍ୟ । ଭରତର ଗୁଜୁରାଟ ଉପକୂଳବର୍ତ୍ତୀ ଅଞ୍ଚଳରେ

ଅଧିକତର ଲୁଣ ଆମଦାନୀ କରାଯାଉଥିଲା । ୧୯୩୦ ମସିହା ବେଳକୁ ଇଂରେଜ ସରକାର ଲୁଣ ମାରିବା ଉପରେ କରଧାର୍ଯ୍ୟ କରିଥିଲେ । ଜନସାଧାରଣଙ୍କ ମନରେ ପ୍ରଶ୍ନ ଉଠିଲା ଆମ ଦେଶର ସମୁଦ୍ର ପାଣି, ସେଥିରୁ ଆମେ ମାରିବୁ ଲୁଣ, ଯେଉଁ ଲୁଣ ଭାରତୀୟ ମାନଙ୍କର, ଏହା ମଧ ସେମାନେ ଦୁଇବେଳା ଠିକ୍ ଭାବେ ପାଆନ୍ତି ନାହିଁ । ବ୍ରିଟିଶ ସରକାର ସବୁ ଜିନିଷ ଉପରେ ଟିକସ ବସାଇଲା ପରି ଲୁଣ ଉପରେ ମଧ ଟିକସ ବସାଇଲେ । ଆଇନ ବଳରେ ଲୁଣ ମାରିବାକୁ ବନ୍ଦ କରି ଦିଆଗଲା । ଗରିବ ଲୋକ ମାନଙ୍କ ମୁଣ୍ଡରେ ଚଡକ ପଡିଲା ପରି ଲାଗିଲା । ଭାରତୀୟ ଜନ ସାଧାରଣଙ୍କର ଏହି ସର୍ବନିମ୍ନ ଅଧିକାରକୁ ଛଡାଇ ନେଲା ପରେ ସମଗ୍ର ରାଜ୍ୟରେ ଏକ ଭୟାବହ ପରିସ୍ଥିତି ସୃଷ୍ଟି ହେଲା । ଏହାକୁ ବିରୋଧ କରିବା ପାଇଁ ଦେଶବାସୀ ଅଣ୍ଟାଭିଡି ବାହାରି ପଡ଼ିଲେ । ପ୍ରତିବାଦର ସ୍ୱରରେ ଗଗନ ପବନ ମୂଖରିତ ହେଲା । ଭାରତ ବର୍ଷର କୋଟି ଜନତାର ବିକ୍ଷୁବ୍ଧ ପ୍ରାଣରେ ଉଦ୍‌ବେଗର ପରିପ୍ରକାଶ ଘଟିଲା । ପ୍ରତିବାଦର ସ୍ୱରରେ ଫାଟି ପଡିଲା ଆକାଶ ଏବଂ ଏହାର ନେତୃତ୍ୱ ନେଲେ ଜାତିର ଜନକ ମହାତ୍ମା ଗାନ୍ଧୀ । ଏହି ଉଦ୍ଦେଶ୍ୟରେ ଦେଶବାସୀଙ୍କ ପାଇଁ ତାଙ୍କର ସନ୍ଦେହ ଥିଲାଯେ, "ଏମାଟି ଏବଂ ପାଣି ଆମର । ସେଥିରୁ ବଂଚିତ କରିବାର ଅଧିକାର ବ୍ରିଟିଶ୍ ସରକାରଙ୍କର ନାହିଁ" । ଏହିଠାରୁ ଗାନ୍ଧିଜୀଙ୍କ ନେତୃତ୍ୱରେ ଆରମ୍ଭ ହେଲା ଲବଣ ସତ୍ୟାଗ୍ରହ ବା ଦାଣ୍ଡିଯାତ୍ରା । 'ଦାଣ୍ଡିଯାତ୍ରା' କହିଲେ ସାଧାରଣତଃ ବୁଝାଯାଏ ଯେ, ଗୁଜୁରାଟର 'ଦାଣ୍ଡି' ହେଉଛି ଏକ ଛୋଟ ଗ୍ରାମର ନାଆଁ । ଯେଉଁଠି ଅଧିକ ମାତ୍ରାରେ ଲୁଣ ଆମଦାନି କରାଯାଇଥାଏ । ଅହମ୍ମଦାବାଦର ସାବରମତୀ ଆଶ୍ରମରୁ ଦାଣ୍ଡିଯାତ୍ରା ବା ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇ ଏହି ଐତିହାସିକ ପଦଯାତ୍ରାର ପରିସମାପ୍ତି ଏହିଠାରେ ଘଟାଇ ଥିବାରୁ ଏହାକୁ ଦାଣ୍ଡିଯାତ୍ରା ମଧ କୁହାଯାଇଥାଏ ।

୧୯୩୦ ମସିହା ମାର୍ଚ୍ଚ ୧୨ ତାରିଖ ସକାଳ ସାଢେ ୭ ଘଣ୍ଟା ସମୟରେ ଅହମ୍ମଦାବାଦ ନିକଟସ୍ଥ ସାବରମତୀ ଆଶ୍ରମରୁ ତାଙ୍କର ଏହି ଐତିହାସିକ ପଦଯାତ୍ରା ଆରମ୍ଭ ହୋଇଥିଲା । ଏହି ପଦଯାତ୍ରା କୌଣସି ରାଜନିତିକଦଳ ସହ ପ୍ରାୟ ସମ୍ବନ୍ଧ ରଖି ନଥିଲେ ଗାନ୍ଧିଜୀ । ୭୮ ଜଣ ଶୃଙ୍ଖଳିତ ଓ ଉତ୍ସର୍ଗୀକୃତ ସତ୍ୟାଗ୍ରହୀଙ୍କୁ ନେଇ ଏହି ପଦଯାତ୍ରା ଆରମ୍ଭ ହୋଇଥିଲା । ଯାତ୍ରା ଆରମ୍ଭରୁ ସେ ସତ୍ୟାଗ୍ରହୀ ମାନଙ୍କୁ ନୈତିକ ଅଦର୍ଶରୁ ବିଚ୍ୟୁତ ନହେବା ପାଇଁ ବାରମ୍ବାର ନିର୍ଦ୍ଦେଷ ଦେଉଥିଲେ । ଯାତ୍ରା ଆରମ୍ଭ ପରେପରେ ବହୁ ସାଧାରଣ ଜନତା ପଦଯାତ୍ରାରେ ଯୋଗ ଦେଇଥିଲେ । ଯାତ୍ରା ସମୟରେ ପଦଯାତ୍ରୀ ମାନଙ୍କୁ ଉଚ୍ଛ୍ୱସିତ ଅଭ୍ୟର୍ଥନା ସହିତ ପ୍ରଚୁର ପରିମାଣର ଫଳମୂଳ, ଦୁଗ୍ଧ, ଏବଂ ଅନ୍ୟାନ୍ୟ ଖାଦ୍ୟ ପଦାର୍ଥ ମିଳୁଥାଏ ।

ପଦଯାତ୍ରାର ବିପୁଳ ଜନସମାଗମ, ଅଭ୍ୟର୍ଥନା, ସହଯୋଗ ଏବଂ ଖାଦ୍ୟପଦାର୍ଥକୁ ଦେଖି ଗାନ୍ଧିଜୀ ନମ୍ରତାର ସହିତ ଜନସାଧାରଣ ମାନଙ୍କୁ ସତ୍ ଉପଦେଶ ଦେଇ ବୁଝାଉଥିଲେ । ସେ କହୁଥିଲେ କୌଣସି ଭୋଗ୍ୟ ବସ୍ତୁକୁ ଗ୍ରହଣ କରିବା ଆମ ଅଭିଯାନର ବିରୁଦ୍ଧାଚରଣ ହେବ । ଏହି ପଦଯାତ୍ରାରେ ଆମକୁ ଆତ୍ମ ସମୀକ୍ଷା କରିବା ଉଚିତ୍ । ସେଥିପାଇଁ ଭୋଗ ବଦଳରେ ତ୍ୟାଗହିଁ ହେଉ ଆମର ପ୍ରଥମ ବଳିଦାନ । "ଏହି ବଳିଦାନ ସତ୍ୟ ଏବଂ ପବିତ୍ର ହେବା ଉଚିତ୍" । ଏହି ଯାତ୍ରା କାଳରେ ଯେଉଁ ଗ୍ରାମରେ ସେମାନେ ରାତ୍ରୀ ଯାପନ କରୁଥିଲେ ସେଠାରେ ସ୍ଥାନୀୟ ଲୋକମାନଙ୍କୁ ଏବଂ ସମ୍ବାଦିକ ମାନଙ୍କୁ "ଦାଣ୍ଡିଯାତ୍ରା"ର ମହତ୍ୱ ଉପରେ ଏବଂ ଜାତୀୟ ପ୍ରସଙ୍ଗ ଉପରେ ଆଳାପ ଆଲୋଚନା କରୁଥିଲେ । ସ୍ୱରାଜ ବିଷୟରେ ସମସ୍ତଙ୍କ ହୃଦୟରେ ପ୍ରେରଣା ଯୋଗାଇ କହୁଥିଲେ ଏ ଯାତ୍ରା ହେଉଛି "ପବିତ୍ର ତୀର୍ଥ ଯାତ୍ରା" ।

ଏହି ପଦ ଯାତ୍ରାର ପରିସମାପ୍ତି ଘଟିଥିଲା ଗୁଜୁରାଟର ସମୁଦ୍ର ଉପକୂଳରେ ଥିବା ଏକ ଛୋଟିଆ ଗାଆଁ 'ଦାଣ୍ଡି' ଠାରେ ଏପ୍ରିଲ୍ ୫ ତାରିଖରେ । ଏପ୍ରିଲ୍ ୭ ତାରିଖ ସକାଳ ଘ୮.୩୦ ମି. ସମୟରେ ସମୁଦ୍ର ସ୍ନାନ ପରେ ଲବଣ ଆଇନ ଭଙ୍ଗ କରିବାର ପ୍ରତୀକ ସ୍ୱରୂପ ଗାନ୍ଧିଜୀ ନଇଁପଡି ହାତରେ ମୁଠାଏ ଲୁଣ ଉଠାଇ ଆଣିଲେ ସେହି ମୁଠାଏ ଲୁଣ ହଜାର ହଜାର ପଦ ଯାତ୍ରୀଙ୍କୁ ଦେଖାଇ କହିଥିଲେ "ସ୍ୱରାଜ ଆମାର ହାତ ମୁଠାରେ ଅଛି" । ସେହି ମୁଠାଏ ଲୁଣ ପରାଧୀନ ଭାରତର କୋଟି ଜନତାର ବିକ୍ଷୁବ୍ଧ ପ୍ରାଣରେ ଭରିଦେଇଥିଲା ସ୍ୱାଧୀନତା ଆନ୍ଦୋଳନର ଶତସିଂହର ବଳ ଏବଂ ଅନ୍ତରରେ ଭରିଦେଇଥିଲା ନବ ଜାଗରଣ ।

ଦୀର୍ଘ ୨୪୧ ମାଇଲ ୨୫ ଦିନର ପଦଯାତ୍ରା ପଥରେ ସେ ଦଳର ନୈତିକ ଆଦର୍ଶର ମୂଲ୍ୟବୋଧକୁ କେବେହେଲେ ଜଳାଞ୍ଜଳି ଦେଇ ପାରି ନଥିଲେ । ଏହି ଯାତ୍ରା ତାଙ୍କୁ ଜଣେ ସଫଳ ଜନ ନାୟକ ଭାବେ ପ୍ରମାଣିତ କରି ପାରିଥିଲା । ଦୋହଲି ଯାଇଥିଲା ଭାରତର ବ୍ରିଟିଶ ଶାସନର ମୂଳଦୂଆ । ଏହି 'ଦାଣ୍ଡିଯାତ୍ରା'ର ପ୍ରଭାବ ପଡିଥିଲା ସମଗ୍ର ଭାରତ ବର୍ଷରେ । ପ୍ରତି ରାଜ୍ୟର ଚିନ୍ତାନାୟକ, କବି, ଲେଖକ, ଗାଳ୍ପିକ ଏବଂ ଐତିହାସିକ ମାନଙ୍କର ଲେଖନୀ ରସାପ୍ଳୁତ ହୋଇ ଯାଇଥିଲା । ବ୍ରିଟିଶ ଶାସନର ସ୍ୱେଚ୍ଛାଚାରୀ ନୀତି, ଅତ୍ୟାଚାର ର ପ୍ରପିଡ଼ନ ବିରୁଦ୍ଧରେ ଜନ ଜାଗରଣ ସୃଷ୍ଟି କରିବା ଥିଲା ଦାଣ୍ଡି ଯାତ୍ରାର ମୂଳ ଲକ୍ଷ୍ୟ । ଆମ ଦେଶର ମାଟି ପାଣି ପବନ ଜଳବାୟୁ ଉପରେ ଅଙ୍କୁଶ ଲଗାଇ ବ୍ରିଟିଶ ସରକାର ସେଥିରୁ ଜନସାଧାରଣଙ୍କୁ ସେମାନଙ୍କ ଅଧିକାରରୁ ବଞ୍ଚିତ କରିବାର ଯେଉଁ ପ୍ରୟାସ

କରିଥିଲେ ତାର ବିରୁଦ୍ଧରେ ଯେଉଁ ଜନ ଆନ୍ଦୋଳନ ସୃଷ୍ଟି ହୋଇଥିଲା ତାର ପ୍ରତିକାତ୍ମକ ଯାତ୍ରା ଥିଲା 'ଦାଣ୍ଡିଯାତ୍ରା' । ସେହି ଦାଣ୍ଡିଯାତ୍ରା ଦିନେ ଦୋହଲାଇ ଦେଇଥିଲା ବ୍ରିଟିଶ୍ ସରକାରଙ୍କ ମୂଳଦୂଆ ।

ଏହି ଲବଣ ଆଇନ କେବଳ ମାତ୍ର ଗୋଟିଏ ପଦକ୍ଷେପ ନଥିଲା । ଗୁଜୁରାଟର ସୁରଟ ଜିଲ୍ଲାର ଧରାସନ ଠାରେ ଥିବା ଲବଣ ଗୋଦାମ ସମ୍ମୁଖରେ ସତ୍ୟାଗ୍ରହ ଆରମ୍ଭ କରିବାକୁ ଗାନ୍ଧିଜୀ ଘୋଷଣା କରିଥିଲେ । କିନ୍ତୁ ଏହା ଆରମ୍ଭ କରିବା ପୂର୍ବରୁ ସେ ବନ୍ଦୀ ହୋଇଥିଲେ ଏବଂ ତାଙ୍କୁ କାରାଗାରକୁ ପ୍ରେରଣ କରାଯାଇଥିଲା । କେବଳ ଦାଣ୍ଡି ଏବଂ ଧରାସନ ନୁହେଁ ଦେଶରେ ଅନେକ ସ୍ଥାନରେ ସତ୍ୟାଗ୍ରହୀମାନେ ଲବଣ ଆଇନ ଭଙ୍ଗ କରିଥିଲେ । ସେ ସୁବିଧା ଯେଉଁ ରାଜ୍ୟରେ ନଥିଲା ସେମାନେ ସରକାରୀ ଟିକସ ଦେବାକୁ ମନାକରି ଦେଇଥିଲେ । ମଧ୍ୟ ପ୍ରଦେଶରେ ଜଙ୍ଗଲ ଟିକସ ଦେବାକୁ ମନା କରି ଦେଇଥିଲେ । ବହୁ ବ୍ରିଟିଶ ଲୁଗା କଳକୁ ବନ୍ଦ କରିଦେବା ଫଳରେ ବିଦେଶରୁ ଭାରତକୁ ଆମଦାନି କରାଯାଉଥିବା ବସ୍ତ୍ର ଦ୍ରୁତ ଗତିରେ ହ୍ରାସ ପାଇଥିଲା । କେବଳ ଯେ ପୁରୁଷମାନେ ଏହି ଆଇନ ଅମାନ୍ୟ ଆନ୍ଦୋଳନରେ ସାମିଲ ହୋଇଥିଲେ ତାହାନୁହେଁ, ଦେଶର ମହିଳାମାନେ ମଧ୍ୟ ଏଥିରେ ଯୋଗଦାନ କରିଥିଲେ । ବିଦେଶୀ ବସ୍ତ୍ର ଓ ମଦକୁ ବରୋଧ କରି ବିକ୍ରି ହେଉଥିବା ଦୋକାନ ମାନଙ୍କ ସମ୍ମୁଖରେ ଆନ୍ଦୋଳନକୁ ଅଧିକ ଶକ୍ତିଶାଳୀ କରା ଯାଉଥିଲା । ଏହି ଆଇନ ଅମାନ୍ୟ ଆନ୍ଦୋଳନ ଭୟାବହ ରୂପ ଧାରଣ କରିବାରୁ ବ୍ରିଟିଶ୍ ସରକାରଙ୍କର ଦମନ ମୂଳକ କାର୍ଯ୍ୟକ୍ରମ ଅତି ନିଷ୍ଠୁର ଭାବେ ପ୍ରୟୋଗ କରିଥିଲେ । ପୋଲିସ ଜୁଲମ ଏକ ନିତି ଦିନିଆ ଘଟଣା ରୂପେ ଜନସାଧାରଣଙ୍କର ଜୀବନରେ ଦେଖା ଦେଇଥିଲା । ଲକ୍ଷ ଲକ୍ଷ ଲୋକଙ୍କୁ ଗିରଫ କରାଯାଇ କାରାଗାର ମଧ୍ୟରେ ନିକ୍ଷେପ କରାଯାଇଥିଲା । ଗାନ୍ଧିଜୀ ଏବଂ ଜବାହାରଲାଲ ନେହେରୁଙ୍କ ସହିତ ଅନ୍ୟାନ୍ୟ ନେତାମାନଙ୍କୁ ମ୍ଭ କାରାରୁଦ୍ଧ କରାଯାଇଥିଲା । ଏହା ସଙ୍ଗେ ସଙ୍ଗେ ଭାରତୀୟ ଜାତୀୟ କଂଗ୍ରେସକୁ ଅବୈଧ ବୋଲି ଘୋଷଣା କରିଥିଲେ । କିନ୍ତୁ ବ୍ରିଟିଶ୍ ସରକାରଙ୍କର ନିର୍ମମ ଦମନ ଲୀଳା ଆନ୍ଦୋଳନର ଅଗ୍ନି ଶିଖାକୁ ନର୍ବାପିତ କରିପାରି ନଥିଲା । ଇଂରେଜ ସରକାରଙ୍କର ଦମନ ଲୀଳା ଯେତିକି କଠୋର ହେଉଥିଲା ଆନ୍ଦୋଳନକାରୀ ମାନଙ୍କର ଆନ୍ଦୋଳନ ସେତିକି ଉଗ୍ର ରୂପ ନେଉଥିଲା ।

## ଗୋଲ ଟେବୁଲ ବୈଠକ

ଆଇନ ଅମାନ୍ୟ ଆନ୍ଦୋଳନ ଦେଶରେ ସର୍ବତ୍ର ବ୍ୟାପୀ ଯାଇଥିଲା ଫଳରେ ଏହାର ପ୍ରଭାବ ଦେଶରେ ରାଜନୈତିକ ପରିସ୍ଥିତିକୁ ପ୍ରଭାବିତ କରିଥିଲା । ଆଇନ ଶୃଙ୍ଖଳା ଠିକ୍ ଭାବରେ କାର୍ଯ୍ୟକାରୀ ହୋଇ ପାରି ନଥିଲା । ହିଂସାର ବହ୍ନି ଦେଶସାରା ଜଳି ଉଠିଥିଲା । ଦିନକୁ ଦିନ ଏହା ବଢିବାରେ ଲାଗିଥିଲା । ଦେଶର ଏହି ପ୍ରକାର ପରିସ୍ଥିତିକୁ ଅନୁଧ୍ୟାନ କରି ବ୍ରିଟିଶ ସରକାର ଇଂଲଣ୍ଡରେ ଏକ ଅଧିବେଶନ ଡକାଇବାର ବ୍ୟବସ୍ଥା କରିଥିଲେ । ଉଭୟ ବ୍ରିଟିଶ ଏବଂ ଭାରତୀୟଙ୍କ ଉପସ୍ଥିତିରେ ଭାରତକୁ 'ସ୍ୱାୟତ' ଶାସନ ଦେବା ବିଷୟରେ ଆଲୋଚନା ମାନ କରାଯାଇଥିଲା । ଏହାକୁ ଗୋଲ ଟେବୁଲ ବୈଠକ କୁହାଯାଏ । ୧୯୩୦ ନଭେମ୍ବର ୧୨ ତାରିଖ ଦିନ ଇଂଲଣ୍ଡର ସେଣ୍ଟ ଜେମ୍ସ ପ୍ରାସାଦରେ ୮୯ ଜଣ ପ୍ରତିନିଧିଙ୍କୁ ନେଇ ପ୍ରଥମ ଗୋଲ ଟେବୁଲ ବୈଠକ କରାଯାଇଥିଲା । ପ୍ରଥମ ଗୋଲ ଟେବୁଲ ବୈଠକକୁ ୫୭ ଜଣ ଭାରତରୁ, ୧୬ ଜଣ ଭାରତୀୟ ଦେଶୀୟ ରାଜ୍ୟରୁ ଓ ୭ ଜଣ ବ୍ରିଟିଶ ପାର୍ଲ୍ୟାମେଣ୍ଟର ତିନିଗୋଟି ରାଜନୈତିକ ଦଳରୁ ମନୋନିତ ହୋଇଥିଲେ । ପରିତାପର ବିଷୟ ଯେ, ଏହି ବୈଠକକୁ ଗାନ୍ଧିଜୀଙ୍କୁ ଡ଼କାଯାଇ ନଥିବାରୁ ଭାରତୀୟ ଜାତୀୟ କଂଗ୍ରେସ ବୈଠକକୁ ବାସନ୍ଦ କରିଥିଲେ । ଫଳରେ ଭାରତୀୟ ପ୍ରତିନିଧିଗଣ ସ୍ୱଦେଶକୁ ଶୂନ୍ୟ ହସ୍ତରେ ଫେରିଲେ । ମୋଟ ଉପରେ ପ୍ରଥମ ଗୋଲ ଟେବୁଲ ବୈଠକରେ କିଛି ବି ସୁଫଳ ମିଳି ନଥିଲା ।

## ଗାନ୍ଧୀ ଇରଉଇନ୍ ଚୁକ୍ତି

ତତ୍କାଳୀନ ଇଂଲଣ୍ଡର କ୍ଷମତାସୀନ ସରକାର ଥିଲେ ଶ୍ରମିକ ସରକାର । ଭାରତର ସମସ୍ୟା ବହୁଳ ପରିସ୍ଥିତିକୁ ଲକ୍ଷକରି ଏକ ଆପୋଷ ବୁଝାମଣା ପାଇଁ ଭାରତୀୟ ଜାତୀୟ କଂଗ୍ରେସ ସହ ହାତ ବଢାଇଲେ । ଭବିଷ୍ୟତର ପଦକ୍ଷେପକୁ ଆଖି ଆଗରେ ରଖି ୧୯୩୧ ମସିହା ଜାନୁୟାରୀ ପାଞ୍ଚ ତାରିଖ ଦିନ କଂଗ୍ରେସର ବିଶିଷ୍ଟ ନେତା ମାନଙ୍କୁ କାରାଗାରରୁ ମୁକ୍ତ କରି ଦିଆଯାଇଥିଲା । ଏହି ସମୟରେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ତଥା କଂଗ୍ରେସର ଜଣେ ପୁରୁଖା ନେତା ମୋତିଲାଲ ନେହେରୁ ସବୁଦିନ ପାଇଁ ତାଙ୍କର ପ୍ରିୟ ଭାରତ ବାସୀଙ୍କୁ ଛାଡି ଚାଲିଗଲେ । ଫଳରେ ଭାରତରେ ରାଜ ନୈତିକ ଆକାଶର ଏକ ଉଜ୍ଜ୍ୱଳ ନକ୍ଷତ୍ରଙ୍କର ଚିରଦିନ ପାଇଁ ଅବସାନ ଘଟିଲା । ଏଥିରେ ଗାନ୍ଧିଜୀ ଦୁଃଖରେ ମ୍ରିୟମାଣ ହୋଇ ପଡିଥିଲେ

ଏବଂ ତତ୍କାଳୀନ ଭାଇସରାୟ ଲର୍ଡ ଇରଉଇନଙ୍କ ସହିତ ବନ୍ଧୁତା ସୂତ୍ରରେ ହାତ ମିଳାଇ ଏକ ଚୁକ୍ତି ସ୍ୱାକ୍ଷରିତ ପାଇଁ ସମ୍ମତି ପ୍ରଦାନ କରିଥିଲେ । ୧୯୩୧ ମସିହା ଫେବୃଆରୀ ୧୭ ତାରିଖ ଦିନ ଏହି ଚୁକ୍ତି ଉଭୟଙ୍କ ମଧ୍ୟରେ ହୋଇଥିଲା । ଏହାକୁ 'ଗାନ୍ଧୀ ଇରଉଇନ୍ ଚୁକ୍ତି' ଭାବେ ନାମିତ କରାଯାଇଥିଲା । ଏହି ଚୁକ୍ତି ଅନୁସାରେ ଭାଇସରାୟ ଭାରତୀୟ ରାଜନୈତିକ ବନ୍ଦି ମାନଙ୍କୁ ମୁକ୍ତି ଦେବା ସହିତ ଏକ ରାଷ୍ଟ୍ରୀୟ ସଂଘ ସରକାର ପ୍ରତିଷ୍ଠା ପାଇଁ ଏକ ମତ ହୋଇଥିଲେ । ପରେ ପରେ ଆଇନ ଅମାନ୍ୟ ଆନ୍ଦୋଳନକୁ ସ୍ଥଗିତ ରଖାଗଲା ଏବଂ ଦ୍ୱିତୀୟ ଗୋଲ ଟେବୁଲ୍ ବୈଠକରେ ଯୋଗ ଦେବାପାଇଁ ଗାନ୍ଧିଜୀଙ୍କୁ ନିମନ୍ତ୍ରଣ କରିଥିଲେ । ଏହି ଚୁକ୍ତି ପତ୍ରରେ 'ପୂର୍ଣ୍ଣ ସ୍ୱରାଜ' କଥା ସ୍ଥାନ ପାଇ ନଥିବାରୁ ନେହେରୁ ଇତ୍ୟାଦି ଜାତୀୟ ନେତାମାନେ ଗାନ୍ଧିଜୀଙ୍କୁ ତୀବ୍ର ସମାଲୋଚନା କରିଥିଲେ । କିନ୍ତୁ ଗାନ୍ଧିଜୀ ତାଙ୍କର ବୁଦ୍ଧିମତ୍ତା ତଥା ସହିଷ୍ଣୁତା ବଳରେ ଏହି ଇରଉଇନ୍ ଚୁକ୍ତିକୁ କରାଚି କଂଗ୍ରେସ ଅଧିବେଶନରେ ଅନୁମୋଦନ କରାଇ ନେଇଥିଲେ । ।

ଗାନ୍ଧୀ – ଇରଉଇନ୍ ଚୁକ୍ତି ଅନୁସାରେ ୧୯୩୧ ମସିହାରେ ଇଂଲଣ୍ଡରେ ଦ୍ୱିତୀୟ ଗୋଲଟେବୁଲ ବୈଠକ ଅନୁଷ୍ଠିତ ହୋଇଥିଲା । ବ୍ରିଟେନ୍‌ର ପ୍ରଧାନ ମନ୍ତ୍ରୀ ରାମସେ ମେକ୍ ଡୋନାଲଡ୍ ଏଥିରେ ଅଧ୍ୟକ୍ଷତା କରିଥିଲେ । ଗାନ୍ଧିଜୀ ଏକ ମାତ୍ର ପ୍ରତିନିଧି ରୂପେ କଂଗ୍ରେସ ତରଫରୁ ଯୋଗ ଦେବା ସଙ୍ଗେ ସଙ୍ଗେ ମଦନ ମୋହନ ମାଳବ୍ୟ ଓ ଶ୍ରମତୀ ସରୋଜିନୀ ନାଇଡୁ ବ୍ୟକ୍ତିଗତ ଭାବେ ଉକ୍ତ ବୈଠକରେ ଯୋଗ ଦେଇଥିଲେ । ଇଂଲଣ୍ଡର ରାଣୀ ପ୍ରତିନିଧି ମାନଙ୍କ ସହିତ ବୈଠକ ପୂର୍ବରୁ କରମର୍ଦ୍ଦନ କରିଥିଲେ । କିନ୍ତୁ ଗାନ୍ଧିଜୀଙ୍କୁ ଜଣେ ବିପ୍ଳବୀର ଆଖ୍ୟାଦେଇ ତାଙ୍କ ସହିତ କରମର୍ଦ୍ଦନ କରିନଥିଲେ । ବୈଠକରେ ପଞ୍ଚମ ଜର୍ଜ ଭୟ ପ୍ରଦର୍ଶନ କରାଇଥିଲେ ଯେ, ଯଦି ଇଂରେଜ ସରକାରଙ୍କୁ ସେ ଅସହଯୋଗ କରନ୍ତି ତାହାହେଲେ ତାଙ୍କୁ ମେସିନ୍‌ଗନ୍ ସାହାଯ୍ୟରେ ଉଡାଇ ଦେବାପାଇଁ ସେ ତାଙ୍କ ସରକାରଙ୍କୁ ନିର୍ଦ୍ଦେଶ ଦେବେ । ଗାନ୍ଧିଜୀ ଏଥିରେ ତିଳେ ମାତ୍ର ଭୟଭୀତ ନହୋଇ କହିଥିଲେ, ମୋ ଦେଶବାସୀ ଆପଣଙ୍କ ମେସିନ୍ ଗନ୍‌କୁ ତାଳ ଫୋଟକା ବୋଲି ଭାବନ୍ତି । ଏହି ବାକ୍ ବିତଣ୍ଡା ଏବଂ ପରସ୍ପର ପ୍ରତି ସନ୍ଦେହପୂର୍ଣ୍ଣ ବାତାବରଣରେ ବୈଠକରୁ କିଛି ସଫଳ ମିଳିନଥିଲା । ଭାରତୀୟ ମାନଙ୍କ ମଧ୍ୟରେ ଉଚ୍ଚନୀଚର ଭେଦଭାବ ସୃଷ୍ଟି କରିବା ଉଦ୍ଦେଶ୍ୟରେ ସଂଖ୍ୟା ଲଘୁ ଗୋଷ୍ଠୀଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀର ବ୍ୟବସ୍ଥା କରାଯାଇଥିଲା । ଫଳରେ ଗାନ୍ଧିଜୀ ମର୍ମାହତ ହୋଇ ଇଂଲଣ୍ଡରୁ ଫେରିବା ପରେ ପୁଣି ଅସହଯୋଗ ଆନ୍ଦୋଳନ ଚଳାଇ ଥିଲେ ଏବଂ ପରିଶେଷରେ ଗାନ୍ଧିଜୀ ପୁନର୍ବାର କାରା ବରଣ କରିଥିଲେ ।

୧୯୩୨ ମସିହା ନଭେମ୍ବର ମାସରେ ତୃତୀୟ ଗୋଲଟେବୁଲ ବୈଠକ ଅନୁଷ୍ଠିତ ହୋଇଥିଲା । ଏହି ବୈଠକରେ ଭାରତୀୟ କଂଗ୍ରେସ କିମ୍ବା ଇଂଲଣ୍ଡର ଶ୍ରମିକ ଦଳ କେହିହେଲେ ଏଥିରେ ଅଂଶଗ୍ରହଣ କରିନଥିଲେ । ଏହି ବୈଠକରେ ଅନେକ ବିଷୟ ଆଲୋଚନା ହୋଇଥିଲେ ମଧ୍ୟ ସେଥିରେ ବିଶେଷ ଫଳପ୍ରଦ ହୋଇନଥିଲା । ଶେଷରେ ଗୋଟିଏ ଚିଠା କରାଯାଇ ଅନୁମୋଦନ ନିମନ୍ତେ ବ୍ରିଟିଶ ପାର୍ଲ୍ୟାମେଣ୍ଟକୁ ପ୍ରେରଣ କରା ଯାଇଥିଲା । ଆଇନ ଅମାନ୍ୟ ଆନ୍ଦୋଳନକୁ ଗାନ୍ଧିଜୀଙ୍କର ପରାମର୍ଶ କ୍ରମେ ସ୍ଥଗିତ ରଖାଯାଇଥିଲା ।

୧୯୩୬-୩୭ ସାଧାରଣ ନିର୍ବାଚନରେ କଂଗ୍ରେସ ଅଂଶ ଗ୍ରହଣ କରି ପାଞ୍ଚୋଟି ପ୍ରଦେଶରେ ସଂଖ୍ୟା ଗରିଷ୍ଠ ଦଳ ରୂପେ ନିର୍ବାଚିତ ହୋଇଥିଲା । ଏଥି ମଧ୍ୟରୁ ଓଡ଼ିଶା ଥିଲା ଗୋଟିଏ । କିନ୍ତୁ ଏଥିରେ କଂଗ୍ରେସର ଗୋଟିଏ ପଣ ଥିଲା ଯେ, ଦୈନନ୍ଦିନ ପ୍ରସାସନିକ କାର୍ଯ୍ୟରେ ଗଭର୍ଣ୍ଣରମାନେ ହସ୍ତକ୍ଷେପ କରି ପାରିବେ ନାହିଁ । ଏଥିରେ ଭାଇସରାୟ ଲର୍ଡ଼ ଲିନ୍ ଲିଥିଗୋ ଏକମତ ହୋଇ ୧୯୩୭ ସମିହା ଜୁଲାଇ ମାସରେ ଘୋଷଣା ନାମା ପ୍ରକାଶିତ କରିଥିଲେ । ଫଳରେ ଓଡ଼ିଶାରେ କଂଗ୍ରେସ ନେତୃତ୍ୱାଧୀନରେ ମନ୍ତ୍ରୀ ମଣ୍ଡଳ ଗଠନ କରାଯାଇଥିଲା ଏବଂ ବିଶ୍ୱନାଥ ଦାସ ପ୍ରଥମ ପ୍ରଧାନ ମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ । ଏହା ଫଳରେ ପ୍ରଧାନ ମନ୍ତ୍ରୀ ମାନେ ଦେଶର ସ୍ୱାଧୀନତା ସଂଗ୍ରାମ ପାଇଁ ଜନସାଧାରଣଙ୍କ ଠାରୁ ସହାନୁଭୂତି ଲାଭ କରିପାରିଥିଲେ । କିନ୍ତୁ ଏ ଶାସନ ଅଧିକ ଦିନ ତିଷ୍ଠି ପାରି ନଥିଲା । କାରଣ ବ୍ରିଟିଶ ସରକାର ଭାରତର ବିନା ଅନୁମତିରେ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଭାରତକୁ ସାମିଲ କରିଥିବାରୁ ୧୯୩୯ ମସିହା ଅକ୍ଟୋବର ମାସରେ କଂଗ୍ରେସ ସରକାର ଇସ୍ତଫା ପ୍ରଦାନ କରିଥିଲେ । ଗଭର୍ଣ୍ଣର ମାନେ ନିଜ ନିଜ ପ୍ରଦେଶର କ୍ଷମତାରେ ରହିଲେ ।

## ଭାରତୀୟ ରାଜନୀତି ଏବଂ ଦ୍ୱିତୀୟ ବିଶ୍ୱଯୁଦ୍ଧ

ବିଶ୍ୱ ଇତିହାସ ଏକ କଳଙ୍କିତ ପୃଷ୍ଠା ମଣ୍ଡନ କରିଥିଲା ୧୯୩୯ ମସିହା ସେପ୍ଟେମ୍ବର ୩ ତାରିଖ ଦିନ । ସେହିଦିନ ଥିଲା ବିଶ୍ୱ ଇତିହାସର ଏକ ଅଭିସପ୍ତ ଦିବସ କାରଣ ସେହି ଦିନ ବିଧ୍ୱଂସକାରୀ ଦ୍ୱିତୀୟ ବିଶ୍ୱ ଯୁଦ୍ଧର ସୂତ୍ରପାତ ହୋଇଥିଲା । ପ୍ରଥମ ବିଶ୍ୱ ଯୁଦ୍ଧରେ ଇଂରେଜ କର୍ତ୍ତୃପକ୍ଷ ଭାରତୀୟ ମାନଙ୍କୁ ଦେଇଥିବା ପ୍ରତିଶ୍ରୁତିକୁ ଉଲଘ୍ନ କରିଥିବା ବିଷୟ ଭାରତୀୟ ମାନେ ଭୁଲି ନଥିଲେ । ତେଣୁ ଭାରତୀୟ ଜାତୀୟ କଂଗ୍ରେସ ବ୍ରିଟିଶ ସରକାରଙ୍କୁ ଏକ ସ୍ମାରକ ପତ୍ର ମାଧ୍ୟମରେ ଜଣାଇ ଦେଇଥିଲେ ଯେ, ଭବିଷ୍ୟତରେ କୌଣସି ଯୁଦ୍ଧରେ

ଭାରତକୁ ଯେପରି ସଂପୃକ୍ତ କରାନଯାଏ । ଏହାଥିଲା ବ୍ରିଟିଶ ସରକାରଙ୍କୁ ଭାରତୀୟ ଜାତୀୟ କଂଗ୍ରେସର ସତର୍କବାଣୀ । ଭାରତରେ ଏହି ପରିବେଶ ହିଁ ସୃଷ୍ଟି କରିଥିଲା ଭାରତର ସ୍ୱାଧୀନତା ସଂଗ୍ରାମରେ ଏକ ନୂତନ ଅଭୂଲା ଅଧ୍ୟାୟ । ଶାସନ କ୍ଷମତାରେ ଥିବା ବ୍ରିଟିଶ୍ ସରକାର ଏହାକୁ କର୍ଣ୍ଣପାତ କରିନଥିଲେ । ତତ୍କାଳୀନ ଭାଇସରାୟ ଯୋର ଯଦରଦସ୍ତ ଭାରତକୁ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ପକ୍ଷ କରାଇ ମିତ୍ରଶକ୍ତି ମଧ୍ୟରେ ଅନ୍ତର୍ଭୁକ୍ତ କରାଇ ଥିଲେ । ଫଳରେ ଭାରତର ଜାତୀୟ କଂଗ୍ରେସ ବ୍ରିଟିଶ୍ ସରକାରଙ୍କର ଏହିପରି ମନୋଭାବକୁ ଲକ୍ଷ କରି ୧୯୩୯ ମସିହା ସେପ୍ଟେମ୍ବର ୧୪ ତାରିଖ ଦିନ ଗୋଟିଏ ପ୍ରସ୍ତାବ ଗ୍ରହଣ କରିଥିଲେ । ଏହି ପ୍ରସ୍ତାବର ସାରାଂଶ ଥିଲା ; ୧- ଭାରତୀୟ ମାନେ ନିଜର ସଂବିଧାନ ପଣୟନ କରିବା ନିମନ୍ତେ ଯେ ପର୍ଯ୍ୟନ୍ତ ବ୍ରିଟିଶ୍ ସରକାର ପୂର୍ଣ୍ଣଭାବରେ କ୍ଷମତା ନଦେଇଛନ୍ତି ସେ ପର୍ଯ୍ୟନ୍ତ ଭାରତୀୟମାନେ ମିତ୍ରଶକ୍ତିର କୌଣସି ମତେ ସାହାଯ୍ୟ କରିବେ ନାହିଁ । ୨- ଯେ ପର୍ଯ୍ୟନ୍ତ ବ୍ରିଟିଶ୍ ସରକାର ଭାରତ ବର୍ଷରେ ଏକ ଜନପ୍ରିୟ ସରକାର ଗଠନ କରିବା ନିମନ୍ତେ ଭାରତୀୟ ମାନଙ୍କୁ ଅନୁମୋଦନ ନକରିଛନ୍ତି ଭାରତୀୟମାନେ ମିତ୍ର ଶକ୍ତିକୁ କୌଣସି ସାହାଯ୍ୟ ପ୍ରଦାନ କରିବେ ନାହିଁ । କିନ୍ତୁ ପରିତାପର ବିଷୟ ଏହି ଯେ, ଇଂରେଜ ସରକାର ଏହି ଦାବିପ୍ରତି କୌଣସି ଗୁରୁତ୍ୱ ଦେଇ ନଥିଲେ ।

ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ ୧୯୪୦ ମସିହା ବେଳକୁ ମିତ୍ରଶକ୍ତିଙ୍କ ଅବସ୍ଥା ସଂକଟାପନ୍ନ ହୋଇ ପଡ଼ିଲା । ଇଂଲଣ୍ଡ ଯେ କେବଳ ବିପଦ ସଂକୁଳ ହୋଇ ପଡ଼ିଲା ତା'ନୁହେଁ, ଏହାର ପରାଜୟ ମଧ୍ୟ ଅବଶ୍ୟମ୍ଭାବୀ ହୋଇପଡ଼ିଲା । ଫଳରେ ଗାନ୍ଧିଜୀଙ୍କ ବ୍ରିଟିଶ ପ୍ରତି ସହାନୁଭୂତି ଜଣାଇବାକୁ ବାଧ୍ୟ ହେଲେ । ଗାନ୍ଧିଜୀଙ୍କର ବ୍ରିଟିଶ ମାନଙ୍କ ପ୍ରତି ସହାନୁଭୂତି ଦେଖାଇବାର ଯଥେଷ୍ଟ କାରଣ ଥିଲା । ଯାହାହେଉ ୧୯୪୦ ମସିହା ଜୁନ୍ ୧ ତାରିଖ ଦିନ ଘୋଷଣା କଲେ ଯେ, "ବ୍ରିଟିଶର ବିପର୍ଯ୍ୟୟ ବଦଳରେ ଆମ୍ଭେମାନେ ସ୍ୱାଧୀନତା ଚାହୁଁନା" । ଅବଶ୍ୟ ଗାନ୍ଧିଜୀ ଏଥିପାଇଁ ଗୋଟିଏ ସର୍ତ୍ତ ରଖିଥିଲେ ଯୁଦ୍ଧ ପରେ ପରେ ଆମର ରଖାଯାଇଥିବା ଉପୋରକ୍ତ ସର୍ତ୍ତ ଦୁଇଟିକୁ ଇଂରେଜ ସରକାର ରକ୍ଷା କରିବେ । ଏହାକୁ ଆଖି ଆଗରେ ରଖି ଭାରତ ଇଂଲଣ୍ଡକୁ ବହୁ ଲୋକବଳ ସାହାଯ୍ୟ ଦେଇ ମିତ୍ର ଶକ୍ତିକୁ ପରିପୁଷ୍ଟ କରାଇଥିଲେ । ଯୁଦ୍ଧର ଏହି ସଂକଟକାଳୀନ ଅବସ୍ଥାରେ ଭାରତୀୟ ମାନଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ବ୍ରିଟିଶ ପ୍ରଧାନ ମନ୍ତ୍ରୀ ଉଇନ୍‌ଷ୍ଟନ ଚର୍ଚ୍ଚିଲ ଭାରତୀୟ ମାନଙ୍କୁ କିଛି ସାମ୍ବିଧାନିକ ସୁବିଧା ଦେବାପାଇଁ ଭାଇସରାୟଙ୍କୁ ନିର୍ଦ୍ଦେଶ ଦେଇଥିଲେ । କିନ୍ତୁ ପରିତାପର ବିଷୟ ଯେ, ସେସବୁ କେବେ କାର୍ଯ୍ୟକାରୀ ହେବ ସେ ସବୁର କୌଣସି ସମୟ ସୀମା ଧାର୍ଯ୍ୟ କରାଯାଇ ନଥିଲା । ତେଣୁ

ଏପରି ଏକ ଅସ୍ପଷ୍ଟ ପ୍ରସ୍ତାବକୁ କଂଗ୍ରେସ ନେତୃବୃନ୍ଦ ପ୍ରତ୍ୟାଖ୍ୟାନ କରିଦେଇଥିଲେ । ଏପରି ଏକ ପରିସ୍ଥିତିରେ କଂଗ୍ରେସ ନିଜର ଲକ୍ଷ ହାସଲ ପାଇଁ ପୁନର୍ବାର ଆଇନ ଅମାନ୍ୟ ଆନ୍ଦୋଳନକୁ ଚାଲୁ ରଖିବା ପାଇଁ ମନସ୍ଥ  କରିଥିଲେ ।

## ବ୍ୟକ୍ତିଗତ ଆଇନ ଅମାନ୍ୟ ଆନ୍ଦୋଳନ

ଭାରତ ଇତିହାସରେ ମହାତ୍ମାଗାନ୍ଧୀ ହେଉଛନ୍ତି ଏକ ବିରଳ ବ୍ୟକ୍ତିତ୍ୱ ଯାହାଙ୍କର ନେତୃତ୍ୱ ରାଜନୈତିକ ଘଟଣା ପ୍ରବାହ ଭିତରେ ଥିଲା ଏକ କିମ୍ବଦନ୍ତୀ । ତାଙ୍କର ରାଜନୈତିକ କାର୍ଯ୍ୟସୂଚୀ ଭାରତର ସ୍ୱାଧୀନତା ଆନ୍ଦୋଳନ ପାଇଁ ଯେତିକି ସ୍ୱଚ୍ଛତା ଆଣିଥିଲା ତାହା ଅବିସ୍ମରଣୀୟ । ତାଙ୍କର ସମଗ୍ର ବିଚାର ଧାରାର ଅନ୍ତଃ ସ୍ୱର ହେଉଛି "ଖରାପ କାମ ନକରିବା" । ସେହି ମନୋଭାବ ନେଇ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ବ୍ରିଟିଶ ସରକାରଙ୍କୁ ଅନୁଗତ୍ୟ ଦେଖାଇ ତାଙ୍କଠାରୁ ଫାଇଦା ଉଠାଇବା ରାଜନୈତିକ ବିଚକ୍ଷଣତାର ପରିଚୟ ମିଳିଥାଏ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଦେଶରେ ସଙ୍କଟାପର୍ଣ୍ଣ ପରିସ୍ଥିତିରେ ଆଇନ ଅମାନ୍ୟ ଆନ୍ଦୋଳନଙ୍କୁ ଜନସାଧାରଣଙ୍କର ଉପରେ ନଦି ଦେଇ ଏକ ଅଭିନବ ଆନ୍ଦୋଳନାତ୍ମକ ପନ୍ଥା ଅବଲମ୍ବନ କରିବା ପାଇଁ ସେ ଆଗ୍ରହୀ ଥିଲେ । ତେଣୁ ଇଂଲଣ୍ଡ ପ୍ରତି ଦୟାପରବେଶ ହୋଇ ଏକ ସହାନଭୂତି ସମ୍ପର୍ଣ୍ଣ ବ୍ୟକ୍ତିଗତ ଆଇନ ଅମାନ୍ୟ ଆନ୍ଦୋଳନର ଆହ୍ୱାନ ଦେଇଥିଲେ । କର୍ମୀମାନେ ବ୍ୟକ୍ତିଗତଭାବେ ଆଇନ ଅମାନ୍ୟ କରିବା ତାଙ୍କର ଲକ୍ଷଥିଲା । ମନୋନୀତ କର୍ମୀ ନିଜ ଅଂଚଳରେ ଜନସାଧାରଣଙ୍କୁ  ପ୍ରବର୍ତ୍ତାଇବେ ଯେ, ଯୁଦ୍ଧରେ ସରକାରଙ୍କୁ ସାହାର୍ଯ୍ୟ କରନାହିଁ । ଏହି ଆନ୍ଦୋଳନ ଆରମ୍ଭ ହୋଇଥିଲା  ୧୯୪୦ ମସିହା ନଭେମ୍ବର ମାସରେ । ଏହାର ସତ୍ୟାଗ୍ରହୀ ଥିଲେ କଂଗ୍ରେସର ତୁଙ୍ଗ ନେତା ଆଚାର୍ଯ୍ୟ ବିନୋବା ଏବଂ ଜବାହରଲାଲ ନେହେରୁ । ଆନ୍ଦୋଳନ ହେବା ମାତ୍ରେ ତାଙ୍କୁ ବନ୍ଦୀକରି କାରାରୁଦ୍ଧ କରାଯାଇଥିଲା । ଏହିପରି ୩୦ ହଜାର ସତ୍ୟାଗ୍ରହୀ କରାରୁଦ୍ଧ ହୋଇଥିଲେ । ଏହିପରି ଅନେକ ସଂଖ୍ୟାରେ କାରାରୁଦ୍ଧ ହେବା ଫଳରେ ଭାରତୀୟମାନେ ଯୁଦ୍ଧରେ ସରକାରଙ୍କୁ ସାହାର୍ଯ୍ୟ କରିବା ପାଇଁ ଅନିଚ୍ଛା ପ୍ରକାଶ କରିଥିଲେ । ତେଣୁ ବ୍ରିଟଶ୍ ସରକାର ବିଚଳିତ  ହୋଇପଡ଼ିଲେ । ଫଳରେ ବ୍ରିଟିଶ୍ ସରକାର ବନ୍ଦୀ ମାନଙ୍କୁ ମୁକ୍ତି କରି ଦେଇଥିଲେ । କିନ୍ତୁ ଆନ୍ଦୋଳନ ପ୍ରସମିତ ନ ହୋଇ ତେଜିଆନ ବହ୍ନି ସଦୃଶ ପ୍ରସାର ଲାଭ କରିଥିଲା । ୧୯୪୧ ମସିହା ବେଳକୁ ଜାପାନ ଇଂଲଣ୍ଡ ବିରୁଦ୍ଧରେ ଯୋଗ ଦେଇ ମିତ୍ର ଶକ୍ତିର ବିପୁଳ କ୍ଷତି ଘଟାଇ ଚାଲିଥିଲେ । ତେଣୁ ଜାତୀୟ କଂଗ୍ରେସର ସନ୍ଦେହ ହେଲା ଯେ, ଯଦି ଜାପାନ ଇଂଲଣ୍ଡ ପରିବର୍ତ୍ତେ ଭାରତକୁ

ଆକ୍ରମଣ କରେ ଏବଂ ଭାରତରେ ଏକଛତ୍ରବାଦ ସ୍ଥାପନକରେ ତାହାହେଲେ ଭାରତର ଅବସ୍ଥା ଶୋଚନୀୟ ହୋଇ ପଡ଼ିବ । ଫଳରେ କଂଗ୍ରେସ ବ୍ୟକ୍ତିଗତ ଆଇନି ଅମାନ୍ୟ ଆନ୍ଦୋଳନକୁ ସ୍ଥଗିତ ରଖିଥିଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଇଂଲଣ୍ଡର ଦୟନୀୟ ପରିସ୍ଥିତିରେ ଭାରତ ସହାନଭୂତି ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ଗାନ୍ଧିଜୀଙ୍କର ଯେଉଁ ଆନ୍ତରିକତା ଥିଲା ତାହା ଇଂଲଣ୍ଡ ଗ୍ରହଣ କରୁ ବା ନକରୁ କିନ୍ତୁ ଏଥିପାଇଁ ବିଶ୍ୱ ଜନମତର ଅବଦାନକୁ ଅସ୍ୱୀକାର କରାଯାଇପାରିବ ନାହିଁ । ଇଂଲଣ୍ଡ ପକ୍ଷରେ ଥବା ମିତ୍ରଶକ୍ତି ଯଥା ଆମେରିକା, ଚୀନ୍ ଏବଂ ଅଷ୍ଟ୍ରେଲିଆ ପ୍ରଭୃତି କେତେକ ବୈଦେଶିକ ଶକ୍ତି ଭାରତୀୟଙ୍କ ଦାବି ଯୁକ୍ତି ଯୁକ୍ତ ଏବଂ ଏହାକୁ ମାନି ନେବା ପାଇଁ ବ୍ରିଟିଶ୍ ସରକାରଙ୍କ ଉପରେ ପ୍ରଭାବ ପକାଇ ଥିଲେ । ତେଣୁ ବ୍ରିଟିଶ୍ ସରକାର ଭାରତୀୟଙ୍କ ଦାବି ଗୁଡ଼ିକ ଉପରେ କିଛିଟା କୋହଳ ମନୋଭାବ ପ୍ରଦର୍ଶନ କରିଥିଲେ । ଏହି ପରିପ୍ରେକ୍ଷୀରେ ଭାରତର ରାଜନୈତିକ ସଂକଟ ଦୂର କରିବା ପାଇଁ ଚର୍ଚ୍ଚିଲ ଏକ ବିଶେଷଜ୍ଞ ଦଳ ଭାରତକୁ ପଠାଇବା ପାଇଁ ନିଷ୍ପତି ନେଇଥିଲେ । ଏହି ବିଶେଷଜ୍ଞ ଦଳ ମଧ୍ୟରେ ଥିଲେ ସାର ଷ୍ଟାଫୋର୍ଡ କ୍ରିପସ । ସେ ଥିଲେ ଜବାହରଲାଲ ନେହେରୁଙ୍କର ଉତ୍ତମ ବନ୍ଧୁ । ଏହି ମିସନ୍ ନିଯୁକ୍ତି ପଛରେ ତିନିଗୋଟି କାରଣ ରହିଥିଲା । ସେଗୁଡ଼ିକ ହେଲା (କ) ବ୍ୟକ୍ତିଗତ ଆଇନ ଅମାନ୍ୟ ଆନ୍ଦୋଳନ, (ଖ) ବିଶ୍ୱ ଯୁଦ୍ଧରେ ଇଂଲଣ୍ଡର ଭୟାବହ ପରିସ୍ଥିତି, (ଗ) ଇଂଲଣ୍ଡ ଉପରେ ବୈଦେଶିକ ଶକ୍ତିର ପ୍ରଭାବ ।

୧୯୪୨ ମସିହା ମାର୍ଚ୍ଚ ୨୨ ତାରିଖ ଦିନ ସାର୍ ଷ୍ଟାଫୋର୍ଡ କ୍ରିପ୍‌ସ ଭାରତରେ ପହଞ୍ଚି ଥିଲେ । ଭାରତରେ ପହଞ୍ଚି ସେ ଭାଇସରାୟ ଏବଂ ତାଙ୍କ ପରିଷଦର ସଦସ୍ୟ ମାନଙ୍କ ସହ ଆଲୋଚନା କରି ସାରିବା ପରେ ଭାରତର ବିଭିର୍ଣ୍ଣ ଦଳର ନେତା ମାନଙ୍କ ସହିତ ଭାରତର ବିଭିନ୍ନ ସମସ୍ୟା ଉପରେ ଆଲୋଚନା କରିଥିଲେ । ଆଲୋଚନା କରବା ପରେ ସେ କେତୋଟି ପ୍ରସ୍ତାବ ଦେଇଥିଲେ । ତାହାହେଲା (କ) ଭାରତକୁ ଏକ ଅଧିରାଜ୍ୟର ଆସନ ଦିଆଯିବ, (ଖ) ଯୁଦ୍ଧ ପରେ ଭାରତ ପାଇଁ ଗୋଟିଏ ନୂତନ ସମ୍ବିଧାନ ପ୍ରଣୟନ ନିମନ୍ତେ ଭାରତୀୟଙ୍କୁ ନେଇ ଏକ ସଂସ୍ଥା ଗଠନ କରାଯିବ, (ଗ) ସମ୍ବିଧାନ ପ୍ରଣୟନକାରୀ ସଂସ୍ଥା ଭାରତୀୟ ଦେଶୀୟ ରାଜ୍ୟର ପ୍ରତିନିଧି ଅଂଶ ଗ୍ରହଣ କରିବା ପାଇଁ ବ୍ୟବସ୍ଥା ରଖାଯିବ, (ଘ) ନୂତନ ସମ୍ବିଧାନ ପ୍ରଣୟନ ହେବାପର୍ଯ୍ୟନ୍ତ ବ୍ରିଟିଶ୍ ସରକାର ଭାରତର ନିରାପତ୍ତା ପାଇଁ ଦାୟୀ ରହିବେ । ଏହି ପ୍ରସ୍ତାବ ଗୁଡ଼ିକ ଭାରତୀୟ ମାନଙ୍କର ଭବିଷ୍ୟତ ପାଇଁ ଏକ ପ୍ରତିଶୃତି,

ବ୍ରିଟିଶ୍ ସରକାରଙ୍କର ଏହା ଏକ ଧୂଆଁବାଣ, ଭାରତୀୟ ମାନଙ୍କୁ ଏହା ଏକ ସମ୍ବୋଧନା, ଏଣୁ ଏହା ଉପରେ ଭାରତୀୟ ମାନଙ୍କ ମନରେ ଆସ୍ଥା ବିଶ୍ୱାସ ଜନ୍ମାଇ ପାରିନଥିଲା । ତେଣୁ ଭାରତୀୟ ଜାତୀୟ କଂଗ୍ରେସ ଏହାକୁ ପତ୍ୟାଖ୍ୟାନ କରି ଦେଇଥିଲା । ଏହି ପରିପ୍ରେକ୍ଷୀରେ ଭାରତୀୟ ମାନେ ଉପଲବ୍ଧି କରିଥିଲେ ଯେ ଇଂଲଣ୍ଡର ସଂକଟକାଳୀନ ପରିସ୍ଥିତିରେ ଭାରତୀୟ ମାନେ ସାହାର୍ଯ୍ୟ କରିଥିବା ହେତୁ ଏହା ଭାରତୀୟ ମାନଙ୍କ ପ୍ରତି ଥିଲା ଏକ ମନ ଭୂଲାଣିଆ କ୍ଷଣିକ ପ୍ରସ୍ତାବ । ତେଣୁ ମହାତ୍ମାଗାନ୍ଧୀ ଉପହାସ ଛଳରେ କହିଥିଲେ ଯେ, "କାର୍ଯ୍ୟ କରୁନଥିବା ଗୋଟିଏ ଦେବାଳିଆ ବେଙ୍କର, ପୁରୁଣା ଚେକ୍‌ଟିଏ ଭାରତୀୟ ମାନଙ୍କୁ ଦେଇ କ୍ରିପ୍‌ସ ପ୍ରତାରିତ କରିଛନ୍ତି" । କ୍ରିପ୍‌ସଙ୍କ ଆଗମନ ଫଳରେ ପୂର୍ବରୁ ଥିବା ସମସ୍ୟା ଗୁଡ଼ିକ ସମାଧାନ ପରିବର୍ତ୍ତେ ଅଧିକ ଜଟିଳତର ହୋଇ ପଡିଥିଲା ।

## ଭାରତ ଛାଡ଼ ଆନ୍ଦୋଳନ

ଉତ୍ତେଜନାପୂର୍ଣ୍ଣ ଭାରତୀୟ ଜାତୀୟ ଆନ୍ଦୋଳନର ଇତିହାସରେ ୧୯୪୨ ମସିହା ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲା । ସ୍ୱାଧୀନତା ପାଇଁ ଭାରତର ଘଟଣା ବହୁଳ ଇତିହାସରେ ଅନେକ ଝଡ଼ ସୃଷ୍ଟି ହୋଇଥିଲା ତାହା ଅସ୍ୱୀକାର କରାଯାଇ ନପାରେ । ସ୍ୱାଧୀନତା ପାଇଁ ପୂର୍ବବତ୍ ସୂରୀ ମାନଙ୍କର ଦେଶ ପାଇଁ ଆତ୍ମବିଷର୍ଜନରେ ଇତିହାସ ଭରି ରହିଛି । ତାହା କେବେହେଲେ ଭାରତୀୟ ମାନଙ୍କର ମନସପଟ୍ଟରୁ କେହି କେବେହେଲେ ପୋଛିଦେଇ ପାରିବ ନାହିଁ । କିନ୍ତୁ ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନ ପରି ଉତ୍ତେଜନା ପୂର୍ଣ୍ଣ ଆନ୍ଦୋଳନ ଭାରତ ଇତିହାସରେ ବିରଳ । ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ ମହାତ୍ମାଗାନ୍ଧୀ । ଆନ୍ଦୋଳନରେ ଗାନ୍ଧୀଙ୍କର ମୂଖ୍ୟ ଲକ୍ଷଥିଲା ଭାରତରୁ ଇଂରେଜ ଶାସନର ପରିସମାପ୍ତି ।

ପୂର୍ବ ଆଲୋଚିତ ଅଧ୍ୟାୟ ମାନଙ୍କରେ ଆମେ ଇଂରେଜ ସରକରାଙ୍କର ପ୍ରତାରଣା ବିଷୟରେ ଆଲୋଚନା କରିଛେ । ଇଂରେଜ ମାନଙ୍କର ବହୁ ପ୍ରତାରଣା ବିଷୟରେ କ୍ରିପ୍‌ସ ମିଶନର ବଫଳତା ଥିଲା ଅନ୍ୟତମ । ଭାରତୀୟ ମାନେ ଉପଲବ୍ଧି କରିଥିଲେ ଯେ, କ୍ରିପ୍‌ସଙ୍କର ଭାରତ ଆଗମନ ଏବଂ ତାଙ୍କର ପ୍ରତିଶ୍ରୁତି ଭାରତୀୟ ମାନଙ୍କୁ କେବଳ ଛଳନା ମାତ୍ର ଥିଲା । ତେଣୁ ପରିଶେଷରେ ୧୯୪୨ ସମିହା ଏପ୍ରିଲ୍ ୧୧ ତାରିଖ ଦିନ ବ୍ରିଟିଶ ସରକାର କ୍ରିପ୍‌ସଙ୍କ ପ୍ରସ୍ତାବଗୁଡ଼ିକୁ ପ୍ରତ୍ୟାହାର କରି ନେଇଥିଲେ । କ୍ରିପ୍‌ସଙ୍କର ଇଂଲଣ୍ଡ ପ୍ରତ୍ୟାବର୍ତ୍ତନ

ପରେ ସେ ଭାରତୀୟ କଂଗ୍ରେସକୁ ବିଭିର୍ଣ୍ଣ ଦିଗରୁ ସମାଲୋଚନା କରିଥିଲେ । ତାଙ୍କ ମିଶନର ବିଫଳତା ପାଇଁ କଂଗ୍ରେସକୁ ସଂପୂର୍ଣ୍ଣ ଦାୟୀ ମଧ୍ୟ କରିଥିଲେ । ବିଭିନ୍ନ ଇଂରାଜୀ ପତ୍ର ପତ୍ରିକାରେ କଂଗ୍ରେସ ବିରୁଦ୍ଧରେ ଅପପ୍ରଚାର ମଧ୍ୟ କରିଥିଲେ । ଏହା ଫଳରେ ଭାରତୀୟ ମାନେ ହତୋତ୍ସାହିତ ହୋଇ ପଡ଼ିଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଭାରତରେ ଏକ ଗୁଜବ ପ୍ରଚାରିତ ହୋଇଥିଲା ଯେ, ଜାପାନ ଭାରତକୁ ଆକ୍ରମଣ କରିବ । ଫଳରେ ଭାରତର ରାଜନୈତିକ ପରିସ୍ଥିତି ଅଧିକ ଉତ୍ତେଜନାପୂର୍ଣ୍ଣ କରି ଦେଇଥିଲା । ଫଳରେ ଭାରତୀୟମାନେ ଆତଙ୍କିତ ହୋଇପଡ଼ିଥିଲେ । ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଗାନ୍ଧିଜୀ ଚିନ୍ତା କଲେ ଯେ, ଯଦି କୌଣସି ପ୍ରକାରେ ଇଂରେଜ ସରକାରକୁ ଭାରତରୁ ବିତାଡ଼ିତ କରିବା ପାଇଁ ବନ୍ଦୋବସ୍ତ ହୋଇପାରନ୍ତା, ତାହାହେଲେ ଜାପାନ ଆଉ ଭାରତକୁ ଆକ୍ରମଣ କରନ୍ତା ନାହିଁ । ତେଣୁ ଗାନ୍ଧିଜୀ ଭାରତ ଛାଡ଼ ପାଇଁ ଆନ୍ଦୋଳନ କରିବାକୁ ଚାହୁଁଥିଲେ । ତେଣୁ ଇଂରେଜ ମାନେ ଜାପାନ ପରିବର୍ତ୍ତେ ଭାରତୀୟଙ୍କୁ କ୍ଷମତା ହସ୍ତାନ୍ତର ନିମନ୍ତେ ଆଗ୍ରହୀ ହେବେ । ତେଣୁ ହରିଜନ ପତ୍ରିକାରେ ପ୍ରକାଶିତ କରାଇଥିଲେ ଯେ, "ଭାରତକୁ ଜାପାନ ହାତରେ ଦିଅନାହିଁ । ବରଂ ବିଧିବଦ୍ଧ ଭାବରେ ଭାରତ ହାତରେ ଦିଅ" ।

ଭାରତ ଛାଡ଼ ଆନ୍ଦୋଳନର ଅନେକ ଗୁଡ଼ିଏ କାରଣ ମଧ୍ୟରେ ମୂଳ କାରଣ ଥିଲା ବଙ୍ଗଳା । ଭାରତରେ ଜାପାନୀ ମାନଙ୍କ ସହିତ ଯୁଦ୍ଧ କରିବା ପାଇଁ ବଙ୍ଗଳା ଥିଲା ପ୍ରକୃଷ୍ଟ କ୍ଷେତ୍ର । ଏହା ମନେକରି ଇଂରେଜ ସରକାର ବଙ୍ଗଳାର ଅନେକ ଅଞ୍ଚଳକୁ ମନୋନିତ କରିଥିଲେ । ସେଠାରେ ଥିବା କୃଷକ ମାନଙ୍କୁ ସେ ସ୍ଥାନରୁ ବାଧ୍ୟ ବାଧକତା ସହିତ ସ୍ଥାନାନ୍ତରିତ କରାଇ ଦେଇଥିଲେ । ପୂର୍ବ ପୁରୁଷରୁ ରହି ଆସିଥିବା ଏବଂ ଚାଷକରି ଆସୁଥିବା କୃଷକ ମାନେ ସେ ଅଞ୍ଚଳର ଉର୍ବର ଜମିକୁ ପରିତ୍ୟାଗ କରି ପାହାଡ଼ିଆ ଜାଗାକୁ ଚାଲି ଯାଇଥିଲେ । ଫଳରେ କୃଷକ ମାନେ କ୍ଷୁବ୍ଧ ଏବଂ ଦୁଃଖରେ ଜର୍ଜରିତ ହୋଇ ଯାଇଥିଲେ । ତେଣୁ ବଙ୍ଗଳାର କୃଷକମାନେ ଇଂରେଜ ସରକାର ବିରୁଦ୍ଧରେ ଆନ୍ଦୋଳନ କରିବା ପାଇଁ ସ୍ଥିର କରିଥିଲେ । ତେଣୁ ସରକାର ବଙ୍ଗଳାର ବହୁ ସଂଖ୍ୟାରେ ହାତ ତିଆରି ଡଙ୍ଗାକୁ ନଷ୍ଟକରି ଦେଇଥିଲେ, ଯେପରି ଏଗୁଡ଼ିକ ଶତ୍ରୁପକ୍ଷ କବଳିତ ନକରନ୍ତି । ଫଳରେ ବହୁ ବଙ୍ଗବାସୀ ନିଜର ଗୁଜୁରାଣ ହରାଇ ବସିଲେ । କୃଷି ଏବଂ ଗୁଜୁରାଣ ହରାଇ ବସିଥିବାରୁ ସେମାନଙ୍କ ଦୁଃଖ ଦୁର୍ଦ୍ଦଶା ବଢି ଯାଇଥିଲା । ତେଣୁ ଆନ୍ଦୋଳନ ପାଇଁ ସେମାନେ ମଧ୍ୟ ଅଣ୍ଟା ଭିଡ଼ିଥିଲେ । ଏହା ସଙ୍ଗେ ସଙ୍ଗେ ଯୁଦ୍ଧ ପାଇଁ ବଜାର ଦର ଆକାଶ ଛୁଆଁ ହୋଇ ପଡ଼ିଥିଲା ।

ଭାରତୀୟ ମାନଙ୍କର ଏହି ଅର୍ଥନୈତିକ ସଂକଟ ସଙ୍ଗେ ସଙ୍ଗେ ଜାପାନୀ ମାନଙ୍କର ଭାରତ ଆକ୍ରମଣର ଆଶଙ୍କାକୁ ନେଇ ଭାରତୀୟ ମାନଙ୍କ ହୃଦୟରେ ଭୟ ସଞ୍ଚାର ହେବା ସଙ୍ଗେ ସଙ୍ଗେ ରାଜନୈତିକ ପରିସ୍ଥିତିକୁ ସଂକଟମୟ କରି ଦେଇଥିଲା । ବିଚକ୍ଷଣ ରାଜନୈତିକ ଗାନ୍ଧିଜୀ ଭାରତର ଏହି ସଂକଟମୟ ପରିସ୍ଥିତର ବିନିଯୋଗ କରି ନିଜର ଲକ୍ଷହାସଲ କରିବା ପାଇଁ ଚାହୁଁ ଥିଲେ । ଏହି ପରିସ୍ଥିତିରେ ଭାରତ ଛାଡ଼ି ଚାଲି ଯିବା ପାଇଁ ଇଂରେଜ ସରକାରଙ୍କୁ ଚରମ ବାଣୀ ଶୁଣାଇବାର ନିଷ୍ପତି ନେଲେ । ସେ ଚିନ୍ତା କଲେଯେ, ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଯଦି ସର୍ବଭାରତୀୟ ଆନ୍ଦୋଳନ କରି "ଭାରତ ଛାଡ଼ ର ଧ୍ୱନି" ଦିଆଯାଏ ତାହାହେଲେ ଇଂରେଜ ମାନେ ଭୟଭିତ ହୋଇ ଭାରତ ଛାଡି ଚାଲି ଯାଇ ପାରନ୍ତି । ତେଣୁ ଭାରତ ସ୍ୱାଧୀନତା ଚୁକ୍ତି ସଂପାଦନ କରିବାକୁ ସେମାନେ ବାଧ ହେବେ । ଏହି ଚିନ୍ତା ଧାରା ନେଇ ଗାନ୍ଧିଜୀ ଏକ ଚିଠା ପ୍ରସ୍ତୁତ କଲେ ଯାହାକୁ କୁହାଯାଏ "ଭାରତ ଛାଡ଼ ପ୍ରସ୍ତାବ" ।

## ଭାରତ ଛାଡ଼ ପ୍ରସ୍ତାବ

୧୯୪୨ ମସିହା ଜୁଲାଇ ୧୪ ତାରିଖରେ ଓ୍ୱାର୍ଦ୍ଧାଠାରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ଏକ ଅଧିବେଶନ ବସିଥିଲା । ଭାରତ ଛାଡ଼ ପ୍ରସ୍ତାବ ଉପରେ ଏଠାରେ ଏକ ଚିଠା ପ୍ରସ୍ତୁତ କରିବା ପାଇଁ ଆଲୋଚନା ହୋଇଥିଲା । ଏହି ଭାରତ ଛାଡ଼ ପ୍ରସ୍ତାବ ଉପରେ ସମସ୍ତେ ସହମତି ପ୍ରଦାନ କରିପାରି ନଥିଲେ । ମାତ୍ର ଗାନ୍ଧିଜୀଙ୍କର ଦୃଢ ସଂକଳ୍ପ ଯୋଗୁଁ କଂଗ୍ରେସ କାର୍ଯ୍ୟକାରୀ କମିଟି ପ୍ରସ୍ତାବର ଚିଠା ପ୍ରସ୍ତୁତ କରିଥିଲେ । ଏହାର ନାମଥିଲା "ଭାରତ ଛାଡ଼ ପ୍ରସ୍ତାବ" । ୧୯୪୨ ମସିହା ଅଗଷ୍ଟ ୭ ତାରିଖ ଦିନ ଏହାକୁ ଅନୁମୋଦନ କରିବା ପାଇଁ ବମ୍ବେ ଠାରେ ଏକ ଜାତୀୟ କଂଗ୍ରେସର ଅଧିବେଶନ ବସିଥିଲା । ଏହି ଅଧିବେଶନରେ ଏହି ପ୍ରସ୍ତାବ ଉପରେ ଦ୍ୱିମତ ପ୍ରକାଶ ପାଇଥିଲା । ପରିଶେଷରେ ଏଥିରେ ପରିବର୍ତ୍ତନ ଅଣାଯାଇ ଅଗଷ୍ଟ ୮ ତାରିଖରେ ଏହା ଅନୁମୋଦିତ ହୋଇଥିଲା । ଏହାର ମୁଖ୍ୟାଂଶ ଥିଲା ଭାରତରେ ଇଂରେଜ ଶାସନର ଅବସାନ । ସ୍ୱାଧୀନ ଭାରତରେ ଯେଉଁ ସରକାର ଗଠନ କରାଯିବ ଏହା ଜାତିସଂଘର ଏକ ମିତ୍ର ସଦସ୍ୟ ଭାବରେ ରହିବ । ଭାରତ ବର୍ଷର ନିରାପତ୍ତା ରକ୍ଷାକରିବା ଏହାର ପ୍ରଥମ ଦାୟିତ୍ୱ ହେବ । ଅଗଷ୍ଟ ୮ ତାରିଖ ଦିନ ରାତିରେ ଗାନ୍ଧିଜୀ ଉଦ୍‌ବୋଧନ ଦେଇ କହିଥିଲେ ଯେ, ପ୍ରତ୍ୟେକ ଭାରତୀୟଙ୍କ ପାଇଁ ଗୋଟିଏ ପ୍ରଧାନ କାମ ହେଉଛି, ଦେଶର ସ୍ୱାଧୀନତା ପାଇଁ ଗୋଟିଏ ନୀତି, "କର ବା ମର" । ସ୍ୱାଧୀନତା ପାଇଁ ଆମେ ମୃତ୍ୟୁ ବରଣ କରିପାରୁ କିନ୍ତୁ ବ୍ରିଟିଶ୍ ଶାସନ ତଳେ ଆମେ

ଚିରନ୍ତନ ଦାସତ୍ୱ ହୋଇ ବଞ୍ଚି ରହିବାକୁ ଚାହୁଁ ନାହୁଁ । କିନ୍ତୁ ବ୍ରିଟିଶ୍ ସରକାର ଏହାକୁ ଗ୍ରହଣ କରିବା ପରିବର୍ତ୍ତେ ଗାନ୍ଧିଜୀ ଏବଂ ସଂଗ୍ରେସରେ ତୁଙ୍ଗ ନେତା ମାନଙ୍କୁ ବନ୍ଦୀ କରିଥିଲେ । ଇଂରେଜମାନେ ଭାରତକୁ ସ୍ୱାଧୀନତା ଦିଅନ୍ତୁ ଏଥିପାଇଁ ଗାନ୍ଧିଜୀ ଯୁକ୍ତରାଷ୍ଟ୍ର ଆମେରିକାର ରାଷ୍ଟ୍ରପତି ଏବଂ ଚୀନ୍‌ର ଶାସକ ବୃନ୍ଦଙ୍କୁ ପତ୍ର ଲେଖି ଭାରତର ସ୍ୱାଧୀନତା ପାଇଁ ବ୍ରିଟିଶ୍ ସରକାରଙ୍କୁ ବାଧ କରାନ୍ତୁ ।

## ଅଗଷ୍ଟ ବିପ୍ଳବ

ଇଂରେଜ ସରକାର ଆଶା କରିଥିଲେ ଯେ, ଗାନ୍ଧିଜୀ ଏବଂ ଅନ୍ୟ ନେତା ମାନଙ୍କୁ ବନ୍ଦୀ କରି ନେଲା ପରେ ଆନ୍ଦୋଳନର ପରିସ୍ଥିତି ଶାନ୍ତ  ହୋଇଯିବ । କିନ୍ତୁ ଗାନ୍ଧିଜୀ ବନ୍ଦୀ ହେଲାପରେ ଆନ୍ଦୋଳନର ପ୍ରଭାବ ଏତେ ଦୃଢ ଥିଲା ଯେ, ଗାନ୍ଧିଜୀଙ୍କ ବିନା ଆନ୍ଦୋଳନ ସମଗ୍ର ଦେଶରେ ବନାଗ୍ନି ପରି ବ୍ୟାପିଯାଇଥିଲା । ଆନ୍ଦୋଳନକୁ ସୁଚାରୁ ରୂପେ ଚଳାଇବା ପାଇଁ କଂଗ୍ରେସର ଅବଶିଷ୍ଟ ନେତାମାନେ ଏକ ୧ ୨ ଦଫା କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରିଥିଲେ । ଏଥିରେ ସରକାରୀ ଅଫିସ ଓ ଥାନାକୁ ବନ୍ଦ ରଖିବା, ସରକାରୀ ଟିକସ ନଦେବା, ଲବଣ ପ୍ରସ୍ତୁତ କରବା ଇତ୍ୟାଦି କାର୍ଯ୍ୟ ଚାଲୁରଖିଥିଲେ । ଏହି ଆନ୍ଦୋଳନକୁ ଦମନ କରିବା ପାଇଁ ଲାଠି ପ୍ରହାର ବଳ ପ୍ରୟୋଗ କରି ଆନ୍ଦୋଳନ ଦମନ କରିବା ପାଇଁ ଚେଷ୍ଟା କରୁଥିଲେ । ଫଳରେ ଗାନ୍ଧୀଙ୍କର ଅହିଂସା ଆନ୍ଦୋଳନ ହିଂସାରେ ପରିଣତ ହୋଇଥିଲା । ସତ୍ୟାଗ୍ରହୀ ମାନଙ୍କର 'କର ବା ମର' ଧ୍ୱନୀରେ ଗଗନ ପବନ ମୁଖରତି ହେଉଥିଲା । ଥାନା ଏବଂ ଡାକଘରେ ଅଗ୍ନି ସଂଯୋଗ କରି ବିପୁଳ କ୍ଷୟକ୍ଷତି ସାଧନ କରାଯାଉଥିଲା । କେତେକ ବ୍ରିଟିଶ୍ କର୍ମଚାରୀଙ୍କୁ ହତ୍ୟା ମଧ କରାଯାଉ ଥିଲା । ଫଳରେ ଲକ୍ଷ ଲକ୍ଷ ଲୋକ ବନ୍ଦୀ ହେଲେ । ଲୋକ ମାନଙ୍କ ଉପରେ ଅମାନୁଷିକ ଅତ୍ୟାଚାର କରାଗଲା । ଜନସାଧାରଣଙ୍କ ଉପରେ ସେନା ବାହିନୀର ଆକ୍ରମଣ ଫଳରେ ଆନ୍ଦୋଳନର ପରିସମାପ୍ତି ଘଟିଥିଲେ ମଧ ଗୁପ୍ତ ଭାବରେ ଏହାର ଅଗ୍ରଗତି ଚାଲୁ ରହିଥିଲା । ସେହି ସମୟରେ ଆନ୍ଦୋଳନର ନେତୃତ୍ୱ ନେଇଥିଲେ ଜୟପ୍ରକାଶ ନାରାୟଣ, ରାମ ମନୋହର ଲୋହିଆ ଇତ୍ୟାଦି କଂଗ୍ରେସର ତୁଙ୍ଗ ନେତୃବୃନ୍ଦ । ୧୯୪୪ ମସିହା ମେ ମାସରେ ଗାନ୍ଧୀଙ୍କର ମୁକ୍ତି ପର୍ଯ୍ୟନ୍ତ ଆନ୍ଦୋଳନ କିଛି ମାତ୍ରାରେ ଚାଲୁ ରହିଥିଲା ।

## ଭାରତର ସ୍ୱାଧୀନତା ଲାଭ

କ୍ରମାଗତ ଆନ୍ଦୋଳନ ଫଳରେ ସ୍ୱାଧୀନତା ପାଇଁ ବହୁ ଅନୁକୂଳ ପରିସ୍ଥିତି ସୃଷ୍ଟି ହୋଇଥିଲା । ୧୯୪୭ ମସିହା ବେଳକୁ ଭାରତକୁ ସ୍ୱାଧୀନତା ଦେବା ସଂପର୍କରେ ଏକ ଘୋଷଣା ନାମା ଜାରୀ କରାଯାଇଥିଲା । ଏହି ଘୋଷଣାନାମା ଫଳରେ ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ଅଟଲୀଙ୍କ ଘୋଷଣା ଏକ ଗୁରୁତ୍ୱପୂର୍ଣ ଘଟଣା ହେବା ସଙ୍ଗେ ସଙ୍ଗେ ଭାରତୀୟ ମାନଙ୍କର ସ୍ୱାଧୀନତା ସଂପର୍କୀୟ ସମସ୍ତ ସନ୍ଦେହର ପୂର୍ଣ୍ଣଚ୍ଛେଦ ପଡ଼ିଥିଲା । ଏହି ଘୋଷଣା ନାମା ପରେ ଭାରତରେ ଭାଇସରାୟ ପଦରେ ଲର୍ଡ ମାଉଣ୍ଟବ୍ୟାଟେନ୍ ଯୋଗ ଦେଇଥିଲେ । ସେ କାର୍ଯ୍ୟଭାର ଗ୍ରହଣ କରିଲା ପରେ ଭାରତର ବିଭିର୍ଣ୍ଣ ସମସ୍ୟା ସଂପର୍କରେ ଆଲୋଚନା ପରେ ଏକ ଯୋଜନା ପ୍ରସ୍ତୁତ କରିଥିଲେ । ଏହି ଯୋଜନା ମୂଳରେ ଭାରତର ସ୍ୱାଧୀନତା ଏବଂ ଭାରତର ବିଭାଜନ ନୀତି ନିର୍ଦ୍ଧାରଣ କରା ଯାଇଥିଲା । ଭାରତର ବିଭାଜନ ଉପରେ ବିଭିନ୍ନ ରାଜନେତା ଏବଂ ଐତିହାସିକ ମାନଙ୍କ ଭିନ୍ନ ଭିନ୍ନ ମତ ରହିଥିଲା ବେଳେ ଇଂରେଜ ମାନଙ୍କର ମତ ଥିଲା ଭିନ୍ନ । ମୁସଲିମ ଲିଗ୍ ମତାମତ ଏବଂ ମୁସଲିମ ଭାଇ ମାନଙ୍କର ମତାମତ ଭିନ୍ନ ଥିଲା । କିନ୍ତୁ ଲର୍ଡ ମାଉଣ୍ଟବ୍ୟାଟେନଙ୍କର ମତି ଥିଲା ଭିନ୍ନ । ତାଙ୍କର ମତ ଥିଲା "ମୋର ବ୍ୟକ୍ତିଗତ ମତରେ ଭାରତ ଅଖଣ୍ଡ ରହିବା ଉଚିତ" । ସେ ଯେହାହେଉ ଭାରତ ଏବଂ ପାକିସ୍ତାନକୁ ଦୁଇଟି ଦେଶରେ ବିଭକ୍ତ କରାଗଲା ।

ଏହି ଯୋଜନାକୁ ବ୍ରିଟିଶ୍ ସରକାରଙ୍କ ଠାରୁ ଅନୁମୋଦନ ପାଇଁ ଲର୍ଡ ମାଉଣ୍ଟବ୍ୟାଟେନ୍ ଇଂଲଣ୍ଡ ପଠାଇ ଥିଲେ । ସେଠାରେ ବ୍ରିଟିଶ ପାର୍ଲିଆମେଣ୍ଟର ଅନୁମୋଦନ ପାଇବା ପରେ ୧୯୪୭ ମସିହା ଜୁନ୍ ୩ ତାରିଖ ଦିନ ସେ ତାଙ୍କର ଗଠିତ ଯୋଜନାକୁ ଘୋଷଣା କରିଥିଲେ । ଭାରତୀୟ କଂଗ୍ରେସ ଦଳ ଏହାକୁ ବିଶେଷ ଆନନ୍ଦ ସହିତ ଗ୍ରହଣ କରିଥିଲେ । ଲର୍ଡ ମାଉଣ୍ଟବ୍ୟାଟେନ୍ ପ୍ରସ୍ତୁତ କରିଥିବା ସ୍ୱାଧୀନତା ବିଲକୁ ୧୯୪୭ ମସିହା ଜୁଲାଇ ୪ ତାରିଖ ଦିନ ବ୍ରିଟିଶ୍ ପାର୍ଲିଆମେଣ୍ଟରେ ଆଗତ କରାଯାଇ ଆଇନରେ ପରିଣତ ହୋଇଥିଲା । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଭାରତ ଏକ ସ୍ୱାୟତଶାସନ ରାଷ୍ଟ୍ର ଭାବେ ଗଠିତ ହୋଇ ବିଧିବଦ୍ଧ ଭାବେ ଘୋଷଣା କରାଗଲା । ଦେଶୀୟ ରାଜା ମାନଙ୍କ ଦ୍ୱାରା ଶାସିତ ରାଜ୍ୟ ଗୁଡ଼ିକ ତାଙ୍କ ଇଛା ଅନୁସାରେ ରାଜ୍ୟ ସହିତ ସାମିଲ ହେବା ପାଇଁ ସ୍ୱାଧୀନତା ଦିଆଯାଇଥିଲା । ଦୀର୍ଘ ଦୁଇଶହ ବର୍ଷ ବ୍ୟାପୀ ନିର୍ମମ ଦାସତ୍ୱର ଶୃଙ୍ଖଳରେ ଶୃଙ୍ଖଳିତ ହୋଇ ଆସିଥିବା ଭାରତବାସୀ ବହୁ ଅତ୍ୟାଚାର, ନିର୍ଯ୍ୟାତନା, ଦୁଃଖ, ଯନ୍ତ୍ରଣା ଏବଂ ବହୁ ଘାତ, ପ୍ରତିଘାତର

ସମ୍ମୁଖୀନ ହୋଇ ଅଙ୍ଗେ ଲିଭାଇଥିବା ଯନ୍ତ୍ରଣାରୁ ମୁକ୍ତ ହୋଇ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ନିଜକୁ ସ୍ୱାଧୀନ ଦେଶର ନାଗରିକ ବୋଲି ପରିଚୟ ଦେବା ସଙ୍ଗେ ସଙ୍ଗେ ଅଭୂତ ପୂର୍ବ ଆନନ୍ଦରେ ବିଭୋର ହୋଇ ଉଠିଥିଲେ ।

ଉକ୍ତ ଅଧ୍ୟାୟର ଉପସଂହାରରେ ପୁସ୍ତକର ପାଠକ ମାନଙ୍କୁ ସୂଚାଇ ଦେବାକୁ ଚାହେଁ ଯେ, କଷ୍ଟଲବ୍ଧ ସ୍ୱାଧୀନତା ଉପରେ ଟିକିଏ ସିଂହାବଲୋକନ କରି ସାଂପ୍ରତିକ ସମାଜର ରାଜନୀତି, ଅର୍ଥନୀତି, ସଂସ୍କୃତି ଏବଂ ଭାଷାବୋଧତା ଉପରେ ଆଲୋକପାତ କରିବା ପାଇଁ ଅନୁରୋଧ କରୁଅଛି । ସ୍ୱାଧୀନତାର ଘଟଣା ବଳୀକୁ ଲକ୍ଷକଲେ ଆମ ପୂର୍ବ ସୁରୀ ମାନଙ୍କର ଦେଶ ମାତୃକାପ୍ରତି ତ୍ୟାଗ, ସେମାନଙ୍କର ଜାତୀୟତା ଭାବ ଆଜି ଆମନିକଟରେ ଅଛିକି ? ଜାତିପ୍ରତି ତ୍ୟାଗ, ସମାଜ ପ୍ରତି ସେବା, ସଂସ୍କୃତି ପ୍ରତି ମାନ୍ୟତା ଏସବୁ କାଳକ୍ରମେ ଆମେ ଭୁଲି ଗଲୁଣି । ପୁରାଣ ସାହିତ୍ୟର ସମାଜ ପ୍ରତି ତଥା ଭାରତୀୟ ସଂସ୍କୃତି ପ୍ରତି ଉପାଦେୟତା ଉପରେ ଆମର ବିଶ୍ୱାସ ଅଛିକି ? ଆଜିର ଶିକ୍ଷାରେ ଦେଶପ୍ରୀତି ଏବଂ ଜାତୀୟ ପ୍ରୀତି ଅଛିକି ? ଜାତିର ଜନକ ଗାନ୍ଧିଜୀଙ୍କ ସତ୍ୟ ଏବଂ ଅହିଂସା ପ୍ରତି ଆମେ ଅନୁପ୍ରାଣୀତ ହେଉଛେ କି ? ଏହାକୁ ଆଲୋଚନା କଲେ ଆମକୁ ନୀରବ ରହିବାକୁ ପଡ଼ିବ । ସ୍ୱାଧୀନତା ହାସଲର ଦୀର୍ଘ ୬୪ ବର୍ଷ ଅତିବାହିତ ହୋଇ ଯାଇଥିଲେ ମଧ ଆଜି ଦେଶର କୋଟୀ କୋଟୀ ନାଗରିକ ପେଟକୁ ଭଲରୂପେ ମୁଠାଏ ଦାନା ଏବଂ ଅଣ୍ଟାକୁ ଖଣ୍ଡିଏ କନା ମଧ ପାଇବା ସମ୍ଭବ ହୋଇ ପାରିନି । ଆଜି ମଧ କୋଟୀ କୋଟୀ ନାଗରିକଙ୍କ ସ୍ୱପ୍ନ ସ୍ୱପ୍ନରେ ରହିଯାଇଛି । ଜାତିର ଜନକ ମହାତ୍ମା ଗାନ୍ଧୀ ଆଦି ମନୀଷୀମାନେ ଦେଶ ଜାତି ପାଇଁ ଯେଉଁ ସ୍ୱପ୍ନ ଦେଖିଥିଲେ, ଏକ ସମୃଦ୍ଧ ଭାରତବର୍ଷ ଗଠନର ଯେଉଁ ପରିକଳ୍ପନା କରିଥିଲେ, ତାହା ବର୍ତ୍ତମାନ ସୁଦ୍ଧା ସଠିକ୍ ରୂପାୟନ ହୋଇ ପାରିନାହିଁ । ମୋଟ ଉପରେ କହିବାକୁ ଗଲେ ଆଧୁନିକତାର ସ୍ପର୍ଶରେ ଆମେ ଆମର ଜାତୀୟତାର ସ୍ୱାଭିମାନକୁ ହରାଇ ବସିଛୁ ।

ସମୟ କ୍ଷିପ୍ର ଗତିରେ ପରିବର୍ତ୍ତିତ ହେଉଛି । ଶିକ୍ଷା ଚେତନା ଆଜି ଘୋର ସମସ୍ୟାରେ ସମ୍ମୁଖୀନ । ଜୀବନ ଜୀବିକା ଉଭୟ ପାଇଁ ଶିକ୍ଷା ସମାନ ହେଲେବି ଆଜି ଜୀବନ ଉପରେ ଜୀବିକାର ତୁଳନା ଅଧିକ ଉପଲବ୍ଧି ହୋଇଛି । ଶିକ୍ଷା ଆଜି ଜାତୀୟ ଆଭିମୁଖ୍ୟ ନହୋଇ ଜୀବିକା ସର୍ବସ୍ୱ ହୋଇ ପଡ଼ିଛି । ସତରେ କହିବାକୁ ଗଲେ ଯେଉଁ ଶିକ୍ଷାପ୍ରଚୁର ଅର୍ଥାର୍ଜନର କ୍ଷମତା ଦେଇପାରିବ ସେହି ବ୍ୟବହାରିକ ଶିକ୍ଷାର ପ୍ରାଧାନ୍ୟ ଆଜି ଦେଶରେ ଅଧିକ । ତେଣୁ ଶିକ୍ଷା କ୍ଷେତ୍ରରେ ବିଜ୍ଞାନ ତଥା ବିବିଧ ପ୍ରଯୁକ୍ତି ବିଦ୍ୟା ପ୍ରତି ସାଂପ୍ରତିକ ଶିକ୍ଷା ଜଗତରେ ପ୍ରବଳ

ଆଗ୍ରହ ସୃଷ୍ଟି କରିପାରିଛି । ପଲ୍ଲୀ ଗ୍ରାମଠାରୁ ଆରମ୍ଭ କରି ସହରପର୍ଯ୍ୟନ୍ତ ଏହାର ପ୍ରଭାବ ଅନୁମେୟ କରାଯାଏ । ଆଜିର ଶୀକ୍ଷାର୍ଥୀ ମାନଙ୍କର ନିକଟରେ ମୋବାଇଲ୍, ଇ-ମେଲ୍, ଇଣ୍ଟରନେଟ୍, ଇ-ଗଭର୍ଣ୍ଣାନ୍‌ସ, ଟେଲି ମେଡ଼ିସିନ୍, ପ୍ରେମ ନିର୍ଣ୍ଣୟରେ କମ୍ପ୍ୟୁଟର ଯନ୍ତ୍ରର ଚମତ୍କାରିତା, ଓ୍ୱେବ୍ କାମେରା, ଲାପ୍‌ଟପ, ସିଡ଼ି, ଡ଼ିଜିଟାଲ୍ ଫଟୋ, ଆଇଟି, ଫାକ୍ସ, ଇଣ୍ଟର ନେଟ୍‌ରେ ଟିକେଟ ଇତ୍ୟାଦି ଆଜି ସମାଜକୁ ବିଜ୍ଞାନର ଅବଦାନ । ଫଳରେ ବିଜ୍ଞାନ ଇଞ୍ଜିନିୟରିଂ, ମେଡ଼ିକାଲ ଆଦି ବୃତ୍ତିଗତ ଶିକ୍ଷା ପ୍ରତି ଆଗ୍ରହ ତୀବ୍ର ଭାବରେ ବଢି ଚାଲିଛି । ସତେ ଯେମିତି ଅଧିକ ଅର୍ଥ ଉପାର୍ଜନ ଏବଂ ସମ୍ମାନ ଜନକ ନିଯୁକ୍ତିର ପ୍ରଲୋଭନ ଦେଖାଇ ମେଧାବୀ ଛାତ୍ର ଛାତ୍ରୀ ମାନଙ୍କୁ ହାତଠାରି ଆମନ୍ତ୍ରଣ କରୁଛି । ମୋଟ୍ ଉପରେ କହିବାକୁ ଗଲେ ଆଜିର ବିଶ୍ୱାୟନ ଯୁଗରେ ଏହା ଆର୍ଥିକ ସ୍ୱଚ୍ଛଳତା ସହ ଦୈନନ୍ଦିନ ଜିବନକୁ ଅଧିକ ମାତ୍ରାରେ ସ୍ୱଚ୍ଛନ୍ଦ କରି ତୋଳିଛି । ତେଣୁ ଆଜିର ପାରମ୍ପରିକ ଶିକ୍ଷା ଏବଂ ଜାତୀୟ ବୋଧତା ଉପେକ୍ଷିତ ହୋଇପଡ଼ିଛି । ଉପନିଷଦିୟ ପଞ୍ଚମହାକୋଷ ମଧ୍ୟରୁ କେବଳ ପ୍ରଥମ ଅନ୍ନମୟ କୋଷର ଚାହିଦା ଭୌତିକ ଶିକ୍ଷା ଦ୍ୱାରା ମେଣ୍ଟି ପାରେ । କିନ୍ତୁ ପ୍ରାଣମୟ କୋଷ, ମନୋମୟ କୋଷ, ବିଜ୍ଞାନମୟ କୋଷ ଏବଂ ଆନନ୍ଦମୟ କୋଷର ପୂର୍ଣ୍ଣସିଦ୍ଧି କେବଳ ଭାରତୀୟ ସଂସ୍କୃତିର ପାରମ୍ପରିକ ଶିକ୍ଷା (କଳା, ସଂସ୍କୃତ, ସାହିତ୍ୟ ଇତ୍ୟାଦି) ଦ୍ୱାରା ହିଁ ହୋଇ ପାରିବ । ସେଥିରୁ ହିଁ ଆମେ ଜାତୀୟ ଭାବର ଚେତନା ପାଇ ପାରିବା । ଏଥିରେ କୌଣସି ସନ୍ଦେହ ନାହିଁ । ଆଜି ପ୍ରତ୍ୟେକ ଭାରତୀୟ ନାଗରିକ ଜାତିର ପିତା ମହାତ୍ମା ଗାନ୍ଧିଙ୍କର ଜାତୀୟ ଚେତନାରେ ଉଦ୍‌ବୋଧ ହୋଇ ଜାତୀୟ ସଂଗଠନକୁ ଦୃଢ଼ିକରଣ କରିବା ଉଚିତ୍ । ପାଠକ ମାନଙ୍କୁ ମୋର ନିବେଦନ ଆସନ୍ତୁ ପଢିବା ପରବର୍ତ୍ତୀ ଅଧ୍ୟାୟ ଭାରତ ଜାତୀୟ ଆନ୍ଦୋଳନ ଆମର ଓଡ଼ିଶା ଉପରେ କିପରି ଭାବରେ ପ୍ରଭାବ ପକାଇ ଥିଲା ।

❑❑❑

# ତୃତୀୟ ପରିଚ୍ଛେଦ

## ଓଡ଼ିଶା ଉପରେ ଭାରତୀୟ ଜାତୀୟ ଆନ୍ଦୋଳନର ପ୍ରଭାବ ଏବଂ ତତ୍କାଳୀନ ଓଡ଼ିଶାର ପୃଷ୍ଠଭୂମି

ଇତିହାସରୁ ଆମେ ଉପଲବ୍ଧି କରିଥାଉଯେ, ଉଡ୍ର, କଳିଙ୍ଗ ଏବଂ ଉତ୍କଳ ଇତ୍ୟାଦି ଅନେକ ଗୁଡ଼ିଏ ନାଆଁ ଓଡ଼ିଶାର ରହିଅଛି । ଯାହାହେଉ ଭାରତର ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ଭୂମିକା ଉପରେ ଆମେ ଆଲୋକ ପାତ କରିବା ପୂର୍ବରୁ ଇତିହାସରେ ଓଡ଼ିଶାର ଉତ୍‌ଥାନ ପତନ, ଓଡ଼ିଆ ଭାଷାର ଆତ୍ମିକତା ଉପରେ ଟିକିଏ ଦୃଷ୍ଟିଦେବା ବିଧେୟ ମନେକରେ । ଇଂରେଜ ମାନେ ଭାରତକୁ ଶାସନ କରିବା ପୂର୍ବରୁ ଓଡ଼ିଶା କଣ ଥିଲା ତାହା ଆମେ ଆଲୋଚନା ପରିସରକୁ ଆଣୁ ନାହାନ୍ତି । ଇଂରେଜ ମାନେ ଭାରତକୁ ଅଧିକାର କରିବା ପରେ ୧୭୬୫ ଖ୍ରୀଷ୍ଟାବ୍ଦରେ ବଙ୍ଗ, ବିହାର ଏବଂ ଓଡ଼ିଶାର ଦେଓ୍ୱାନ୍ ହେଲେ କ୍ଲାଇବ । ତତ୍କାଳୀନ ଉତ୍ତର ଓଡ଼ିଶାର ସୀମା ଥିଲା ଅଧୁନା ବଙ୍ଗଳାର ମେଦୀନପୁର ପର୍ଯ୍ୟନ୍ତ । ସୁବର୍ଣ୍ଣରେଖାର ଅପର ପାର୍ଶ୍ୱ ପର୍ଯ୍ୟନ୍ତ ଥିଲା ଓଡ଼ିଶା ସୀମା । ସେତେବେଳେ ମରହଟ୍ଟା ମାନେ ଓଡ଼ଶାକୁ ଶାସନ କରୁଥିଲେ । ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ମରହଟ୍ଟା ମାନଙ୍କୁ ପରାସ୍ତ କରି ଓଡ଼ିଶାରେ ନିଜର ବିଜୟ ବୈଜୟନ୍ତୀ ଉଡ଼ାଇ ଥିଲେ । ତେଣୁ ଓଡ଼ିଶାର ଉତ୍ତରାଞ୍ଚଳ ମେଦିନୀପୁର ପର୍ଯ୍ୟନ୍ତ ବେଙ୍ଗଲ ପ୍ରେସିଡେନ୍ସି ସହିତ ମିଶି ଯାଇଥିଲା । ଫଳରେ ବଙ୍ଗଳା ଭାଷାର ପ୍ରଭାବ ଉତ୍ତର ଓଡ଼ିଶାରେ ପଡ଼ିଥଲା । ଇଂରେଜମାନେ ଦକ୍ଷିଣ ଭାରତ ଅଧିକାର କରିବା ପରେ ମାନ୍ଦ୍ରାଜ ସ୍ଥିତ ଫୋର୍ଟସେଣ୍ଟଜର୍ଜରେ ନିଜର ଶାସନ କେନ୍ଦ୍ର ପ୍ରତିଷ୍ଠା କରିଥିଲେ । ଫଳରେ ଓଡ଼ିଶାର ଦକ୍ଷିଣାଞ୍ଚଳ ମାନ୍ଦ୍ରାଜ ପ୍ରେସିଡ଼େନ୍ସି ସହିତ ମିଶାଇ ଦେଇଥିଲେ । ତେଣୁ ଦକ୍ଷିଣ ଓଡ଼ଶାର ଗଞ୍ଜାମ, ଜୟପୁର, ପାରଳାଖେମୁଣ୍ଡି ଇତ୍ୟାଦି ଅଞ୍ଚଳ ଗୁଡ଼ିକ ମାନ୍ଦ୍ରାଜ ପ୍ରେସିଡେନ୍ସି ଅଧୀନରେ ରହିଥିଲା । ସେହିପରି ସେଣ୍ଟ୍ରାଲ ପ୍ରେସିଡେନ୍ସି ବା ନାଗପୁର ପ୍ରୋଭିନ୍ସି ଅନ୍ତର୍ଭୁକ୍ତ ଥିଲା ତତ୍କାଳୀନ ପଶ୍ଚିମ ଓଡ଼ିଶା ସମ୍ବଲପୁର, ରାୟଗଡ, ପଦ୍ମପୁର ଇତ୍ୟାଦି । ଓଡ଼ିଶାର ଷଢେଇକଳା ସିଂହଭୂମି ଇତ୍ୟାଦି କେତେକ ଅଞ୍ଚଳ ବିହାରରେ ଛୋଟନଗପୁର ଅଧୀନରେ ରଖାଯାଇଥିଲା । ଓଡ଼ିଶାର ଅବଶିଷ୍ଟ ଅଂଶକୁ ଅର୍ଥାତ୍ ଉତ୍ତର ପଶ୍ଚିମାଞ୍ଚଳ ଗୁଡ଼ିକ ଥିଲା ପାର୍ବତ୍ୟ ଅଞ୍ଚଳ । ଏହି ଅଞ୍ଚଳ ଗୁଡ଼ିକ ଢଣେ ଢଣେ ଦେଶୀୟ ରଜାଙ୍କ ଅଧୀନରେ ଥିଲା । ଏହିପରି ସମଗ୍ର ଓଡ଼ିଶାରେ ୨୬ ଗୋଟି ଦେଶୀୟ ରାଜ୍ୟ ବା ଗଡ଼ଜାତ ଥିଲା । ଏହି

ରାଜ୍ୟ ଗୁଡ଼ିକ ନିଜ ନିଜର ରାଜାଙ୍କ ଦ୍ୱାରା ଶାସିତ ହେଉଥିଲେ ମଧ୍ୟ ଏଗୁଡ଼ିକ ଇଂରେଜମାନଙ୍କର ପରୋକ୍ଷ ନିୟନ୍ତ୍ରଣାଧୀନରେ ଥିଲା । ଇଂରେଜମାନେ ଏହି ରାଜ୍ୟରେ ରାଜା ମାନଙ୍କ ଠାରୁ କର ଆଦାୟ କରୁଥିଲେ । ଏଣୁ ଏଗୁଡିକ କରଦ ରାଜ୍ୟ ରୂପେ ବିବେଚିତ ଥିଲା । ଓଡ଼ିଶାର ଅବଶିଷ୍ଟ ଅଞ୍ଚଳ ଯଥା କଟକ, ପୁରୀ ଏବଂ ବାଲେଶ୍ୱର ଇତ୍ୟାଦି ବ୍ରିଟିଶ ଶାସନ ଅଧୀନରେ ଥିଲା । ଏହି ଅଞ୍ଚଳ ଗୁଡ଼ିକ ବ୍ରିଟିଶ କମିଶନରଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ଏହାର ପରିଚାଳନା ପାଇଁ କଟକରେ ଜଣେ ବ୍ରିଟିଶ କମିସନର ରହୁଥିଲେ ।

ଏହିପରି ଭାବରେ ଓଡ଼ିଶାରେ ବହୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ପଶ୍ଚିମରେ ସେଣ୍ଟ୍ରାଲ ପ୍ରୋଭିନ୍ସ ଏବଂ ବିହାର ସରକାରଙ୍କର ନିୟନ୍ତ୍ରଣରେ ଉତ୍ତରାଞ୍ଚଳ କଲିକତା ପ୍ରେସିଡ଼େନ୍ସି ନିୟନ୍ତ୍ରଣରେ, ଦକ୍ଷିଣାଞ୍ଚଳ ମାନ୍ଦ୍ରାଜ ପ୍ରେସିଡ଼େନ୍ସି ନିୟନ୍ତ୍ରଣରେ ଏବଂ ଓଡ଼ିଶାର ଉପକୂଳବର୍ତ୍ତି ଅଞ୍ଚଳ ବ୍ରିଟିଶ ମାନଙ୍କର ପ୍ରତ୍ୟକ୍ଷ ନିୟନ୍ତ୍ରଣାଧୀନ ରହିଥିଲା । ଓଡ଼ିଶାର ଏହି ବିଚ୍ଛିନ୍ନତା ଫଳରେ ସେହି ସମୟରେ ଓଡ଼ିଶା ବୋଲି କିଛି ନଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହା ଫଳରେ ଓଡ଼ିଶା ଭାଷା ଦୁର୍ବଳ ହୋଇ ପଡିବା ସଙ୍ଗେ ସଙ୍ଗେ ତାର ସ୍ୱତନ୍ତ୍ର ମାନ୍ୟତା ହରେଇ ବସିଲା । ଏହି ସୁଯୋଗ ନେଇ କିଛି ବଙ୍ଗୀୟ ଓଡ଼ିଆ ଗୋଟିଏ ସ୍ୱତନ୍ତ୍ରଭାଷା ନୁହେଁ ବୋଲି ବିଦ୍ରୂପ କରିଥିଲେ ।

## ଖଣ୍ଡ ବିଖଣ୍ଡିତ ଓଡ଼ିଶାର ଜାତୀୟ ଚେତନା

ଜାତୀୟ ଚେତନା କ'ଣ ? ମଣିଷ ମନ ଭିତରେ ଥିବା ସୁପ୍ତ ଚେତନା ଯେତେବେଳେ ଯଥାର୍ଥରେ ଯାଗ୍ରତ ହୋଇଥାଏ, ତା' ମନ ଭିତରେ ସ୍ୱାର୍ଥାନ୍ଧତା ସମୂଳେ ବିନାସ ହୋଇଯାଇଥାଏ, ସେତେବେଳେ ସେ ଭଗବତ୍ ପ୍ରେମରେ ଉତ୍‌ଫୁଲିତ ହୋଇ ଉଠେ । ସେହି ଦିବ୍ୟ ପ୍ରେମରୁ ପରିପ୍ରକାଶ ହୁଏ ଜାତୀୟତାର ମନୋଭାବ । ତେଣୁ ସେ ଦେଶ ଓ ଜାତି ପାଇଁ ଆତ୍ମବଳି ଦେବାକୁ ପଶ୍ଚାତପଦ ହୁଅନ୍ତି ନାହିଁ । ସେହି ଆତ୍ମବଳି କୌଣସି ପାର୍ଥିବ ପ୍ରେରଣାରୁ ଉଦ୍ଭୂତ ନହୋଇ ଈଶ୍ୱର ଚେତନା ରୁ ଉଦ୍ଭୂତ ହୋଇଥାଏ । ଭାରତବର୍ଷରେ ଏହାର ଉଦାହରଣ ଅନାବଶ୍ୟକ । ଭାରତବର୍ଷରେ ଏହିପରି ଅନେକ ସାଧୁସନ୍ଥ ଦେଶଦଶ ପାଇଁ ଆତ୍ମନିବେଦନର ପରଂପରା ସୃଷ୍ଟି କରିବାରେ ସହାୟକ ହୋଇଥିଲେ । ସ୍ୱାର୍ଥାନ୍ଧତାକୁ ବଳିଦେଇ ମଣିଷ ଯେତେବେଳେ ଦେଶ ଓ ଜାତିର ମଙ୍ଗଳ ନିମନ୍ତେ ମନୋନିବେଶ କରିଥାଏ ତାକୁ ଜାତୀୟ ଚେତନା କୁହାଯାଏ ।

ଓଡ଼ିଶାର ଏହି ଦୁର୍ଦ୍ଦିନରେ କେତେକ ଯୋଗଜନ୍ମା, ଜାତିପ୍ରାଣ ଏବଂ ମହାମନୀଷୀ ମାନଙ୍କର ଆବିର୍ଭାବ ହୋଇଥିଲା । ସେହି ମାନଙ୍କର ଆପ୍ରାଣ ଚେଷ୍ଟାରେ ଆଜି ଆମେ ପାଇଛୁ ଆଜିର ଓଡ଼ିଶାକୁ । ଖଣ୍ଡ ବିଖଣ୍ଡିତ ଓଡ଼ିଶାର ଇଂରେଜ ଶାସକ, ରାଜା ଏବଂ ଜମିଦାର ମାନଙ୍କର ଉଦ୍ୟମରେ କିଛି ଶିକ୍ଷାନୁଷ୍ଠାନ ମାନ ଗଢି ଉଠିଥିଲା । ପ୍ରାୟତଃ ସେଗୁଡ଼ିକ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର ଓ ବ୍ରହ୍ମପୁରରେ ଅନୁଷ୍ଠିତ ହୋଇ ଥିଲା । ଏହି ଶିକ୍ଷାନୁଷ୍ଠାନ ଗୁଡ଼ିକରେ ମାତୃଭାଷାରେ ଶିକ୍ଷା ଦିଆ ଯାଉଥିଲା । ଫଳରେ ଓଡ଼ିଆ ଲିପି ସହିତ ଓଡ଼ିଆ ପୁସ୍ତକର ଆବଶ୍ୟକତା ପଡ଼ିଲା । ତେଣୁ ଉନବିଂଶ ଶତାବ୍ଦିରେ ଓଡ଼ିଶାରେ ବହୁ ଛପାକଳ, ସମ୍ବାଦ ପତ୍ର ଏବଂ ପତ୍ର ପତ୍ରିକାର ପ୍ରସାର ଘଟିଥିଲା । ତତ୍‌କାଳୀନ ମୁଖ୍ୟ ପତ୍ର ପ୍ରତିକା ଗୁଡ଼ିକ ମଧ୍ୟରେ ଗୌରୀଶଙ୍କର ରାୟଙ୍କର 'ଉତ୍କଳ ଦୀପିକା', ଫକୀର ମୋହନ ସେନାପତିଙ୍କର 'ସମ୍ବାଦ ବାହକ', ନୀଳମଣି ବିଦ୍ୟାରତ୍ନଙ୍କ 'ସମ୍ବଲପୁର ହିତୈଷିଣୀ' ଇତ୍ୟାଦି ଉଲ୍ଲେଖଯୋଗ୍ୟ ।

୧୮୭୭ ବେଳକୁ ଖଣ୍ଡ ବିଖଣ୍ଡିତ ଓଡ଼ିଶାରେ ଭାଷାରେ ଏକ ସମସ୍ୟା ଦେଖା ଦେଇଥିଲା । ମାନ୍ଦ୍ରାଜର ଅଧିକୃତ ଅଞ୍ଚଳରେ ତେଲୁଗୁ ଭାଷାକୁ ଓଡ଼ିଆ ସ୍କୁଲ୍ ମାନଙ୍କରେ ବାଧ ବାଧକତା କରି ଶକ୍ଷା ଦିଆଯାଉଥିଲା । ସରକାରୀ କାର୍ଯ୍ୟାଳୟରେ ମଧ ତେଲୁଗୁ ଭାଷା ମାଧମରେ କାର୍ଯ୍ୟକାରୀ କରିବା ପାଇଁ ବାଧ କରାଯାଇଥିଲା । ଫଳରେ ଦକ୍ଷିଣ ଓଡ଼ିଶାରେ ଲୋକମାନେ ଅସନ୍ତୁଷ୍ଟତାରେ ମ୍ରିୟମାଣ ହୋଇ ପଡୁଥିଲେ । ସେହିପରି ନାଗପୁରୁ ଅଧିନରେ ଥିବା ଅଞ୍ଚଳ ଗୁଡ଼ିକ ତଥା ସମ୍ବଲପୁରରେ ଥିବା ଶିକ୍ଷା ଅନୁଷ୍ଠାନ ଓ ସରକାରୀ ଅଫିସ୍ ଗୁଡ଼ିକରେ ବାଧ ବାଧକତା ଭାବେ ହିନ୍ଦି ଭାଷାର ପ୍ରଚଳନ କରାଗଲା । ବାଲେଶ୍ୱର, କଟକ ଏବଂ ପୁରୀ ଯେଉଁ ଅଞ୍ଚଳ ଗୁଡ଼ିକ ବ୍ରିଟିଶ୍ ସରକାରଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଥିଲା କିମ୍ବା ଯେଉଁ ଅଞ୍ଚଳକୁ ମୋଗଲବନ୍ଦି ଅଞ୍ଚଳବୋଲି କୁହାଯାଏ ସେମାନଙ୍କ ଉପରେ ବଙ୍ଗଳା ଭାଷା ଲଦି ଦିଆଗଲା । ପ୍ରତିବାଦ ଜଣାଇବାର ଫଳସ୍ୱରୂପ ଉଚ୍ଚ ବଙ୍ଗୀୟ ଶିକ୍ଷିତମାନେ ତାଙ୍କର ପ୍ରତ୍ୟୁତ୍ତରରେ ପ୍ରକାଶ କରୁଥିଲେ ଯେ, "ଓଡ଼ିଆ ଏକଟା ସ୍ୱତନ୍ତ୍ର ଭାଷା ନଏ" । (ଓଡ଼ିଆ ଭାଷା ଏକ ସ୍ୱତନ୍ତ ଭାଷା ନୁହେଁ) ବଙ୍ଗୀୟମାନେ ଓଡ଼ିଶାର ଭାଷା, ସଂସ୍କୃତି ଓ ସାହିତ୍ୟର ବିଲୋପ ସାଧନ ନିମନ୍ତେ ବ୍ୟଗ୍ର ହୋଇ ଉଠିଲେ ।

ଏହି ଦୁର୍ଦ୍ଦିନରେ ଓଡ଼ିଶାରେ ରାସ୍ତା ଘାଟର ସଂଯୋଗ ଫଳରେ ଗମନା ଗମନର ସୁଯୋଗ ମିଳିଲା । ଗୋଟିଏ ପ୍ରାନ୍ତରରୁ ଅନ୍ୟ ପ୍ରାନ୍ତରକୁ ସମ୍ବାଦ ସରବରାହର ସୁଯୋଗ

ମିଳିଲା । ଲୋକମାନେ ପରସ୍ପର ସହିତ ସମ୍ବନ୍ଧ ରିଖି ପାରିଲେ । ମଧୁସୁଦନ ଦାସଙ୍କର ଅଧ୍ୟକ୍ଷତାରେ 'ଓଡ଼ିଶା ଗ୍ରାଜୁଏଟ୍ ଏସୋସିଏସନ୍, ଗୌରୀ ଶଙ୍କର ରାୟଙ୍କର 'ଉତ୍କଳ ସଭା', ଗଞ୍ଜାମର 'ହିତ ବାଦିନୀ' ସଭା, ବାଲେଶ୍ୱରର 'ଜାତୀୟ ସଭା' ଇତ୍ୟାଦି ଓଡ଼ିଆ ଲୋକ ମାନଙ୍କ ମଧରେ ତଥା ଓଡ଼ିଆ ସାହିତ୍ୟ ପ୍ରେମୀ ମାନଙ୍କ ମଧରେ ଡାଢୀୟ ଚେତନା ଆଣିବା ଦିଗରେ ସହାୟକ ହୋଇଥିଲା । ସଭା ସମିତିରେ ସେମାନେ ପରଷ୍ପର ସହିତ ସମ୍ବନ୍ଧ ରଖି ପାରିଥିଲେ । ଫଳରେ ଓଡ଼ିଶାରେ ଜାତୀୟ ଚେତନାର ଅଭ୍ୟୁଦୟ ହୋଇଥିଲା । ସେମାନଙ୍କର ଗଳ୍ପ କବିତାରେ ଜାତୀୟ ବାଦ ପରିପ୍ରକାଶ ହୋଇ ପାରୁଥିଲା । ଏହି ଜାତୀୟ ଚେତନା ଆଣିବା ଦିଗରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ମଧୁସୁଦନ ଦାସ, ଗୋପାଳ ଚନ୍ଦ୍ର ପ୍ରହରାଜ, ଲକ୍ଷ୍ମିକାନ୍ତ ମହାପାତ୍ର, ଗୋପବନ୍ଧୁ ଦାସ ଇତ୍ୟାଦିଙ୍କ ନାମ ପ୍ରଣିଧାନ ଯୋଗ୍ୟ । ଏହିପରି ଭାବେ ଓଡ଼ିଶାରେ ଜାତୀୟ ଚେତନାର ଅଭ୍ୟୁଦୟ ହେବା ଫଳରେ ନିଜ ମାତୃ ଭାଷାକୁ ରକ୍ଷା କରିବା ଦିଗରେ ସମସ୍ତେ ଚେଷ୍ଟିତ ହେଲେ ଏବଂ ଏକତ୍ରି କରଣର ପଥ ସୁଗମ ହୋଇଗଲା । ଏହି ଏକତ୍ରୀକରଣ ପାଇଁ କେତେକ ଚିନ୍ତାଶୀଳ ବ୍ୟକ୍ତି, ସାହିତ୍ୟିକ, ସମାଜ ସେବୀ, ଏବଂ ରାଜନେତା ଆନ୍ତରିକତା ସହ ଉଦ୍ୟମ ଜାରି ରଖିଥିଲେ ।

## ସ୍ୱତନ୍ତ୍ର ଓଡ଼ିଶା ଗଠନ ଏବଂ ଜାତୀୟ ଆନ୍ଦୋଳନ

ମଣିଷ ହେଉ, କୌଣସି ଜାତି ହେଉ, କୌଣସି ଦେଶ ହେଉ ତାର ପରିବର୍ତ୍ତନ ପାଇଁ କିଛି ଘଟଣା ବହୁଳ ପରିବେଶ ସୃଷ୍ଟି ହୋଇଥାଏ । ପୁରାଣ ଠାରୁ ଇତିହାସ ପର୍ଯ୍ୟନ୍ତ ଅନେକ ଉଦାହରଣ ଏବଂ କିମ୍ବଦନ୍ତୀ ଦେଖିବାକୁ ମିଳିଥାଏ । ଘଟଣା ଚକ୍ରରେ ପରିବର୍ତ୍ତନ ହେବାର ବହୁ ଦୃଷ୍ଟାନ୍ତ ରହିଅଛି । ଏହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ହେଉଛି "ଯଦି ଦସ୍ୟୁ ରତ୍ନାକରଙ୍କ ଦେବର୍ଷି ନାରଦଙ୍କ ସହିତ ସାକ୍ଷାତ ହୋଇନଥାନ୍ତା ତାହାହେଲେ ଦସ୍ୟୁ ରତ୍ନାକର ବାଲ୍ମିକୀ ହୋଇ ପାରି ନଥାନ୍ତେ କିମ୍ବା ରାମାୟଣ ରଚନା ହୋଇ ପାରି ନଥାନ୍ତା" । ଏହିପରି କୌଣସି ପରିବର୍ତ୍ତନ ପାଇଁ ପ୍ରାୟ ଘଟଣା ଚକ୍ରର ଆବଶ୍ୟକତା ପଡିଥାଏ । ସେହିପରି ୧୮୬୬ ମସିହାରେ ଓଡ଼ିଶାର ନ'ଅଙ୍କ ଦୁର୍ଭିକ୍ଷ ପରୋକ୍ଷ ଭାବରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ଏକ ଘଟଣା ଚକ୍ର ଥିଲା । ଏହାକୁ ଅସ୍ୱୀକାର କରାଯାଇ ନପାରେ । ଗଜପତି ରାଜାଙ୍କର ଏହି ନ'ଅଙ୍କରେ ପଡିଥିବା ହେତୁ ଏହାକୁ ନ'ଅଙ୍କ ଦୁର୍ଭିକ୍ଷ କୁହାଯାଏ । ଏହି ନଅଙ୍କ ଦୁର୍ଭିକ୍ଷ ଥିଲା ଓଡ଼ିଶା ପ୍ରତି ଏକ କରାଳ ଦୃଶ୍ୟ । ଏହା ଓଡ଼ିଶା ବାସୀଙ୍କ ପ୍ରତି ଏକ ଦାରୁଣ ବିପର୍ଯ୍ୟୟ ସୃଷ୍ଟି କରିଥିଲା । ଖାଦ୍ୟ ଅଭାବରେ ଲୋକମାନେ ତେନ୍ତୁଳି ପତ୍ର, ବାଉଁଶ

ପତ୍ର, ବାଉଁଶ କରଡି ଆଦି ଅଖାଦ୍ୟ ସବୁକୁ ଖାଦ୍ୟ ରୂପେ ଗ୍ରହଣ କରିଥିଲେ । ଫଳରେ ମହାମାରୀ ବ୍ୟାପୀ ଯାଇଥିଲା । ପେଟ ବିକଳରେ ମା'ତାର ସନ୍ତାନକୁ ଛାଡି ଚାଲିଗଲା । ଅନାହାରରେ ଅନେକ ମୃତ୍ୟୁ ବରଣ କଲେ । କୁଢ କୁଢ ଶବ ରାସ୍ତା କଡରେ ପଡି ରହିଲା । ଓଡ଼ିଶାର ଏହ ମର୍ମନ୍ତୁଦ ପରିବେଶକୁ ବଙ୍ଗୀୟ ମାନେ ଉପହାସ କଲେ । ଏହି କରୁଣ ଦୃଶ୍ୟ ବ୍ରିଟିଶ ସରକାରଙ୍କର ମୂଳଦୁଆକୁ ଦୋହଲାଇ ଦେଇଥିଲା । ଏଥିପାଇଁ ବଙ୍ଗଳା ସରକାରଙ୍କର ଅପାରଗତାକୁ ସଂପୂର୍ଣ୍ଣରୂପେ ଦାୟୀ କରାଯାଇଥିଲା । ଏହି ମର୍ମନ୍ତୁଦ ଘଟଣା ବ୍ରିଟିଶ ପାର୍ଲିଆମେଣ୍ଟରେ ଆଲୋଡନ ସୃଷ୍ଟି କରିଥିଲା । ଏହିପରି ଏକ ଅକଥନୀୟ ପରିସ୍ଥିତିକୁ ଆଖି ଆଗରେ ରଖି ତତ୍‌କାଳୀନ ସେକ୍ରେଟାରୀ ଅଫ ଷ୍ଟେଟସ୍ (Secretary of States) ଷ୍ଟାଫୋର୍ଡ ନର୍ଥକୋଟ ଓଡିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାରେ ପ୍ରସ୍ତାବ ଦେଇଥିଲେ । କିନ୍ତୁ ତତ୍କାଳୀନ ଉଚ୍ଚ ପଦବୀରେ ଥିବା କିଛି ବଙ୍ଗୀୟ ନେତୃବୃନ୍ଦଙ୍କ ସକାଶେ ତାହା କାର୍ଯ୍ୟକାରୀ ହୋଇପାରିନଥିଲା । ବଙ୍ଗୀୟ ତୁଙ୍ଗ ନେତାଙ୍କର ହୀନ ଚକ୍ରାନ୍ତରେ ଏହା କାର୍ଯ୍ୟକାରୀ ହୋଇନଥିଲେ ମଧ ଭାଷା ଅନ୍ଦୋଳନ ଓଡ଼ିଶାରେ ଜାରି ରହିଥିଲା ।

## (କ) ଓଡ଼ିଶା ଭାଷା ଆନ୍ଦୋଳନ

ସେକ୍ରେଟାରୀ ଅଫ ଷ୍ଟେଟସ୍ (Secretary of States) ଷ୍ଟାଫୋର୍ଡ଼ ନର୍ଥକୋଟ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ପାଇଁ ଯେଉଁ ପ୍ରସ୍ତାବ ଦେଇଥିଲେ ତାହା ବ୍ରିଟିଶ୍ ସରକାରଙ୍କ ଦ୍ୱାରା କାର୍ଯ୍ୟକାରୀ ହୋଇ ପାରିନଥିଲା ସତ, କିନ୍ତୁ ଏହି ପ୍ରସ୍ତାବ ଓଡ଼ିଶାର ବୁଦ୍ଧିଜୀବୀ ମାନଙ୍କୁ ଆକୃଷ୍ଟ କରି ପାରିଥିଲା । ଯଦିଓ ସେମାନେ ପ୍ରତିବାଦର ସ୍ୱର ଉଠାଇ ପାରିନଥିଲେ ତଥାପି ଓଡ଼ିଶାରେ ଭାଷା ଭିତ୍ତିକ ଏକତା ପାଇଁ ଆନ୍ଦୋଳନ ଜାରି ରଖିଥିଲେ । ଏହି ଭାଷା ଆନ୍ଦୋଳନ ପାଇଁ ସମ୍ବଲପୁର ଜିଲ୍ଲାର ଅବଦାନ ଥିଲା ଅତୁଳନୀୟ । ଏହି ଆନ୍ଦୋଳନର ପରିଶେଷରେ ସ୍ୱତନ୍ତ୍ର ଓଡ଼ିଶା ପାଇଁ ପଥ ପରିଷ୍କାର ହୋଇ ଯାଇଥିଲା । ସମ୍ବଲପୁର ଭାଷା ଆନ୍ଦୋଳନରେ ପ୍ରଥମେ ପୋରଧା ଥିଲେ ସ୍ୱର୍ଗତ ଚନ୍ଦ୍ର ଶେଖର ବେହେରା । ସେ ସମ୍ବଲପୁର ଉପକଣ୍ଠସ୍ଥ ଧନଚଉଡା ଗ୍ରାମର ଏକ ବ୍ରାହ୍ମଣ ପରିବାରରେ ୧୮୭୩ ମସିହା ମଇ ୨୦ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ସେ ଜଣେ ମେଧାବୀ ଛାତ୍ର ଥିଲେ ମଧ ଆର୍ଥୀକ ସ୍ୱଚ୍ଛଳତା ଅଭାବରୁ ଉଚ୍ଚ ଶିକ୍ଷାରୁ ବଞ୍ଚିତ ହୋଇ ଏନଟ୍ରାନ୍ସ ପରେ ସମ୍ବଲପୁର ଜିଲ୍ଲା ସ୍କୁଲରେ ଶିକ୍ଷକତା କରିଥିଲେ । କିଛିଦିନ ପରେ ଆଦର୍ଶଗତ କାରଣରୁ ସେ ଶିକ୍ଷକ ପଦରୁ ଇସ୍ତଫା ଦେଇଥିଲେ । ତାଙ୍କ ଶ୍ୱଶୁର ଦାଶରଥୀ ପୂଜାରୀ (ତତ୍କାଳୀନ ରେଢାଖୋଲ

ଗଡ଼ଜାତର ଦେୱାନ)ଙ୍କ ଚେଷ୍ଟାରେ ନାଗପୁର ସେକ୍ରେଟାରୀଏଟରେ ମାସକୁ ୨୫୦ ଟଙ୍କା ବେତନରେ ଗୋଟିଏ କିରାଣୀ ଚାକିରିର ବ୍ୟବସ୍ଥା କରାଇ ଦେଇଥିଲେ ।

ସମ୍ବଲପୁର ମଧ୍ୟ ପ୍ରଦେଶ ଡ଼ିଭିଜନ ଅନ୍ତର୍ଗତ ଥିଲା ଓ ତାର ଚିଫ୍ କମିଶନର ଅଫିସ ନାଗପୁରରେ ଥିଲା । ମଧ୍ୟ ପ୍ରଦେଶ ଅଦାଲତରେ ଭାଷାଥିଲା ହିନ୍ଦୀ କିନ୍ତୁ ସମ୍ବଲପୁର ଅଦାଲତର ଭାଷା ଥିଲା ଓଡ଼ିଆ । ଯେଉଁ ଅଣଓଡ଼ିଆ ଶାସକମାନେ ମଧ୍ୟ ପ୍ରଦେଶରୁ ସମ୍ବଲପୁରକୁ ଆସୁଥିଲେ ସେମାନଙ୍କୁ ଓଡ଼ିଆ ଶିଖିବାକୁ ବାଧ କରାଯାଉଥିଲା । ସେଥି ପାଇଁ ନାଗପୁରରେ ଥିବା ଚିଫ୍ କମିଶନର ଓ ରାୟପୁରରେ ଥିବା କମିଶନର କର୍ମଚାରୀମାନେ ୟୁରୋପୀୟ କର୍ମଚାରୀ ମାନଙ୍କୁ ସମ୍ବଲପୁର ଅଦାଲତ ଭାଷା ଓଡ଼ିଆ ପରିବର୍ତ୍ତେ ହିନ୍ଦୀ କରିବାକୁ ପ୍ରବର୍ତ୍ତାଉଥିଲେ । ସେତିକିବେଳେ ନାଗପୁର ସେକ୍ରେଟାରୀଏଟ୍‌ରେ ଚନ୍ଦ୍ର ଶେଖର ବାବୁ କାର୍ଯ୍ୟ କରୁଥିଲେ । ତେଣୁ ତାଙ୍କୁ ନିଜ ଜନ୍ମ ମାଟିରୁ ନିଜ ମାତୃଭାଷାକୁ ନିଜ ସମ୍ମୁଖରେ ଉଚ୍ଛେଦ କରିବାର ଚକ୍ରାନ୍ତ ତାଙ୍କୁ ପୁରାମାତ୍ରାରେ ବ୍ୟଥିତ କରିଥିଲା । ଏହି ଚକ୍ରାନ୍ତର ଆମୂଳଚୂଳ ସମ୍ବଲପୁରରେ ଥିବା ବରଗଡ଼ର ପୂର୍ବତନ ମାଜିଷ୍ଟ୍ରେଟ ସତ୍ୟବାଦୀ ପାଢୀ ଓ ଧରଣୀ ଧର ମିଶ୍ର ବାନପ୍ରସ୍ଥଙ୍କୁ ଏବିଷୟରେ ଚିଠିଦ୍ୱାରା ଅବଗତ କରାଇ ଦେଇଥିଲେ । ସମ୍ବଲପୁରରେ ସେତେବେଳେ ଧରଣୀଧର ମିଶ୍ର ପ୍ରଥମ ଛାପାଖାନା ବସାଇଥିଲେ । ଏହି ଛାପା ଖାନାରେ ପ୍ରଥମେ ସମାଜର ପୂର୍ବତନ ସଂପାଦକ ପଦ୍ମଭୂଷଣ ଡ଼ଃ ରାଧାନାଥ ରଥ ପ୍ରଥମେ ଚାକିରୀ ଜୀବନ ଆରମ୍ଭ କରିଥିଲେ । ସମ୍ବଲପୁରରେ ଏହି ଖବର ପହଞ୍ଚିଲା ପରେ ଏକ ହିନ୍ଦୀ ବିରୋଧୀ ଆନ୍ଦୋଳନ ଆରମ୍ଭ ହେଲା । ଏହାର ନେତୃତ୍ୱ ନେଲେ ଏବଂ ଲୋକ ମାନଙ୍କୁ ସଂଗଠିତ କରାଇଥିଲେ ଧରଣୀଧର ମିଶ୍ର । ସେହି ସମୟରେ ସାହିତ୍ୟର ଅନ୍ୟତମ ପେଣ୍ଠ ବାମଣ୍ଡାରୁ ପ୍ରକାଶିତ 'ସମ୍ବଲପୁର ହିତୈଷିଣୀ' ର ଏହି ଅଞ୍ଚଳର ହିନ୍ଦୀ ବିରୋଧୀ ସଭାସମିତିର ଖବର ମାନ ପ୍ରକାଶିତ ହୋଇଥିଲା । ସେହି ସମୟରେ ପଶ୍ଚିମ ଓଡ଼ିଶାରେ ପଶ୍ଚିମ ଆକାଶର ଉଜ୍ଜ୍ୱଳ ନକ୍ଷତ୍ର, ମାତୃଭାଷାର ଉପାଷକ. ପ୍ରକୃତି କବି ଗଙ୍ଗାଧର.ମେହେରଙ୍କର 'ଭାରତୀ ରୋଦନ" ଶିର୍ଷକ ଏକ କବିତା 'ସମ୍ବଲପୁର ହିତୈଷିଣୀ' ରେ ପ୍ରକାଶିତ ହୋଇଥିଲା । ଏହି କବିତା କବି ହୃଦୟର ବ୍ୟଥା, କବି ହୃଦୟର ଜାତୀୟତା, କବି ହୃଦୟର ମାର୍ମିକ.ବେଦନା କିପରି ପ୍ରକଟିତ ହୋଇଛି ନିମ୍ନରେ ଉଦ୍ଧୃତ ପଦ୍ୟାଂଶରୁ ଅତି ସହଜରେ ଆମେ ଅନୁମେୟ କରିପାରିବା ।

ଉତ୍କଳ ଭାରତୀ                    ରୋଦନ କରୁଛି

କାତରେ ସମ୍ବଲପୁରେ,

ସେ ବିକଳ ଧ୍ୱନି କର୍ଣ୍ଣରେ ପଡିଲେ
ନୟନେ ଲୋତକ ପୁରେ ।
× × × × × × ×

ନାନା ଉପହାରେ ପୁଜିବେ ମୋ ପାଦେ
ଏହି ଆଶଥିଲା ମନେ,
ଦାବାନଳ ଆସି ଲାଗି ଯାଉଅଛି
ସେ ଆଶା କୁସୁମ ବନେ
× × × × × × ×

ହିନ୍ଦୀ ସରସ୍ୱତୀ ମୋ ଛାତିରେ ବସି
କରିବ ପରା ରାଜତ୍ୱ,
ମୋ ଆଶା କାନନ ଭସ୍ମରାଶି ହେବ
ତା'ନବ ଉଦ୍ୟାନେ ଖତ
× × × × × × ×

ତାକୁନ୍ତ ପ୍ରହାରେ ଜୀବନ ନ ଯିବ
ହେଉଥିବ କଲବଲ,
ମୋହ ରକ୍ଷାପାଇଁ ବିକଳ ମୋ ପୁଏ
ମୁଖେ ଦେଉଥିବେ ଜଳ
ମୋହ ଲାଗି କେତେ ଜତନ କରୁଛି
ଆହାସେ ଧରଣୀ ଧର,
ତୋତେ ଘେନି ମୁହିଁ ପୁତ୍ରବତୀ ଏକା
ତୁ ମୋର ଯୋଗ୍ୟ କୁମର ।

(ଭାରତୀ ରୋଦନ । ଗଙ୍ଗାଧର ମେହେର)

ସେହି ଦୀପ୍ତିମନ୍ତ ପୁରୁଷ ଚନ୍ଦ୍ରଶେଖର ବେହେରା ଯେତେବେଳେ ଛୁଟିରେ ଘରକୁ ଆସନ୍ତି ସମ୍ବଲପୁର ଏବଂ ବରଗଡ଼ ପଦ୍ମପୁର ଇତ୍ୟାଦି ସ୍ଥାନମାନ ବୁଲି ବୁଲି ନେତୃବୃନ୍ଦଙ୍କ ସହିତ ସାକ୍ଷାତ କରି ଭାଷା ଚକ୍ରାନ୍ତ ସମ୍ବନ୍ଧୀୟ ତଥ୍ୟମାନ ପ୍ରଦାନ କରି ପରୋକ୍ଷରେ ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଥିଲେ । ହିନ୍ଦିଭାଷା ବିରୋଧରେ ଛୋଟ ଛୋଟ ସଭାକରି ଲୋକ ମାନଙ୍କୁ ପ୍ରବର୍ତ୍ତାଉଥିଲେ ।

୧୮୮୫ ମସିହା ଜାନୁୟାରୀ ୨୬ ତାରିଖରେ ମଧ୍ୟପ୍ରଦେଶର ଚିଫ୍ କମିଶନର ଉଡ଼ବର୍ଣ୍ଣ ସାହେବ ୧୮୯୭ ଜାନୁୟାରୀ ପହିଲାରୁ ସମ୍ବଲପୁର ଅଞ୍ଚଳରେ ଓଡ଼ିଆ ଭାଷା ଉଠାଯାଇ କୋର୍ଟ କଚେରୀରେ ହିନ୍ଦୀ ଭାଷା ପ୍ରଚଳିତ ହେବବୋଲି ଆଦେଶ ନାମା ଜାରି କଲେ । ଏହି ଆଦେଶନାମା ପ୍ରଚାରିତ ହେଲାପରେ ଜନସାଧାରଣ ଏହି ଆଦେଶନାମାର ଘୋର ବିରୋଧ କରିଥିଲେ । ଏହି ବରୋଧ ଘଟଣା "ସମ୍ବଲପୁର ହିତୈଷିଣୀ" ରେ ବାରମ୍ବାର ପ୍ରକାଶ ପାଇଲା । ଗୌରୀ ଶଙ୍କର ରାୟ ତାଙ୍କ "ଉତ୍କଳ ଦୀପିକା" ରେ ଏହାର ସମାଲୋଚନା କରିବା ସଙ୍ଗେ ସଙ୍ଗେ ଏହାର ଘୋର ବିରୋଧ କରିଥିଲେ । ମଧୁବାବୁ କଟକରେ ସଭା ସମିତି କରି ଏହାକୁ ନିନ୍ଦା କରିବା ସଙ୍ଗେ ସଙ୍ଗେ ଏହାର ଘୋର ବିରୋଧ ମଧ୍ୟ କରିଥିଲେ । କଲିକତାରୁ ପ୍ରକାଶିତ ଷ୍ଟେଟ୍ସ ମ୍ୟାନ୍‌ରେ ମଧୁବାବୁ ଉଡ଼ବର୍ଣ୍ଣଙ୍କ ଆଦେଶ ନାମାକୁ ପତ୍ୟାହାର କରିବାକୁ ମତପ୍ରକାଶ କରିଥିଲେ । (ଷ୍ଟେଟ୍ସମ୍ୟାନ୍ ୧୧/୫/୧୯୯୫) । ଏହି ଅଦେଶ ନାମା ଫଳରେ ସମ୍ବଲପୁରର ଜନ ଅସନ୍ତୋଷ ନାଗପୁରରେ ଥିବା ଚିଫ୍ କମିଶନର ସେକ୍ରେଟାରୀଙ୍କୁ ସେ ବାରମ୍ବାର ବୁଝାଇ ଥିଲେ । ସମ୍ବଲପୁରକୁ ଚତୁଃସଖା ବଳଭଦ୍ର ସୁଆର, ମଦନ ମୋହନ ମିଶ୍ର, ବ୍ରଜମୋହନ ପଟ୍ଟନାୟକ ଓ ମହନ୍ତ ବିହାରୀ ଦାସ ୧୯୦୧ ମସିହା ଜୁଲାଇ ମାସରେ ନାଗପୁର ଯାଇ ଚିଫ୍ କମିଶନରଙ୍କୁ ସାକ୍ଷାତ କରି ସମ୍ବଲପୁରର ଜନ ଅସନ୍ତୋଷ ବିଷୟରେ ଅବଗତ କରାଇବା ସଙ୍ଗେ ସଙ୍ଗେ ସମ୍ବଲପୁରକୁ ଓଡ଼ିଶା ସହିତ ମିଶାଇବା ପାଇଁ ପ୍ରତିବାଦ ଜଣାଇଥିଲେ । ଏହି ପ୍ରତିବାଦ ଫଳରେ ଚିଫ୍ କମିଶନର ସେମାନଙ୍କୁ ପ୍ରତିଶ୍ରୁତି ମଧ୍ୟ ଦେଇଥିଲେ । ଏହା ଚନ୍ଦ୍ରଶେଖରଙ୍କର ଥିଲା ଭିତିରିଆ ଉଦ୍ୟମ । ଏହା ପରେ ମଧ୍ୟ ଏହି ଚତୁଃ ସଖା ଉତ୍ସାହର ସହିତ ଶ୍ରୀପତି ମିଶ୍ରଙ୍କ ସହ ବଡ଼ଲାଟ ଲର୍ଡ କର୍ଜନଙ୍କୁ ସାକ୍ଷାତ କରିବା ପାଇଁ ସିମିଲା ଯାତ୍ରା କରିଥିଲେ । ସେମାନେ ବଡ଼ଲାଟଙ୍କୁ ସାକ୍ଷାତ କରି ନପାରି ତାଙ୍କ ସେକ୍ରେଟାରୀଙ୍କ ପାଖରୁ ଜାଣିବାକୁ ପାଇଲେ ଯେ, ଚିଫ୍ କମିଶନରଙ୍କୁ ଏ ବିଷୟରେ ତଥ୍ୟ ମଗାଯାଇଛି । ଏହା ମୂଳରେ ଥିଲା ଚନ୍ଦ୍ରଶେଖରଙ୍କର ଅଭୂତ ପ୍ରେରଣା ।

ଏହାପରେ ସାର୍ ଆଣ୍ଡ୍ରୁଫ୍ରେଜର ଚିଫ୍ କମିଶନର ହୋଇଥିଲେ । ଭାରତରେ ତାଙ୍କର ପ୍ରଥମ ଚାକିରିରେ ସମ୍ବଲପୁର ଅଞ୍ଚଳରେ ଅବସ୍ଥାପିତ ହୋଇଥିଲେ । ଫଳରେ ଏହି ଅଞ୍ଚଳରେ ଭାଷା ସହିତ ସେ ପରିଚିତ ହେଲେ । ସେ ପ୍ରଥମେ ଭାରତୀୟ ଭାଷା ତଥା ସମ୍ବଲପୁରୀ ଭାଷା ଆକର୍ଷଣରେ ଆସିଥିବା ହେତୁ ସେ ଭାଷା ତାଙ୍କ ମନରେ ସ୍ୱତନ୍ତ୍ର ପ୍ରେରଣା ସୃଷ୍ଟି କରିଥିଲା । ସେହି ସମୟରେ ସମ୍ବଲପୁର ଲୋକ ମାନଙ୍କର ଭାଷା ଆନ୍ଦୋଳନ ତଥା ନିଜ

ମାତୃଭାଷା ପ୍ରତି ଲୋକ ମାନଙ୍କର ଆକୁଣ୍ଠ ଆବେଗ ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ସେହି ବର୍ଷ ଅଣଓଡ଼ିଆଙ୍କ ଦ୍ୱାରା ଜନଗଣନା କାର୍ଯ୍ୟ ହେଉ ଥିବାରୁ ବହୁତ ବିଶୃଙ୍ଖଳା ହେଉଛି ବୋଲି ଚନ୍ଦ୍ରଶେଖର ବାବୁ ଅବଗତ ହେଲା ପରେ ସେ ତାଙ୍କର ଶଳା ବୈକୁଣ୍ଠ ନାଥ ପୂଜାରୀଙ୍କୁ ଜିଲ୍ଲା ପାଳଙ୍କର ଉଦ୍ୟମ କ୍ରମେ ସେନ୍‌ସସ୍ ଅଫିସର ଭାବେ ନିଯୁକ୍ତି କରାଇ ଥିଲେ ଏବଂ ଏହା ଦ୍ୱାରା ଅଣଓଡ଼ିଆଙ୍କ ଚକ୍ରାନ୍ତ ପଣ୍ଡ ହେଲା । ଏହି କାର୍ଯ୍ୟକୁ ବୈକୁଣ୍ଠ ନାଥ ପୂଜାରୀ ସୁଚାରୁ ରୂପେ ସମ୍ପାଦନ କରିଥିବାରୁ ଆଣ୍ଡ୍ରୁଫ୍ରେଜର ସାହେବଙ୍କର ହୃଦବୋଧ ହେଲା ଯେ, ଏହା ଏକ ଓଡ଼ିଆ ଅଞ୍ଚଳ ଏବଂ ଏ ପ୍ରକାର ଅଦାଲତରେ ଓଡ଼ିଆ ଭାଷା ପ୍ରଚଳିତ ହେବା ଆବଶ୍ୟକ ।

ଚନ୍ଦ୍ର ଶେଖରବାବୁ ନାଗପୁରରୁ ଆସି ୧ ୯ ୧ ୧ ସମିହାରେ ଓକିଲାତି ଆରମ୍ଭ କଲେ ଏବଂ ଓଡ଼ିଆ ଭାଷା ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାବରେ ଯୋଗଦେଲେ । ସେହି ବର୍ଷ ଫ୍ରେଜର ସାହେବ କୌଣସି କାରଣ ବଶତଃ ସମ୍ବଲପୁର ଆସିଥିଲେ । ଏହି ସମୟରେ ସମ୍ବଲପୁରର ବିଶିଷ୍ଟ ବ୍ୟକ୍ତି ବୃଦ୍ଧ ଚନ୍ଦ୍ରଶେଖରଙ୍କ ନେତୃତ୍ୱରେ ହଜାର ହଜାର ଲୋକଙ୍କୁ ନେଇ ଫ୍ରେଜର ସାହେବଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବାରୁ ଲୋକମାନଙ୍କ ଆତିଥ୍ୟରେ ଫ୍ରେଜର ସାହେବ ବହୁତ ଖୁସୀହେଲେ । ଏହି ଅବସରରେ ସମ୍ବଲପୁରବାସୀ ଫ୍ରେଜର ସାହେବଙ୍କୁ ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ଓ ଏହି ଅଞ୍ଚଳକୁ ଓଡ଼ିଶା ଡିଭିଜନରେ ମିଶାଇବାକୁ ଏକ ସ୍ମାରକ ପତ୍ର ଦେଲେ ଏବଂ ଅନୁରୋଧ କଲେ । ଫ୍ରେଜର ସାହେବ ଏ ବିଷୟରେ ସରକାରଙ୍କୁ ଜଣାଇବା ପାଇଁ ପ୍ରତିଶ୍ରୁତି ଦେଲେ । ତାଙ୍କ ସୁପାରିଶ ଅନୁସାରେ ୧ ୯ ୦ ୩ ମସିହା ଜାନୁୟାରୀ ପହିଲାରୁ ସମ୍ବଲପୁର କୋଟ କଚେରୀରେ ପୁଣି ଓଡ଼ିଆ ଭାଷା ପ୍ରଚଳନ ହେଲା । ୧ ୯ ୦ ୫ ମସିହା ଅକ୍ଟୋବର ୧ ୬ ତାରିଖରେ ସମ୍ବଲପୁର ଓଡ଼ିଶା ଡ଼ିଭିଜନରେ ମିସିଲା । ସମ୍ବଲପୁର ଓ ସମ୍ବଲପୁର ବାସୀଙ୍କ ପ୍ରତି ଫ୍ରେଜର ସାହେବଙ୍କର ଅଶେଷ ବୈଦାନ୍ୟତା ଥିବା ହେତୁ ତାଙ୍କର ସ୍ମାରକୀ ସ୍ୱରୂପ ଫ୍ରେଜର କ୍ଲବର ଭିତ୍ତି ପ୍ରସ୍ତର ସ୍ଥାପନ ଓ ଫ୍ରେଜର ପ୍ରେସ୍ ଉଦ୍‌ଘାଟନ ପାଇଁ ନିଜେ ଫ୍ରେଜର ସାହେବ ସମ୍ବଲପୁର ଆସିଥିଲେ । ବର୍ତ୍ତମାନ ସୁଦ୍ଧା ଫ୍ରେଜର କ୍ଲବ ଐତିହ୍ୟର ମୂକସାକ୍ଷୀ ରୂପେ ଦଣ୍ଡାୟମାନ ହୋଇ ରହିଅଛି । ସେହି ଦେଶପ୍ରାଣ ଚନ୍ଦ୍ରଶେଖର ଏବଂ ସମ୍ବଲପୁର ବାସୀଙ୍କର ଜାତୀୟତା ଏବଂ ଦେଶପ୍ରେମ ବିଷୟରେ ଲେଖିବା ମୋ ପକ୍ଷେ ବାହୁଲ୍ୟ ମାତ୍ର । ତାଙ୍କ ନାମରେ ସମ୍ବଲପୁର ଜିଲ୍ଲା ସ୍କୁଲକୁ ନାମିତ କରି ସମ୍ବଲପୁର ବାସୀ ଅଦ୍ୟାବଧି ତାଙ୍କୁ ମନେ ରଖିଛନ୍ତି ଏହା ମହାନ ଅଟେ । ଆମର ଆଲୋଚ୍ୟ ଓଡ଼ିଆ

ଭାଷା ଆନ୍ଦୋଳନରେ ସମ୍ବଲପୁରର ଭୂମିକା ଯେ ଗୌରବମୟ, ଏକ ସ୍ମରଣୀୟ ଓଡ଼ିଆ ଇତିହାସ ଏଥିରେ ଦ୍ୱିମତ ନାହିଁ ।

ତେଣୁ ସ୍ୱତନ୍ତ୍ର ଓଡ଼ିଶାର ପ୍ରଥମ ପ୍ରଧାନ ମନ୍ତ୍ରୀ ପଣ୍ଡିତ ବିଶ୍ୱନାଥ ଦାସ ଚନ୍ଦ୍ରଶେଖରଙ୍କ ଉପରେ ପଠାଇ ଥିବା ନିମ୍ନ ଲିଖିତ ବାର୍ତ୍ତାରୁ ତାଙ୍କର ମାତୃଭୂମି ଏବଂ ମାତୃଭାଷା ପ୍ରତି ମମତା **ସ୍ପଷ୍ଟ** ପ୍ରତୀୟମାନ ହୁଏ ।

"IN THE DARK DAYS OF SCATTERED LIMB OF ORISSA, UNDER HEELS OF DOUBLE EXPLOITATION OF THE BRITISH IMPEREALISM AND ALSO INDIAN BRETHEM, HE WAS ONE OF THOSE IN THE BRILLIANT GALAXY OF STARS AMONG ORIYA PATRIOTS WHO STOOD UNCOMP ROMISINGLY FOR ORISSA AND ORIYAS"

ଏଥିରୁ ଅନୁମେୟ ହୁଏ ଯେ, ମାତୃଭୂମି ଏବଂ ମାତୃଭାଷା ପ୍ରତି ତାଙ୍କର ପ୍ରଗାଢ ଭକ୍ତିର ମୂଲ୍ୟାଙ୍କନ କରିବା ଅସମ୍ଭବ । ପ୍ରତ୍ୟେକ ଓଡ଼ିଆଙ୍କ ମାନସ ପଟ୍ଟରେ ସେ ରହିବା ଉଚିତ୍ । ବିଦ୍ୟାଳୟ ମାନଙ୍କରେ ତାଙ୍କ ବିଷୟ ପାଠ୍ୟ ପୁସ୍ତକରେ ରଖିବା ଉଚିତ । ତାହାହେଲେ ତାଙ୍କର ଅମର ପ୍ରତିଭା ଆଜିର ଓଡ଼ିଆଙ୍କ ନିକଟରେ ଅମର ରହି ପାରିବ ।

ଓଡ଼ିଶାର ପଶ୍ଚିମାଞ୍ଚଳପରି ଉତ୍ତରାଞ୍ଚଳର ଭାଗ୍ୟାକାଶ ମେଘାଚ୍ଛନ୍ନ ହୋଇ ପଡିଥିଲା । ବ୍ରିଟିଶ ସରକାରଙ୍କର ଶିକ୍ଷା କ୍ଷେତ୍ରରେ ଓଡ଼ିଆ ଭାଷା ପ୍ରଚଳନର ପ୍ରାଧାନ୍ୟ ଘୋଷିତ ହୋଇଥିଲେ ମଧ ଏ ଦେଶରେ କଚେରୀ ଓ ଶିକ୍ଷା କ୍ଷେତ୍ରରେ କାର୍ଯ୍ୟ କରୁଥିବା ବଙ୍ଗୀୟ ଲୋକମାନେ ଓଡ଼ିଆ ପୁସ୍ତକ ସବୁ ବଙ୍ଗଭାଷାରେ ମୁଦ୍ରିତ କରାଇବା ପ୍ରଭୃତି ଅଯୌକ୍ତିକ କାର୍ଯ୍ୟମାନ କରୁଥିଲେ । ପ୍ରତ୍ନତାତ୍ତ୍ୱିକ ଗବେଷକ ସ୍ୱର୍ଗୀୟ ରାଜେନ୍ଦ୍ର ଲାଲ ମିତ୍ରଙ୍କ ପରି ଆହୁରି ଅନେକ ବିଶିଷ୍ଟ ବଙ୍ଗୀୟ କର୍ମଚାରୀ ଆପଣାର ଅସତ୍ ଉଦ୍ଦେଶ୍ୟକୁ ଫଳବତୀ କରିବା ନିମିତ୍ତ ପ୍ରବଳ ଚେଷ୍ଟା ଚଳାଇ ଥିଲେ । ୧୮୬୮ ସମିହା ଡ଼ିସେମ୍ବର ମାସରେ କଟକ ଡ଼ିବେଟିଂ ସୋସାଇଟରେ ରାଜେନ୍ଦ୍ର ଲାଲ ମିତ୍ର ପ୍ରସଙ୍ଗ କ୍ରମେ କହିଥିଲେ ଯେ, "ଉତ୍କଳର ଯଥାର୍ଥ ହିତାକାଂକ୍ଷୀ ଯେ ହେବ, ସର୍ବାଗ୍ରେ ଉତ୍କଳ ଭାଷା ଉଠାଇ ଦେଇ ବଙ୍ଗଭାଷା ପ୍ରଚଳନର ଚେଷ୍ଟା କରିବେ, କାରଣ ଯେତେକାଳ ଉତ୍କଳ ଭାଷା ଉଠା ଯାଇନାହିଁ ସେତେ କାଳଯାଏ ଉତ୍କଳର ଉନ୍ନତି ହେବା ଅସମ୍ଭବ" । ତାଙ୍କର ଏହି ମତ ସପକ୍ଷରେ ସେ ଦର୍ଶାଇ ଥିଲେ ଯେ ଉତ୍କଳର ଲୋକ ସଂଖ୍ୟା ଅତି ଅଳ୍ପ ଏବଂ ସେମାନଙ୍କ ମଧ୍ୟରୁ ପାଠ ପଢିବା ପାଇଁ ଆଗ୍ରହୀଙ୍କ

ସଂଖ୍ୟା କମ୍ । ତେଣୁ ଓଡ଼ିଆ ଭାଷାରେ ପୁସ୍ତକ ଲେଖିବା ବା ପ୍ରକାଶ କରିବା ଲାଭ ଜନକ ହେବାର ସମ୍ଭାବନା ନଥିବାରୁ ଏ ଭାଷାରେ କେହି ନୂତନ ପୁସ୍ତକ ରଚନା ବା ପ୍ରକାଶ କରି କୃତକାର୍ଯ୍ୟ ହୋଇ ନପାରନ୍ତି । ବଙ୍ଗ ଭାଷାରେ ସେହି ବର୍ଷ ୩୦୦ ପର୍ଯ୍ୟନ୍ତ ନୂତନ ପୁସ୍ତକ ପ୍ରକାଶିତ ହୋଇଥିବା ବେଳେ ଓଡ଼ିଆ ମାତ୍ର ୩/୪ ଖଣ୍ଡରୁ ଅଧିକ ପୁସ୍ତକ ମୁଦ୍ରିତ ହୋଇ ପାରି ନଥିଲା । କିନ୍ତୁ ଉତ୍କଳ ତୁଳନାରେ ବଙ୍ଗଳାର ଲୋକସଂଖ୍ୟା ଓ ଆୟତନ ଅଧିକ ଏବଂ ବଙ୍ଗଳା ଭାଷା ସାହିତ୍ୟ ଉତ୍କଳ ଅପେକ୍ଷା ଉନ୍ନତ । ତେଣୁ ଉତ୍କଳରେ ବଙ୍ଗ ଭାଷା ପ୍ରଚଳିତ ହେଲେ ବଙ୍ଗ ଭାଷାର ଉତ୍ତମ ପୁସ୍ତକ ଉତ୍କଳରେ ଲୋକ ମାନେ ଅନାୟାସରେ ପାଇ ପାରିବେ । ରାଜେନ୍ଦ୍ର ଲଲା ମିତ୍ରଙ୍କର ଏହି ଅଭିମତ ଦ୍ୱାରା ତତ୍କାଳୀନ ଓଡ଼ିଆ ଭାଷା ବିଲୋପ କାରୀଙ୍କ ମନର ଉତ୍ସାହକୁ ଉଦୀପତ କରାଇ ଦେଇଥିଲେ । ମୋଟା ମୋଟି ଉପରେ ଓଡ଼ିଆ ମାନଙ୍କର ଭାଷା ଅହମିକାକୁ ରାଜେନ୍ଦ୍ରଲାଲ ସହ୍ୟ କରିନପାରି କହିଥିଲେ, ଓଡ଼ିଆ ଙ୍କର କ୍ଷୁଦ୍ର କ୍ଷୁଦ୍ର ଉପଭାଷାକୁ ଏକ ସ୍ୱତନ୍ତ୍ର ଭାଷାରେ ପରିଣତ କରିବାର ଉଦ୍ୟମ ହିଁ ସେମାନଙ୍କର କ୍ଷତି ସାଧନ କରିବ ।

୧୮୬୮ ସମିହା ଡିସେମ୍ବରରେ ପ୍ରଦତ୍ତ ରାଜେନ୍ଦ୍ର ଲାଲଙ୍କ ଭାଷଣ ପରେ ଓଡ଼ିଶାର ପତ୍ର ପତ୍ରିକା ମାନଙ୍କରେ ଭାଷା ସମ୍ବନ୍ଧରେ ଯେଉଁ ତୀବ୍ର ବାଦାନୁବାଦ ଚାଲିଲା ତାହାଦ୍ୱାରା ଓଡ଼ିଆ ଭାଷା ବିରୋଧୀ ମାନେ ସରକାରଙ୍କ ଓଡ଼ିଆ ଭାଷା ପ୍ରଚଳନ ଆଦେଶକୁ ରୋକି ଦେବାକୁ କଦାପି ସମର୍ଥ ହୋଇ ପାରିନଥିଲେ । ବରଂ ଅନ୍ୟ ପକ୍ଷରେ ଓଡ଼ିଆ ଭାଷା ଭାଷୀ ଅଞ୍ଚଳରେ ଏକତ୍ରୀ କରଣା ପାଇଁ ପ୍ରକାଶ ପାଇଲା ଏକ ଅଭିନବ ଜାଗରଣ । ତତ୍କାଳୀନ ଉଚ୍ଚ ମହଲରେ ଅତ୍ୟନ୍ତ ପ୍ରତିପ୍ରତ୍ତିଶାଳୀ ବିଦ୍ୱାନ ରାଜେନ୍ଦ୍ର ଲାଲଙ୍କ ଅଭିମତକୁ ଯେପରି ବିଜ୍ଞତା ସହକାରେ ଗୌରୀଶଙ୍କର ରାୟ ଖଣ୍ଡନ କରିଥିଲେ । ତହିଁରୁ ଭାଷା ଆନ୍ଦୋଳନ ଭିତ୍ତିରେ ସମଗ୍ର ଉତ୍କଳ ଦେଶର ଏକତ୍ରୀ କରଣ ପାଇଁ ପ୍ରତ୍ୟକ୍ଷ ଭାବରେ ଏକ ଆନ୍ଦୋଳନର ସୁତ୍ରପାତ ହେଲା । ଗୌରୀ ଶଙ୍କର ଲେଖିଥିଲେ ଯେତେବେଳେ ରାଜେନ୍ଦ୍ର ବାବୁ ଉତ୍କଳର ଲୋକ ସଂଖ୍ୟା କଥା କହିଲେ ସେ କ'ଣ ଯାଣି ଥିଲେ ଯେ ଉକ୍ତ ଦେଶର ଉତ୍ତର ସୀମା ମେଦିନପୁର, ଦକ୍ଷିଣ ସୀମା ଗଞ୍ଜାମ ଏବଂ ପୂର୍ବ ପଶ୍ଚିମରେ ବଙ୍ଗ ଠାରୁ ସମ୍ବଲପୁର ପର୍ଯ୍ୟନ୍ତ ବିସ୍ତୃତ । ଯେବେ ଏକଥା ତାଙ୍କୁ ଜଣା ନଥିଲା ତାହାହେଲେ ଉତ୍କଳର ସୀମା ଉପରେ ସେ ମତାମତ ପରିପ୍ରକାଶ କରିନଥାନ୍ତେ । ଯାହାର ଯେଉଁ ବିଷୟରେ ଜ୍ଞାନ ନାହିଁ ତାହାର ସେହି ବିଷୟରେ କୌଣସି କଥା କହିବା ଅନୁଚିତ ।

ରାଜେନ୍ଦ୍ର ଲାଲଙ୍କୁ ଏହିପରି ଉତ୍ତର ଦେଇ ତାଙ୍କ ଭ୍ରାନ୍ତ ଅଭିମତକୁ ଖଣ୍ଡନ କରିବା ସଙ୍ଗେ ସଙ୍ଗେ କର୍ମଯୋଗୀ ଓଡ଼ିଆ ଭାଷାର ଅବନତିର ପ୍ରକୃତ କାରଣ ସଂପର୍କରେ ସଚେତନ ହେଲେ । ତେଣୁ ଓଡ଼ିଆ ଭାଷାଭାଷୀ ଲୋକ ମାନଙ୍କର ଭାଷା ଓ ସାହିତ୍ୟର ଅଭିବୃଦ୍ଧି ସାଧନ କରି ଓଡ଼ିଆ ଭାଷାକୁ ଏକ ସ୍ୱତନ୍ତ୍ର ଭାଷାର ମର୍ଯ୍ୟଦା ଦେବାପାଇଁ ବାସ୍ତବ ଉପାୟ ଅନୁସରଣ ନିମିତ୍ତ କର୍ମଯୋଗୀ ଅନୁଶୀଳନ କରି ଲେଖିଥିଲେ "ତେବେ ଉତ୍କଳଭାଷାରେ ଉନ୍ନତି ପକ୍ଷରେ କ'ଣ ବ୍ୟାଘାତ ଅଛି ? ଆମ୍ଭମାନଙ୍କର ବିଶ୍ୱାସ ଏହି ଯେ ବର୍ତ୍ତମାନ ଉତ୍କଳ ଭାଷା "ତିନି ଥେଣ୍ଟିଆ କାକୁଡ଼ି ବାଡ଼ି" କେବଳ ତୁଛାକୁ କ୍ଷତିଗ୍ରସ୍ତ ହେଉଛି । ସୁତରାଂ ଉତ୍କଳ ଭାଷା ଦୁଇଘର କୁଣିଆଁ ହୋଇ ଉପବାସରେ ଶୋଉଅଛି, କେହି ଏହାର ଚର୍ଚ୍ଚା କରିବାକୁ ନାହିଁ । ଏହାର ରୂପ ଅବସ୍ଥା ଅତି ଶୋଚନୀୟ ଏବଂ ଆମ୍ଭ ମାନଙ୍କ ମତରେ ଶୀଘ୍ର ଏହାର ପ୍ରତିକାର କରିବା ଉଚିତ୍ । ଉତ୍କଳ ଭାଷାର ଉନ୍ନତି ସାଧନ କରାଇ ତାହାକୁ ଭାଷା ବିଦ୍ୱେଷୀ ମାନଙ୍କର ଆକ୍ରମଣରୁ ନିରାପଦ ରଖିବାକୁ ହେଲେ ଉତ୍କଳ ଭାଷାଭାଷୀ ସମଗ୍ର ଅଞ୍ଚଳକୁ ଏକ ଶାସନାଧୀନ କରାଇ ସର୍ବତ୍ର ଏକ ପ୍ରକାର ଆଇନ କାନୁନ ପ୍ରଚଳନ କରାଇବା ଆବଶ୍ୟକ" । ଏକଥା ଦୂରଦ୍ରଷ୍ଟା କର୍ମଯୋଗୀ ସହଜରେ ଅନୁଭବ କରି ପାରିଥିଲେ । କିନ୍ତୁ ତତ୍କାଳୀନ ଗଡ଼ଜାତ ମାନଙ୍କର ସ୍ୱାଧୀନ କରଦ ରାଜ୍ୟ ଓ ତିନି ସରାକରଙ୍କ ଅଧୀନରେ ଥିବା ପୂର୍ବ, ପଶ୍ଚିମ ଓ ଦକ୍ଷିଣ ଓଡ଼ିଶାକୁ ଏକତ୍ରୀକରଣ କରିବା ପାଇଁ ଦିନେ ଦି'ଦିନର ଚେଷ୍ଟା ବା ଆନ୍ଦୋଳନ ଯଥେଷ୍ଟ ନୁହେଁ । ଏଥିପାଇଁ ଆବଶ୍ୟକ ଥିଲା ବଳିଷ୍ଠ ନେତୃତ୍ୱରେ ଅବିରତ ସଂଗଠିତ ଏକ ଆନ୍ଦୋଳନ । ତେଣୁ କର୍ମଯୋଗୀ ସେହି ପରିପ୍ରେକ୍ଷୀରେ ପରାମର୍ଶ ଦେଇ ଲେଖିଥିଲେ "ତିନି ଗଭର୍ଣ୍ଣମେଣ୍ଟର ଶିକ୍ଷା କାର୍ଯ୍ୟ ଏକତ୍ର ପ୍ରକାଶ କରିବାର କୌଣସି ଚେଷ୍ଟା ହୋଇନାହିଁ ବୋଲି କେଉଁଠାରେ କି ରୂପେ କେଉଁଠାରେ କାର୍ଯ୍ୟ ଚଳୁଅଛି ଜାଣିବା କଠିନ । ××× ଯେଉଁ ସ୍ଥାନରେ ଶିକ୍ଷା ବିଷୟରେ ସମୁଦାୟ ସ୍ଥାନ ଏକ କର୍ମଚାରୀ ଅଧୀନ ହେବା ଉଚିତ । ନିତାନ୍ତ ପକ୍ଷରେ ତିନିସ୍ଥାନର ଅବସ୍ଥା ଜାଣିବାର ଗୋଟିଏ ଉପାୟ ହେଉ, ତାହାହେଲେ ଅମ୍ଭମାନଙ୍କର ଉଦ୍ଦେଶ୍ୟ ସାଧିତ ହେବ" ।

କର୍ମଯୋଗୀ ସ୍ପଷ୍ଟ ଅନୁଭବ କରିଥିଲେ ଯେ, ଭାଷାରକ୍ଷା ଓ ତାର ଉନ୍ନତି ହିଁ ଉତ୍କଳୀୟ ମାନଙ୍କର ସର୍ବବିଦ୍ଧ ଉନ୍ନତିର କାରଣ ହେବ । ପ୍ୟାରି ମୋହନ ମଧ କହିଥିଲେ "ସମ୍ବଲପୁର ଏବଂ ଗଞ୍ଜାମ ଯେବେ କଟକ ସଙ୍ଗେ ମିଶିଯାଏ ତେବେ ସମାଲୋଚିତ ଏ ଅଭାବ (ପାଠ୍ୟ ପୁସ୍ତକର) ଅବଶ୍ୟ ଦୂର ହୋଇଯିବ । ××× ଯେ ପର୍ଯ୍ୟନ୍ତ ଏ ତିନୋଟି ଜିଲ୍ଲା ସାଧାରଣ ଗଭର୍ଣ୍ଣମେଣ୍ଟ ଅଧୀନ ହୋଇନାହିଁ ସେ ପର୍ଯ୍ୟନ୍ତ କାହାରି ଉନ୍ନତି ହେବ ନାହିଁ । ଏହି ଘଡିସନ୍ଧି

ମୁହୂର୍ତ୍ତରେ କର୍ମଯୋଗୀ 'ଉଲ୍ଲାସନୀ' ସଭାର ସଦସ୍ୟ ଓ ଜନସାଧାରଣ ମାନଙ୍କୁ ପାଠ୍ୟ ପୁସ୍ତକ ରଚନା କରିବା ଓ ଓଡ଼ିଆରେ କିଛି କିଛି ଲେଖିବା ପାଇଁ ଅନୁରୋଦ କରିଥିଲେ । 'ଦୀପିକା' ର ସଂପାଦକ କର୍ମଯୋଗୀ ଗୌରୀଶଙ୍କର 'ବାହିକା' ସଂପାଦକ ଫକୀର ମୋହନ ଓ 'ଉତ୍କଳ ପୁତ୍ର' ସଂପାଦକ ପ୍ୟାରୀମୋହନ ପାଠ୍ୟ ପୁସ୍ତକ ପ୍ରକାଶ ପାଇଁ କେବଳ ଆବେଦନ ଜଣାଇ ନଥିଲେ, 'ଦୀପିକା' ସଂପାଦକ ଓଡ଼ିଆ ପ୍ରାଚୀନ ପୋଥି ଗୁଡ଼ିକର ପ୍ରକାଶନ ସହିତ ଅନ୍ୟାନ୍ୟ ପାଠ୍ୟ ପୁସ୍ତକ ମାନଙ୍କର ପ୍ରକାଶନରେ ଉତ୍ସାହିତ କରିଥିବାବେଳେ ପ୍ୟାରୀ ମୋହନ "ଓଡ଼ିଶା ଇତିହାସ" ଏବଂ ଫକୀର ମୋହନ "ଭାରତ ବର୍ଷର ଇତିହାସ" ପ୍ରଭୃତି ପୁସ୍ତକ ମାନ ମଧ୍ୟ ପ୍ରଣୟନ କରିଥିଲେ ।

## (ଖ) ଦେଶ ମିଶ୍ରଣର ପ୍ରସ୍ତୁତି ପର୍ବ

ଓଡ଼ିଶାର ଭାଷାରକ୍ଷା ଆନ୍ଦୋଳନରେ ବିଜୟ ଲାଭକରି ମୁମୂର୍ଷ ଓଡ଼ିଆ ଜାତି ପ୍ରାଣରେ ଏକ ନୂତନ ପ୍ରାଣ ପ୍ରବାହ ସଂଚରିତ ହୋଇଥିଲା । ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ଓଡ଼ିଆ ମାନେ ପାଠ୍ୟ ପୁସ୍ତକ ମାଧ୍ୟମରେ ମନୋ ନିବେଶ କଲେ । ସାହିତ୍ୟ ମାଧ୍ୟମରେ ଭାଷାବିକାଶର ପଥରେ ଏକ ଅନ୍ତରାୟ ସୃଷ୍ଟି ହୋଇଥିଲା । ସେମାନଙ୍କର ଶାସନ ଗତ ଅନୈକ୍ୟ ଏବଂ ସେମାନଙ୍କର ବିଛିନ୍ନାବସ୍ଥା, ଏହାକୁ ଦୂର କରିବା ନିମିତ୍ତ କର୍ମଯୋଗୀ ଗୌରୀ ଶଙ୍କର ଙ୍କର ପ୍ରଥମ ପ୍ରଚେଷ୍ଟା ସ୍ମରଣ ଯୋଗ୍ୟ । ଗଞ୍ଜାମର ଅନେକ ଅଞ୍ଚଳ ମାଡ୍ରାସ ପ୍ରେସିଡେନସି ସହିତ ସଂଯୁକ୍ତ ହୋଇଥିବାରୁ ଓଡ଼ିଆ ଭାଷା ଭାଷୀ ଲୋକମାନେ ଭାଷାଗତ ଅସୁବିଧା ଅନୁଭବ କରୁଥିଲେ । ଉତ୍କଳ ଦୀପିକା ଅନୁସାରେ ୧୮୬୯ ମସିହାରେ ସ୍କୁଲ ଏବଂ କଚେରୀ ମାନଙ୍କରେ ଓଡ଼ିଆ ଭାଷା ପ୍ରଚଳନ କରାଇବାକୁ କର୍ମଯୋଗୀ ପ୍ରଥମେ ସରକାରଙ୍କ ଠାରେ ଆବେଦନ କରିଥିଲେ । ଏହା ପରେ ପରେ ୧୮୭୦ ମସିହାରେ ସେପ୍ଟେମ୍ବର ମାସରେ ଦକ୍ଷିଣ ଓଡ଼ିଶାର ଘୁମୁସର ତାଲୁକ ରସୁଲକୋଣ୍ଡା ଠାରେ ଗଞ୍ଜାମର ପାଲୁର, ହୁମା, ଗଞ୍ଜା, ବିଚଳି, ଖଲିକୋଟ, ଆଠଗଡ଼, ସେରଗଡ଼, ଘୁମୁସର, ଧରାକୋଟ, ସାନଖେମୁଣ୍ଡି, ବଡଖେମୁଣ୍ଡି, ପାଇକା, ଟିକିଲି, ପ୍ରଭୃତି ଅଞ୍ଚଳରୁ ଲୋକମାନେ ଗୋଟିଏ ସଭାରେ ଏକତ୍ରୀତ ହୋଇ ଗଞ୍ଜାମ ଅଞ୍ଚଳ ଓଡ଼ିଶାରେ ମିଶିବା ପାଇଁ ଦାବୀ ଜଣାଇ ଥିଲେ । ଓଡ଼ିଆ ଭାଷାର ସୁରକ୍ଷା ଓ କଚେରୀ ତଥା ସ୍କୁଲ ମାନଙ୍କରେ ଓଡ଼ିଆ ଭାଷାର ପ୍ରଚଳନ ଆବଶ୍ୟକତାକୁ ଅନୁଭବ କରି ସେମାନେ ଓଡ଼ିଶା ସହିତ ମିଶିବାକୁହିଁ ଦାବୀ କରିଥିଲେ ।

୧୮୫୫ ମସିହା ବେଳକୁ ସମ୍ବଲପୁର ମଧ୍ୟପ୍ରଦେଶ ସହିତ ଯୁକ୍ତ ଥିଲା । ଏହାର ମିଶ୍ରଣ ପାଇଁ ଜନଜାଗରଣ ସୃଷ୍ଟି ହେବା ପୂର୍ବରୁ ଇଂରେଜ ଶାସକ ତାଙ୍କର ନିଜସ୍ୱ ମତ ପ୍ରକାଶ କରିଥିଲେ । ଭାଷା ଓ ଜାତିଗତ ସମାନତା ଦୃଷ୍ଟିରୁ, କଟକ ଓ ସମ୍ବଲପୁର ଯାତାୟତ ଓ ବାଣିଜ୍ୟ ବ୍ୟବସାୟ ଦୃଷ୍ଟିରୁ ଓ ଅତି ନିକଟ ବର୍ତ୍ତିତା ଦୃଷ୍ଟିରୁ ଜଣେ ଉଚ୍ଚ ପଦସ୍ଥ ସରକାରୀ କର୍ମକର୍ତ୍ତା ରିକେଟ୍‌ସ ସାହେବ ଲେଖିଥିଲେ, "ସମ୍ବଲପୁର ଅଧିବାସୀ ମାନଙ୍କ ପକ୍ଷରୁ ଯଦି କୌଣସି ଆପତ୍ତି ନଥାଏ, ତେବେ ମୋ ମତରେ ସମ୍ବଲପୁର ଓଡ଼ିଶା ସହିତ ମିଶିବା ଉଚିତ" (ଉତ୍କଳ ଦୀପିକା ୨୨-୧୦-୧୮୭୦) ୧୮୬୮ ସମିହାରେ ଜର୍ଜ୍ଜ ରେସନୀ ସାହେବ କଟକ ଗୋଟିଏ ସ୍ୱାଧୀନ ପ୍ରଦେଶ ହୋଇ ପାରେ ବୋଲି ମତଦେଇଥିଲେ । କିନ୍ତୁ ସେ ପର୍ଯ୍ୟନ୍ତ ଓଡ଼ିଆ ଭାଷାଭାଷୀ ମାନଙ୍କର ଏକତ୍ରୀ କରଣ ପାଇଁ କୌଣଷି ସଚେତନତା ଓଡ଼ିଆ ମାନଙ୍କ ପ୍ରାଣରେ ସୃଷ୍ଟି ହୋଇ ନଥିଲା । କିନ୍ତୁ ନ'ଅଙ୍କ ଦୁର୍ଭିକ୍ଷ ପରେ ବଙ୍ଗୀୟ କର୍ମଚାରୀମାନଙ୍କର ଓଡ଼ିଆ ଭାଷା ଉଚ୍ଛେଦ ଚକ୍ରାନ୍ତକୁ ବିରୋଧ କରି ଦେବା ମିଶ୍ରଣର ଆବଶ୍ୟକତା ଉପରେ ଓଡ଼ିଶାର ଶିକ୍ଷିତ ଶ୍ରେଣୀ ସଚେତନ ହୋଇ ଉଠିଲେ ।

## ସ୍ୱତନ୍ତ୍ର ଓଡ଼ିଶା ଗଠନ

୧୯୦୩ ମସିହାରେ ଓଡ଼ିଶାର ପଶ୍ଚିମାଞ୍ଚଳ ଓ ଦକ୍ଷିଣାଞ୍ଚଳ ସହିତ ପୂର୍ବାଞ୍ଚଳର ମିଶ୍ରଣ ପାଇଁ ଯେଉଁ ଧାରାବାହିକ ଅନ୍ଦୋଳନ ଚାଲିଲା ତାର ପ୍ରକୃତ ମାଧ୍ୟମ ଥିଲା, 'ଉତ୍କଳ ସମ୍ମିଳନୀ' ଏବଂ ତାର ବିଜ ବପନ କରାଯାଇଥିଲା ଓଡ଼ିଶାର ଭାଷାରକ୍ଷା ଆନ୍ଦୋଳନ ଭିତରେ । ଏହି ଭାଷା ଆନ୍ଦୋଳନରେ ଜନ ସାଧାରଣଙ୍କ ପ୍ରତିକ୍ରିୟାକୁ ଉପଲବ୍ଧିକରି କମିଶନର କୁକ୍‌ସ ସାହେବ ଗଞ୍ଜାମ ଓ ସମ୍ବଲପୁରକୁ କଟକ ସହିତ ମିଶ୍ରଣ କରାଇ ଦେବାର ପ୍ରସ୍ତାବକୁ ଅନୁମୋଦନ କରିଥିଲେ । ଏହାପରେ ୧୯୦୨ ମସିହାରେ ବ୍ରହ୍ମପୁରଠାରେ ଗଠିତ ହୋଇଥିଲା 'ଓଡ଼ିଆ ଜାତି ସମିତି' ୧୯୦୩ ଏପ୍ରିଲ ମାସରେ ଅନୁଷ୍ଠିତ ହୋଇଥିଲା 'ଉତ୍କଳ ସମ୍ମିଳନୀ'ର ପ୍ରଥମ ଅଧିବେଶନ । ଗଞ୍ଜାମକୁ କଟକ ସହିତ ମିଶ୍ରଣ କରିବା ପାଇଁ ପ୍ରସ୍ତାବ ଗୃହୀତ ହୋଇଥିଲା 'ଉତ୍କଳ ସମ୍ମିଳନୀ' ର ପ୍ରଥମ ଅଧିବେଶନରେ । କିନ୍ତୁ ସ୍ୱତନ୍ତ୍ର ଉତ୍କଳ ଗଠନ ସମ୍ଭବ ହୋଇଥିଲା ବହୁ ବର୍ଷ ପରେ । କିନ୍ତୁ ଏହି ବିପୁଳ ଉଦ୍ୟୋଗର କେବଳ ଆଭିମୁଖ୍ୟ ଥିଲା ତାର ଭାଷା ସୁରକ୍ଷା । ସେ ଯାହାହେଉ ୧୯୦୩ ମସିହା ବେଳକୁ ଓଡ଼ିଶା ବୋଲି କିଛିନଥିଲା । ଓଡ଼ିଶା କହିଲେ କଟକ, ପୁରୀ ଏବଂ ବାଲେଶ୍ୱରକୁ ହିଁ ବୁଝାଉଥିଲା । ଭାଷା ଆନ୍ଦୋଳନ ବିଷୟରେ ଆମେ ପୂର୍ବରୁ କିଞ୍ଚିତ୍ ଭାବେ ଆଲୋଚନା କରିଛେ । ଏହା ଉପରେ

ଅଧିକ ଆଲୋଚନା କରିବା ଅନାବଶ୍ୟକ । ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଓଡ଼ିଶାର ମହନୀୟ ବ୍ୟକ୍ତି ମାନଙ୍କ ମନରେ ଅଶେଷ ଦେଶ ପ୍ରେମର ଉଷ୍ମତା ଦେଖାଦେଇଥିଲା । ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ସେମାନେ ଖୋଲା ଖୋଲି ଭାବେ ଆନ୍ଦୋଳନ ଆରମ୍ଭ କରିଥିଲେ । ସେହି ସ୍ମରଣୀୟ ନେତୃବୃନ୍ଦଙ୍କ ମଧ୍ୟରେ ଥିଲେ ନୀଳମଣି ବିଦ୍ୟାରତ୍ନ, ରାଜା ବୈକୁଣ୍ଠ ନାଥ ଦେ, ଶ୍ୟାମସୁନ୍ଦର ରାଜଗୁରୁ, ମଧୁସୁଦନ ଦାସ, ପଲ୍ଲୀକବି ନନ୍ଦକିଶୋର ବଳ, ବିଶ୍ୱନାଥ କର, ଗୋପବନ୍ଧୁ ଦାସ, ଗୌରୀଶଙ୍କର ରାୟ, ହରିହର ମର୍ଦ୍ଦରାଜ, ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ଇତ୍ୟାଦି ଅନେକ । ୧୯୦୨ ମସିହାରେ ନିଳମଣୀ ବିଦ୍ୟାରତ୍ନଙ୍କ ଆୟୋଜନ କ୍ରମେ ରମ୍ଭା ଠାରେ ପ୍ରଥମେ ଗଞ୍ଜାମ ଓଡ଼ିଶା ସମ୍ମିଳନୀ ଆହ୍ୱାନ କରାଯାଇଥିଲା । ସେହି ୧୯୦୨ ମସିହା ଡ଼ିସେମ୍ବର ୧୫ ତାରିଖ ଦିନ ବାଲେଶ୍ୱର ରାଜା ବୈକୁଣ୍ଠ ନାଥ ଦେ ଭାରତର ତତ୍‌କାଳୀନ ବଡ଼ଲାଟ ଲର୍ଡ କର୍ଜନଙ୍କ ନିକଟରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ଏକ ସ୍ମାରକ ପତ୍ର ପଠାଇ ଥିଲେ । ଏହାଥିଲା ପ୍ରଥମ ବେସରକାରୀ ସ୍ମାରକ ପତ୍ର । ୧୯୦୩ ମସିହାରେ ଗଞ୍ଜାମ ଜାତୀୟ ସମିତି ଗଠନ କରାଯାଇଥିଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନକୁ ଅଧିକରୁ ଅଧିକ ପ୍ରଭାବଶାଳୀ କରିବା ପାଇଁ ଉଦ୍ୟମ କରାଯାଇଥିଲା ।

ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ବହୁ ଦେଶପ୍ରେମୀ, କବି, ଗାଳ୍ପିକ ଏବଂ ଲେଖକ ଇତ୍ୟାଦିଙ୍କର ବହୁ ଅବଦାନ ଥିଲେ ମଧ୍ୟ ସେଥି ମଧ୍ୟରୁ ମଧୁସୁଦନ ଦାସଙ୍କର ଅବଦାନ ଥିଲା ସ୍ୱତନ୍ତ୍ର । କ'ଣ ବା ତାଙ୍କ ବିଷୟରେ ଲେଖିବା ? ତାଙ୍କ ବିଷୟରେ ଯେତେ ଲେଖିଲେ ବି ସରିବନି । ସେହି ମହାନ ପୁରୁଷ ୧୮୪୮ ମସିହା ଏପ୍ରିଲ ୨୮ ତାରିଖରେ କଟକ ଜିଲ୍ଲା ସତ୍ୟଭାମାପୁର ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଯାହାଙ୍କ ଜୀବନ ଚରିତ ଏକ ପୁସ୍ତକର ଅଧିକାରୀ, ଆମେ ତାକୁ କେଇ ପାରାରେ ସମାପ୍ତି କରିବା ଅବିଧେୟ ହେବ । ତାଙ୍କ ଜୀବନ ଚରିତ ଏବଂ ଓଡ଼ିଶା ଏହି ବିଷୟରେ ଲେଖିବା ମୋର ଧୃଷ୍ଟତା ମାତ୍ର । ଯାହାହେଉ, ତାଙ୍କର ଉଚ୍ଚ ଶିକ୍ଷା ସଂପନ୍ନ ହୋଇଥିଲା କଲିକତା ନଗରୀରେ । ସେ ଥିଲେ ଓଡ଼ିଶାର ପ୍ରଥମ ଗ୍ରାଜୁଏଟ୍ ଏବଂ ପ୍ରଥମ ଏଲ.ଏଲ୍.ବି. । ସେ ଥଲେ ଜଣେ ଏକନିଷ୍ଠ କର୍ମୀ । ସେ ଜୀବନ ଯନ୍ତ୍ରଣାରେ କେବେହେଲେ ଲକ୍ଷଚ୍ୟୁତ ହେଇନାହାନ୍ତି । ଦୁଃଖ ଓ ଗ୍ଲାନି ମଧ୍ୟରେ ସେ ଗାଇ ଚାଲିଥିଲେ ଜୀବନ ସଂଗୀତ । ସେହି ବେସୁରା ରାଗିଣୀରେ ହିଁ ଥିଲା ତାଙ୍କ ଜୀବନର ଆନନ୍ଦ । ଖ୍ରୀଷ୍ଟ ଧର୍ମର ପ୍ରବକ୍ତା ଯୀଶୁଖ୍ରୀଷ୍ଟ ପ୍ରେମ ଓ ଅହିଂସାର ବାଣୀ ତାଙ୍କୁ ଖ୍ରୀଷ୍ଟଧର୍ମ ପ୍ରତି ଆକୃଷ୍ଟ କରିଥିଲା । ଫଳରେ ସେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥଲେ । ସେ ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ

କରି ଥିଲେ ମଧ୍ୟ ହିନ୍ଦୁ ଧର୍ମ ପ୍ରତି ତାଙ୍କର ବିଦ୍ୱେଷ ଭାବ ନଥିଲା । ଓଡ଼ିଶାର ଗୋମାଂସ ଏବଂ ରବିବାର ଚର୍ଚ୍ଚ ରାଜନୀତିକୁ ସେ ନାପସନ୍ଦ କରୁଥିଲେ । ତେଣୁ ଏହା ବିରୁଦ୍ଧରେ ହୋଇ ଥିବା ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ଏଥିପାଇଁ ସେ ଖ୍ରୀଷ୍ଟିଆନ ସମାଜ ଦ୍ୱାରା ସମାଲୋଚିତ ହୋଇଥିଲେ ସତ୍ୟ, କିନ୍ତୁ ତାଙ୍କ ଜୀବନର ପ୍ରତି ମୁହୂର୍ତ୍ତରେ ଜଗନ୍ନାଥ ହିଁ ଥିଲେ ତାଙ୍କ ପ୍ରେରଣାର ଉତ୍ସ ।

ବଙ୍ଗୀୟ ମାନଙ୍କର ଚକ୍ରାନ୍ତ ଏବଂ ବ୍ରିଟିଶ୍ ସରକାରଙ୍କର ଘୃଣ୍ୟ ଉଦ୍ୟମରେ ଜଗନ୍ନାଥ ମନ୍ଦିର ଠାରୁ ଗଜପତିଙ୍କୁ ଅଲଗା କରିବାର ପ୍ରଚେଷ୍ଟା ବହୁଦିନ ଧରି ଚାଲିଥିଲା । ଏହାକୁ ସମ୍ମୁଖିନ ହେବାପାଇଁ ସେ ଯଦି ବିନା ପଇସାରେ ପୁରୀ ରାଜ ପରିବାର ପାଇଁ ଓକିଲାତି କରିବାକୁ ଆଗେଇ ଆସିନଥାନ୍ତେ ତେବେ ଶ୍ରୀ ଜଗନ୍ନାଥ ମନ୍ଦିର ପରିଚାଳନା ବ୍ରିଟିଶ ସରକାରଙ୍କ ହାତକୁ ସବୁଦିନ ପାଇଁ ଚାଲିଯାଇଥାନ୍ତା ଓ ପୁରୀ ରାଜ ପରିବାରର ସତ୍ତା ଆଜି ନଥାନ୍ତା । ଏହିପରି ପୁରୀ ଗଜପତି ରାଜ ପରିବାରର ଦୁର୍ଦ୍ଦିନରେ ମଧୁବାବୁ ଆଗେଇ ଆସି ଶ୍ରୀମନ୍ଦିର ବିଷୟରେ ଅନେକ ତଥ୍ୟ ସଂଗ୍ରହ କରି ଇଂରେଜ ସରକାର ବିରୁଦ୍ଧରେ ଲଢିଥିଲେ । ଫଳରେ ନାବାଳକ ଗଜପତି ପୁରୀ ମନ୍ଦିର ପରଚାଳନା ପାଇଁ ସ୍ୱୀକୃତି ପାଇଲେ ଏବଂ ଶ୍ରୀମନ୍ଦିର ପୁରୀ ଗଜକତିଙ୍କର ତତ୍ୱାବଧାନରେ ରହିଲା । ଓଡ଼ିଆ ଜାତିର ଇତିହାସରେ ଏହା ସବୁଦିନ ପାଇଁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧହୋଇ ରହିବ । ଏହା ଥିଲା ୧୮୮୭ ମସିହା ଘଟଣା । ତେଣୁ ସ୍ୱତନ୍ତ୍ର ଓଡ଼ିଶା ଗଠନ ସମୟରେ ତାଙ୍କ ସାହିତ୍ୟରେ ଉଦ୍‌ଘୋଷିତ ହୋଇଥିଲା ।

**"କୋଟିଏ ଓଡ଼ିଆ ଗୋଟିଏ ସ୍ୱରରେ ଡାକ ତ୍ରାହି ଜଗନ୍ନାଥ,**
**ଅନ୍ଧାର ଘୁଞ୍ଚିବ ନିଶ୍ଚୟ ଦେଖିବ ଜାତିର ଉନ୍ନତି ପଥ ।"**

ବୋଧହୁଏ ଏହି ସମୟଠାରୁ ତଥା ଜଗନ୍ନାଥଙ୍କର ପ୍ରେରଣାରେ ତାଙ୍କ ମନରେ ସୃଷ୍ଟି ହୋଇଥିଲା ଜାତୀୟ ପ୍ରେରଣା । ବିଚ୍ଛିନ୍ନାଞ୍ଚଳରେ ଲୋକମାନଙ୍କ ଦୁର୍ଦ୍ଦଶା ଦେଖି ଜାତୀୟତା ପ୍ରୀତିରେ ଉଦ୍‌ବୋଧ ହୋଇ ସେ ଗୋଟିଏ ସମ୍ମିଳନୀ ଗଠନ କରିଥିଲେ । ଏହି ସମ୍ମିଳନୀର ଖୋଲା ଅଧିବେଶନ ଅନୁଷ୍ଠିତ ହୋଇଥିଲା କଟକର ଇଦ୍‌ଗା ପଡିଆରେ । ରାଜା ରାମଚନ୍ଦ୍ର ଭଞ୍ଜ ଏଥିରେ ପୌରହିତ୍ୟ କରିଥିଲେ । ଏଥିରେ ଯୋଗଦେଇଥିବା ପ୍ରମୁଖ ନେତାମାନେ ହେଲେ ଖଲିକୋଟ ରାଜା ହରିହର ମର୍ଦ୍ଦରାଜ, ଗୋପବନ୍ଧୁ ଦାସ ଏବଂ ଗୌରିଶଙ୍କର ରାୟ ପ୍ରଭୃତି । ଉକ୍ତ ସମ୍ମିଳନୀରେ ତାଙ୍କ କଣ୍ଠରୁ ଉଦ୍‌ଘୋଷିତ ହୋଇଥିଲା ।

"ଏହି ସମ୍ମିଳନୀ ଜାତି ପ୍ରାଣ ସିନ୍ଧୁ କୋଟି ପ୍ରାଣ ବିନ୍ଦୁ ଧରେ
ତୋର ପ୍ରାଣ ବିନ୍ଦୁ ମିଶାଇ ଦେ ଭାଇ ଡେଇଁ ପଡି ସିନ୍ଧୁ ନୀରେ"

ତାଙ୍କ ଉଜସ୍ୱୀନି ଭାଷଣରେ ଉପସ୍ଥିତ ଜନତା ମନ୍ତ୍ରମୁଗ୍ଧ ହୋଇଯାଇ ଥିଲେ । ଓଡ଼ିଆ ଭାଷା ଭାଷୀ ଅଞ୍ଚଳର ଦାବୀକୁ ଏପରିଭାବେ ଉପସ୍ଥାପନ କରାଯାଇଥିଲା ଯେ ୧୯୦୫ ମସିହାରେ ସମ୍ବଲପୁରକୁ ଓଡ଼ିଆ ସହିତ ମିଶ୍ରଣ କରାଯାଇଥିଲା । ଓଡ଼ିଆ ଭାଷା ଭାଷୀ ଅଞ୍ଚଳର ଏକତ୍ରୀ କରଣ ଦିଗରେ ଏହାଥିଲା ପ୍ରଥମ ସଫଳ ପଦକ୍ଷେପ । 'ଉତ୍କଳ ସଭା' ଠାରୁ ଆରମ୍ଭ କରି 'ଭାରତୀୟ ଜାତୀୟ କଂଗ୍ରେସ' ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ନିଜକୁ ସାମିଲ କରିଥିଲେ । ୧୯୦୩ ମସିହାରେ କଲିକତାରେ ହୋଇଥିବା 'ଭାରତୀୟ ଜାତୀୟ କଂଗ୍ରେସ ଅଧିବେସନ'ରେ ମଧୁବାବୁ ଯୋଗ ଦେଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନିମନ୍ତେ ଦାବି ଜଣାଇଥିଲେ । କିନ୍ତୁ ଜାତୀୟ କଂଗ୍ରେସ ଏହାକୁ ଅଗ୍ରାହ୍ୟ କରି ଦେଇଥିଲେ ଏବଂ କହିଥିଲେ ସ୍ୱାଧୀନତା ପରେ ତାହା ଦେଖାଯିବ । ତେଣୁ ନିଜର ସ୍ୱାଭିମାନ ଦୃଷ୍ଟିରୁ ସେ କଂଗ୍ରେସରୁ ଇସ୍ତଫା ଦେଇ ଉତ୍କଳ ସମ୍ମିଳନୀକୁ ଗୁରୁତ୍ୱ ଦେଇଥିଲେ । ବିନା କଂଗ୍ରେସ ସହାୟତାରେ ସେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କରିବା ପାଇଁ ବଦ୍ଧ ପରିକରଥିଲେ । ଫଳରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ଅଧିକରୁ ଅଧିକ ଜନ ଜାଗରଣ ସୃଷ୍ଟି ହେଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ମହାନ ଲକ୍ଷ ନେଇ ସେ କଂଗ୍ରେସ ଠାରୁ ନିଜକୁ ଦୂରେଇ ରଖି ଉତ୍କଳ ସମ୍ମିଳନୀ ଗଠନ କରିଥିଲେ । ୧୯୧୧ ମସିହା ଜାନୁୟାରୀ ମାସରେ ଖଲ୍ଲିକୋଟ ଠାରେ ଓଡ଼ିଶା ସହିତ ଗଞ୍ଜାମର ମିଶ୍ରଣ ପାଇଁ ଏକ ଜନଆନ୍ଦୋଳନର ସୂତ୍ର ପାତ ହୋଇଥିଲା । ୧୯୧୨ ମସିହା ଜାନୁୟାରୀ ମାସରେ ବାଲେଶ୍ୱର ଠାରେ ମଧ ଜାତୀୟ ସମ୍ମିଳନୀ ଜରିଆରେ ଉତ୍କଳ ପ୍ରଦେଶ ଗଠନ ପାଇଁ ଦୃଢଦାବୀ କରାଯାଇଥିଲା । ସେହି ବର୍ଷ ମାର୍ଚ୍ଚମାସରେ ବ୍ରହ୍ମପୁରରେ ହୋଇଥିବା ଉତ୍କଳ ସମ୍ମିଳନୀର ବାର୍ଷିକ ଅଧିବେସନରେ ଗଞ୍ଜାମ ମିଶ୍ରଣ ପାଇଁ ଏକ ପ୍ରସ୍ତାବ ଗୃହୀତ ହେଲା । କିନ୍ତୁ ଏ ପ୍ରସ୍ତାବ ଉପରେ ଇଂରେଜ ସରକାର କୌଣସି ପ୍ରତିକାର କରିନଥିଲେ । ଆହୁରି ଦୁଃଖର ବିଷୟ ୧୯୦୫ ମସିହାରୁ ବଙ୍ଗ ବିଭାଜନ କରିବା ସମୟରେ ଓଡ଼ିଶାକୁ ବେଙ୍ଗଲ ପ୍ରେସିଡେନ୍ସିରୁ ନେଇ ବିହାର ସହିତ ସଲଗ୍ନ କରାଇଲେ । ବିହାର ଓଡ଼ଶା ନାମରେ ଏକ ନୂତନ ପ୍ରଦେଶ ଗଠନ କରି ଓଡିଶାକୁ ବିହାର ଶାସନାଧିନ କରି ରଖାଗଲା । ସେହି ସମୟରେ ଭାରତର ଭାଇସରାୟ ଲର୍ଡ କର୍ଜନ ନିଜ ପଦବୀର ଅବ୍ୟାହତି ନେଲାପରେ ଇଂଲଣ୍ଡ ସ୍ଥିତ ଲର୍ଡସ ସଭାରେ କହିଥିଲେ ଯେ ବିହାର ସହିତ ଓଡ଼ିଶାର ମିଶ୍ରଣ ଏକ ମସ୍ତ ବଡ ଭୂଲ, ଏହା ସ୍ଥାୟୀ ଭାବରେ ନରହିବା ଉଚିତ ।

ଭବିଷ୍ୟତରେ ଏହା ଓଡ଼ିଶା ମିଶ୍ରଣରେ ସମସ୍ୟା ସୃଷ୍ଟି କରବ ବୋଲି ଭାବି ବିହାର ସରକାର ଏହି ମିଶ୍ରଣକୁ ନାପସନ୍ଦ କରିଥିଲେ ।

ଏହି ସମୟ ଥିଲା ସ୍ୱତନ୍ତ୍ର ଓଡ଼ିଶା ଗଠନର ଏକ ଘଡି ସନ୍ଧି ମୁହୂର୍ତ୍ତ । ସେତେବେଳକୁ ଓଡ଼ଶାର ବିଭିନ୍ନ ସ୍ଥାନରେ ସଭା ସମିତି ହୋଇ ଜନ ଜାଗରଣ ସୃଷ୍ଟି ହେଉଥାଏ । ଓଡ଼ିଶାର ବିଭିନ୍ନ ସ୍ଥାନରେ ସଭା ସମିତି ମାନ କରାଯାଇ ଲୋକ ମାନଙ୍କୁ ମାନସିକ ପ୍ରସ୍ତୁତି କରାଯାଉଥିଲା । ଏହି ଉତ୍କଳ ସମ୍ମିଳନୀ ଦ୍ୱାରା ଆକୃଷ୍ଟ ହୋଇ ୧୯୧୦ ମସିହାରେ ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଏହି ଆନ୍ଦୋଳନରେ ଯୋଗଦେଇଥିଲେ । ସେହି ବର୍ଷ ପାରଳାଖେମୁଣ୍ଡିରେ ଉତ୍କଳ ସମ୍ମିଳନୀର ଏକ ଅଧିବେଶନ ଅନୁଷ୍ଠିତ କରାଯାଇଥିଲା । ୧୯୨୦ ମସିହାରେ ଭାରତୀୟ ଜାତୀୟ କଂଗ୍ରେସରେ ଏକ ଅଧିବେଶନ ନାଗପୁର ଠାରେ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନରେ ଗୋପବନ୍ଧୁଙ୍କ ସହ ଓଡ଼ିଶାର ଅନେକ ନେତା ଯୋଗଦେଇଥିଲେ । ଏହି ଅଧିବେଶନରେ ଗୋପବନ୍ଧୁ ମହାତ୍ମା ଗାନ୍ଧୀଙ୍କୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ବା ଭାଷାଭିନ୍ନ ପ୍ରଦେଶ ଗଠନ ପାଇଁ ପ୍ରସ୍ତାବ ଆଗତ କରିଥିଲେ । ଗୋପବନ୍ଧୁଙ୍କର ଏହି ପ୍ରସ୍ତାବରେ ଗାନ୍ଧୀ ସମ୍ମତି ପ୍ରଦାନ କରିଥିଲେ । ଫଳରେ ଗୋପବନ୍ଧୁ ଉତ୍କଳ ସମ୍ମିଳନୀରେ ସକ୍ରିୟ ଅଂଶ ଗ୍ରହଣ କରି ଲୋକମାନଙ୍କ ମନରେ ଓଡ଼ିଆତ୍ୱ ଭାବନା ସଂଚାର କରାଇ ପାରିଥିଲେ ।

ଉତ୍କଳ ସମ୍ମିଳନୀର ପ୍ରବଳ ଚାପ ଫଳରେ ୧୯୨୪ ମସିହାରେ ବିଛିନ୍ନତା ବାଦୀ ଓଡ଼ିଆ ଭାଷା ଭାଷୀ ଅଞ୍ଚଳରେ ଜନମତକୁ ଉପଲବ୍ଧି କରିବା ପାଇଁ ଇଂରେଜ ସରକାର ଏକ କମିଟି ଗଠନ କଲେ । ରାଜା କୃଷ୍ଣଚନ୍ଦ୍ର ଗଜପତି ଏହି କମିଟି ଆଗରେ ବହୁ ଐତିହାସିକ ତଥ୍ୟ ପ୍ରଦାନ କରି ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଓଡ଼ିଶା ସହିତ ମିଶାଇବା ପାଇଁ ଦୃଢ଼ଯୁକ୍ତି ଉପସ୍ଥାପନ କରିଥିଲେ । ଏହି ଯୁକ୍ତି ଦ୍ୱାରା ସନ୍ତୁଷ୍ଟ ହୋଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନିମନ୍ତେ ସୁପାରିଶ କରିଥିଲେ, କିନ୍ତୁ ମାନ୍ଦ୍ରାଦ ସରକାର ଏହାସହିତ ସହମତି ପ୍ରକାଶ କରିନଥିବାରୁ ଏହା କାର୍ଯ୍ୟକାରୀ ହୋଇ ପାରିନଥିଲା । ଏହାର କିଛି ସଂସ୍କାର ଆଣିବା ପାଇଁ ଏକ କମିଟି ଗଠନ କରିଥିଲେ । ଏହି କମିଟି ଜନ୍ ସାଇମନଙ୍କ ଅଧକ୍ଷତାରେ କିଛି ଇଂରେଜ ସଦସ୍ୟଙ୍କୁ ନେଇ ଗଠନ ହୋଇଥିବାରୁ ଏହାକୁ 'ସାଇମନ କମିଶନ' କୁହାଯାଉ ଥିଲା । ଏହି କମିଟିରେ କୌଣଷି ଭାରତୀୟ ମନୋନୀତ ହୋଇ ନଥିବାରୁ ଭାରତୀୟ ଜାତୀୟ କଂଗ୍ରେସ ଏହାକୁ ବାସନ୍ଦ କରିଥିଲେ । ମାତ୍ର ଓଡ଼ଶାର କେତେଜଣ ନେତା ଏହାକୁ

ବିହାରର ପାଟଣା ଠାରେ ସ୍ୱାଗତ କରିଥିଲେ । ମଧୁବାବୁ ଥିଲେ  ଏକ କର୍ମନିଷ୍ଠ କର୍ମୀ । ଓଡ଼ିଶାର ସ୍ୱାର୍ଥ ପାଇଁ ମହାଭାରତୀୟ ସ୍ରୋତରେ ଭାସି ନଯାଇ ଓଡ଼ିଶାର ସ୍ୱାର୍ଥ ରକ୍ଷା ପାଇଁ କମିଶନଙ୍କୁ  ସହଯୋଗ କରିବା ଉଚିତ୍ ବୋଲି ମଧୁବାବୁ  ବାରମ୍ବାର କହୁଥିଲେ । ମଧୁବାବୁଙ୍କ ପରାମର୍ଶ କ୍ରମେ 'ଉତ୍କଳ ସମ୍ମିଳନୀ' ପକ୍ଷରୁ ବ୍ରଜ ସୁନ୍ଦର ଦାସ, ଗୋପାଳ ଚନ୍ଦ୍ର ପ୍ରହରାଜ, ବାରିଷ୍ଟର ବିଶ୍ୱନାଥ ମିଶ୍ର, ଭିକାରୀ ଚରଣ ପଟ୍ଟନାୟକ ପ୍ରମୁଖ ଅଣ କଂଗ୍ରେସ ନେତାମାନେ ସାଇମନ କମିଶନଙ୍କୁ ସ୍ୱାଗତକରି ସ୍ମାରକ ପତ୍ର ପ୍ରଦାନ କରିଥିଲେ । ମଧୁବାବୁ ଓ ଅଣ କଂଗ୍ରେସ ନେତାମାନେ କମିଶନଙ୍କୁ ଯେଉଁ ସହଯୋଗ କରିଥିଲେ, ଏହି ସୁପାରିସ ହିଁ ହେଉଛି ତାର ଫଳ । ସବୁଠାରୁ ବଡକଥା ହେଉଛି ସେତେବେଳେ ଓଡ଼ିଶାର ସହ ପାରଳା ଖେମୁଣ୍ଡି ବା ଜୟପୁରର ମିଶ୍ରଣ ହୋଇ ପାରିନଥିଲା । ଯାହାହେଉ ସାଇମନ କମିଶନ ସୁପାରିସ କରି ଥିଲେ ଯେ, "ଓଡ଼ିଆ ମାନଙ୍କର ଦାବୀ ଯୁକ୍ତି ଯୁକ୍ତ ଏବଂ  ସ୍ୱତନ୍ତ୍ର ପ୍ରଦେଶ ଗଠନ ସବୁ ଓଡ଼ିଆ ଭାଷାଭାଷୀ  ଅଞ୍ଚଳରେ ବାସ କରୁଥିବା ଲୋକଙ୍କର ସାର୍ବଜନୀନ ମତ" ।

ସ୍ୱତନ୍ତ୍ର ପ୍ରଦେଶ ଗଠନ ଦିଗରେ ଅନ୍ୟଏକ ପ୍ରଧାନ ସହାୟକ ଘଟଣା ହେଉଛି ୧୯୩୦ ମସିହାରେ ପ୍ରଥମ ଗୋଲଟେବୁଲ ବୈଠକ ଏବଂ ଏଥିରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଯୋଗଦାନ ।  ସେ ଲଣ୍ଡନକୁ ଯାଇ ଓଡ଼ିଆ ଭାଷାଭାଷୀ  ଅଞ୍ଚଳର ଦାବୀକୁ ଉପସ୍ଥାପନା କରି ଏକ ସ୍ମାରକ ପତ୍ର ପ୍ରଦାନ କରିଥିଲେ । ସେ ଓଡ଼ିଶାର ଅତୀତର ଘଟଣା ବହୁଳ ଇତିହାସ, ଅତୀତ ଗୌରବ ଏବଂ ସାଇମନ କମିଶନଙ୍କ ସୁପାରିଶ ବିଷୟରେ ପ୍ରାଞ୍ଜଳ ଭାବରେ ଗୋଲଟେବୁଲ ବୈଠକରେ ଉପସ୍ଥାପନ କରିଥିଲେ । ତା ସଙ୍ଗେ ସଙ୍ଗେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଯୁକ୍ତି ଯୁକ୍ତତା ଦର୍ଶାଇ ଥିଲେ । ଫଳରେ ଭାଷା ସୂତ୍ରରେ  ଏକ ପ୍ରଦେଶ  ଗଠନ କରିବାର ଆବଶ୍ୟକତା ଇଂରେଜ କର୍ତ୍ତୃପକ୍ଷ ଉପଲବ୍ଧି କରିପାରିଥିଲେ । ଏହାପରେ ପ୍ରସ୍ତାବିତ ପ୍ରଦେଶରେ ସୀମା  ନିର୍ଦ୍ଧାରଣ କରିବା ପାଇଁ ଭାରତ ସରକାରଙ୍କୁ ଆଦେଶ ଦେଇଥିଲେ । ଅବଶ୍ୟ ଭାରତୀୟ ଜାତୀୟ କଂଗ୍ରେସ ଏହାକୁ ବିରୋଧ କରି ଆସୁଥିଲେ ।

୧୯୩୧ ମସିହାରେ ଭାରତସରକାରଙ୍କର ପୂର୍ବତନ  ଘରୋଇ ସଚିବ ସାମୁଏଲ ଓଡ଼ନେଲ୍‌ଙ୍କୁ ନେଇ ଏକ କମିଟି ଗଠନ କରାଯାଇ ଥିଲା । ଏହାକୁ ଇତିହାସରେ ଓଡ଼ନେଲ କମିଟି  କୁହାଯାଏ । ଏହି କମିଟିକୁ ନିର୍ଦ୍ଦେଶ ଦିଆଯାଇଥିଲା ଯେ, ଯଦି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରାଯାଏ, ତେବେ ତିନୋଟି ବିଷୟ ଉପରେ ପର୍ଯ୍ୟବେକ୍ଷଣ କରି ଏକ

ବିବରଣୀ ସରକାରଙ୍କୁ ଦେବେ । ଏହି କମିଟି ଓଡ଼ିଶାର ବିଚ୍ଛିନ୍ନାଞ୍ଚଳର ଓଡ଼ିଆ ବସବାସ କରୁଥିବା ଅଞ୍ଚଳ ବୁଲି ପ୍ରାୟ ୫୦୦ ଲୋକଙ୍କ ଠାରୁ ମତାମତ ଗ୍ରହଣକରି ସରକାରଙ୍କ ନିକଟରେ ତାର ସୁପାରିସ ଦାଖଲ କରିଥିଲେ । ଏଥିରେ ସୁପାରିସ ହୋଇଥିଲା ଯେ, କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଅନୁଗୁଳ, ମଧ୍ୟପ୍ରଦେଶରେ ପଦ୍ମପୁର, ଖଡ଼ିଆଳ ଓ ଗଞ୍ଜାମ ଜିଲ୍ଲାର ମୁଖ୍ୟ ଅଂଶ ବିଶାଖାପାଟଣା ଏଜେନ୍ସି ନେଇ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ କରାଯିବ । କିନ୍ତୁ ଦୁଃଖର ବିଷୟ ପାରଳାଖେମୁଣ୍ଡି ଓ ଜୟପୁର ମିସିବା ପାଇଁ ଏଥିରେ ସ୍ପଷ୍ଟ କରାଯାଇନଥିଲା । ଏହି ସୁପାରିସ ଓଡ଼ିଆ ମାନଙ୍କୁ ହତାସ କରିଦେଇଥିଲା । ତେଣୁ ସବୁ ଯାଗାରେ ପ୍ରତିବାଦ ସଭା ଅନୁଷ୍ଠିତ ହୋଇଥିଲା । ପୁଣି ଉତ୍କଳସମ୍ମିଳନୀର ଜରୁରୀ ବୈଠକ ଡ଼କାଯାଇ ସେଥିରେ କୃଷ୍ଣଚନ୍ଦ୍ର ଗଜପତିଙ୍କୁ ଅନୁରୋଧ କରାଯାଇଥିଲା ଯେ, ସେ ଏକ ପ୍ରତିନିଧି ଦଳର ନେତୃତ୍ୱ ନେଇ ସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଅର୍ନ୍ତଭୁକ୍ତ କରିବାପାଇଁ ଭାଇସରାୟଙ୍କ ନିକଟରେ ଏକ ଦାବିପତ୍ର ଦାଖଲ କରନ୍ତୁ । ଅଧିବେସନର ନିଷ୍ପତି ଅନୁସାରେ ସେ ତତ୍‌କାଳୀନ ଭାଇସରାଏ ଲର୍ଡ଼ଉଇଲିଂଗଡ଼ନ୍‌ଙ୍କୁ ସିମିଳା ଠାରେ ସାକ୍ଷାତ କରି ଚାରୋଟି ପ୍ରଦେଶ ଅଧିନରେ ଓଡ଼ିଶା ରହିଲେ ଓଡ଼ିଶାବାସୀ କି ପ୍ରକାର ଅସୁବିଧାର ସମ୍ମୁଖୀନ ହେବେ, ତାହା ସେ ଦର୍ଶାଇଥିଲେ । ଏହି ଦାବିପତ୍ରର ଗୁରୁତ୍ୱ ଉପଲବ୍ଧି କରି ତତ୍‌କାଳୀନ ସେକ୍ରେଟାରୀ ଅଫ ଷ୍ଟେଟସ୍ ସାର୍ ସାମୁଏଲ ହୋରଙ୍କ ନିକଟକୁ ସେହି ମର୍ମରେ ଗୋଟିଏ ଚିଠି ପଠାଇଥିଲେ । ମାତ୍ର ପାରାଳାଖେମୁଣ୍ଡି ଓ ଜୟ ପୁରକୁ ସାମିଲ କରାଯାଇନଥିଲା । ଏପରି ପରିସ୍ଥିତିରେ କୃଷ୍ଣଚନ୍ଦ୍ର ବ୍ରହ୍ମପୁର ଠାରେ ପୁନର୍ବାର ଉତ୍କଳ ସମ୍ମିଳନୀ ଅଧିବେଶନ ଡକାଇଥିଲେ । ମଧୁସୁଦନ ଦାସଙ୍କ ସମେତ ବହୁ ମାନ୍ୟଗନ୍ୟ ପ୍ରତିନିଧିମାନେ ଏହି ଅଧିବେଶନରେ ଯୋଗଦେଇଥିଲେ । ଏହି ଅଧିବେଶନରେ କୃଷ୍ଣଚନ୍ଦ୍ର ଗଜପତିଙ୍କୁ ପୁନର୍ବାର ଲଣ୍ଡନ ଯିବାକୁ ଅନୁରୋଧ କରାଯାଇଥିଲା । ସମସ୍ତଙ୍କ ଅନୁରୋଧ ରକ୍ଷା କରି ରାଜା କୃଷ୍ଣଚନ୍ଦ୍ର ସାଙ୍ଗରେ ଖଲିକୋଟ ରାଜା ହରିହର ମର୍ଦ୍ଦରାଜ, ଲିଙ୍ଗରାଜ ପାଣିଗ୍ରାହୀ ଏବଂ ଭୁବନାନନ୍ଦ ଦାସଙ୍କୁ ନେଇ ସେ ପୁନର୍ବାର ଲଣ୍ଡନ ଯାତ୍ରା କରିଥିଲେ । ସେଠାରେ ସେ ସେକ୍ରେଟାରୀ ଅଫ୍ ଷ୍ଟେଟସ୍ ଙ୍କୁ ସାକ୍ଷାତ କରି ସୀମା ନିର୍ଦ୍ଧାରଣ କମିଟିର ସୁପରିଶ କୁ ପୁର୍ନବିଚାର କରିବା ପାଇଁ ଅନୁରୋଧ କରିଥିଲେ । ଯାହାହେଉ କୃଷ୍ଣଚନ୍ଦ୍ର ଗଜପତିଙ୍କର ଚେଷ୍ଟା ଫଳରେ ବି ପାରଳାଖେମୁଣ୍ଡି ଓଡ଼ିଶା ପ୍ରଦେଶ ସହିତ ମିଶି ପାରି ନଥିଲା ।

"ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ପ୍ରାଣ ପ୍ରତିଷ୍ଠାତା ମଧୁସୁଦନ ଦାସ ୧୯୩୪ ମସିହା ଫେବୃଆରୀ ୪ ତାରିଖ ଦିନ ପରଲୋକ ଗମନ କରିଥିଲେ । ଏହି ସମ୍ବାଦ ପ୍ରଚାରିତ ହେବା

ପରେ ଓଡ଼ିଶା ବାସୀ ମର୍ମାହତ ହୋଇଥିଲେ । କୃଷ୍ଣ ଚନ୍ଦ୍ର ଗଜପତି ଅଶେଷ ଭାବରେ ମର୍ମାହତ ହୋଇ ଥିଲେ ମଧ ଭାଙ୍ଗିପଡିନଥିଲେ । ତଥାପି ପାରଳାଖେମୁଣ୍ଡିକୁ ଓଡ଼ିଶା ସହିତ ମିଶାଇବା ପାଇଁ ନିଷ୍ପତ୍ତି ନେଇଥିଲେ । ସେହି ଅନୁସାରେ ୧୯୩୫ ମସିହାରେ ସେକ୍ରେଟାରୀ ଅଫ ଷ୍ଟେଟସ୍ ହାଉସ ଅଫ କମନ୍ସରେ ଏକ ବିଲ ଆଗତ କରିଥିଲେ । ପରିଶେଷରେ ୧୯୩୬ ମସିହା ଏପ୍ରିଲ ୧ ତାରିଖ ଦିନ ୬ଟି ଜିଲ୍ଲାକୁ ନେଇ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା । ସେ ଗୁଡିକ ହେଲା କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ, କୋରାପୁଟ ଓ ମଧ୍ୟପ୍ରଦେଶରୁ ଖଡ଼ିଆଳ, ପଦ୍ମପୁର, ଆସ୍କା, ସୋରଡା, କୋଦଳା, ଛତ୍ରପୁର, ଅଣାଯାଇ ଓଡିଶା ପ୍ରଦେଶ ସହିତ ମିଶାଯାଇଥିଲା । ମାତ୍ର ଦୁଃଖର ବିଷୟ ବିସ୍ତିର୍ଣ୍ଣ ଓଡ଼ିଶା ଅଞ୍ଚଳ ସିଂହଭୂମି, ମେଦିନୀପୁର, ଫୁଲଝର ଆଦି ବିଚ୍ଛିନ୍ନ ଅଞ୍ଚଳକୁ ଓଡ଼ିଶା ସହିତ ମିଶାଯାଇ ପାରିନଥିଲା ।

ଆଜି ଆମେ ଯେଉଁ ଓଡ଼ିଶା ପ୍ରଦେଶରେ ବାସ କରୁଛେ ଏବଂ ଓଡ଼ିଆରେ କଥାବାର୍ତ୍ତା କରୁଛେ ଏହା ହେଉଛି ମଧୁବାବୁଙ୍କର ଦୀର୍ଘ ଦିନର ତପସ୍ୟା ଓ ସାଧନାର ଫଳ । ମଧୁବାବୁଙ୍କ ବାସ ଭବନ ଥିଲା ଓଡ଼ିଆ ଜାତୀୟତାର ପ୍ରାଣ କେନ୍ଦ୍ର । ଏହିଠାରୁହିଁ ଆରମ୍ଭ ହୋଇଥିଲା ଓଡ଼ିଶାର ପ୍ରତ୍ୟେକ ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ଆନ୍ଦୋଳନ । ଏହା ପୁଣିଥିଲା ସ୍ୱଦେଶୀ ଶିଳ୍ପର ପ୍ରସୂତି ଗୃହ । ବହୁ ପ୍ରତିଷ୍ଠିତ ବିଦେଶୀ ବିଶେଷଜ୍ଞଙ୍କ ଠାରୁ ଆରମ୍ଭ କରି ସ୍ୱୟଂ ମହାତ୍ମାଗାନ୍ଧୀ ପଦରେଣୁରେ ମଧ ଏହି ଗୃହ ପବିତ୍ର ହୋଇଥିଲା । ସେ ଏହି ଓଡ଼ିଆ ଜାତି ପାଇଁ ଯେଉଁ ସ୍ୱପ୍ନ ଦେଖିଥିଲେ । ତାହା ଏବେବି ସ୍ୱପ୍ନରେ ରହିଯାଇଛି । ଗୋଟିଏ ଦିନ, ଅର୍ଥାତ ୨୪ ଘଣ୍ଟା । ଏହି ୨୪ ଘଣ୍ଟା ମଧ୍ୟରୁ ଯଦି ପ୍ରତ୍ୟେକ ଓଡ଼ିଆ ନିଜ ଜାତି ଏବଂ ମାତୃଭାଷା ପାଇଁ ୧୫ ମିନିଟ ଭାବିବାକୁ ସମୟ ଦିଅନ୍ତି ତାହାହେଲେ ଏ ଜାତି ଏବଂ ଭାଷାର ଅବସ୍ଥା ନିଶ୍ଚିନ୍ତ ଭାବେ ସୁଧୁରି ଯାଆନ୍ତା ।

## ଓଡ଼ିଶା ଉପରେ ଜାତୀୟ ଆନ୍ଦୋଳନର ପ୍ରଭାବ

ଜାତୀୟତା କ'ଣ ? ଓଡ଼ିଶା ଉପରେ ଏହାର ପ୍ରବାଭ କେବେ ଠାରୁ ଓ କାହିଁକି ପଡିଥିଲା ଏହି ଅଧ୍ୟାୟରେ ଆମେ ସମ୍ୟକ ଭାବରେ ଆଲୋଚନା କରିବା । କହିବା ବାହୁଲ୍ୟ ଯେ, ଭାଷା ଆନ୍ଦୋଳନ ଠାରୁ ଓଡ଼ିଶାରେ ଜାତୀୟତାର ପରିପ୍ରକାଶ ଘଟିଥିଲା ତାହା ନୁହେଁ । ୧୮୫୭ ମସିହାରେ ସପାହୀ ବିଦ୍ରୋହଠାରୁ ଓଡ଼ିଶାରେ ଜାତୀୟ ଚେତନାର ଅଭ୍ୟୁଦୟ ହୋଇଥିଲା । ଏହା ଆମେ ଏଠାରେ ସଂକ୍ଷେପରେ ଆଲୋଚନା କରିବା । କେବଳ ଯେ

ଶିକ୍ଷିତ ଏବଂ ନେତା ମାନଙ୍କଠାରେ ଜାତୀୟତା ଭାବ ପରିପ୍ରକାଶ ହୋଇଥିଲା ତାହା ନୁହେଁ । ଗ୍ରାମୀଣ କୃଷକ ଠାରୁ ଆରମ୍ଭ କରି ଚାଷୀ ମୂଲିଆ ପର୍ଯ୍ୟନ୍ତ ଏମାନେ ମଧ୍ୟ ଜାତୀୟ ଚେତନାରେ ଅଭିମନ୍ତ୍ରିତ ହୋଇଥିଲେ । ଏହାର ନିଛକ ସତ୍ୟତା ପୁସ୍ତକର ପରବର୍ତ୍ତି ଅଧ୍ୟାୟ ମାନଙ୍କରେ ଆମେ ପାଇ ପାରିବା । ଗ୍ରାମୀଣ ଜୀବନର ତ୍ୟାଗ, ପାହାଡ ଘେରା ଜଙ୍ଗଲ ଭିତରେ ରହୁଥିବା ଆଦିବାସୀ ମାନଙ୍କର ଜାତୀୟ ଚେତନା, ଧନୁ ତୀରର ରକ୍ତାକ୍ତ ସଂଗ୍ରାମ, ଆଦିବାସୀ ଭାଇ ଭଉଣୀ ମାନଙ୍କର ଖାଦ୍ୟ ପେୟର ଅଭାବ ଅସୁବିଧା ସତ୍ୱେ ଦେଶ ପ୍ରତି ତାଙ୍କର ତ୍ୟାଗ, ଦେଶର ସ୍ୱାଧୀନତା ପରେ କିପରି ଲୋପ ପାଇଯାଇଛି ତାହା ଆମର ଆଲୋଚ୍ୟ ବିଷୟ । ସାମ୍ପ୍ରତିକ ସମାଜରେ ରାଜନେତା ମାନଙ୍କର ଭୋଗ ଏବଂ ସ୍ୱାଧୀନତା ପୂର୍ବବର୍ତ୍ତି ସାଧାରଣ ଚାଷୀ ମୂଲିଆ ଆଦିବାସୀ ମାନଙ୍କର ତ୍ୟାଗ ଭିତରେ ଥିବା ଦେଶ ପ୍ରେମକୁ ସହଜରେ ଆମେ ଉପଲବ୍ଧି କରିପାରିବା । ଆମେ କିଛି କରିପାରୁ କିମ୍ୱା ନକରିପାରୁ ଆମ ଭିତରେ ଏ ଦେଶ ଜାତି ପାଇଁ ଅନୁକମ୍ପା ଆମ ହୃଦୟରେ ସୃଷ୍ଟି ହୋଇପାରିଲେ, ଆମ ପରବର୍ତ୍ତି ପିଢି ମାନଙ୍କୁ ଉତ୍ତମ ମାର୍ଗ ଦର୍ଶନ କରାଇପାରିବା । କିଛି ନକରି ପାରିଲେ ବି ଅନ୍ତର ସହକାରେ ମନର ବେଦନା ଜଣାଇ ହେବ । ପରବର୍ତ୍ତି ଅଧ୍ୟାୟରେ ଆମେ ସୁପ୍ତ ରହିଥିବା ଜନ ସମୂହକୁ ଲୋକ ଲୋଚନକୁ ଆଣି ପାରିବା । ନଚେତ୍ ସେମାନେ ସେହିପରି ଅବସ୍ଥାରେ ରହି ଯିବେ । ଅବସ୍ଥା ସୁଧୁରିବ ନାହିଁ । ଆଜି ଆମେ ରାଜନୈତିକ ସ୍ତରରେ ଯାହାକିଛି ସେମାନଙ୍କ ପାଇଁ ଚିନ୍ତା କରି ଥାଉ ତାହା ଚିନ୍ତାରେ ହିଁ ରହି ଯାଉଛି । ବାସ୍ତବତାରେ ପରିଣତ ହୋଇ ପାରୁନାହିଁ ।

ଏକତାର ମୂଳମନ୍ତ୍ର ହେଉଛି ଜାତୀୟତା । ନିଜ ଜନ୍ମ ମାଟିକୁ ମାତୃଭୂମିର ରୂପ ଦେବା ଏବଂ ସାମୁହିକ ଭାବରେ ଯଶ ପାଇଁ କାମ କରିବାଟା ହେଉଛି ଜାତୀୟତା । ଏହାର ନିଛକ ଉଦାହରଣ ୟୁରୋପୀୟ ରାଷ୍ଟ୍ର ସମୁହରୁ ମିଳିଥାଏ ଯଥା, ଜର୍ମାନୀ ଏବଂ ଇଟାଲୀର ଏକତ୍ରୀକରଣ ଏବଂ ଆମେରିକାର ସ୍ୱାଧୀନତା ଆନ୍ଦୋଳନ ଇତ୍ୟାଦି । ୟୁରୋପୀୟ ରାଷ୍ଟ୍ର ସମୁହର ଜାତୀୟତା ଭାବର ପ୍ରଭାବ ପକାଇଥିଲା ଉନବିଂଶ ଶତାବ୍ଦୀରେ ଭାରତ ଉପରେ । ତତ୍‌କାଳୀନ ଭାରତୀୟମାନେ ୟୁରୋପୀୟ ଭାଷା ଏବଂ ସମ୍ୱାଦପତ୍ର ମାଧ୍ୟମରେ ଆସି ସେମାନଙ୍କର ପ୍ରଭାବ ଭାରତ ଉପରେ ପଡିଥିଲା ଏବଂ ଭାରତୀୟଙ୍କ ମଧ୍ୟରେ ଜାତୀୟତାର ପରିପ୍ରକାଶ ହୋଇଥିଲା । ଭାରତରେ ଇଂରେଜ ଭାଷାର ପ୍ରସାର ଫଳରେ ଶିକ୍ଷିତ ଭାରତୀୟ ମାନେ ପାଶ୍ଚାତ୍ୟ ଗଣତନ୍ତ୍ର, ବ୍ୟକ୍ତି ସ୍ୱାଧୀନତା, ରାଜନୀତି, ଦର୍ଶନ, ସାହିତ୍ୟ ଓ ଇତିହାସ ଇତ୍ୟାଦି ବିଷୟରେ ଜାଣିବାର ସୁବିଧା ପାଇଥିଲେ । ଦେଶରେ ସମ୍ୱାଦପତ୍ରର ପ୍ରଚଳନ

ଯୋଗୁଁ ଲେଖକ ମାନେ ସେମାନଙ୍କର ଲେଖନୀ ବଳରେ ଜନସାଧାରଣଙ୍କ ମଧ୍ୟରେ ଜାତୀୟତା ଭାବ ସୃଷ୍ଟି କରବାକୁ ସକ୍ଷମ ହୋଇଥିଲେ ।

୧୮୫୭ ମସିହାର ସପାହୀ ବିଦ୍ରୋହକୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ବୋଲି ଐତିହାସକ ମାନେ ଆଖ୍ୟା ଦେଇଥାନ୍ତି । କିନ୍ତୁ ତାର ବହୁ ପୂର୍ବରୁ ଓଡ଼ିଶାରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ ସଙ୍ଗଠିତ ହୋଇଥିଲା । ଏହି ଆନ୍ଦୋଳନ ଜାତୀୟ ସ୍ତରରେ କେତେ ପ୍ରଭାବ ପକାଇଥିଲା ସେଥିପାଇଁ ଆଜି ଇତିହାସ ନୀରବ । ଏହାକୁ ଆମେ ଜାତୀୟ ଆନ୍ଦୋଳନର ଆଖ୍ୟା ଦେଇନପାରନ୍ତି କିନ୍ତୁ ଇଂରେଜ ସରକାରଙ୍କ ବିରୁଦ୍ଧରେ ଏମାନେ ସ୍ୱର ଉତ୍ତୋଳନ କରିଥିଲେ । ବାସ୍ତବ ପକ୍ଷେ ଓଡ଼ିଶାର ପାଇକ ବିଦ୍ରୋହକୁ ପ୍ରଥମ ସ୍ୱାଧୀନତା ସଂଗ୍ରାମ କୁହାଯିବା ଯୁକ୍ତି ସାପେକ୍ଷ । ଓଡ଼ିଶା ଉପରେ ଜାତୀୟ ଆନ୍ଦୋଳନର ପ୍ରଭାବ ପୂର୍ବରୁ ଏହା ଉପରେ ଆମେ ଦୃଷ୍ଟିପାତ କରିବା ଉଚିତ୍ ମନେକରେ ।

ଲର୍ଡ ଡେଲାହାଉସୀଙ୍କ ଶାସନ କାଳରେ ଭାରତରେ ରାଜସ୍ୱତ୍ୱଲୋପ ନୀତି ପ୍ରୟୋଗ କରାଯାଇଥିଲା । ଭାରତରେ ଏହି ନୀତିର ଦ୍ୱିତୀୟ ପ୍ରୋୟୋଗ ହୋଇଥିଲା ଓଡ଼ଶାର ସମ୍ୱଲପୁରରେ । ସମ୍ୱଲପୁର ର ରାଜା ନାରାୟଣ ସିଂହ ନିଃସନ୍ତାନ ଥିଲେ । ତାଙ୍କ ମୃତ୍ୟୁ ପୂର୍ବରୁ ସେ କୌଣସି ପୋଷ୍ୟ ପୁତ୍ର ଗ୍ରହଣ କରିନଥିଲେ । ୧୮୪୯ ସମିହାରେ ସମ୍ୱଲପୁର ରାଜସ୍ୱତ୍ୱଲୋପ ନୀତି ବଳରେ ଇଂରେଜ ସାମ୍ରାଜ୍ୟ ସହିତ ସାମିଲି ହୋଇ ଯାଇଥିଲା । କିନ୍ତୁ ତାର ବହୁ ପୂର୍ବରୁ ଅର୍ଥାତ୍ ୧୮୨୭ ମସିହାରେ ସମ୍ୱଲପୁରର ରାଜା ମହାରାଜା ସାଏ ମୃତ୍ୟୁ ବରଣ କରିଥିଲେ । ସେ ନିଃସନ୍ତାନ ଥିବାରୁ ତାଙ୍କ ଅନ୍ତେ ସୁରେନ୍ଦ୍ର ସାଏ ସିଂହାସନରେ ବସିବାର ଅଧିକାର ଥିଲା । କିନ୍ତୁ ତାଙ୍କର ଏହି ଦାବୀକୁ ଇଂରେଜ ସରକାର ଉପେକ୍ଷା କରି ମହାରାଜା ସାଏଙ୍କ ବିଧବା ପତ୍ନୀ ରାଣୀ ମୋହନ କୁମାରୀ ଙ୍କର ହାତରେ ଇଂରେଜ ସରକାର ସମ୍ୱଲପୁରର ଶାସନ କ୍ଷମତା ଅର୍ପଣ କରିଥିଲେ । ଫଳରେ ସୁରେନ୍ଦ୍ର ସାଏ ରାଜ ପଦରୁ ବଞ୍ଚିତ ହୋଇଥିଲେ ।

ବୀର ସୁରେନ୍ଦ୍ର ସାଏ ସମ୍ୱଲପୁର ଠାରୁ କୋଡିଏ ମାଇଲ ଉତ୍ତରକୁ ଖିଣ୍ଡା ନାମକ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ଧରମ ସିଂହ ଥିଲେ ସମ୍ୱଲପୁର ଚୌହାନ ରାଜବଂଶର ପଞ୍ଚମରାଜା ବଳିଆର ସିଂହଙ୍କ ଉତ୍ତରାଧିକାରୀ । କିନ୍ତୁ ସୁରେନ୍ଦ୍ର ସାଏ ରାଜଗାଦିରୁ ବଂଚିତ ହେବା ପରେ ଗଣ୍ଡ ଏବଂ ବିଂଝାଲ ଆଦିବାସୀ ଗଣ ସୁରେନ୍ଦ୍ର ସାଏଙ୍କୁ ସମର୍ଥନ କରି ବିଦ୍ରୋହ ଆରମ୍ଭ କରିଥିଲେ । ୧୮୪୦ ମସିହାରେ ସୁରେନ୍ଦ୍ର ସାଏ ଓ ତାଙ୍କ ଦୁଇଭାଇ

ଉଦ୍ଧ୍ୟନ୍ତ ସାଏ ଏବଂ ବଳରାମ ସିଂହଙ୍କୁ ଗିରଫ କରାଯାଇ ହଜାରି ବାଗ୍ ଜେଲକୁ ପଠା ଯାଇ ଥିଲା । ସେଠାରେ କାରାଗାରରେ ସେମାନେ ବହୁ ନିର୍ଯ୍ୟାତନ ସହିଥିଲେ । ୧୮୮୪ ମସିହା ଫେବୃଆରୀ ୨୮ ତାରିଖରେ ସୁରେନ୍ଦ୍ର ସାଏ ହଜାରିବାଗ୍ ଜେଲରେ ମୃତ୍ୟୁ ବରଣ କରିଥିଲେ ।

ଇତିହାସ ହେଉଛି ଏକ ପ୍ରବାହମାନ ସ୍ରୋତ । ଜଳ ସ୍ରୋତ ଯେପରି ବହିଚାଲେ ଇତିହାସର ଘଟଣା ସେହିପରି ପ୍ରବାହମାନ ଜଳସ୍ରୋତ ପରି ବହି ଚାଲେ । ଜଳ ସ୍ରୋତକୁ ଅଟକି ରଖିବା ପାଇଁ ଯେପରି ସୁଦୃଢ ବନ୍ଧର ଅବଶ୍ୟକତା ପଡିଥାଏ ସେହିପରି ବହିଯାଇଥିବା ଘଟଣାବଳୀକୁ ସାଉଁଟି ରଖିବା ପାଇଁ ଇତିହାସର ଆବଶ୍ୟକତା ପଡିଥାଏ । ଅଟକି ରଖାଯାଇଥିବା ଜଳକୁ ଯେପରି ସେଚନ ଦ୍ୱାରା ଲୋକ ସେବାରେ ପ୍ରୟୋଗ କରାଯାଇଥାଏ ସେହିପରି ସାଉଁଟି ରଖିଥିବା ଇତିହାସକୁ ଶୁଣାଇଁ ଆମେ ଆମର ପୂର୍ବ ଗୌରବ ଏବଂ ଐତିହକୁ ଜାଣିପାରୁ । ଯାହା ଦ୍ୱାରା ସେହି ଚେତନା ବଳରେ ଆମ ମନରେ ଜାତୀୟ ଭାବ ସୃଷ୍ଟି ହୋଇଥାଏ । କହିବା ବାହୁଲ୍ୟ ଯେ, ଭାରତୀୟ ଜାତୀୟ ଆନ୍ଦୋଳନରେ ମହାତ୍ମା ଗାନ୍ଧୀଙ୍କର ଅବିର୍ଭାବ ପୂର୍ବରୁ ଅର୍ଥାତ୍ ପ୍ରଥମ ବିଶ୍ୱଯୁଦ୍ଧର ବହୁ ପୂର୍ବରୁ ଇଂରେଜ ଶାସନ ବିରୁଦ୍ଧରେ ଓଡ଼ିଶାରେ ଆନ୍ଦୋଳନ ସଂଗଠିତ ହୋଇଥିଲା । ଏହି ଆନ୍ଦୋଳନର ବହୁ କଥାବସ୍ତୁ ଅଦ୍ୟାବଧି ଲୋକ ଲୋଚନକୁ ଆସି ପାରିନାହିଁ । ଯଦି କେହି ଐତିହାସିକ ସେହି କଥା ବସ୍ତୁକୁ ସଂଗ୍ରହ କରିବା ପାଇଁ ଚେଷ୍ଟା କରନ୍ତି ତଥାପି ସେହି କଥାବସ୍ତୁ ମିଳିବା କଷ୍ଟସାଧ । କାରଣ ସେହି ଘଟଣା ବହୁଳ ଇତିହାସକୁ ଆମେ ଲିପିବଦ୍ଧ କରି ରଖିନାହୁଁ । ସେହିପରି ଲୋକ ମୁଖରୁ ସାଉଁଟି ଆଣିଥିବା କିଛି ଘଟଣାବଳୀକୁ ଆମେ ପରିବର୍ତ୍ତି ଅଧ୍ୟାୟ ମାନଙ୍କରେ ଆଲୋଚନା କରିବା ।

ଖୋର୍ଦ୍ଧା ରାଜାଙ୍କର ବକ୍‌ସି ଅର୍ଥାତ୍ 'ବକ୍‌ସି ଜଗବନ୍ଧୁ ବିଦ୍ୟାଧର ଭ୍ରମରବର ରାୟ ମହାପାତ୍ର' ସେନାପତି ଥିଲେ । ବକ୍‌ସି ମାନେ ବଂଶାନୁକ୍ରମେ ନିଷ୍କର ଜମି ଭୋଗକରି ଆସୁଥିଲେ । ବକ୍‌ସି ଜଗବନ୍ଧୁ ମଧ ରୋଡ଼ଙ୍ଗ ଜମିଦାରୀ ଭୋଗ କରୁଥିଲେ । କିନ୍ତୁ ଖୋର୍ଦ୍ଧାରେ ଇଂରେଜ ଶାସନ ପ୍ରଚଳିତ ହେବାପରେ ବକ୍‌ସି ଜଗବନ୍ଧୁ ତାଙ୍କର ରାଜନୈତିକ, ସମାଜିକ ଏବଂ ଅର୍ଥନୈତିକ ପ୍ରତିପତ୍ତି ସବୁ ହେରେଇ ବସିଲେ । ରାଜାଙ୍କ ସମୟର ସୁବିଧା ସୁଯୋଗ ଇଂରେଜ ସରକାର ସବୁଥିରୁ ବଞ୍ଚିତ କରାଇଲେ । ନିଷ୍କର ବଦଳରେ କର ଦେବାକୁ ପଡ଼ିଲା । ତେଣୁ ବକ୍‌ସି ଜଗବନ୍ଧୁ ଖୋର୍ଦ୍ଧାର ପାଇକ ଓ ଘୁମୁସରର ୪୦୦ ଜଣ କନ୍ଧଙ୍କୁ ଧରି ୧୮୧୭

ମସିହାରେ ବିଦ୍ରୋହ ଆରମ୍ଭ କଲେ । ଖୋର୍ଦ୍ଧା ଟ୍ରେଜେରୀ ଲୁଣ୍ଠନ କଲେ । ସରକାରୀ କୋଠା ବାଡ଼ିରେ ଅଗ୍ନି ସଂଯୋଗ କଲେ । ବିଦ୍ରୋହୀ ମାନେ ପୁରୀ ସହରରେ ପ୍ରବେଶ କରି ଦାରୋଗା ଗୃହରେ ଅଗ୍ନି ସଂଯୋଗ କଲେ । ୧୮୧୭ ମସିହାରୁ ୧୮୨୫ ମସିହା ପର୍ଯ୍ୟନ୍ତ ଆନ୍ଦୋଳନ ଜାରି ରଖି ୧୮୨୫ ମସିହା ମଇ ମାସରେ ଇଂରେଜ ସରକାରଙ୍କ ନିକଟରେ ଆତ୍ମ ସମର୍ପଣ କଲେ ।

ଓଡ଼ିଶାର କିଛି ଇଂରେଜ ବିରୋଧୀ ଐତିହାସିକ ଘଟଣା ଭାରତୀୟ ସ୍ୱାଧୀନତା ସଂଗ୍ରାମ ପାଇଁ ପ୍ରଥମେ ପ୍ରେରଣା  ଯୋଗାଇ ଥିଲା । ଓଡ଼ଶାର ପାଇକ ବିଦ୍ରୋହରେ ଜୟୀ ରାଜଗୁରୁଙ୍କୁ ୧୮୦୫ ମସିହା ନଭେମ୍ବର ୨୫ ତାରିଖ ମାର୍ଗଶୀର ଶୁକ୍ଳ ଚତୁର୍ଥୀ ସୋମବାର ଦିନ ମେଦିନପୁର ବାଘି ତୋଟାରେ ରହିଥିବା ଫାଶୀଦିଆ ବରଗଛରେ  ଅତି ଶୋଚନୀୟ ଭାବେ ମୃତ୍ୟୁ ଦଣ୍ଡ ଦିଆ ଯାଇଥିଲା । ଜୟୀ ରାଜଗୁରୁଙ୍କ ପରି ଅଗଣିତ ଦେଶ ପ୍ରେମୀ ଙ୍କର ଅମର ବଳିଦାନ ଯୋଗୁଁ ଭାରତ ବର୍ଷ ବିଦେଶୀ ଶାସନ କବଳରୁ ମୁକ୍ତିଲାଭ କରି ପାରିଥିଲା  ।

ବଣ ପାହାଡ ଘେରା ଓଡ଼ିଶାର ଆଦିମ ଜନଜାତୀର ମଣିଷ ମାନେ । ଗଛର ବକଳ ପିନ୍ଧି, ଜଙ୍ଗଲରେ ଗଛର କନ୍ଦା, କଡାବା, ତୋଡାବା, ବାଉଁଶକଡ଼ି ଏବଂ ଜଙ୍ଗଲର ଫଳମୂଳ ଖାଇ ଯେଉଁମାନେ ଜୀବନ ଧାରଣ କରନ୍ତି । ନା' ଜାଣନ୍ତି ସଂସ୍କୃତି, ନା' ଜାଣନ୍ତି ସଭ୍ୟତା, ନା' ଅଛି ଶିକ୍ଷା । ତଥାପି ସେମାନେ ଦାବି କରନ୍ତି ସେମାନେ ଓଡ଼ିଶାର 'ଭୂମିପୁତ୍ର'  ବୋଲି  । ଯେଉଁ ଆଦିବାସୀ ମାନଙ୍କ ରକ୍ତରେ ଦେଶ ଭକ୍ତିର ଗୌରବ ଗାଥା ଲେଖା ହୋଇଅଛି ସେହି ଆଦିବାସୀ ଶହୀଦ ମାନଙ୍କ ପାଇଁ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ମୋର ଲେଖା ମାଧମରେ ପ୍ରଦାନ କରୁଅଛି । ସ୍ୱାଧୀନତା ୬୪ ବର୍ଷ ପରେବି ଅନ୍ଧ ରାଇଜରୁ ମୁକ୍ତି ପାଇ ପାରି ନାହାନ୍ତି । ସଭ୍ୟତା ଏବଂ ଉନ୍ନତିର ଆଲୋକ ସେମାନଙ୍କ ପାଇଁ  ସ୍ୱପ୍ନ । ଦୁଇଓଳି ଦୁଇ ମୁଠା ଖାଇବା, ଅଣ୍ଟାକୁ ଖଣ୍ଡେ ପିନ୍ଧିବା  ସତେ ଯେମିତି ତାଙ୍କ ଭାଗ୍ୟରେ ନାହିଁ  । ତଥାପି ୧୮୫୭ ସିପାହୀ ବିଦ୍ରୋହର ପୂର୍ବରୁ ଓଡ଼ିଶାର ଆଦିମାନବ ଆଦିବାସୀ ମାନେ ବିଭିନ୍ନ ସ୍ଥାନରେ ସଂଗଠିତ ହୋଇ ଇଂରେଜ ବିରୋଧୀ ସଶସ୍ତ୍ର ଆନ୍ଦୋଳନ ଚଳାଇ ଥିଲେ । କିଛି ଆଦିବାସୀ ଦେଶପ୍ରେମୀ ନିଜ ଜୀବନକୁ ବାଜି ଲଗାଇ ଦେଶକୁ ଉଦ୍ଧାର କରିବା ପାଇଁ ଶହୀଦ ହୋଇ ଯାଇଛନ୍ତି । ସେମାନଙ୍କ ମଧ୍ୟରୁ ଆମ ଇତିହାସ ସମସ୍ତଙ୍କୁ ମନେ ରଖି ପାରିନାହିଁ । ଆମ ଇତିହାସ କିଛି ଲୋକଙ୍କୁ ବହୁଳ ଆଲୋଚନା କରୁଥିବା ବେଳେ କିଛି ଦେଶ ପ୍ରେମୀଙ୍କୁ ଇତିହାସ ତା ନିଜ କୋଳକୁ ଆଣି ପାରିନି । ଯାହା ଫଳରେ ଆମ ଉତ୍ତର ପିଢିଙ୍କ ପାଇଁ ସେମାନେ ଅଜ୍ଞାତରେ

ରହି ଯାଇଛନ୍ତି । ଉଦାହରଣ ସ୍ୱରୂପ ୧୭୬୮ ମସିହାରେ ଘୁମୁସରର ରାଜା କୃଷ୍ଣଚନ୍ଦ୍ର ଭଞ୍ଜଙ୍କ ନେତୃତ୍ୱରେ ଇଂରେଜ ମାନଙ୍କୁ ଆଦିବାସୀ ଦୋହରା ବିଶୋୟୀଙ୍କ କନ୍ଧମେଳି, ୧୮୩୬ ମସିହାରେ ସର୍ଦ୍ଦାର ଚକରାଙ୍କ ଆଦିବାସୀ ଓ କନ୍ଧମେଳି ଇଂରେଜ ସରକାରଙ୍କୁ ବ୍ୟତିବ୍ୟସ୍ତ କରାଇ ଦେଇଥିଲା । ସୁନ୍ଦର ଗଡ଼ର ମୁଣ୍ଡା ମେଳି, କେନ୍ଦୁଝରର ଭୂୟାଁ ମେଳି, ଦଶପଲ୍ଲାର କନ୍ଧମେଳି ଇତ୍ୟାଦି ଇଂରେଜ ସରକାରଙ୍କୁ ଥରାଇ ଦେବା ସଙ୍ଗେ ସଙ୍ଗେ ଗଡ଼ଜାତର ରାଜାମାନଙ୍କର ରାଜତନ୍ତ୍ରକୁ ଦୋହଲାଇ ଦେଇଥିଲା । ସେହି କନ୍ଧମେଳି, ଆଦିବାସୀ ମେଳି ଧନୁ ତୀରରେ ରକ୍ତ ରଞ୍ଜିତ ହୋଇଥିବା କିଛି ଆଦିବାସୀ ଶହୀଦଙ୍କ ଉପରେ ଆମେ ଆସନ୍ତୁ ଆଲୋକ ପାତ କରିବା ।

## ଧରଣୀଧର ନାୟକ

ବିଦ୍ରୋହ ଶବ୍ଦଟି ଏକ ଐତିହାସିକ ଶବ୍ଦ । ଯେତେବେଳେ ଆମେ ବିଦ୍ରୋହ ଶବ୍ଦଟି ଶୁଣିଥାଉ ହଠାତ୍ ଆମେ ଇତିହାସ ପୃଷ୍ଠାକୁ ଚାଲି ଯାଇ ଥାଉ । ବିଦ୍ରୋହ କହିଲେ ଏହା ନିଶ୍ଚିତ ଭାବରେ ଇଂରେଜ ମାନଙ୍କ ବିରୁଦ୍ଧରେ । ଯେପରି ପାଇକ ବିଦ୍ରୋହ । ପାଇକ ବିଦ୍ରୋହରେ ଓଡ଼ିଶା ଭାରତ ଇତିହାସରେ ସ୍ୱତନ୍ତ୍ର ପୃଷ୍ଠା ମଣ୍ଡନ କରିଛି । 'ବିଦ୍ରୋହ'ର ଏକ ସମଭାପନ୍ନ ଶବ୍ଦ ହେଲା 'ମେଳି' । ମେଳି କହିଲେ ଏହା ଆଦିବାସୀ ମାନଙ୍କର ବିଦ୍ରୋହକୁ ବୁଝାଏ । ଯେପରି ଆଦିବାସୀ ମେଳି, କନ୍ଧ ମେଳି, ଭୂୟାଁ ମେଳି ଇତ୍ୟାଦି । ଇତିହାସରୁ ଯାହା ଜଣାପଡେ, ଏହି ମେଳି ଗୁଡ଼ିକ ଇଂରେଜ ସରକାରଙ୍କ ବିରୁଦ୍ଧରେ ଯାଇଥିଲେ ମଧ ପ୍ରାୟତଃ ଏହା ସ୍ଥାନୀୟ ରାଜା, ଜମିଦାର ଏବଂ ଅମଲା ତନ୍ତ୍ରଙ୍କ ବିରୁଦ୍ଧରେ ସଂଗଠିତ ହୋଇଥିଲା । ସେହି ଆଦିବାସୀ ମାନଙ୍କ ମଧ୍ୟରୁ ଧରଣୀ ଧର ନାୟକ ଥିଲେ ଆଦିବାସୀ ଏବଂ ଭୂୟାଁ ଜାତିର ମଉଡ ମଣି ।

କେନ୍ଦୁଝରର ବଣ ପାହାଡ ଘେରା ଆଦିବାସୀ ଗ୍ରାମ 'କୁସୁମିତା' । ସେହି ଗ୍ରାମକୁ ଆଲୋକିତ କରି ୧୮୬୪ ମସିହା ମେ ମାସ ୫ ତାରିଖ ଦିନ ଜନ୍ମ ନେଇଥିଲେ ଧରଣୀଧର ନାୟକ । ତାଙ୍କ ପିତାଙ୍କ ନାମଥିଲା ଲଇକ୍ଷଣ ନାୟକ ଏବଂ ମାତା ଥିଲେ ବାଇଗଣୀ ଦେବୀ । ବାଲ୍ୟକାଳରୁ ତାଙ୍କ ବାକ୍‌ପଟୁତା ସୁଚାଇ ଦେଉଥିଲା ଯେ, ସେ ନିଶ୍ଚିତ ଭାବେ ଜଣେ ପ୍ରତିଭାବାନ୍ ବାଳକ ହେବ । ପିଲାବେଳରୁ ତାଙ୍କ ପ୍ରତିଭା ବିକଶିତ ହୋଇଥିଲା । ଚାରି ବର୍ଷ ବେଳଠୁ ଧରଣୀଧରଙ୍କ ସ୍ୱତନ୍ତ୍ରତା ବାରି ହୋଇ ପଡିଥିଲା । ସେ ନିଜଗାଁ ଚାଟଶାଳୀରୁ ପାଠ ଶେଷ କରି ନିକଟସ୍ଥ ବିଦ୍ୟାଳୟରୁ ପ୍ରାଥମିକ ଶିକ୍ଷା ସମାପ୍ତ କରିଥିଲେ ।

ଧରଣୀଧରଙ୍କ ପିଲାବେଳର ଅନେକ କଥା ଶୁଣିବାକୁ ମିଳିଥାଏ । ଦିନେ ଧରଣୀଧର ନିଜ ପିତାଙ୍କ ସହ କୌଣସି ପର୍ବ ଉଦ୍ଦେଶ୍ୟରେ ରାଜ ଦରବାରକୁ ଯାଇଥିଲେ । ଯିବାସମୟରେ ସେ ନିକଟସ୍ଥ ଜଙ୍ଗଲରେ ହଜି ଯାଇଥିଲେ । ବହୁ ଖୋଜା ଖୋଜି ପରେ ମଧ୍ୟ ସେ ମିଳି ନଥିଲେ । ସମସ୍ତେ ଭୟରେ ରାତ୍ରୀ ଯାପନ କଲେ । ରାତି ପାହିଲା ବେଳକୁ ଧରଣୀଧର ଏକ ହାତୀ ଛୁଆକୁ ସାଥୀରେ ଧରି ଅକ୍ଷତ ଅବସ୍ଥାରେ ପହଞ୍ଚିଲେ ।

ଏହପରି ଏକ ବିସ୍ମୟ ଘଟଣାକୁ ଦେଖି ରାଜାଙ୍କ ଠାରୁ ପ୍ରଜାମାନଙ୍କ ପର୍ଯ୍ୟନ୍ତ ସମସ୍ତେ ଆଶ୍ଚର୍ଯ୍ୟ ହୋଇଥିଲେ । ଏହି ଘଟଣା ଦେଖି ଗାଁର ପୁରୁଖା ଲୋକମାନେ କହିଲେ ଯେହେତୁ ସାଥୀରେ ହାତୀ ନେଇ ଆସିଛି । ଏହାର ଭବିଷ୍ୟତ ରାଜଯୋଗ ଅଛି । ଅସାଧ କାର୍ଯ୍ୟକୁ ସେ ଅକ୍ଲେଶରେ ସାଧନ କରିପାରିବ । ରାଜାଙ୍କର ଅଭିଷେକ ଉତ୍ସବ ଥିଲା । ଧରଣୀଧର ନିଜ ବାପା ଏବଂ ନିଜ ଜେଜେ ବାପାଙ୍କ ସହିତ ରାଜ ନଗରକୁ ଯାଇଥିଲେ । ଭୂୟାଁ ପରଂପରା ଅନୁଯାୟୀ ଯୁବରାଜାଙ୍କର ରାଜ୍ୟାଭିଷେକ ପୂର୍ବରୁ ଯୁବରାଜ ଧରଣୀଧରଙ୍କ ଜେଜେ ବାପା ଟିକାରାମ ନାୟକଙ୍କ କୋଳରେ ବସିବା କଥା । ଏହା ଥିଲା କେଉଁ କାଳରୁ ଭଞ୍ଜ ରାଜ ପରିବାରର ପରଂପରା । ସେଦିନ ଥାଏ ୧୮୬୮ ମସିହା ଫେବୃଆରୀ ୨୭ ତାରିଖ, ରାଜବାଟିରେ ଚାଲିଥାଏ ଯୁବରାଜ ଧନଞ୍ଜୟ ଭଂଜଙ୍କ ରାଜ୍ୟାଭିଷେକ ଉତ୍ସବ । ପରଂପରା ଅନୁସାରେ ଟିକାରାମ ନାୟକଙ୍କ କୋଳରେ ଯୁବରାଜ ଧନଞ୍ଜୟ ଭଂଜ ରାଜ୍ୟାଭିଷେକ ପୂର୍ବରୁ ଯେତେବେଳେ ବସିବାକୁ ଯାନ୍ତି ଧରଣୀଧର ଏଥିରେ ପ୍ରତିବାଦ କରି କହିଲେ ଯେ, "ମୋ ବାପା ଏବଂ ଜେଜେ ବାପାଙ୍କ କୋଳ କେବଳ ମୋର ରାଜାର ନୁହେଁ" । ଏହି କଥା ଜାଣିବା ପରେ ମହାରାଣୀ ବିଷ୍ଣୁପ୍ରିୟା ପାଟମହାଦେଇ ଧରଣୀକୁ ରାଜନଅରକୁ ଡକାଇଲେ ଏବଂ ବୁଝାଇଲେ । ସେହିଦିନଠାରୁ ମହାରାଣୀଙ୍କ ଶୁଭଦୃଷ୍ଟି ପଡିଥିଲା ଧରଣୀଧରଙ୍କ ଉପରେ । ସେହିଦିନଠାରୁ ଧରଣୀଧର ରାଣୀଙ୍କ ପୁତ୍ରବୋଲି ଆଖ୍ୟା ଦିଆଯାଇଥିଲା ।

୧୮୭୦ ମସିହାରେ ଜନସନ୍ ସାହେବ ଏକ ସ୍କୁଲ ପ୍ରତିଷ୍ଠା କରିଥିଲେ । ଜେଜେ ଟିକାରାମ ଏବଂ ପିତା ଲକ୍ଷ୍ମଣ ଚିନ୍ତାକଲେ ଯେ, ଯେହେତୁ ଧରଣୀ ରାଣୀଙ୍କର ପ୍ରିୟପାତ୍ର ହୋଇଛି ସେ ଗାଁ ସ୍କୁଲରେ ପଢୁ ବଡ ଲୋକ ହେବ । କିନ୍ତୁ ମା' ବାଇଗଣୀ ଦେବୀ କହିଲେ ମୋର ରାଜକୃପା ଦରକାର ନାହିଁ । ଯାହାହେଉ ଧରଣୀ ଗାଁ ସ୍କୁଲରେ ନାମ ଲେଖାଇଲା । ଗ୍ରାମରେ ବଣୁଆ ହାତୀ ଉପଦ୍ରବ ଯୋଗୁଁ ବହୁଦିନଧରି ସ୍କୁଲ ବନ୍ଦ ହୋଇ ରହିଥାଏ । କୁସୁମିତା ଗ୍ରାମ ସ୍କୁଲକୁ ମାଷ୍ଟ୍ରମାନେ ମଧ୍ୟ ଆସନ୍ତି ନାହିଁ । ପିଲା ପଢିବା ତ ଦୂରର କଥା । କିନ୍ତୁ

ଧରଣୀଧର ସାହାସ ବାନ୍ଧି ସ୍କୁଲ ଯାଏ କିନ୍ତୁ ସ୍କୁଲ ବନ୍ଦ ଯୋଗୁଁ ଫେରିଆସେ । ଏହିପରି କିଛି ଦିନ ଗଲା ପରେ ଧରଣୀଧର ସ୍କୁଲ ପରିଦର୍ଶକଙ୍କୁ ଯାଇ ସବୁ ଅଭିଯୋଗ କଲେ । ଫଳରେ ସ୍କୁଲ ମାଷ୍ଟ୍ରଙ୍କ ଠାରୁ ବହୁ ଦଣ୍ଡ ପାଇଲେ । ପିତା ଲଇକ୍ଷଣଙ୍କର କିନ୍ତୁ ଇଚ୍ଛାଥାଏ ପୁଅ ଅଧିକ ପାଠପଢି ରାଜ ଦରବାରରେ ଜଣେ କର୍ମଚାରୀ ହୋଇ ରହୁ । ବାପାଙ୍କର ଆଶା ଦିନେ ପୁରଣ ହୋଇଥିଲା ।

କେନ୍ଦୁଝର ମିଡିଲ ଛାତ୍ର ଥିଲେ ଧରଣୀଧର । ରାଜାଙ୍କ ଇନ୍ଦୁ ଉତ୍ସବ ପାଳନରେ ଅମାନିଆ ହାତିକୁ ଆୟତ କରି ଧରଣୀଧର ଠିକ୍ ସମୟରେ ପାହାଡ ଉପରେ ଛତ୍ର ବାନ୍ଧି ଥିବାରୁ ରାଜା ଅତ୍ୟନ୍ତ ପ୍ରିତ ଥିଲେ । ଇନ୍ଦ୍ରଛତ୍ର ପାହାଡ ଉପରେ ଠିକ୍ ସମୟ ମୁତାବକ ବନ୍ଧାଗଲେ ରାଜ୍ୟପାଇଁ ସର୍ବମଙ୍ଗଳ ହୋଇଥାଏ । ଏହା କେନ୍ଦୁଝର ରାଜା ଏବଂ ପ୍ରଜାମାନଙ୍କ ଆତ୍ମବିଶ୍ୱାସ ଥିଲା । ସେହି ପାହାଡକୁ ପାଦରେ ମାପି ମାପି ତାର ଉଚ୍ଚତା କହିଥିବାରୁ ରାଜା ଧରଣୀଧରଙ୍କର ଏହି ଅଲୌକିକ ଗୁଣରେ ମୁଗ୍ଧ ହୋଇ ଯାଇଥିଲେ । ଇନ୍ଦୁ ଉତ୍ସବ ସମାପ୍ତିପରେ ରାଜା ଧନଞ୍ଜୟ ଘୋଷଣା କରିଥିଲେ ଯେ, ଧରଣୀଧର କଟକ ସର୍ଭେ ସ୍କୁଲରେ ପାଠ ପଢିବ ଏବଂ ପାଠ ପଢବା ପରେ ରାଜ ଦରବାରରେ ସର୍ଭେୟର ଭାବେ ନିଯୁକ୍ତି ପାଇବ । ତତ୍ ସଙ୍ଗେ ସଙ୍ଗେ ମହାରାଣୀ ବିଷ୍ଣୁପ୍ରୀୟା ପାଟମହାଦେଇ ଘୋଷଣା କରିଥିଲେ ଯେ, କଟକରେ ଥିବା କେନ୍ଦୁଝର କୋଠିରେ ରାଜପୁତ୍ର ପରି ସମସ୍ତ ସୁବିଧା ସୁଯୋଗ ଏବଂ ପାଠ ପଢିବାର ସମସ୍ତ ଖର୍ଚ୍ଚକୁ ଧରଣୀଧରଙ୍କୁ ଯୋଗାଇ ଦିଆଯିବ । ତାହାହିଁ ହୋଇଥିଲା । ଧରଣୀଧର କଟକ ଯାଇ ରାଜାଙ୍କ ଠାରୁ ବୃତ୍ତି ପାଇ କଟକ ସର୍ଭେ ସ୍କୁଲରେ ପାଠ ପଢିଲେ । ସେ କଟକ ଆସିଲା ପରେ ଉତ୍ତମ ସହପାଠୀ ବନ୍ଧୁ ପାଇଲେ । ଦେଶ ବିଦେଶ ର ଖବର ଜାଣି ପାରିଲେ । ସେତେବେଳେ କଟକ ଥିଲା ଓଡ଼ିଆ ପ୍ରାଣକେନ୍ଦ୍ର । ସେ ସଦା ସର୍ବଦା କଟକ ସହିତ ତାଙ୍କ ଆଦିବାସୀ ଅଞ୍ଚଳକୁ ତୁଳନା କରୁଥିଲେ । ନିଜ ଜନ୍ମମାଟି କେନ୍ଦୁଝରକୁ କଟକ ପରି ଗଢି ତୋଳିବେ ଏହାଥିଲା ତାଙ୍କ ସଦିଚ୍ଛା । କଟକରୁ ପାଠ ସାରି ସେ ଚାଲିଆସିଲେ ନିଜ ଜନ୍ମ ମାଟି 'କୁସୁମିତା ଗ୍ରାମକୁ' । ତାପରେ ସେ ଚିନ୍ତା କଲେ ନିଜ ଅଞ୍ଚଳରେ ଉନ୍ନତି ପାଇଁ ।

ପାଠ ସାରି ଗାଁକୁ ଫେରିବା ପରେ ଆରମ୍ଭ ହେଲା ରାଜକାର୍ଯ୍ୟରେ ଯାଗଦେବା ପର୍ବ । ଭୂୟାଁ ସଂପ୍ରଦାୟରେ ଏତେ ବଡ ଚାକିରୀ ପାଇବାରେ ଧରଣୀଧର ହେଲେ ପ୍ରଥମ । ତେଣୁ ସେ ରାଜ କାର୍ଯ୍ୟରେ ଯୋଗ ଦେଲା ପରେ ଧରଣୀ ଧରଙ୍କ ନିର୍ଭିକତା ଏବଂ

ସଚୋଟତାକୁ ଅନ୍ୟ କର୍ମଚାରୀ ମାନେ ସହ୍ୟକରି ପାରୁନଥିଲେ । ରାଜ ଦରବାରରେ ଅମଲାଙ୍କ ଅପେକ୍ଷା ଧରଣୀଧରଙ୍କୁ ଅଧିକ ବେତନ ଦେବାକୁ ରାଜା ସୁପାରିଶ କରିଥିବା ହେତୁ ସେ ଅନ୍ୟ ମାନଙ୍କର ଚକ୍ଷୁଶୀଳ ହୋଇ ରହିଥିଲେ । ଓଡ଼ିଶାର ଗଡ଼ଜାତ ମାନଙ୍କ ମଧ୍ୟରେ କେନ୍ଦୁଝର ଥିଲା ଏକ ସମୃଦ୍ଧ ଗଡ଼ଜାତ । ଏ ଗଡ଼ଜାତର ଭୂୟାଁ ସଂପ୍ରଦାୟର ଲୋକମାନେ ସେମାନଙ୍କୁ 'ଭୂମିପୁତ୍ର' ବୋଲି କହନ୍ତି । ଏମାନେ ପରଂପରା କ୍ରମେ ରାଜାଙ୍କର ରାଜ୍ୟାଭିଷେକ ଠାରୁ ଆରମ୍ଭ କରି ଅନେକ ରାଜ କାର୍ଯ୍ୟରେ ସଂପୃକ୍ତ ଥାନ୍ତି । ଭୂୟାଁ ସର୍ଦ୍ଦାର ମାନଙ୍କର ସଂଗଠନ ପାଇଁ କେନ୍ଦୁଝର ରାଜାଙ୍କ ସ୍ଥିତି ଅନ୍ୟ ଗଡ଼ଜାତ ରାଜାଙ୍କ ଅପେକ୍ଷା ସ୍ୱତନ୍ତ୍ର ଥିଲା । ୧୮୦୪ ମସିହାରେ ଇଷ୍ଟ ଇଣ୍ଡିଆ କମ୍ପାନୀ ପ୍ରଥମେ କେନ୍ଦୁଝର ରାଜ୍ୟରେ ଭୂବନ୍ଦୋବସ୍ତ କରାଇଥିଲେ । ଭୂବନ୍ଦୋବସ୍ତ କରାଗଲା ପରେ ସାଧାରଣ ପ୍ରଜା ମାନଙ୍କ ଉପରେ ଟିକସ ଧାର୍ଯ୍ୟ କରାଗଲା । ହଳ ଟିକସ, ଫଳ ଟିକସ, ରାସ୍ତା ଟିକସ, ଜଙ୍ଗଲ ଟିକସ, ବେଠି ଏବଂ ଭେଟି ଇତ୍ୟାଦି ଟିକସ ମାନ ପ୍ରଜାମାନଙ୍କ ଉପରେ ଲଦି ଦିଆ ଯାଇଥିଲା । ପ୍ରଜାମାନଙ୍କ ଉପରେ ଏହି ଟିକସ ଭାର ଲଦି ଦେଲା ପରେ ସ୍ୱାଭିମାନୀ ଏବଂ ସ୍ୱାଧୀନ ଚେତା କେନ୍ଦୁଝରର ଭୂୟାଁ ମାନେ ନିରବରେ ରହିପାରିନଥିଲେ । ଆରମ୍ଭ କରିଥିଲେ ବିଦ୍ରୋହ । ଭୂୟାଁ ଆଦିବାସୀ ମାନେ ମାଟିକୁ ଏବଂ ମା'କୁ ଏକାଦୃଷ୍ଟିରେ ଦେଖୁଥିବାରୁ ସେଥିରେ କାହାରି ହସ୍ତକ୍ଷେପକୁ ସେମାନେ ବରଦାସ୍ତ କରି ପାରନ୍ତି ନାହିଁ । ଜଙ୍ଗଲର ଫଳମୂଳ ଏବଂ ଝରଣାର ପାଣି ଯାହାଙ୍କର ସର୍ବସ୍ୱ, ସେମାନେ ବା' କାହାରି ମୁରବୀ ପଣିଆଁକୁ ସହନ୍ତେ କିପରି । ଏହି ସମୟରେ ଗଡ଼ ଜାତର ରାଜାମାନେ ନିଜର ଗାଦିକୁ ସୁରକ୍ଷା ଦେବା ଉଦ୍ଦେଶ୍ୟରେ ଲାଠି, ବେଠି ଓ ଭେଟିରେ ହନ୍ତସନ୍ତ କରୁଥାନ୍ତି । ଫଳରେ ବିଦ୍ରୋହର ସୂତ୍ରପାତ ହେଉଥିଲା । ଆମଲାତନ୍ତ୍ର ଧରଣୀଧରଙ୍କୁ ସଦା ସର୍ବଦା ଘୃଣ୍ୟ ଚକ୍ଷୁରେ ଦେଖୁଥାନ୍ତି । ଧରଣୀଧର ସମସ୍ତ ବିଷୟ ଉପଲବ୍ଧି କରୁଥିଲେ ମଧ୍ୟ ନିଜେ ଚୁପ୍ ହୋଇ ରହୁଥିଲେ ।

୧୮୮୭ ମସିହାରେ ଧରଣୀଧର ରାଜକାର୍ଯ୍ୟରେ ଯୋଗ ଦେବାପରେ ୧୮୮୮ ମସିହାରେ ପୁନଶ୍ଚ ଭୂବନ୍ଦୋବସ୍ତ କରାଇବା ଫଳରେ ଜନ ଅସନ୍ତୋଷର ଦାନା ବାନ୍ଧିବାକୁ ଲାଗିଲା । ୧୮୯୧ ମସିହାରେ ପୁନଶ୍ଚ ଭୂମିବନ୍ଦୋବସ୍ତ କରାଇବା ପାଇଁ ମନସ୍ଥ କରି ଧରଣୀଧରଙ୍କୁ ଆଦେଶ ଦେଲେ ଯେ, ୧୮ ପଦିକାରେ ଜମି ମାପକର । ଏହା ଶୁଣି ଧରଣୀଧର ବିନମ୍ର ଭାବରେ ଉତ୍ତର ଦେଲେ ଯେ, ଏହି ଭୂବନ୍ଦୋବସ୍ତ ପାଇଁ ପୂର୍ବରୁ ପ୍ରଜା ଆନ୍ଦୋଳନ ହୋଇଛି । ତେଣୁ ଏଥିରୁ କ୍ଷାନ୍ତ ହୁଅନ୍ତୁ । ଏହାଶୁଣି ରାଜା ଧନଞ୍ଜୟ ଭଞ୍ଜ ଉତ୍କ୍ଷିପ୍ତ ହୋଇ କହିଲେ ଯେ, ଧରଣୀଧର, ଏହି ଆଦେଶର ଅବମାନନା କଲେ ତୁମର

ମୃତ୍ୟୁ ହୋଇପାରେ । ତତ୍କ୍ଷଣାତ୍ ଧରଣୀଧର ଉତ୍ତର ଦେଲେ ଯେ, ଭୂୟାଁ ପିଲା କେବେ ମୃତ୍ୟୁକୁ ଡରେ ନାହିଁ । ପୁଣି ରାଜା ଉତ୍କ୍ଷିପ୍ତ ହୋଇ କହିଲେ, ଏଇ କେଇଟା ଦିନରେ ଏ ମୋର ବିରୁଦ୍ଧାଚରଣ କରିବାକୁ ପ୍ରୟାସ କଲାଣି । ତା ପ୍ରତି ସତର୍କ ଦୃଷ୍ଟି ଦେବାକୁ ମ୍ୟାନେଜର ଫକୀର ମୋହନ ସେନାପତି ଆସିଷ୍ଟାଣ୍ଡ ମ୍ୟାନେଜରଙ୍କୁ ସୁଚାଇ ଦେଇଥିଲେ ।

କେନ୍ଦୁଝରରେ ପାନୀୟ ଜଳର ବହୁ ଅସୁବିଧା ହୁଏ । କେନ୍ଦୁଝରର 'ମାଛକାନ୍ଦଣା' ଯୋଡ଼ର ଏକ ଜଳଧାର ନଅର ପର୍ଯ୍ୟନ୍ତ ଆଣିବା ପାଇଁ ରଜା ଧନଞ୍ଜୟ ଚିନ୍ତା କଲେ । ମାଛକଣା ଯୋଡ଼ର ଜଳକୁ କେନ୍ଦୁଝର ଗଡ଼ ପର୍ଯ୍ୟନ୍ତ ନିଆଗଲେ ଆଉ ପାଣିର ଅସୁବିଧା ରହିବ ନାହିଁ ଏବଂ ବୈତରଣୀ ନଦୀରେ ମିଶୁ ଥିବା ଏହି ଜଳକୁ ଲୋକ ହିତକର ଉପଯୋଗ କରାଯାଇ ପାରିବ । ଏହା ଚିନ୍ତା କରି ରାଜା ମ୍ୟାନେଜର ଫକୀର ମୋହନଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରିଦେଲେ । ଇତି ମଧ୍ୟରେ ପାହାଡ଼ ଉପରେ ମାଛକଣା ବନ୍ଧ ନିର୍ମାଣ ହେଲା । ଫକୀରମୋହନ ରାଜାଙ୍କୁ ପ୍ରସ୍ତାବ ଦେଲେ ଯେ, ବନ୍ଧ ନିର୍ମାଣରେ ବେଠି ଖଟୁଥିବା ଭୂୟାଁ ଏବଂ ଆଦିବାସୀ ମାନଙ୍କୁ କିଛି ପାରିଶ୍ରମିକ ଦେବାପାଇଁ । କିନ୍ତୁ ରାଜା ରୋକ୍ ଠୋକ୍ ଭାବେ ମନା କରି ଦେଇଥିଲେ । ଯେଉଁ ଭୂୟାଁ ମାନଙ୍କୁ ଦିନେ ରାଜ ପରବାର ଉଆସରେ ସମ୍ମାନ ଦେଉଥିଲେ ସମୟ କ୍ରମେ ସେମାନେ ବେଠି ଖଟିଲେ । ରାଜା ଏବଂ ଭୂୟାଁଙ୍କ ସମ୍ବନ୍ଧ କାଳକ୍ରମେ ବେଠିରେ ପରିଣତ ହୋଇ ଯାଇଥିଲା । ରାଜ କର୍ମଚାରୀ ମାନେ ସେମାନଙ୍କୁ ଶୋଷଣ କରି ଲୁଣ୍ଠନ କରିବାରେ ଲାଗିଲେ । ଘରେ ରଖିଥିବା ଭଲ ଭଲ ଜିନିଷକୁ ଭେଟି ଆକାରରେ ରାଜାଙ୍କୁ ଦେଇଥିଲେ । ପରିସ୍ଥିତିର ଫାଇଦା ଉଠାଇ ରାଜ କର୍ମଚାରୀ ମାନେ ଭୂୟାଁ ମାନଙ୍କୁ ବେଠି ଖଟାଇ, ଚାବୁକ ମାଡ଼ ଦେଇ ଦିନ ରାତି ପାହାଡ଼ରେ ପଥର ଭଙ୍ଗାଇ 'ମାଛକଣା' ବନ୍ଧ ନିର୍ମାଣ କରାଉଥିଲେ । ବିଚିତ୍ରାନନ୍ଦଙ୍କର ଏହି ଅମାନୁଷିକ କାର୍ଯ୍ୟ ପାଇଁ ଯେଉଁମାନେ ନିନ୍ଦାକଲେ ସେମାନଙ୍କୁ ମଧ ନିର୍ଯ୍ୟାତନା ଦିଆଗଲା । ବେଠି ଏବଂ ଭେଟିରେ ପ୍ରଜାମାନେ ଅସହ୍ୟ ହୋଇ ପଡ଼ିଲେ । ପ୍ରଜା ଅସନ୍ତୋଷ ଦିନକୁ ଦିନ ବଢିବାରେ ଲାଗିଥାଏ ।

ଏହିପରି ଏକ ପରିସ୍ଥିତିରେ ରାଜାଙ୍କର ଆହ୍ୱାନ ବିରୁଦ୍ଧରେ ସରକାର ରାଜ୍ୟର ପ୍ରତିବାଦର ସ୍ୱରରେ କହିଥିଲେ ଯେ, ଯଦି ଇଂରେଜ ସରକାର ରାଜ୍ୟର ଶାସନ କାର୍ଯ୍ୟକୁ ନିରୀକ୍ଷଣ କରିବା ଦାୟିତ୍ୱ ନେବେ ତାହାହେଲେ ଆମେ ରାଜ୍ୟରେ ରହିବୁ । ତେଣୁ କ୍ୟାପେଟେନ୍ ଜନଷ୍ଟନ୍ ସ୍ୱତନ୍ତ ନିରୀକ୍ଷକ ଭାବେ ଦାୟୀତ୍ୱ ନେଇଥିଲେ । ସବୁ ସୁଚାରୁ ରୂପେ ଚାଲିଲା । ୧୮୭୧ ମସିହାରୁ ୧୮୭୭ ମସିହା ପର୍ଯ୍ୟନ୍ତ ରହିଥିଲେ । ତାଙ୍କ ଶାସନ

କାଳରେ ପୁନଶ୍ଚ ଅତ୍ୟାଚାରର ପୁନରାବୃତ୍ତି ହୋଇଥିଲା । ଏହି ପ୍ରକାର ଦୁଃଖଦ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ପାଇଁ କେହି ସାହସ କରୁନଥିଲେ । ରାଜା ଏବଂ ଇଂରେଜ ବିରୁଦ୍ଧରେ କିଏ ନେତୃତ୍ୱ ନେବ ! କିଏ ବା' ଉଦ୍ଧାର କରିପାରିବ ଏହି ଆଦିବାସୀ ପ୍ରଜାଙ୍କୁ । ଏହିପରି ପ୍ରଜା ଅସନ୍ତୋଷ ସବୁ ଦିଗକୁ ବ୍ୟାପୁଥାଏ ।

ଏହିପରି କିଛି ଦିନ ଅତିବାହିତ ହେଲା ପରେ ମାଛକାନ୍ଦଣା ବନ୍ଧ ସଂପୂର୍ଣ୍ଣ ହେଲା ଏବଂ ସେହି ବନ୍ଧରୁ ମାହାରା ଖୋଳିବା ପାଇଁ ସ୍ଥିର କରାଗଲା । ମାହାରା ଖୋଳିବାର ଦାୟିତ୍ୱରେ ରହିଲେ ବିଚିତ୍ରାନନ୍ଦ । ତେଣୁ ବିଚିତ୍ରା ନନ୍ଦ ସ୍ଥିରକଲେ ଯେ, ଏହି ମାହାରା ବିନା ଖର୍ଚ୍ଚରେ ବେଠିରେ ଖୋଳା ଯିବ । ତେଣୁ ସେ ଭୂୟାଁ ଅଧ୍ୟୁଷିତ ଡ଼ଙ୍ଗାପାଣି, ଠାକୁରଡିହ, ଦସୁଡିଆ, ମେଦିନପୁର ପ୍ରଭୃତି ଗ୍ରାମକୁ ପାଇକ ମାନଙ୍କ ଦ୍ୱାରା ଖବର ଦେଇ ପ୍ରତିଦିନ ପାଳିକରି ଭୂୟାଁ ଗ୍ରାମ ଲୋକ ଆସି ମାହାରା ଖୋଳିବେ । ଟାଙ୍ଗି ବସାରୁ ସ୍ୱତନ୍ତ୍ର ଓଜନର ଶାବଳ ମଗାଇ ମାଟି ଖୋଳିବା ପାଇଁ ଭୂୟାଁ ବେଠିଆ ମାନଙ୍କୁ ଦେଲେ । ବିନା ମଜୁରୀରେ ଭୋକ ଉପାସରେ ବେଠିଆ ମାନେ ଖରାରେ ମାଟି ଖୋଳୁଥିଲେ ସୁଦ୍ଧା ରାଜାଙ୍କ ଠାରୁ ରାଜ କର୍ମଚାରୀ ପର୍ଯ୍ୟନ୍ତ ତାଙ୍କ ଦୁଃଖ କେହି ବୁଝୁ ନଥିଲେ । ଥକାମାରି ବସି ପଡ଼ିଲେ ପିଠି ଉପରେ କୋରଡା ମାଡ଼ । ଏହିପରି ଚିତ୍କାର ଭିତରେ ମାଛକାନ୍ଦଣା ପ୍ରକଳ୍ପ ଏବଂ ମାହାରା କାମ । ଏହି ପ୍ରପୀଡ଼ନ ଭିତରେ ଚାଲିଥାଏ ମାହାରାର ବେଠିକାମ । କିଛିଦିନ ପରେ ଭାଙ୍ଗି ଯାଇଥିଲା ଭୂୟାଁ ମାନଙ୍କର ବାଲିବନ୍ଧ । ପ୍ରଜା ଅସନ୍ତୋଷ ଆନ୍ଦୋଳନର ରୂପ ନେବାକୁ ଲାଗିଲା । ଆଉ କେତେ ଦିନ ବା ସହନ୍ତେ ନିରିହ ପ୍ରଜାମାନେ ?

ଏହି ଘଡ଼ିସନ୍ଧି ମୂହୁର୍ତ୍ତରେ ଆବିର୍ଭାବ ହୋଇଥିଲେ 'ଧରଣୀଧର' । ଏହା ପୂର୍ବରୁ ଧରଣୀଧର ରିମୁଳି ଏବଂ ହାଣ୍ଡିଭଙ୍ଗା ଠାରେ ଏହି ବେଠି ପ୍ରଥା ବିରୁଦ୍ଧରେ ଭୂୟାଁ ମାନଙ୍କୁ ଏକତ୍ରିତ କରାଇଥିଲେ । ଏଥିପାଇଁ ଭାଇ ଗୋପାଳ ନାୟକ ଏବଂ ଅନ୍ୟ ମାନଙ୍କୁ ୩ ମାସ କରାଦଣ୍ଡର ସଜା ଶୁଣାଇ ଦିଆ ଯାଇଥିଲା । ଏହା ଫଳରେ ଧରଣୀ ଅଧିକ ମାତ୍ରାରେ ପ୍ରତିଶୋଧ ପରାୟଣ ହୋଇ ଯାଇଥିଲେ । ତେଣୁ ସେ ୧୮୯୧ ମସିହାର ଜାନୁୟାରୀ ମାସରେ କଟକ କମିଶନର, କଲିକତା ଇଂରେଜ ଅଧିକାରୀ ଏବଂ ମୟୁର ଭଞ୍ଜ ମ୍ୟାନେଜରଙ୍କୁ ରାଜାଙ୍କ ଅତ୍ୟାଚାର ବିଷୟରେ ଶୁଣାଇବା ସହ ସିଧା ସଳଖ ବିଦ୍ରୋହ ପାଇଁ ଡାକରା ଦେଇଥିଲେ । ଫଳରେ ବଣାଇ, ସିଂହଭୂମି, ମୟୁରଭଞ୍ଜ ଏବଂ କେନ୍ଦୁଝରର ହଜାର ହଜାର ଆଦିବାସୀ ଏହି ଆନ୍ଦୋଳନ ପ୍ରତି ଆଗଭର ହୋଇ ଉଠିଥିଲେ । ଉକ୍ତ ସମୟରେ କେନ୍ଦୁଝର

ରଜା ଧନଞ୍ଜୟ ଭଞ୍ଜ ଏବଂ ସିଂହଭୂମି ରାଜାଙ୍କ ମଧ୍ୟରେ ସୀମା ବିବାଦ ଚାଲିଥିଲା । ଲୁଙ୍ଗିକୁନ୍ଦ ଠାରେ ଉଭୟ ରାଜା ଏବଂ ପ୍ରଜାମାନଙ୍କ ମଧ୍ୟରେ ଚାପା ଉତ୍ତେଜନା ସୃଷ୍ଟି ହୋଇଥିଲା । ଏଥି ପାଇଁ ରାଜା ଧନଞ୍ଜୟ ଧରଣୀଧରଙ୍କୁ ଦାୟୀ କରିଥିଲେ । ରାଜା ଧନଞ୍ଜୟ ଭଞ୍ଜଙ୍କର ଅନ୍ଧାରୀ ଶାସନ୍ ଏବଂ ଆଦିବାସୀ ମାନଙ୍କର ବେଠି ଏବଂ ଭେଟି ଧରଣୀଧରଙ୍କୁ ଅନେକ ମାତ୍ରାରେ ଉତ୍କ୍ଷିପ୍ତ କରାଇଥିଲା । ନିଜ ଜନ୍ମ ମାଟିକୁ ଅତ୍ୟାଚାରୀ ଶାସକ କବଳରୁ ଉଦ୍ଧାର କରିବା ପାଇଁ ସେ ବଜ୍ର ସପଥ ନେଇ ଥିଲେ ।

କିପରି ଭାବରେ ସେ ପ୍ରଜାମାନଙ୍କୁ ରାଜ ଅତ୍ୟାଚାରରୁ ରକ୍ଷା କରିବେ ସେଥିପାଇଁ ସେ ପାଓ୍ୱାରି ଗ୍ରାମରେ ଏକ ସଭା କରି ଥିଲେ । ରାଜା ଏ ଖବର ପାଇ ସଙ୍ଗରେ ବିଚିତ୍ରାନନ୍ଦ ଏବଂ ଏକ କନେଷ୍ଟ ବଳଙ୍କୁ ନେଇ ସଭା ସ୍ଥଳରେ ନିଜେ ପହଞ୍ଚି ଥିଲେ । ସେଠାରୁ କିଛି ବିଦ୍ରୋହୀ ଙ୍କୁ ଗିରଫ କରି ନେଇଥିଲେ । କିନ୍ତୁ ଧରଣୀଧରଙ୍କର ଖୋଜ ଖବର ପାଇ ନଥିଲେ । ଏହିଠାରୁ ଆରମ୍ଭ ହୋଇଥିଲା ଧରଣୀଧରଙ୍କର ରକ୍ତାକ୍ତ ସଂଗ୍ରାମ । ସେ ସେଠାରୁ ଯାଇ ଚାମ୍ପୁକପୁର ଠାରେ ପାଇକ ମାନଙ୍କ ଉପରେ ଆକ୍ରମଣ କରି ରାଜାଙ୍କର ପୂର୍ବତନ ଦେଓ୍ୱାନ ନନ୍ଦ ଧଳଙ୍କୁ ବିଦ୍ରୋହୀ ମାନେ ହତ୍ୟା କରିଥିଲେ । ଡ଼ାକ ମୁଣିକୁ ଲୁଣ୍ଠନ କରି ଚିଠିପତ୍ର ଚିରି ଦେଇ ଥିଲେ । ପରିସ୍ଥିତି ଏପରି ଭୟାବହ ହେଲାଯେ, ରାଜା ଧନଞ୍ଜୟ ଭଞ୍ଜ ଏବଂ ବିଚିତ୍ରାନନ୍ଦ ନିଜକୁ ନିରାପଦ ନମଣି ୧୮୯୧ ମସିହା ମେ ସାତ ତାରିଖ ଦିନ ଉଭୟେ ଆନନ୍ଦପୁର ଚାଲି ଯାଇଥିଲେ । ରାଜା ସେଠାରେ ଶୁଣିଲେଯେ, ତାଙ୍କୁ ଆକ୍ରମଣ କରିବା ପାଇଁ ପାଞ୍ଚ ହଜାର ବିଦ୍ରୋହୀ ଆନନ୍ଦପୁର ଆସୁଛନ୍ତି । ଏହାକୁ ଆଖି ଆଗରେ ରଖି ଫକୀର ମୋହନ ଏବଂ ଆସିଷ୍ଟାଣ୍ଟ ସୁପରିନ୍‌ଟେଣ୍ଡେଣ୍ଟ ରାୟ ୧୮୯୧ ମସିହା ମେ ବାର ତାରିଖ ଦିନ କଟକ ଯାଇ କମିଶନରଙ୍କ ଆଗରେ ସବୁକଥା କହିଲେ । ସବୁକଥା ବର୍ଣ୍ଣନା କରିବା ପରେ ରାଜାଙ୍କୁ ସୈନ୍ୟ ସାହାଯ୍ୟ କରିବା ପାଇଁ ଅନୁରୋଧ କରିଥିଲେ । କିନ୍ତୁ କମିଶନର ଜର୍ଜ ଟୟନବି ସମସ୍ତ ଜିନିଷ ଅବଗତ ହେଲା ପରେ କହିଥିଲେ ଯେ, ଜଣେ ଅତ୍ୟାଚାରୀ ରାଜାପାଇଁ ସୈନ୍ୟ ସାହାର୍ଯ୍ୟ ଦିଆଯିବ ନାହି । ପୁଣି ଫକୀର ମୋହନ ରାଜାଙ୍କୁ ନିର୍ଦ୍ଦୋଶ ବୋଲି ବର୍ଣ୍ଣନା କରି ଭୂୟାଁ ଗୋଷ୍ଠୀଙ୍କ ଉପରେ ସବୁ ଦୋଷ ଲଦି ଦେବାରୁ କମିଶନର ସୈନ୍ୟ ପଠାଇବାକୁ ସହମତି ପ୍ରଦାନ କରିଥିଲେ ।

ଫକୀର ମୋହନଙ୍କ ଚାଟୁ ବାଣୀରେ କମିଶନର ପ୍ରିତ ହୋଇ କେନ୍ଦୁଝରର ଭୂୟାଁ ମେଳି ଦମନ ପାଇଁ ଚାଇଁ ବସାରୁ ଏଚ.ଡ଼ାଲ୍‌-ସନ୍‌କୁ ପଠାଇ ଥିଲେ । ଏହି ଖବର ବିଦ୍ରୋହୀ

ମାନଙ୍କ ଗହଣରେ ପ୍ରଚାରିତ ହେବା ପରେ ପରେ ବିଦ୍ରୋହୀ ମାନେ ଅଧିକ ଉତ୍ୟକ୍ତ ହୋଇ ଯାଇ ଥିଲେ । ଧରଣୀଧରଙ୍କ ଦାବିକୁ ଇଂରେଜ ସରକାର ଗ୍ରହଣ ନକରିବାରୁ ବିଦ୍ରୋହୀ ମାନେ ଅଧିକ ଉତ୍ୟକ୍ତ ହୋଇ ଉଠିଲେ । ଚାଇଁବସା ଏବଂ ସିଂହଭୁମିରୁ ହଜାର ହଜାର ଭୂୟାଁ ଆସି ବିଦ୍ରୋହରେ ଯୋଗ ଦେଇଥିଲେ । ବିଦ୍ରୋହୀ ମାନଙ୍କ ଖାଇବା ସକାଶେ ବସ୍ତା ବସ୍ତା ଚାଉଳ ସଂଗୃହୀତ ହେଲା । ରଜାଙ୍କୁ ଗାଦିଚ୍ୟୁତ କରିବା ପାଇଁ ନିଷ୍ପତ୍ତି ନିଆଗଲା । ବିଦ୍ରୋହୀ ମାନେ ପ୍ରଥମେ କୁଚକ୍ରୀ, ଅତ୍ୟାଚାରୀ ବିଚିତ୍ରା ନନ୍ଦଙ୍କୁ ଗଡ଼ ଗଡ଼ କରି ହାଣି ନିଜର ପ୍ରତିଶୋଧ ନେଇଥିଲେ । ରାଇସୁଆଁ ଗଡ଼ର ଆମ୍ବତୋଟା ଠାରେ ବିଦ୍ରୋହୀ ମାନଙ୍କ ସହ ଜୟନ୍ତୀ ଗଡ଼ର (ବର୍ତ୍ତମାନର ଝାଡ଼ଖଣ୍ଡ ରାଜ୍ୟ) ଆଉ ଏକ ହଜାର ବିଦ୍ରୋହୀ ଯୋଗ ଦେଇଥିଲେ । ସମସ୍ତ ବିଦ୍ରୋହୀଙ୍କ ନେତୃତ୍ୱ ନେଇଥିଲେ ଧରଣୀଧର । ସେମାନେ କେନ୍ଦୁଝରକୁ ଅବରୋଧ କରି ରାଜାଙ୍କୁ ଗାଦି ଚ୍ୟୁତ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଏହି ପରିସ୍ଥିତିକୁ ଭୟକରି ରଜା ନିକଟସ୍ଥ ଆନନ୍ଦପୁର ରାଜ୍ୟକୁ ଲୁଚି ଚାଲିଯାଇଥିଲେ । ବିଦ୍ରୋହୀ ମାନେ ରଜାଙ୍କୁ ନପାଇ ଦେୱାନ ଫକୀର ମୋହନ ସେନାପତିଙ୍କୁ ଧରିଆଣି ଧରଣୀଙ୍କ ନିକଟରେ ହାଜର କଲେ ଏବଂ ରାଜ କର୍ମଚାରୀ ମାନଙ୍କୁ ନମାରିବାକୁ ନିର୍ଦ୍ଦେଶ ଦେଲେ । କିନ୍ତୁ କୌଶଳି ଫକୀର ମୋହନଙ୍କ କଥାରେ ଧରଣୀଧର ମୁଗ୍ଧହୋଇ ଯାଇଥିଲେ ଏବଂ ନିଜର ମନ୍ତ୍ରୀ କରି ରଖିଲେ । ବିଦ୍ରୋହୀ ମାନେ ଜୟଯୁକ୍ତ ହୋଇ ରାଇସୁଆଁ ଆମ୍ବ ତୋଟାରେ ରାଜାଭାବେ ଅଭିସିକ୍ତ କରାଇଲେ । କେନ୍ଦୁଝରର ଏହି ପ୍ରକାର ପରିସ୍ଥିତିକୁ ଆଖି ଆଗରେ ରଖି ମହାରାଣୀ ବିଷ୍ଣୁପ୍ରିୟା ପାଟମହାଦେଇ କଟକ ଚାଲି ଯାଇଥିଲେ ।

କାଳକ୍ରମେ ବିଦ୍ରୋହୀଙ୍କ ସଂଖ୍ୟା ବଢିବାରେ ଲାଗିଲା । ରଜାଙ୍କ କଏଦି ଖାନା ଉପରେ ଆକ୍ରମଣ କରି ବହୁ ବନ୍ଦୀ ବିଦ୍ରୋହୀଙ୍କୁ ଖଲାସ କରି ଦେଇଥିଲେ । ରାଜକୋଷ ଲୁଟପାଟ ସହିତ ଏହା ନିତି ଦିନିଆଁ ଘଟଣାରେ ପରିଣତ ହୋଇଗଲା । କିଛିଦିନ ପରେ ବିଦ୍ରୋହୀ ଭୂୟାଁ ମାନଙ୍କ ହାତକୁ କେନ୍ଦୁଝର ଶାସନ ବ୍ୟବସ୍ଥା ଆସିଗଲା । ରାଜା ଶାସନ ସମ୍ପୂର୍ଣ୍ଣ ଭାବରେ ଅଚଳ ହୋଇପଡ଼ିଲା । ସର୍ଦ୍ଦାର ଧରଣୀଧରଙ୍କ ଆଦେଶକୁ ପ୍ରଜାମାନେ ଶିରୋଧାର୍ଯ୍ୟ କରିନେଲେ । ଧରଣୀଧର ରାଇସୁଆଁ ଠାରେ ନିଜର ଦରବାର ବସାଇଲେ । ଏଥିରେ ମୁଖ୍ୟ ବିଷୟ ଆଲୋଚନା ହେଲା ଯେ, କିପରି ଭାବରେ ରାଜ ନଅରକୁ ଆକ୍ରମଣ କରି ନିଜ ଅଧିକାରକୁ ଅଣାଯିବ । କିନ୍ତୁ ରାଜଭକ୍ତ ଫକୀର ମୋହନଙ୍କ କାନରେ ଏକଥା ପଡ଼ିବା ପରେ ଏହି ବିପଦରୁ କିପରି ରାଜାଙ୍କୁ ଉଦ୍ଧାର କରିବେ ତାହା ଚିନ୍ତା କଲେ । ଯାଦୁକାରୀ ଫକୀର ମୋହନଙ୍କ ମୁଣ୍ଡକୁ ଏକ ଅକଲ ପଶିଲା । ସେ ରାଜ ଦରବାରକୁ ଯାଇ କହିଲେ, କାଲିଠାରୁ

ନା' ଅଛି ଖଣ୍ଡେ ପାନ ନା' ପଗଡ଼େ ଗୁଆ । ଭଦରକ ଠାରେ ଖଣ୍ଡେ ଆଖୁ ଚାଷ କରିଛିଯେ, ଏଠାକୁ ଆସିଲା ଦିନୁଁ ପାଣିମଡ଼ା ହୋଇନି । ମଣିମା ଅନୁମତି ଦେଲେ ଚିଠି ଲେଖି କିଛି ପାନ ଗୁଆ ମଗାନ୍ତି ଏବଂ ଆଖୁ କିଆରୀକୁ ପାଣି ମଡ଼ାଇବା ପାଇଁ ଚିଠି ଲେଖନ୍ତି ।

ଫକୀର ମୋହନଙ୍କୁ ବିଶ୍ୱାସ କରି ଧରଣୀଧର ରାଜି ହୋଇଗଲେ ଏବଂ ତାଙ୍କୁ ଚିଠି ଲେଖିବା ପାଇଁ କହିଲେ । ତାପରେ ଫକୀର ମୋହନ ଚିଠି ଲେଖିଲେ :-

**ଭୋଳାନାଥ ଖମାରିଆ ଜାଣିବୁ,**

**ମଇମାସ ତା୧୬ ସନ ୧୮୯୧**

**ମୁକାମ-ରାଇସୁଆଁ**

ମହାରାଣୀଙ୍କ ପୁତ୍ରଙ୍କ ସକାଶେ ନିତାନ୍ତ ଦରକାର - ଅତିଶିଘ୍ର ଶହେ ହେଲେ ପାନ, ଦୁଇଶ ଗୁଆ ପଠାଇବୁ । ଉତ୍ତରପଟୁ ମାହାରା କରି ଶିଘ୍ର ପାଣି ମଡ଼ାଇବୁ । ନୋହିଲେ ଆଖୁବାଡି ବିନାଶ ହୋଇଯିବ ଯାଣିବୁ ।

। ଇତି ।

ଏହି ଚିଠିଟିକୁ କଟକ ପଠାଗଲା । ଏହାର ସାଙ୍କେତିକ ଅର୍ଥ କେହି ବୁଝି ପାରିଲେ ନାହିଁ । ମଧୁବାବୁ ବ୍ୟାଖ୍ୟା କରି ଏହାର ଅର୍ଥ ବାହାର କରିଥିଲେ । ପାନ ମାନେ ସିପାହି, ଗୁଆ ମାନେ ଗୁଳି ଅର୍ଥାତ୍ ଗୁଳି ବନ୍ଧୁକ ଧାରୀ ସିପାହି, ଆଖୁବାଡି ଅର୍ଥାତ୍ ଗଡ଼, ଉତ୍ତର ଦିଗରୁ ଅର୍ଥ ଚାଇଁବସା ତରଫରୁ ଶୀଘ୍ର ସିପାହି ନଗଲେ ଗଡ଼ ଲୁଟ୍ ହୋଇଯିବ, ରଜା ଏକଥା ଡାଉସନ୍ଙ୍କୁ ଜଣାଇଲେ । ଏହାପରେ ବ୍ରିଟିଶ ସେନା ଚାଇଁବସା ପଟୁ ଗଡ଼ ଅଭିମୁଖେ ଯାତ୍ରା କଲେ । ଫଳରେ ବିଦ୍ରୋହୀ ମାନଙ୍କ ଗଡ଼ ଆକ୍ରମଣର ଯୋଜନା ସଫଳ ହୋଇ ପାରି ନଥିଲା । ଇଂରେଜ ଫଉଜ ଗଡ଼ ଜଗିବା ସହ ବିଦ୍ରୋହୀ ମାନଙ୍କୁ ଧରିବା ପାଇଁ ଅକ୍ଳାନ୍ତ ଚେଷ୍ଟା କରି ଥିଲେ । ଯଦିଓ ଧରଣୀଧରଙ୍କୁ ଆତ୍ମସମର୍ପଣ କରିବା ପାଇଁ କୁହାଯାଇଥିଲା । ତଥାପି ସ୍ୱାଭିମାନୀ ଧରଣୀଧର ଆତ୍ମସମର୍ପଣ କରି ନଥିଲେ । ତଥାପି ସେ ପର୍ଯ୍ୟନ୍ତ ଫକୀର ମୋହନ ମୁକ୍ତ ହୋଇ ନଥାନ୍ତି ।

ଇତି ମଧ୍ୟରେ ଧରଣୀଧରଙ୍କର ଭୂୟାଁ ମେଳି ଏକ ପ୍ରକାର ବନ୍ଦ ହୋଇ ଯାଇଥିଲା । କିନ୍ତୁ ଇଂରେଜ ସରକାର ଧରଣୀଧରକୁ ପାଇନଥିଲେ । ଫକୀର ମୋହନ ମନେ ମନେ

ଚିନ୍ତା କରୁଥାନ୍ତି କୌଣଷି ଉପାୟରେ ମଧ୍ୟ ସେ ଧରଣୀ ଧରଙ୍କୁ ଇଂରେଜ ହାତରେ ଧରାଇ ଦେବେ । ସେ ଗୋଟିଏ କଥା ଚିନ୍ତା କରି କହଲେ, ଆପଣଙ୍କ ପରି ଜଣେ ବୀର ପୁରୁଷ ଯଦି ଡାଭସ୍‌ନଙ୍କ ସହ ସୌଜନ୍ୟ ମୂଳକ ଭାବେ ସାକ୍ଷାତ କରନ୍ତି, ତାହାହେଲେ ସେମାନେ ଆପଣଙ୍କୁ ନିଶ୍ଚିନ୍ତ ଭାବରେ କେନ୍ଦୁଝର ରାଜ୍ୟର ଶାସନ ଭାର ପ୍ରଦାନ କରନ୍ତେ । ଫକୀର ମୋହନଙ୍କ ଚାଟୁ ବାଣୀକୁ ଧରଣୀଧର ବୁଝି ନପାରି କିଛି ବିଦ୍ରୋହୀଙ୍କୁ ସାଥୀରେ ନେଇ କେନ୍ଦୁଝର ଗଡ଼ ଅଭିମୁଖେ ଚାଲିଲେ । ଅନ୍ୟପଟୁ ଆସୁଥାନ୍ତି ଡାଉସନ ସାହେବ ସାଙ୍ଗରେ କିଛି ସୈନ୍ୟସାମନ୍ତ ନେଇ । ଗୁଚିର ଏବଂ ପୁତୁଲିମା ଗ୍ରାମ ନିକଟରେ ଉଭୟଙ୍କ ମଧ୍ୟରେ ଦେଖା ହୋଇଥିଲା । ଧରଣୀଧର ପୁର୍ବ ଚିନ୍ତା ଅନୁସାରେ ଇଂରେଜ ଅଧିକାରୀଙ୍କୁ ସ୍ୱାଗତ ଜଣାଇବା ପାଇଁ ହାତୀ ପିଠିରୁ ଓହ୍ଲାଇ ଆସିଲେ, ଇଂରେଜ ଅଧିକାରୀ ସଠତାର ସୁଯୋଗ ନେଇ ଧରଣୀଧରଙ୍କୁ ବନ୍ଦୀକଲେ । ଏହି ଖବର ପ୍ରଚାରିତ ହେବାପରେ ବିଦ୍ରୋହୀ ଶିବିରରେ ଝଡ଼ସୃଷ୍ଟି ହେଲା । ବିଦ୍ରୋହ ଲେଲିହାନ ଶିଖାରେ ପରିଣତ ହେଲା । ଇଂରେଜ ଅଧିକାରୀ ଚିନ୍ତିତ ହୋଇପଡିଲେ । ଏଚ.ପି.ଉଇଲି କେନ୍ଦୁଝରରେ ଅବସ୍ଥାପିତ ହୋଇ ବିଶାଳ ସେନାଦ୍ୱାରା ବିଦ୍ରୋହ ଦମନ କଲେ । ରାଜା ଧନଞ୍ଜୟଙ୍କୁ କଟକ ପଠାଇ ନିଜେ ରାଜ୍ୟଭାର ଗ୍ରହଣ କରିଥିଲେ । ବିଦ୍ରୋହର ଦୁଇ ସହଯୋଗୀ ନରେନ୍ଦ୍ର ମହାପାତ୍ର ଏବଂ ବଳରାମ ସିଂହଙ୍କୁ ବନ୍ଦୀ କରିଥିଲେ ।

ଏହିପରି କିଛି ଦିନ ବିତିଗଲାପରେ କେନ୍ଦୁଝରର ପରିସ୍ଥିତି କାଳକ୍ରମେ ଶାନ୍ତ ପଡ଼ି ଯାଇଥିଲା । ରାଜା ଧନଞ୍ଜୟ ଭଞ୍ଜ ନିଜ ରାଜ୍ୟ ହରାଇ ଥିବାରୁ ପୂନର୍ବାର ଶାସନଭାର ଫେରିପାଇବାକୁ ଆବେଦନ କଲେ । କିନ୍ତୁ ବଙ୍ଗଳାର ଲେପ୍ଟନାଣ୍ଟ ଗଭର୍ଣ୍ଣର ଚାର୍ଲସ ଏଲିଏଟ୍ ଏହି ଆବେଦନକୁ ଖାରଜ କରି ଦେଇଥିଲେ । ଇଂରେଜ ସରକାର ଏହାକୁ ଖାରଜ କରି ଦେଇଥିଲେ ମଧ୍ୟ ମଧୁବାବୁଙ୍କ ବଳିଷ୍ଠ ଯୁକ୍ତି ଦ୍ୱାରା ରାଜା ପୂନର୍ବାର ରାଜ୍ୟ ଫେରି ପାଇଥିଲେ । କିନ୍ତୁ ଶାସନ ଭାରକୁ ତଦାରଖ କରିବା ପାଇଁ ପଲଟିକାଲ ଏଜେଣ୍ଟ ବ୍ୟବସ୍ଥା କରାଯାଇଥିଲା । ପ୍ରଶାସନ ରାୟ ବାହାଦୁର ନନ୍ଦ କିଶୋର ଦାସ ପଲଟିକାଲ ଏଜେଣ୍ଟ ଭାବରେ ଦାୟିତ୍ୱ ଗ୍ରହଣ କରିଥିଲେ । ବହୁ ବିଦ୍ରୋହୀ ଆତ୍ମ ସମର୍ପଣ କରିଥିଲେ । ବାରିପଦା ସେସନ୍ସ କୋଟଠାରେ ବିଦ୍ରୋହୀଙ୍କ ବିଚାର କରାଯାଇଥିଲା । ସେଥି ମଧ୍ୟରୁ ୨୮ ଜଣଙ୍କୁ କାରବାସ ମିଳିଥିଲା ଏବଂ ୪୦ ଜଣଙ୍କୁ ଯାବଜ୍ଜୀବନ ଦ୍ୱିପାନ୍ତର ଦଣ୍ଡ ଦିଆଯାଇଥିଲା ।

ଦେଶପ୍ରେମୀ ଧରଣୀଧରଙ୍କୁ ୧୮୯୨ ରୁ ୧୮୯୭ ପର୍ଯ୍ୟନ୍ତ କଟକ ଜେଲରେ ରଖାଯାଇଥିଲା । କାରାମୁକ୍ତ ହେବା ନିମନ୍ତେ ସେ ସରକାରଙ୍କୁ ଆବେଦନ କରିଥିଲେ । ତେଣୁ ଇଂରେଜ ସରକାର ତାଙ୍କୁ ଛାଡିବା ପାଇଁ ଗୋଟିଏ ସର୍ତ୍ତ ରଖିଥିଲେ । ଧରଣୀଧର କାରାମୁକ୍ତ ହେବା ପରେ  ସେ କେନ୍ଦୁଝର ସୀମା ସ୍ପର୍ଶ କରିବେ ନାହିଁ । ଏହି ସର୍ତ୍ତରେ ରାଜି ହେବାରୁ ଧରଣୀଙ୍କ ୧୮୯୭ ମସିହାରେ ମୁକ୍ତ କରାଯାଇଥିଲା । କାରାମୁକ୍ତ ହେବା ପରେ ସେ ପୁରୀ ସମୁଦ୍ର ନିକଟସ୍ଥ ବାଙ୍କୀ ମୁହାଣରେ ତପସ୍ୟା କରି ସାଧୁ ସନ୍ଥର ଜୀବନ ଅତିବାହିତ କରିଥିଲେ । ତାର କିଛି ଦିନ ପରେ ସେ ପୁରୀ ଛାଡି ଆଳିରେ ଶେଷ ଜୀବନ ଅତିବାହିତ କରିଥିଲେ । ୧୯୧୪ ମସିହା ମେ ମାସ ୧୬ ତାରିଖ ବୈଶାଖ ପୂର୍ଣ୍ଣିମା ଦିନ ଏହି ଜନ ନାୟକଙ୍କର ମହାନିର୍ବାଣ ଘଟିଥିଲା ।

"ଭୂମି ପୁତ୍ର" ଜନ ନାୟକ ମୁକ୍ତି ସଂଗ୍ରାମର ମହାରଥି ଧରଣୀଧରଙ୍କୁ ଏ ଜାତି କେବେହେଲେ ଭୂଲିନାହିଁ କି' ଭୁଲି ପାରିବ ନାହିଁ । ତାଙ୍କ ସ୍ୱାଧୀନତାର ପ୍ରଥମ ସାହାନାଇ ଆଜି ବି' ପ୍ରତ୍ୟେକ ଭାରତୀୟଙ୍କ ମନ ପ୍ରାଣକୁ ଆନ୍ଦୋଳିତ କରୁଛି । ସେହି 'ଭୂମିପୁତ୍ର' ଏ ଜାତିର ଚିର ନମସ୍ୟ । ବୀର ପ୍ରସବିନୀ ଜନନୀ ଏହି ପରି ବୀର ପୁତ୍ରଙ୍କୁ ଜନ୍ମଦେଇ ନିଜକୁ ଧନ୍ୟମନେ କରୁ । ତାଙ୍କର ଜୀବନୀ ପାଠ କଲାପରେ ସାଂପ୍ରତିକ ସମାଜକୁ ପ୍ରେରଣା ଦେବା ସଙ୍ଗେ ସଙ୍ଗେ ଆଜିର ବସ୍ତୁବାଦୀ ମଣିଷ କିଛିଟା ଜାତୀୟ ପ୍ରେମ ଶିକ୍ଷା କରିବା ଉଚିତ୍ । ଆଜି ଆମେ ଦେଶର ଭବିଷ୍ୟତ ନାଗରିକ ମାନଙ୍କୁ ମନେ ପକାଇ ଦେବାକୁ ଚାହୁଁ ଯେ, ଧରଣୀଧରଙ୍କ କର୍ମମୟ ଜୀବନର ବିଛିବା ପ୍ରେରଣା ସେମାନଙ୍କ ଜୀବନ ପାଇଁ ଧେୟ ହେଉ ।

## ଅଗ୍ନିପୁତ୍ର ବିର୍ସା ମୁଣ୍ଡା

ଇଂରେଜ ସରକାରଙ୍କ ବିରୁଦ୍ଧରେ ଜନ ଆନ୍ଦୋଳନ ମୁଣ୍ଡ ଟେକିବା ସମୟରେ ୧୮୭୫ ମସିହା ନଭେମ୍ବର ୧୫ ତାରିଖରେ ଜନ୍ମ ଗ୍ରହଣ କରିଥିଲେ ବିର୍ସାମୁଣ୍ଡା । ତାଙ୍କ ପିତାଙ୍କ ନାମ ଥିଲା ସୁଗାନ୍ତ ମୁଣ୍ଡା ଏବଂ ମାତାଙ୍କ ନାମ ଥିଲା କରମୀ ମୁଣ୍ଡା । ଜଣେ ପ୍ରବାଦ ପୁରୁଷଙ୍କୁ ଜନ୍ମଦେଇ ସେମାନେ ସେମାନଙ୍କ ଜୀବନକୁ ଧନ୍ୟ କରି ପାରିଛନ୍ତି । ବିର୍ସାମୁଣ୍ଡାଙ୍କ ଆବିର୍ଭାବ ସମୟରେ ଦେଶବାସୀ ଇଂରେଜ ମାନଙ୍କ ଅକଥନୀୟ ଅତ୍ୟାଚାରରେ ପ୍ରପୀଡ଼ିତ ହେଉଥିଲେ । ଇଂରେଜମାନଙ୍କ ଅତ୍ୟାଚାରରେ ଅତ୍ୟାଚରିତ ହେଉଥିଲେ ସୁଦ୍ଧା ରାଜଦଣ୍ଡ ଭୟରେ କେହି ମୁହଁ ଖୋଲିବାକୁ ସାହାସ କରୁନଥିଲେ । ଫଳରେ ସେମାନଙ୍କର ଅତ୍ୟାଚାର

ବେଳକୁ ବେଳ ବଢ଼ି ଚାଲିଥାଏ । ଧର୍ମ ଧର୍ମ ଭିତରେ, ସବର୍ଣ୍ଣ ଅସବର୍ଣ୍ଣ ଭିତରେ ସେମାନେ ମତଭେଦ ସୃଷ୍ଟି କରୁଥିଲେ । ଆଦିବାସୀ ପରିବାରରେ ଜନ୍ମଲାଭ କରିଥିବା ବିର୍ସାଙ୍କ ଏଥି ପ୍ରତି ନଜିର ଥାଏ । ସେ ପିଲା ହେଲେବି ବଡ଼ ହେଲେ ଏହାର ପ୍ରତିରୋଧ କରିବେ ବୋଲି କହୁଥିଲେ । ତାଙ୍କର ବାଲ୍ୟ ଜୀବନ ଅର୍ଥାଭାବରେ କଟିଥିଲେ ସୁଦ୍ଧା ସେ ସପ୍ତମ ଶ୍ରେଣୀ ପାଠ ଶେଷ କରିଥିଲେ । ଅଧିକ ଶିକ୍ଷାର ଇଚ୍ଛା ଥିଲେ ମଧ ପାରିବାରିକ ଦୃଷ୍ଟି କୋଣରୁ ସେ ବିଦ୍ୟା ଛାଡି ବାପାଙ୍କ ସହ କୌଶଳ ବୃତ୍ତି କରିବା ପାଇଁ ପଛାଇ ନଥିଲେ । ଶିକାର କରିବା ଏବଂ ଜଙ୍ଗଲ ଜାତ ଦ୍ରବ୍ୟ ସଂଗ୍ରହ କରିବା ତାଙ୍କର ପ୍ରତିଦିନର କାର୍ଯ୍ୟ ଥିଲା । ବାଲ୍ୟ କାଳରୁ ସେ ମିଥ୍ୟାକୁ ପ୍ରଶୟ ଦେଉନଥିଲେ ଏବଂ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ ତାଙ୍କର ଏକ ମହତ ଗୁଣ ଥିଲା । ତେଣୁ ସେ ସମସ୍ତଙ୍କର ପ୍ରିୟପାତ୍ର ଥିଲେ ।

ଏହି ସମୟରେ ସ୍ଥାନୀୟ ଜମିଦାର ମାନଙ୍କୁ ହାତରେ ରଖି ଆଦିବାସୀ ମାନଙ୍କ ଉପରେ ଇଂରେଜ ସରକାର ଅକଥନୀୟ ଅତ୍ୟାଚାର କରୁଥିଲେ । ଜଙ୍ଗଲ ସଫାକରି ଆଦିବାସୀ ମାନେ ଚାଷଜମି ପ୍ରସ୍ତୁତ କରିବା ସମୟରେ ଜମିଦାରମାନେ ଯୋର ଜବର କରି ତାହା ଛଡ଼ାଇ ନେଉଥିଲେ । ଚାଷ ଜମିରୁ ଫସଲ ମଧ ନେଇ ଯାଉଥିଲେ । ଜମିଦାର, ରାଜା ଏବଂ ଇଂରେଜ ସରକାରଙ୍କ ଅନ୍ୟାୟ ପାଇଁ ଅଦିବାସୀ ମାନଙ୍କର ଅର୍ଥ ନୈତିକ ଅବସ୍ଥା ଦିନକୁ ଦିନ ଭୂଷୁଡ଼ି ପଡୁଥାଏ । ଆଦିବାସୀ ମାନଙ୍କର ମୁଖ୍ୟ ସମ୍ବଳ ହେଲା ଜଙ୍ଗଲ । ଜଙ୍ଗଲରୁ ଝୁଣା, ପତ୍ର ଏବଂ ବିଭିର୍ଣ୍ଣ ଗଛର ମୂଳ ଇତ୍ୟାଦି ସଂଗ୍ରହ କରି ସେମାନେ ନିଜର ଗୁଜୁରାଣ ମେଣ୍ଟାଇ ଥାନ୍ତି । ଅର୍ଥନୈତିକ ସ୍ତରରେ ଦୁର୍ବଳ ଅଦିବାସୀ ମାନେ ଜଳ ଜମି ଜଙ୍ଗଲ ପାଇଁ କାହାକୁ କର ଦିଅନ୍ତି ନାହିଁ । ନୂତନ ଭୂବନ୍ଦୋବସ୍ତ ଆଇନ ଲାଗୁକରି ଇଂରେଜ ସରକାର ସେମାନଙ୍କଠାରୁ କର ଆଦାୟ କରିବାକୁ ଲାଗିଲେ । ଏହିପରି ସିଧା ସଳଖ ଆଦାୟ ନକରି ରାଜା ଏବଂ ଜମିଦାରଙ୍କ ମାଧ୍ୟମରେ ଆଦାୟ କଲେ ।

ଆଦିବାସୀମାନେ ଉତ୍ୟକ୍ତ ହୋଇ ପଡ଼ିଥିଲେ ଭୂବନ୍ଦୋବସ୍ତ ଆଇନ ଏବଂ କର ଉପରେ । ବେଢ଼ି ଉପରେ କୋରଡ଼ା ମାଡଭଳି ସେହି ସମୟରେ ଲାଗୁହେଲା ଜଙ୍ଗଲ ଆଇନ । ଏହି ଆଇନ ବଳରେ ପ୍ରତ୍ୟେକ ଜଙ୍ଗଲକୁ ଜଣେ ଲେଖାଏଁ ଠିକାଦାର ଠିକାରେ ନେଇଥିଲେ । ଆଇନ ଅନୁସାରେ ଜଙ୍ଗଲ ଉପରେ ସମସ୍ତ ଅଧିକାର ସେମାନଙ୍କର ରହୁ ଥିଲା । ଆଦିବାସୀ ମାନେ ଜଙ୍ଗଲଜାତଦ୍ରବ୍ୟ ସଂଗ୍ରହ କରିବାକୁ ହେଲେ ଠିକାଦାରଙ୍କୁ କର ଦେବାକୁ ପଡୁଥିଲା । ସ୍ୱାଧୀନଚେତା ଆଦିବାସୀ ମାନଙ୍କୁ ଏହାଥିଲା ଯନ୍ତ୍ରଣା ଦାୟକ । ବିର୍ସା

ମୁଣ୍ଡାଙ୍କ ପରିବାର ଏଥିରୁ ବା' ବାଦପଡନ୍ତେ କିପରି ? ରାଜଦଣ୍ଡ ଭୟରେ କେହି ମୁହଁ ଖୋଲୁ ନଥିବା ବେଳେ ସାହସୀ ଯୁବକ ବିର୍ସାମୁଣ୍ଡା ଗାଁ ଗାଁ ବୁଲି ଲୋକ ମାନଙ୍କୁ ଏକତ୍ରିତ କରାଉଥିଲେ । ଲୋକମାନଙ୍କୁ ବୁଝାଉ ଥିଲେ । ଆମେ ଆଦିବାସୀ, ଜଙ୍ଗଲ ଆମର, ଜଙ୍ଗଲ ଜାତ ଦ୍ରବ୍ୟ ଆମର ଏବଂ ଏହା ଉପରେ କାହାର ଅଧିକାର ନାହିଁ । ଆମକୁ ସୁଖ ଏବଂ ସମୃଦ୍ଧିର ଜୀବନ ବିତେଇବାକୁ ହେଲେ ଏକତ୍ରିତ ହୋଇ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ହେବ । ଫଳରେ ବିର୍ସାମୁଣ୍ଡାଙ୍କର ଆନ୍ଦୋଳନକୁ ହଜାର ହଜାର ନିଷ୍ପେଷିତ ଆଦିବାସୀ ଡେଇଁ ପଡ଼ିଲେ । ବିଦ୍ରୋହ ଭୀଷଣ ରୂପ ଧାରଣ କଲା । ଶାସକ ମାନଙ୍କ ପାଇଁ ଏହା ମୁଣ୍ଡ ବ୍ୟଥାର କାରଣ ହେଲା । ରାଜା, ଜମିଦାର,ଏବଂ ଠିକାଦାର ମାନେ ବିପଦ ଗଣିଲେ । ବିଦ୍ରୋହକୁ ଦମନ କରିବା ପାଇଁ ଇଂରେଜ ସରକାର ମଧ୍ୟ ସଫଳ ହୋଇପାରି ନଥିଲେ ।

ଏହିପରି କ୍ରମାଗତ ଆନ୍ଦୋଳନ ଫଳରେ ଠିକାଦାର ମାନଙ୍କ ହାତରୁ ବିର୍ସାମୁଣ୍ଡା ଙ୍କ ନେତୃତ୍ୱରେ ଆଦିବାସୀମାନେ ସେମାନଙ୍କର ଜଙ୍ଗଲ ଜମିକୁ ଫେରି ପାଇଥିଲେ । ତତ୍‌କାଳୀନ ରାଜତନ୍ତ୍ର ବିରୁଦ୍ଧରେ ସଂଗ୍ରାମ କରି ଏତେ କମ୍ ବୟସର ବାଳକ ସଫଳ ହୋଇ ଥିବାରୁ ସେ ସମସ୍ତଙ୍କର ଆସ୍ଥାଭାଜନ ହୋଇ ପାରି ଥିଲେ । ବିର୍ସାଙ୍କ ବିଦ୍ରୋହ ଫଳରେ ମୁଣ୍ଡାମାନେ ତାଙ୍କ ଜମିର ମାଲିକାନା ମଧ୍ୟ ଫେରି ପାଇଥିଲେ । ଏହି ଆନ୍ଦୋଳନ ଫଳରେ ଜମିଦାର ଏବଂ ଠିକାଦାର ମାନଙ୍କର ବହୁତ କ୍ଷତି ହୋଇଥିଲା । ଠିକାଦାର ମାନେ ବିର୍ସାଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିପାରି ନଥିଲେ । ବିର୍ସାଙ୍କ ନା ଶୁଣିଲେ ସାଭିଏଁ ଡରିବାକୁ ଲାଗିଲେ । ପ୍ରତିବାଦର ସ୍ୱର ଶୁଭିଲା ନାହିଁ । ସମସ୍ତେ ଭୟରେ ଅତଙ୍କିତ ହେଲେ । ବିର୍ସାଙ୍କୁ ଧରିବା ପାଇଁ ଏବଂ ମୁଣ୍ଡା ମାନଙ୍କୁ ଆୟତ କରିବା ପାଇଁ ଜମିଦାର ଏବଂ ଠିକାଦାର ମାନେ ଇଂରେଜ ସରକାରଙ୍କୁ ସରକାରଙ୍କୁ ଗୁହାରୀ କଲେ । ଇଂରେଜ କମିଶନର ଜମିଦାର ଏବଂ ଠିକାଦାରଙ୍କ ଉଦ୍ୟମରେ ଆରମ୍ଭ ହେଲା ମୁଣ୍ଡା ଦମନ ଲୀଳା । ବିଚାର କରାଗଲା ଯେ, ଯଦି ବିର୍ସା ମୁଣ୍ଡାଙ୍କୁ ଧରିନିଆଯାଏ ତାହାହେଲେ ଅନ୍ୟକେହି ଆନ୍ଦୋଳନ କରିବାକୁ ସାହାସ କରିବେ ନାହିଁ । ତେଣୁ ଇଂରେଜ ଫଉଜଙ୍କୁ ନିର୍ଦ୍ଦେଶ ଦିଆ ଗଲା ଯେ, ବିର୍ସା ମୁଣ୍ଡାକୁ ବନ୍ଦି କର କିମ୍ବା ଗୁଳିକର । ଏହି ଆଦେଶ ବିର୍ସାଙ୍କର କର୍ଣ୍ଣ ଗୋଚର ହେଲାପରେ ସେ ପୂର୍ବପରି ମୁକ୍ତ ଭାବରେ ନବୁଲି ଛଦ୍ମ ବେଶରେ ଗାଁ ଗାଁ ବୁଲି ସଭା ସମିତି ମାନକଲେ । ଜନସାଧାରଣ ମାନଙ୍କୁ ଉଦ୍‌ବୋଧନ ଦେଇ କହୁଥିଲେ ଯେ, ଏହି ମା'ମାଟି, ପାଣି, ପବନ, ଜଙ୍ଗଲ ଇତ୍ୟାଦି ଆମର । ଇଂରେଜ ସରକାର ତାଙ୍କର ସ୍ୱାର୍ଥ ସିଦ୍ଧିପାଇଁ ନିରୀହ ଆଦିବାସୀ ମାନଙ୍କୁ ଲୁଟିବାରେ ଲାଗିଛନ୍ତି । ଆମର ଆଦିବାସୀ ସଂସ୍କୃତିକୁ ରକ୍ଷା କରିବାକୁ ହେଲେ ଆମକୁ

ଇଂରେଜ ଫଉଜଙ୍କ ଉପରେ ଅତର୍କିତ ଆକ୍ରମଣ କରିବାକୁ ହେବ । ବିର୍ସାଙ୍କ କଥାରେ ହଜାର ହଜାର ଅଦିବାସୀ ଏକମତ ହୋଇ ଏକତ୍ରିତ ହେଲେ ଏବଂ ଇଂରେଜ ସେନା ମାନଙ୍କ ଘର ଲୁଟକରି ଖାଦ୍ୟ ଏବଂ ଅର୍ଥ ସଂଗ୍ରହ କରି ବିଦ୍ରୋହୀ ମାନଙ୍କୁ ଯୋଗାଇଲେ । ଏହି ଆନ୍ଦୋଳନକୁ କିପରି ଭାବରେ ଦମନ କରାଯିବ ସେଥିପାଇଁ ଇଂରେଜ ସେନାଧକ୍ଷ ଚିନ୍ତିତ ହୋଇ ପଡିଥିଲେ ।

ଇଂରେଜ ସରକାର ବିର୍ସାମୁଣ୍ଡାଙ୍କୁ ଧରିବା ପାଇଁ ଆରମ୍ଭ କଲେ ଚକ୍ରବ୍ୟୁହ । ଅର୍ଥ ଲୋଭ ଦେଖାଇ ବିର୍ସାଙ୍କୁ ବନ୍ଦୀ କରିବା ପାଇଁ ଚକ୍ରାନ୍ତ ଚଳାଇଲେ । ଏଥିରେ ମୂଳ ମାର୍ଫତଦାର ଥିଲେ ଜଗମୋହନ ସିଂହ । ବିଶ୍ୱାସଘାତକ ଜଗମୋହନ ଅର୍ଥ ଲୋଭରେ ପ୍ରତିଶ୍ରୁତି ଦେଲେ ସେ ବିର୍ଷା ମୁଣ୍ଡାଙ୍କୁ ଧରାଇ ଦେବ । ଦେଶଦ୍ରୋହୀ ଜଗମୋହନ ସିଂହଙ୍କର ଆରମ୍ଭ ହେଲା ଚକ୍ରବ୍ୟୁହ । ଧନର ଲାଳସାରେ ବଶୀଭୂତ ହୋଇ ଦେଶଦ୍ରୋହୀ ଜଗମୋହନ ବିଛାଇ ଥିବା ଜାଲରେ ସଂଗ୍ରାମୀ ବିର୍ସାମୁଣ୍ଡା ଛନ୍ଦି ହୋଇଗଲେ । ଫଳରେ ଇଂରେଜ ଫଉଜ ହାତରେ ସେ ବନ୍ଦୀ ହେଲେ । ବନ୍ଦୀ ହେବା ପରେ ଇଂରେଜ ଏବଂ ଜମିଦାର ମାନଙ୍କ ଗହଣରେ ଆନନ୍ଦର ଲହରୀ ଖେଳିଗଲା । ଅପର ପକ୍ଷରେ ବିର୍ସାମୁଣ୍ଡାଙ୍କର ବନ୍ଦୀ ହୋଇଥିବା ଖବର ସର୍ବତ୍ର ପ୍ରଚାରିତ ହୋଇଗଲା । ବିଦ୍ରୋହୀ ମାନେ ଏହା ଶୁଣି ହଜାର ହଜାର ସଂଖ୍ୟାରେ ଏକତ୍ରିତ ହେଲେ ଏବଂ କହିଲେ ସେମାନଙ୍କର ପ୍ରିୟ ନେତାଙ୍କୁ ବନ୍ଦୀ ମୁକ୍ତ ନକଲେ ସମସ୍ତ ବିଦ୍ରୋହୀଙ୍କୁ ବନ୍ଦୀ କରାଯାଉ । ଜେଲ ଭରୋ ଡାକରାରେ ହଜାର ହଜାର ଆଦିବାସୀ ହାତରେ ସେମାନଙ୍କ ପାରମ୍ପରିକ ଅସ୍ତ୍ରଶସ୍ତ୍ର ଧନୁତୀର ଧରି ଏକତ୍ରିତ ହୋଇଥିଲେ । ବିଦ୍ରୋହୀମାନଙ୍କର ଏପରି ସମାବେଶ ଦେଖି ଇଂରେଜ ସରକାରଙ୍କର ଭାଳେଣି ପଡ଼ିଗଲା । ହଜାର ହଜାର ବିଦ୍ରୋହୀଙ୍କୁ ସରକାର କରିବେ ବା' କଣ ! ବାଧ୍ୟ ହୋଇ ଇଂରେଜ ସରକାର ବିଦ୍ରୋହୀଙ୍କ ଦାବୀକୁ ମାନି ନେଇ ବିର୍ସାମୁଣ୍ଡାଙ୍କୁ ବନ୍ଦୀରୁ ମୁକ୍ତ କରି ଦେଇଥିଲେ । ଫଳରେ ଆଦିବାସୀ ବିଦ୍ରୋହୀଙ୍କ ମନରେ ଆନନ୍ଦର ଢେଉ ଖେଳି ଯାଇଥିଲା । ଆଦିବାସୀମାନେ ତାଙ୍କର ପ୍ରିୟ ନେତାଙ୍କୁ ପାଇ ପାରିଥିଲେ ।

ଜଣେ ଦେଶପ୍ରେମୀ କେବେହେଲେ ସରକାରଙ୍କର କଠୋର ଆଇନକୁ ଭ୍ରୁକ୍ଷେପ କରି ନଥାଏ । ମା' ମାଟିର ସେବାକୁ ସେ ଜୀବନର ଶ୍ରେଷ୍ଠ କର୍ତ୍ତବ୍ୟ ବୋଲି ମଣିଥାଏ । ସେହିପରି ଜେଲରୁ ମୁକ୍ତି ହେବା ପରେ ବିର୍ସା ଅଧୀକ ଭାବରେ ଆଦିବାସୀ ମାନଙ୍କର ନେତୃତ୍ୱ ନେଇଥିଲେ । ଜଙ୍ଗଲ ଏବଂ ଜମି ଉପରେ ଆଦିବାସୀ ମାନଙ୍କର ଦାବୀ ଜାହିରି

କରି ୧୮୯୯ ମସିହାରେ ଡୋମାବାରୀ ପାହାଡ ଉପରେ ଏକ ଗୁପ୍ତ ବୈଠକର ଆୟୋଜନ କରିଥିଲେ । ବର୍ତ୍ତମାନର ବିହାର ଓଡ଼ିଶା ରାଞ୍ଚି ଅଞ୍ଚଳର ବହୁ ଆଦିବାସୀ ଯୋଗ ଦେଇଥିଲେ । ୨୩/୨୪ ବର୍ଷର ଯୁବକ ବିର୍ସା ମୁଣ୍ଡାଙ୍କ ଉପରେ ସେମାନଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା । ଉପସ୍ଥିତ ଆଦିବାସୀ ମାନେ ବିର୍ସାଙ୍କର ନିଷ୍ଠାପର ଦେଶପ୍ରେମରେ ମୁଗ୍ଧହୋଇ ତାଙ୍କୁ "ଆଜାଦ୍ ପୁତ୍ର" ନାମରେ ଉପାଧି ଦେଇଥିଲେ । ଏହାପରେ ବିଦ୍ରୋହୀ ମାନେ ବିଜୁଳି ବେଗରେ ବ୍ୟାପି ଯାଇଥିଲେ ସାନ୍ତାଳ ପ୍ରଗଣା, ସିଂହଭୂମି. ସରଗଜା, ବୀରଭୂମି ଏବଂ ରାଞ୍ଚି ଆଡକୁ । ଇଂରେଜ କାର୍ଯ୍ୟାଳୟ ମାନଙ୍କୁ ଜାଳିପୋଡି ଛାରଖାର କରିଦେଇଥିଲେ । ଏହି ବିଦ୍ରୋହ ଅତିରିକ୍ତ ହେବାରୁ ଇଂରେଜ ଅଧିକାରୀ ଫଉଜ ମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ ଯେ, ବିର୍ସାମୁଣ୍ଡାଙ୍କୁ ଯେଉଁଠି ଯେଉଁ ଅବସ୍ଥାରେ ଦେଖୁଛ ଗୁଳିକର । ବିଦ୍ରୋହ ଦମନ ଆଳରେ ଇଂରେଜ ମାନଙ୍କର ଦମନ ଲୀଳା ଆରମ୍ଭ ହେଲା । ଏ ଖବର ପାଇଲାପରେ ସ୍ୱାଧୀନ ଚେତନା ସ୍ୱାଭିମାନୀ ମୁଣ୍ଡା ବିଦ୍ରୋହୀମାନେ ଶତ ସିଂହର ପରାକ୍ରମ ନେଇ ଆକ୍ରମଣ କଲେ ଇଂରେଜ ଫଉଜଙ୍କୁ । ଏହି ବିଦ୍ରୋହରେ ଶହ ଶହ ସେନା ମୃତ୍ୟୁ ବରଣ କରିବା ସଙ୍ଗେ ସଙ୍ଗେ କିଛି ବିଦ୍ରୋହୀ ମଧ୍ୟ ଇଂରେଜ ଗୁଳିରେ ଶିକାର ହୋଇଥିଲେ ।

ଭାରତୀୟ ସମାଜରେ ବିଭିଷଣଙ୍କ ଚରିତ୍ର ପରି ମଣିଷର ଆଜି ସୁଦ୍ଧା ବି' ଅଭାବ ନାହାନ୍ତି । ଯୁଗେ ଯୁଗେ ଏହି ଚରିତ୍ରର ଉଦାହରଣ ଆମେ ରମାୟଣ, ମହାଭାରତ ଏବଂ ପୁରାଣ ମାନଙ୍କରୁ ଶୁଣି ଆସୁଅଛୁ । ଇତିହାସକୁ ଆମେ ଅନୁଧ୍ୟାନ କଲେ ଏହି ଚରିତ୍ର ଗୁଡ଼ିକର ଅଭାବ ନଥାଏ । ଠିକ୍ ଏହିପରି ଏକ ପରିସ୍ଥିତି ଉପୁଜିଲା ବିର୍ସାମୁଣ୍ଡାଙ୍କ ଜୀବନରେ । ଯେତେବେଳେ ଆଦିବାସୀ ବିଦ୍ରୋହୀମାନେ ସମଗ୍ର ବିହାର ରାଜ୍ୟରେ ଆତଙ୍କ ଚଳାଇ ଥାନ୍ତି ସେତେବେଳେ ଇଂରେଜ ସରକାର ବିର୍ସାମୁଣ୍ଡାଙ୍କୁ ଧରାଇ ଦେବାପାଇଁ କିଛି ପୁରସ୍କାର ଘୋଷଣା କଲେ । ଜିବୀତ ଅବସ୍ଥାରେ ହେଉ କିମ୍ବା ମୃତ ଅବସ୍ଥାରେ ହେଉ ଯେ ବିର୍ସାମୁଣ୍ଡାଙ୍କୁ ଧରାଇ ଦେବ ତାଙ୍କୁ ୫୦୦ ଟଙ୍କା ପୁରସ୍କାର ଦିଆଯିବ । ଏହି ପୁରସ୍କାର ରାଶି ଘୋଷଣା କଲାପରେ ସ୍ଥାନୀୟ ଅର୍ଥଲୋଭୀ ବିଶ୍ୱାସ ଘାତକ ମାନେ ଶିବିର ବିଷୟରେ ଖବର ସଂଗ୍ରହ କଲେ ଏବଂ ଇଂରେଜ ଅଧିକାରୀଙ୍କୁ ସୂଚନା ଦେଲେ । ସେହି ସମୟରେ ଆଦିବାସୀ ବିଦ୍ରୋହୀ ମାନଙ୍କର ଅସ୍ତ୍ରଶସ୍ତ୍ରର ଅଭାବ, ଖାଦ୍ୟ ପେୟର ଅଭାବ ଏବଂ ଶରୀର ଅସୁସ୍ଥତା ସେମାନଙ୍କର ମନୋବଳକୁ ଦୁର୍ବଳ କରି ପକାଉଥାଏ । ଏହି ସୁଯୋଗ ନେଇ ବିଭିଷଣ ମାନଙ୍କ ସହାୟତାରେ ଇଂରେଜ ଫଉଜ ମାନେ ବିର୍ସାଙ୍କୁ ବନ୍ଦୀ କଲେ । ଦେଶପ୍ରେମୀ ବିର୍ସାଙ୍କୁ ଜେଲଦଣ୍ଡ ଦିଆ ଯାଇଥିଲା ।

ଦେଶପ୍ରେମର ଏକ ଜ୍ୱଳନ୍ତ ଉଦାହରଣ ଦେଖିବାକୁ ମିଳିଥିଲା ଯେ, ୨୫ ବର୍ଷ ବୟସରେ ବିଧର୍ମୀ ଇଂରେଜ ଶାସନର ମୂଳଦୁଆକୁ ଦୋହଲାଇ ଦେଇଥିଲେ । ଫଳରେ ଆଦିବାସୀ ମାନେ ସେମାନଙ୍କର ଜମି ଫେରି ପାଇବା ସଙ୍ଗେ ସଙ୍ଗେ ଜଙ୍ଗଲ ଆଇନକୁ କୋହଳ କରି ଦିଆଯାଇଥିଲା । ଏହି ମହାନ୍ ସଂଗ୍ରାମୀଙ୍କର ୧୯୦୦ ମସିହା ଜୁନ୍‌ମାସ ୯ ତାରିଖ ଦିନ ଜେଲଖାନା ଭିତରେ ଦେହାବସାନ ଘଟିଥିଲା । ସେହିପରି ଜଣେ ଦେଶପ୍ରେମୀ, ସ୍ୱାଭିମାନୀ ସଂଗ୍ରାମୀକୁ ଜନ୍ମମାଟି ଜନ୍ମଦେଇ ଯେତିକି ଗୌରବାର୍ଣ୍ଣିତ ମନେକରୁଥିଲା ତାଙ୍କ ବିୟୋଗରେ ସେତିକି ମର୍ମାହତ ହୋଇଥିଲେ ଏ ଜାତିର ଦେଶପ୍ରେମୀ, ଏମାଟିର ପାଣି ପବନ ଏବଂ ବନ ଝରଣା । ଏହି ଦେଶପ୍ରେମୀଙ୍କୁ ଏ ଜାତି ମନେରଖିବ ଏବଂ ରଖିଛି ମଧ୍ୟ ।

## ଚକରା ବିଶୋୟୀ

୧୮୦୩ ମସିହାରେ ଇଂରେଜ ମାନେ ଓଡ଼ିଶାକୁ ଅଧିକାର କରିବା ପରେ ବିଭିନ୍ନ ସ୍ଥାନରେ ନୂତନ ନୀତି ନିୟମ ପ୍ରୟୋଗ କରି ସ୍ଥାନୀୟ ରାଜା ଏବଂ ଜମିଦାରଙ୍କ ହାତରୁ କ୍ଷମତା କାଢି ନେବାର ପ୍ରଚେଷ୍ଟା କରୁଥିଲେ । ଫଳରେ ସାଧାରଣ ପ୍ରଜା ମୁଖ୍ୟତଃ ଆଦିବାସୀ ମାନଙ୍କ ଉପରେ ଏହାର ପ୍ରଭାବ ଅଧିକ ପଡ଼ିଥିଲା । କାରଣ ଭୂବନ୍ଦୋବସ୍ତ ଉପରେ ଏହାର ପ୍ରଭାବ ଅଧିକ ପଡ଼ିଥିଲା । କାରଣ ଭୂବନ୍ଦୋବସ୍ତ ଜଙ୍ଗଲ, ଜମି ଏବଂ ଜଳ ଉପରେ କରବୃଦ୍ଧି କରିବା ଫଳରେ ପ୍ରଥମେ ସ୍ୱାଧୀନ ଚେତା କନ୍ଧମାନେ ବିଶେଷ ଭାବେ କ୍ଷତି ସହିଥିଲେ । କାରଣ ଜଙ୍ଗଲହିଁ ଥିଲା ତାଙ୍କର ସର୍ବସ୍ୱ । ଜଙ୍ଗଲରୁ ମହୁଲ, ଶାଳଫୁଲ, ଖଲିପତ୍ର, ବାଉଁଶ କରଡ଼ି ଇତ୍ୟାଦି ନେଇ ସେମାନେ ଜୀବିକା ନିର୍ବାହ କରୁଥିଲେ । ଏହାଥିଲା ସେମାନଙ୍କର ପ୍ରତିଦିନର ବେଉସା । ଜଙ୍ଗଲ କାଟି ପୋଡୁଚାଷ କରିବା ଆଦିବାସୀ କନ୍ଧ ମାନଙ୍କର ଥିଲା ପ୍ରଧାନ କାର୍ଯ୍ୟ ।

ଚକରା ବିଶୋଇ ୧୮୨୪ ମସିହା ପବିତ୍ର ଶାମ୍ୱଦଶମୀ ଦିନ ତୋରାବାଡ଼ି ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ସେ ଏକ ସଂଗ୍ରାମୀ ପରିବାରରେ ଆବିର୍ଭୁତ ହୋଇଥିଲେ । ଚକରାଙ୍କ ପିତାଥିଲେ ରାମସିଂ ବକ୍ସି ଏବଂ କକା ଥିଲେ ଦୋହରା ବିଶୋୟୀ । ପ୍ରଥମେ ଏମାନେ ଗଞ୍ଜାମ ଜିଲ୍ଲାର ବିଞ୍ଜିଗିରି ଗ୍ରାମରେ ବସବାସ କରୁଥିଲେ । ଚକରାଙ୍କ କକା ଦୋହରା ବିଶୋୟୀ ଏବଂ ରାଜା ଶ୍ରୀକର ଭଞ୍ଜଙ୍କ ମଧ୍ୟରେ ମନୋମାଳିନ୍ୟ ହେବାରୁ ତାଙ୍କ ପରିବାର ଅର୍ଥାତ ଚକରାଙ୍କ ବାପା ଏବଂ କକା ଦୁଇଭାଇ ବିଞ୍ଜିଗିରି ଗ୍ରାମ ପରିତ୍ୟାଗ କରି ଘୁମୁସର ରାଜ୍ୟ ସୀମା ବାହାରେ ତୋରାବାଡି ଗ୍ରାମରେ ରହୁଥିଲେ । ସେହିଠାରେ ଜନ୍ମ

ନେଇଥିଲେ ଚକରା ବିଶୋୟୀ । ତାଙ୍କର ବାଲ୍ୟଜୀବନ କଟିଥିଲା ତୋରାବାଡ଼ି ଗ୍ରାମର କନ୍ଧ ବାଳକଙ୍କ ମଧ୍ୟରେ । ଅପ୍ରାପ୍ତ ବୟସରୁ ତାଙ୍କର ବୁଦ୍ଧିମତା ଜାଣି ହୋଇଥିଲା । ପିଲାଦିନରୁ ଶିକାର କରିବା ଜଙ୍ଗଲରେ ବୁଲି ବନ୍ୟ ଜନ୍ତୁଙ୍କର ସମ୍ମୁଖୀନ ହେବା ସତେ ଯେପରି ତାଙ୍କର ଗୋଟେ ସଉକ ଥିଲା । ପିଲା ଦିନରୁ ବାଡ଼ିଖେଳ, ମଲ୍ଲଯୁଦ୍ଧ ଶିକ୍ଷିବାରେ ସେ ପାରଙ୍ଗମ ଥିଲେ । ପିଲା ଦିନରୁ ସର୍ବଗୁଣାକାର ପରି ମାନସିକ ଏବଂ ଶାରୀରିକ ସ୍ତରରେ ହୃଷ୍ଟ ପୃଷ୍ଟ ଥିଲେ । ଏହି ସମୟରେ ତାଙ୍କ କକା ମହାନ ସଂଗ୍ରାମୀ ଦୋହରା ବିଶୋୟୀ ଗଞ୍ଜାମ ଏବଂ କନ୍ଧମାଳ ଜିଲ୍ଲା ମାନଙ୍କର କନ୍ଧ ମାନଙ୍କୁ ମେଳିକରି ଇଂରେଜ ବିରୋଧୀ ଆନ୍ଦୋଳନ ଜାରି ରଖିଥାନ୍ତି । ଚକରା କକାଙ୍କୁ ମେଳିରେ ସହଯୋଗ କରିବା ନିମିତ୍ତ ମେଳିକି ମେଳି ଖବର ସରବରାହ କରୁଥିଲେ । କକାଙ୍କ ସହିତ ମିଶି ଚକରା ବିଦ୍ରୋହ ସମ୍ବନ୍ଧିତ ସବୁ ଜ୍ଞାନରେ ପାରଙ୍ଗମ ହୋଇ ସାରିଥିଲେ । ଆନ୍ଦୋଳନ ନାଁ ଶୁଣିଲେ ଚକରା ଆଗଭର ହୋଇ ବାହାରି ପଡୁଥିଲେ । ୧୮୩୭ ମସିହାରେ ଚକରାଙ୍କ କକା ଏବଂ କକା ପୁଅ ଭାଇ କିଛି ବିଦ୍ରୋହୀଙ୍କ ସହିତ ବନ୍ଦୀ ହୋଇ ଜେଲ ଗଲେ । କକାଙ୍କ ଅନୁପସ୍ଥିତରେ ଚକରା ନିଜେ ସଂଗ୍ରାମ ଚଳାଇବା ପାଇଁ ପ୍ରସ୍ତୁତ ହେଲେ । କିନ୍ତୁ ସେତେବେଳକୁ ଚକରାଙ୍କ ବୟସ ଥିଲା ୧୩ ବର୍ଷ । ତଥାପି ଏହି ଦୁଃଖଦ ପରିସ୍ଥିତିରେ ସେ ସଂଗ୍ରାମରେ ପାଦ ଥାପିଥିଲେ । ନିଜ ସଂପ୍ରଦାୟ ଏବଂ ସଂସ୍କୃତିକୁ ସମ୍ମାନଦେଇ ସେ ସାତ ବର୍ଷ ବୟସରେ ବିବାହ କରିଥିଲେ ଦୋହରାଙ୍କ ପାଳିତା କନ୍ୟା ତାରକାଙ୍କୁ । ବିବାହ ପରେ ଘର ସଂସାର ଅପେକ୍ଷା ସେ ଆନ୍ଦୋଳନରେ ଅଧିକ ସମୟ ବିନିଯୋଗ କରୁଥିଲେ । ଇଂରେଜ ସରକାରଙ୍କର କିପରି ପ୍ରତିଶୋଧ ନେବା ଏହା ତାଙ୍କର ବଡ଼ ଚିନ୍ତା ଥିଲା ।

କନ୍ଧ ବିପ୍ଲବ ଅଧିକତର ହେବା ହେତୁ ଇଂରେଜ ଫଉଜ ମାନଙ୍କର ଦମନଲୀଳା ଅଧିକ ମାତ୍ରାରେ ଚାଲିଲା । ବିପ୍ଳବୀ ମାନଙ୍କୁ ଧରିନେଇ ଜେଲ, ଜୋରିମାନା ଏବଂ ଫାଶୀ ଦଣ୍ଡ ଇତ୍ୟାଦି ଦିଆଗଲା । ଆଦିବାସୀ ମାନଙ୍କର ପାଳିତ ପଶୁପକ୍ଷୀ ଗୁଡ଼ିକୁ ଜୋରକରି ନେଇ ଯାଉଥାନ୍ତି । ଘରଦ୍ୱାର ମଧ୍ୟ ପୋଡି ଛାରଖାର କରି ଦେଉଥାନ୍ତି । ବିଦ୍ରୋହ ନାଁରେ ଦମନ ଲୀଳା ଅଧିକ ମାତ୍ରାରେ ଚାଲିଥାଏ । ଏପରି ପରିବେଶ ଏବଂ ପରିସ୍ଥିତିକୁ ନେଇ ସାଧାରଣ ଜନତାଙ୍କର ଇଂରେଜ ସରକାରଙ୍କ ପ୍ରତି ଅସନ୍ତୁଷ୍ଟ ହୋଇପଡିଥିଲେ । ଏହି ପରିବେଶର ସୁଯୋଗ ନେଇ ଚକରା ଘୁମୁସର ଅଞ୍ଚଳର କିଛି ସୁସ୍ଥ ସବଳ ଆଦିବାସୀଙ୍କୁ ଏକାଠି କରି ଏକ ଦଳ ଗଠନ କଲେ । ଏମାନଙ୍କୁ ଧନୁର୍ବିଦ୍ୟା ଠାରୁ ଆରମ୍ଭ କରି ଗରିଲା ଯୁଦ୍ଧ ପର୍ଯ୍ୟନ୍ତ ସବୁ ପ୍ରକାର ଶିକ୍ଷା ପ୍ରଦାନ କଲେ । ବିଦ୍ୟାରେ ପାରଙ୍ଗମ ହେଲା ପରେ ତୋରାବାଡ଼ି,

ଅଞ୍ଚଳର ଆରାଧ୍ୟ ଦେବୀ 'ରଣଘଣ୍ଟା'ଙ୍କୁ ପୂଜା ଦେଇ ଚକରାଙ୍କ ନେତୃତ୍ୱରେ ଆରମ୍ଭ ହେଲା ବିଦ୍ରୋହ ।

ଇଂରେଜ ମାନଙ୍କର ବିଦ୍ରୋହ ଦମନ ଫଳରେ ୧୮୪୬ ମସିହା ବେଳକୁ ପ୍ରାୟ ଆନ୍ଦୋଳନ ନଇଁ ଆସିଥିଲା । ଏହି ସମୟରେ ଇଂରେଜମାନେ "ମେରିଆ ଉଚ୍ଛେଦ" ଆଇନ ଲାଗୁ କରିଥାନ୍ତି । ଏହି ଆଇନକୁ ଲାଗୁ କରିବା ଏତେ ସହଜ ନଥିଲା । କନ୍ଧମାନେ ବିଶ୍ୱାସ କରନ୍ତି ଯେ, ଧରିତ୍ରୀ ମାତା କ୍ଷୁବ୍ଧ ହେଲେ ସମାଜର ଅମଙ୍ଗଳ ହୁଏ । ତେଣୁ କନ୍ଧମାନେ ମାଟି ମା'କୁ ସନ୍ତୁଷ୍ଟ କରିବା ପାଇଁ 'ମେରିଆ ବଳି' ଦେଇଥାନ୍ତି । ମେରିଆ ବଳି ନଦେଲେ ତାଙ୍କ ସମାଜର ଅମଙ୍ଗଳ ଘଟିବ । ତେଣୁ ଇଂରେଜ ମାନଙ୍କର ମେରିଆ ବଳି ଉଚ୍ଛେଦକୁ କନ୍ଧମାନେ ସହ୍ୟକରି ପାରୁ ନଥିଲେ । ମେରିଆ କହିଲେ ଧରିତ୍ରୀ ଉଦ୍ଦେଶ୍ୟରେ ଏକ ନିର୍ଦ୍ଦିଷ୍ଟ ଦିନରେ ପଶୁ ପକ୍ଷୀ ମାନଙ୍କୁ ଠାକୁରାଣୀଙ୍କ ନିକଟରେ ବଳି ପ୍ରଦାନ କରିବା । ଏହାକୁ ଉଚ୍ଛେଦ କରିବା ପାଇଁ କନ୍ଧମାନଙ୍କ ଉପରେ ଜୁଲମ କରିଥାନ୍ତି ଇଂରେଜ ସରକାର । ଏହି ସୁଯୋଗ ନେଇ ଆଦିବାସୀ ସର୍ଦ୍ଦାର ଚକରା ବିଶୋୟୀ ଲୋକ ମାନଙ୍କୁ ବୁଝାଉ ଥାନ୍ତି ଯେ, ମେରିଆ ବନ୍ଦକଲେ ଆମର ଅମଙ୍ଗଳ ହେବ । ଏହି ଘଡିସନ୍ଧି ମୂହୁର୍ତ୍ତରେ ଚକରା ନିଜର ସୁସଂଗଠିତ ବାହିନୀ ସହିତ ନିଜର ପୈତୃକ ଭିଟାମାଟିରେ ପହଞ୍ଚି ଥିଲେ ଏବଂ ଟକା ପାଦର ପାଇକ ମାନେ ଚକରାଙ୍କୁ ସହଯୋଗ କରିଥିଲେ । ଫଳରେ ଚକରା ଗଢିଥିବା ବିଦ୍ରୋହୀ ସେନାମାନେ ଇଂରେଜ ବାହିନୀ ଉପରେ ଆକ୍ରମଣ କରିଥିଲେ । ଏହି ବିଦ୍ରୋହକୁ ଇଂରେଜ ମାନେ ଦମନ କରି ପାରୁ ନାହାନ୍ତି । ଏହି ବିଦ୍ରୋହରେ ଅନେକ ଫଉଜ ପ୍ରାଣ ହରାଇବା ସଙ୍ଗେ ସଙ୍ଗେ ବିଦ୍ରୋହୀ ଦଳ ସରକାରୀ ନଥିପତ୍ର, ସରକାରୀ ଅଫିସରେ ଅଗ୍ନି ସଂଯୋଗ କରି ବହୁ କ୍ଷୟ କ୍ଷତି ଉପୁଜାଇ ଥିଲେ । ୧୮୪୭ ମସିହାରେ କନ୍ଧ ବିଦ୍ରୋହୀ ମାନଙ୍କୁ ଦମନ କରିବା ପାଇଁ ମାନ୍ଦ୍ରାଜରୁ ଏକ ବିରାଟ ସେନା ବାହିନୀ ଘୁମୁସର ଏବଂ କନ୍ଧମାଳ ଜିଲ୍ଲାରେ ପ୍ରବେଶ କରିଥିଲେ । ଏହି ଖବର ଅବଗତ ହେଲା ପରେ ଚକରା ଘୁମୁସର ପରିତ୍ୟାଗ କରି ଚାଲି ଯାଇଥିଲେ । ବିଦ୍ରୋହ ଦମନ ପାଇଁ ମେଜର ମାକଫରସନ୍ କନ୍ଧମାଳ ଜିଲ୍ଲାକୁ ଆସି ୧୭୦ ଜଣ ମେରିଆକୁ ବନ୍ଦୀ କରିଥିଲେ ଏବଂ ପରେ ବୌଦ୍ଧ ରାଜାଙ୍କୁ ସେମାନେ ଅର୍ପଣ କରିଥିଲେ । ପ୍ରତିଶୋଧ ନେବାକୁ ଯାଇ ମାକଫରସନ୍ କନ୍ଧ ମାନଙ୍କର କିଛି କନ୍ଧ ବସ୍ତିକୁ ଜାଳିପୋଡି ଛାରଖାର କରିଦେଇ ଥିଲେ ।

ଇଂରେଜ ମାନଙ୍କର ନାନାଦି ଅତ୍ୟାଚାର ସତ୍ତ୍ୱେ କନ୍ଧ ବାହିନୀ ଭୟଭିତ ହୋଇନଥିଲେ । ପୂର୍ବାପେକ୍ଷା ସେମାନେ ଅଧିକ ଉତ୍ସାହର ସହିତ ଇଂରେଜ ବାହିନୀକୁ ଆକ୍ରମଣ କଲେ । ଫଳରେ କ୍ୟାପଟେନ ଡନ୍‌ଲପ୍ ବିଦ୍ରୋହୀ କନ୍ଧଗ୍ରାମ ଗୁଡ଼ିକୁ ଜାଳି ପୋଡ଼ି ପାଉଁଶ କରିଦେବାକୁ ନିର୍ଦ୍ଦେଶ ଦେଲେ । ତାହାହିଁ ହେଲା । ପରିସ୍ଥିତିକୁ ସମ୍ଭାଳିବା ଏବଂ ଶାନ୍ତ କରବା ପାଇଁ ମାଡ୍ରାସ ସରକାର ମେଜର ଜେନେରାଲଙ୍କୁ ଡାଇସ୍ ପ୍ରେରଣ କରିଥିଲେ । ସେହି ସମୟରେ ଘୁମୁସର ଏବଂ କନ୍ଧମାଳରେ ଚାଲିଥିବା ଇଂରେଜ ବରୋଧୀ ଆନ୍ଦୋଳନକୁ ଦମନ କରିଥିଲେ । କିନ୍ତୁ ଚକରା ବିଶୋୟୀ ଇଂରେଜ ବାହିନୀକୁ ଆକ୍ରମଣ ପାଇଁ ସାହାସ କରି ପାରି ନଥିଲେ । ତେଣୁ ସେ ଘୁମୁସର ଛାଡ଼ି ଚାଲିଯାଇଥିଲେ । କିନ୍ତୁ ବିପ୍ଳବୀ ଚକରା ବିଶୋୟୀଙ୍କୁ ଧରିବା ଇଂରେଜ ସରକାରଙ୍କ ପକ୍ଷେ ସମ୍ଭବ ହୋଇ ପାରି ନଥିଲା । ସେ କେତେବେଳେ ଘୁମୁସରରେ ତ କେତେବେଳେ କନ୍ଧମାଳ, କେତେବେଳେ କଳାହାଣ୍ଡିରେ ତ କେତେବେଳେ ପାରଳାଖେମୁଣ୍ଡିରେ । ଏହି ସଂଗ୍ରାମରେ ତାଙ୍କୁ ଅନୁଗୁଳ ରାଜା ସୋମନାଥ ସିଂହ ଏବଂ କନ୍ଧମାଳର ସଂଗ୍ରାମୀ ନବଘନ କଅଁରଙ୍କ ପୁତ୍ର ବୀର କଅଁରଙ୍କ ସହଯୋଗ କରୁଥାନ୍ତି ।

ବ୍ରିଗେଡିୟର ଡାଇସ ଏହିସବୁ କନ୍ଧ ବିଦ୍ରୋହ ଘଟଣା ସବୁକୁ ଅନୁଧ୍ୟାନ କରି ସରକାରଙ୍କୁ ଗୋଟିଏ ପତ୍ର ଲେଖିଲେ ଯେ, "ପାର୍ବତୀୟ ଅଞ୍ଚଳରେ କନ୍ଧ ବିଦ୍ରୋହୀଙ୍କୁ ଦମନ କରିବା ସହଜ ସାଧ ନୁହେଁ । କନ୍ଧ ମେଳିକୁ କେଠାର ମନୋବୃତ୍ତିରେ ବଢାଇବା ବ୍ୟତୀତ କମାଯାଇ ପାରିବ ନାହିଁ । ଚକରା ବିଶୋୟୀ ଏବଂ ତାଙ୍କ ଦଳ ସ୍ଥାନୀୟ ଶାସନକୁ ପସନ୍ଦ କରୁଛନ୍ତି" । ୧୮୪୭ ମସିହା ବେଳକୁ ଦୀର୍ଘ ଦିନର ସଂଗ୍ରାମ ପରେ କିଛି ସଂଗ୍ରାମୀ ମାନେ ମୃତ୍ୟୁ ବରଣ କରିଥିଲେ । କନ୍ଧମାଳର ବହୁ ଅଞ୍ଚଳ ଇଂରେଜ ମାନଙ୍କ ଶାସନ ଅଧୀନକୁ ଚାଲିଯାଇଥିଲା । କନ୍ଧମାଳର କନ୍ଧ ସର୍ଦ୍ଦାର ବୀର କଅଁର ମନସ୍ଥ କରିଥିଲେ ଯେ, ଆମର ସୀମିତ ଶକ୍ତିକୁ ନେଇ ଇଂରେଜ ମାନଙ୍କ ସହ ଲଢେଇ କରିବା ସମ୍ଭବ ନୁହେଁ । ଏତିକି ବେଳକୁ କୋରିକିଆ କନ୍ଧ ଏବଂ ସୁପର ମୁଖ୍ୟ ରେଣ୍ଡୋ ମାଝିଙ୍କ ସହାୟତାରେ ଦୀର୍ଘ ଦୀନର ମତାନ୍ତରକୁ ସମାଧାନ କରିବା ପାଇଁ ସମସ୍ତ ମୁଖିଆ ମାନଙ୍କୁ ଏକତ୍ରୀତ କରାଉଥିଲେ । ଏହି ସମୟରେ ରେଣ୍ଡୋ ମାଝିଙ୍କୁ ଗିରଫ କରି ରସୁଲକୋଣ୍ଡା କାରାଗାରରେ ରଖାଗଲା । ସେଠାରେ ତାଙ୍କୁ ଚକରାଙ୍କ ବିଷୟରେ ଠିକଣା ମାଗିବାରୁ ସେ କହିଥିଲେ ତାଙ୍କ ବିଷୟରେ ସେ କିଛି ଜାଣି ନାହାନ୍ତି । ଫଳରେ ତାଙ୍କୁ ଅକଥନୀୟ ଅତ୍ୟାଚାରର ଶିକାର ହେବାକୁ

ପଡିଥିଲା । ୧୮୫୫ ମସିହାରେ କନ୍ଧ ବିଦ୍ରୋହୀ ମାନଙ୍କୁ ଡ଼ରାଇବା ପାଇଁ ରେଣ୍ଡୋ ମାଝିଙ୍କୁ ଲୁହା ଶିକୁଳିରେ ବାନ୍ଧି ଚଲାଇ ଚଲାଇ ନେଉଥିଲେ । ଏହି ଅମାନୁଷିକ ଘଟଣାକୁ ବିରୋଧ କରି ଚକରା ବିଶୋୟୀଙ୍କ ନିର୍ଦ୍ଦେଶରେ ବିଦ୍ରୋହୀ ମାନେ ମିଳିତ ଭାବରେ ଇଂରେଜ ଶିବିର ଉପରେ ଆକ୍ରମଣ କରି ପ୍ରଚୁର କ୍ଷତି ସାଧନ କରିଥିଲେ ।

ଆଲୋଚନା ମାଧ୍ୟମରେ ଜାଣିବାକୁ ମିଳେ ଯେ, ଚକରା ବିଶୋୟୀ ବ୍ୟକ୍ତିଗତ କିମ୍ବା ବଂଶଗତ କାରଣରୁ ବିଦ୍ରୋହ କରୁନଥିଲେ । ଘୁମୁସର ରାଜ ବଂଶକୁ ପୁନଃ ପ୍ରତିଷ୍ଠା କରିବା ତାଙ୍କର ଆନ୍ତରିକ ଇଚ୍ଛାଥିଲା । ସେ ଦକ୍ଷିଣ ପଶ୍ଚିମ ଓଡ଼ିଶାର ଜଣେ ଶ୍ରେଷ୍ଠ ବିଦ୍ରୋହୀ ଥିଲେ । ୧୮୫୭ ମସିହା ଅକ୍ଟୋବର ମାସ ଠାରୁ ତାଙ୍କର ଖୋଜ ଖବର ମିଳିନଥିଲା । ସେ ମୃତ କି ଜୀବିତ ତାର ପ୍ରକୃତ ସମ୍ବାଦ ଆଜିସୁଦ୍ଧା ମିଳିନାହିଁ । କେହି କେହି ଗବେଷକ ମତ ଦିଅନ୍ତି ଯେ, ଉର୍ଲାଦାନୀ ଘଟଣା ପରେ ପରେ ସେ ତେଲ ନଦୀର ଅବବାହିକା ରେ ଆତ୍ମଗୋପନ କରିଥିଲେ । ଆଉ ମଧ୍ୟ କେତେକ କହନ୍ତି କନ୍ଧମାଳ ଜିଲ୍ଲାର ବାରଖମା ପଞ୍ଚାୟତର ଡାକ ଗ୍ରାମ ନିକଟରେ ଥିବା ପାହାଡ଼ରେ ସେ ତାଙ୍କର ଶେଷ ଜୀବନ ସନ୍ୟାସ ଭାବରେ ବିତାଇ ଥିଲେ । ଡ଼ାକ ଗ୍ରାମ ପାହାଡ଼ ଗୁମ୍ଫାରୁ ସଂଗୃହିତ ଚକରାଙ୍କ ବ୍ୟବହୃତ ଖଣ୍ଡା ଦଶହରା ସମୟରେ ପୂଜା କରାଯାଉଅଛି । ପୂଜା ସମୟରେ ସ୍ଥାନୀୟ ଆଦିବାସୀମାନେ ଏହି ବିଷୟରେ ଗୀତଗାଇ ନାଚ କରିଥାନ୍ତି । ବିଦ୍ରୋହ ସମୟରେ ବିଦ୍ରୋହୀ ମାନେ ଆଘାତ ହେଲେ ଚକରାଙ୍କ ସ୍ତ୍ରୀ ତାରକା ଆହତ ମାନଙ୍କର ସେବା କରିଥାନ୍ତି । ସଂଗ୍ରାମ ପରିବାରର ମହାନ୍ ସଂଗ୍ରାମୀ ଚକରା ବିଶୋୟୀଙ୍କୁ ଆଜି ଦେଶ ମନେରଖୁ ଏବଂ ତାଙ୍କ ଦେଶ ପ୍ରେମର ମହନୀୟତା ଅନ୍ୟ ମାନଙ୍କୁ ଉଦ୍‌ବୋଧ ଦେଉ ଏବଂ ଆମ୍ଭମାନଙ୍କ ଗ୍ରହଣରେ ସେ ଅମର ରହନ୍ତୁ ।

## ଲକ୍ଷ୍ମଣ ନାୟକ

ମନୁଷ୍ୟ ସମାଜ ଭିତ୍ତିରେ ସବୁ ମଣିଷଙ୍କ ମଣିଷ ପଣିଆ ସମାନ ହୋଇ ନଥାଏ । କିଛି ମଣିଷ ନିଜର ଦୁଃଖ ସୁଖକୁ ଖାତିରି ନକରି ସମାଜର ଅନ୍ୟମାନଙ୍କ ପାଇଁ କାନ୍ଦିଥାନ୍ତି । ସାମୁହିକ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥାନ୍ତି । ଶେଷରେ ମଧ୍ୟ ସେମାନଙ୍କୁ ପ୍ରାଣବଳି ଦେବାକୁ ପଡ଼ିଥାଏ । ଏହିପରି ଅନେକ ଉଦାହରଣ ସମାଜରେ ଆମକୁ ଦେଖିବାକୁ ମିଳିଥାଏ । ଯେତେବେଳେ ଦେଶ ପରାଧୀନତାର ଶୃଙ୍ଖଳରେ ଥିଲା ଏବଂ ଜନସାଧାରଣ ଇଂରେଜ ସରକାରଙ୍କ ଦ୍ୱାରା ଅତ୍ୟାଚାରିତ ହେଉଥିଲେ, ଏହି ଘଡ଼ିସନ୍ଧି ମୂହୁର୍ତ୍ତରେ ଦେଶପ୍ରେମୀ ଲକ୍ଷ୍ମଣ ନାୟକ ଙ୍କ ଜନ୍ମ । ୧୮୯୯ ମସିହା ନଭେମ୍ବର ୨୨ ତାରିଖରେ ସଂପ୍ରତି

ମାଲକାନାଗିରି ଜିଲ୍ଲାର ତେନ୍ତୁଳି ଗୁମ୍ମା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ପଦଲାମ ନାୟକ । ସେ ଭୂମିଆ ଆଦିବାସୀ ସଂପ୍ରଦାୟ ଲୋକ ଥିଲେ । ତେନ୍ତୁଳି ଗୁମ୍ମା ଗ୍ରାମର ଆଖପାଖ ଲୋକ ମାନଙ୍କର ପଦଲାମ ଥିଲେ ଖୁବ୍ ପ୍ରିୟ ମଣିଷ । ଅନ୍ୟ ମାନଙ୍କୁ ବିପଦବେଳେ ସାହାଯ୍ୟ କରିବା ଯେପରି ପଦଲାମ ଙ୍କ ଜୀବନର ବ୍ରତଥିଲା । ସେଥିପାଇଁ ସେ ଜୟପୁର ରାଜାଙ୍କର ମୁସ୍ତଫାଦାର ଭାବେ କାର୍ଯ୍ୟ କରୁଥିଲେ । ମାଲକାନଗିରି ଏବଂ ତେନ୍ତୁଳି ଗୁମ୍ମା ଗ୍ରାମକୁ କୌଣସି କର୍ମଚାରୀ ଆସିଲେ ସେ ସମସ୍ତଙ୍କର ରହିବା, ଖାଇବା ଏବଂ ଜାତାୟତରେ ବ୍ୟବସ୍ଥା କରୁଥିଲେ । ତେଣୁ ଆଖ ପାଖ ଗାଁର ସେଥିଲେ ମଣିଷ ପରି ମଣିଷଟିଏ ।

ପଦଲାମଙ୍କର ଥିଲେ ତିନି ପୁଅ । ସେମାନଙ୍କ ମଧ୍ୟରୁ ଲକ୍ଷ୍ମଣ ଥିଲେ ମଝିଆଁ । ପିଲା ଦିନରୁ ସେ ଥିଲେ ନିର୍ଭିକ । ତାଙ୍କ ଶିକ୍ଷା ବିଷୟରେ କହିବାକୁ ଗଲେ ସେ ତାଙ୍କ ପିତାଙ୍କ ଠାରୁ ଯାହା ଶିକ୍ଷାକରିଥିଲେ ତାହାହିଁ ଥିଲା ତାଙ୍କର ଶିକ୍ଷାଗତ ଯୋଗ୍ୟତା । ଆଦିବାସୀ ବାଳକ ଭାବେ ପିଲାଟି ଦିନରୁ ଶିକାର କରିବା ତାଙ୍କର ଖୁବ୍ ପ୍ରିୟ ଥିଲା । ତାଙ୍କ ପରିବାର ସେହି ଗାଁର ଦିସାରୀ ଭାବେ ପରିଚିତ । ଦେବା ଦେବୀଙ୍କୁ ପୂଜା ପାଠ କରି ବିଭିନ୍ନ ଆପଦ ବିପଦରୁ ରକ୍ଷା କରିବା ତାଙ୍କର ବଂଶାନୁକ୍ରମିକ ଥିଲା । ଶେଷରେ ଲକ୍ଷ୍ମଣ ମଧ୍ୟ ଯୁବକ ଅବସ୍ଥାରେ ଆଦରି ନେଇଥିଲେ । ଚେର ମୂଳୀ ବିଦ୍ୟାରେ ସେ ପାରଙ୍ଗମ ଥିଲେ । ଫଳରେ ଅନେକ ଲୋକ ତାଙ୍କ ନିକଟକୁ ଆସୁଥିଲେ ଏବଂ ଆରୋଗ୍ୟ ଲାଭ କରୁଥିଲେ । ତେଣୁ ଆଖପାଖ ଲୋକଙ୍କର ତାଙ୍କ ପ୍ରତି ବେଶ୍ ସମ୍ମାନ ଥିଲା । ସେ ଯେତେବେଳେ ଯାହା କହିଲେ ଲୋକେ ଖାତିରି କରୁଥାନ୍ତି ।

ସେହି ସମୟରେ ଗଡ଼ଜାତର ରାଜା ଏବଂ ଜମିଦାର ମାନେ ଇଂରେଜ ମାନଙ୍କର ପିୟ ପାତ୍ର ହେବାପାଇଁ ସାଧାରଣ ପ୍ରଜାଙ୍କ ଉପରେ ବିଶେଷ ଭାବରେ ଅତ୍ୟାଚାର କରୁଥାନ୍ତି । ସବୁ କ୍ଷେତ୍ରରେ ସେମାନେ ଇଂରେଜ ମାନଙ୍କୁ ସାହାର୍ଯ୍ୟ କରୁଥାନ୍ତି । ଜୟପୁରର ରାଜା ତୃତୀୟ ବିକ୍ରମ ଦେବ ସେହି ସମୟରେ ପ୍ରଜାମାନଙ୍କ ଉପରେ ଅତ୍ୟାଚାର କରି ଆସୁଥିଲେ । ପ୍ରତ୍ୟେକ କ୍ଷେତ୍ରରେ ଇଂରେଜ ମାନଙ୍କୁ ସମର୍ଥନ କରୁଥିଲେ । ଫଳରେ ଇଂରେଜ ମାନେ ସିଧାସଳଖ ସାଧାରଣ ଲୋକଙ୍କ ଉପରେ ଅତ୍ୟାଚାର, ଲୁଣ୍ଠନ ଏବଂ ଆଦିବାସୀଙ୍କ ପରମ୍ପରା ଉପରେ କୁଠାର ଘାତ କରୁଥିଲେ । ଯଦି କେହି ଏଥିରେ ପ୍ରତିବାଦ ଜଣାଏ ତାହାହେଲେ ତାକୁ କଠୋର ଦଣ୍ଡ ଭୋଗିବାକୁ ପଡୁଥିଲା । ତେଣୁ ଦଣ୍ଡ ଭୟରେ କେହି ମୁହଁ ଖୋଲୁ

ନଥିଲେ କିମ୍ବା ସହିବି ପାରୁ ନଥିଲା । ଏହି ପ୍ରକାର ଅତ୍ୟାଚାରରେ ଅତିଷ୍ଠ ହୋଇ ପ୍ରଥମେ ରାଜାଙ୍କ ବିରୋଧରେ ପ୍ରତିବାଦର ସ୍ୱର ଉତ୍ତୋଳନ କରିଥିଲେ ଲକ୍ଷ୍ମଣ ନାୟକ । ସେ ତତ୍‌କାଳୀନ ଶାସନ ବିରୋଧରେ ମୁହଁ ଖୋଲିଥିଲେ । ଏହି ବିପ୍ଳବାତ୍ମକ ଖବର ପହଞ୍ଚିଗଲା ରାଜାଙ୍କ ନିକଟରେ । ରାଜା ଚିନ୍ତା କଲେ ଏହି ବାଳକ ମନରୁ ବିପ୍ଳବାତ୍ମକ ଚିନ୍ତାଧାରା ଦୂରୀଭୂତ ନକଲେ ଭବିଷ୍ୟତରେ ଏହାକୁ ଆୟତ କରି ହେବନି । ତେଣୁ ରାଜା ତାଙ୍କୁ ନିଜ ନିକଟକୁ ଡ଼କାଇ ପ୍ରସ୍ତାବ ଦେଲେ ଯେ, ତୁମକୁ କିଛି ଗ୍ରାମ ପ୍ରଦାନ କରାଯିବ । ଏହି ଗ୍ରାମ ଗୁଡ଼ିକରୁ ଖଜଣା ଆଦାୟ କରି ସେଥିରୁ ତୁମ ଖର୍ଚ୍ଚ ପାଇଁ କିଛି ରଖି ବାକି ଅର୍ଥ ରାଜକୋଷରେ ପଇଠ କରିବ । ସେଥିରୁ ଇଂରେଜ ମାନଙ୍କୁ କର ଦିଆଯିବ । କର ଦିଆଗଲେ ସେମାନେ ଆଉ ଅତ୍ୟାଚାର କରିବେ ନାହିଁ । ତୁମେ ଆଜିଠାରୁ ନାୟକ ପଦ ଗ୍ରହଣ କର ।

ସେତେବେଳକୁ ଲକ୍ଷ୍ମଣଙ୍କୁ ହୋଇଥାଏ ୨୨ବର୍ଷ । ଏହି ପ୍ରସ୍ତାବରେ ସେ ସମ୍ମତି ପ୍ରଦାନ କରି ନଥିଲେ । କାରଣ ସେହି ସମୟକୁ ରାଜା ଏବଂ ଇଂରେଜ ସରକାର ଠିକାଦାର ମାନଙ୍କୁ ଜଳ, ଜମି ଓ ଜଙ୍ଗଲ ଠିକାରେ ଦେଇ ସାରିଥାନ୍ତି । ନିରୀହ ସରଳ ଆଦିବାସୀ ମାନଙ୍କୁ ବିନା କରରେ ଜଙ୍ଗଲରୁ ପତ୍ରଟିଏ ନେବାପାଇଁ ମନା ହେଉଥାଏ । ଭୂମିପୁତ୍ର ଲକ୍ଷ୍ମଣ ଭୂମିଆ ଏଥିରେ ମର୍ମାହତ ହେଇପଡ଼ିଥାନ୍ତି । ଫିରିଙ୍ଗି ଶାସନର ଭୁବନ୍ଦୋବସ୍ତ ଆଇନି ଆଦିବାସୀ ମାନଙ୍କ ଉପରେ ବିଭିର୍ଣ୍ଣ କର, ସ୍ୱାଧୀନ ଚେତା ଆଦିବାସୀ ମାନଙ୍କର ଅର୍ଥନୈତିକ ପରିସ୍ଥିତିକୁ ପଙ୍ଗୁ କରିଦେଇଥାଏ । ବେଡ଼ି ଉପରେ କୋରଡ଼ା ମାଡ଼ ପରି ବିନାପାଉଣାରେ ସାହେବ ମାନଙ୍କର ବେଠି ଖଟିବା, ଛେଳି, କୁକୁଡ଼ା, ଚାଉଳ ଏବଂ ଡ଼ାଲି ପ୍ରଭୃତି ମାଗଣାରେ ଯୋଗାଇବା ସେମାନଙ୍କୁ ଅତିଷ୍ଠ କରି ପକାଉଥିଲା । ପୁଣି ଲକ୍ଷ୍ମଣ ନାୟକ ପଦଗ୍ରହଣ କରି ଆଦିବାସୀ ମାନଙ୍କ ଠାରୁ ପାଉଣା ଆଦାୟ କରିବ ଏହା ତାଙ୍କ ମନକୁ ପାଇ ନଥିଲା । ଯେଉଁ ଆଦିବାସୀ ଭାଇମାନେ ତାଙ୍କୁ ଦେବତା ରୁପେ ପୂଜା କରନ୍ତି ସେମାନଙ୍କ ଉପରେ ସେ ବା କିପରି ଜୁଲମ କରି ଦାଉ ସାଧିପାରିବ । କିପରି ସେ ଦେଖିପାରିବ ତାକୁ ଭଲ ପାଉଥିବା ମଣଷ ଆଖିର ଲୁହ । ତେଣୁ ନାୟକ ପଦ ଗ୍ରହଣ ନକରି ସେ ଗାଁ ଗାଁ ବୁଲି, ଗାଁ ଗାଁ ରେ ବୈଠକ କରି ଲୋକ ମାନଙ୍କୁ ସଚେତନ କରିବାକୁ ଲାଗିଲେ । ଆଜିଠାରୁ ଇଂରେଜ ସରକାରଙ୍କୁ କେହି ହେଲେ କର ଦିଅନାହିଁ କି ବେଠିଖଟ ନାହିଁ । ଲକ୍ଷ୍ମଣ ନାୟକଙ୍କ କଥାକୁ ମାନି ସେହିଦିନ ଠାରୁ ଆଦିବାସୀ ମାନେ ନାଁ ଦେଲେ କର ନାଁ ଖଟିଲେ ବେଠି । ଏହା ଫଳରେ ତାଙ୍କୁ ରାଜକୋପ ସହ୍ୟ କରିବାକୁ ପଡ଼ିବ । ସେହି କଥା ଲକ୍ଷ୍ମଣଙ୍କୁ ଜଣାଥିଲା । ଫଳରେ ରାଜା ଲକ୍ଷ୍ମଣଙ୍କ ଜମି ବାଡ଼ି ସବୁ ଉଚ୍ଛେଦ କରିଦେଲେ ।

ସେ ନିଜର ପ୍ରଥା ଅନୁସାରେ ବିବାହ ବନ୍ଧନରେ ଆବଦ୍ଧ ହୋଇଥିଲେ । ତାଙ୍କ ପତ୍ନୀଙ୍କ ନାମଥିଲା ମଙ୍ଗୁଳୀ । ରଘୁନାଥ ନାମରେ ତାଙ୍କର ଗୋଟିଏ ପୁଅ ଥିଲା । ଲୋକ ମାନଙ୍କ ସେବାରେ ମଗ୍ନ ହୋଇ ଯାଇଥିବା ଲକ୍ଷ୍ମଣ ନିଜ ପରିବାରର ଯତ୍ନ ନେବା ଭୁଲି ଯାଇଥିଲେ । ଏହି ସମୟରେ ମହାତ୍ମା ଗାନ୍ଧୀଙ୍କର ଆଇନ ଅମାନ୍ୟ ଆନ୍ଦୋଳନରେ ଝାସ ଦେଇ ଗାଁ ଗାଁ ବୁଲି ଇଂରେଜ ବିରୋଧି ନୀତିକୁ ପ୍ରଚାର କରିଥିଲେ । ଗାନ୍ଧୀଙ୍କ ଡାକରା କୁଟିଖାଅ, କାଟିପିନ୍ଧ ବାଣୀକୁ ପ୍ରତି ଆଦିବାସୀ ଗ୍ରାମରେ ପହଞ୍ଚାଇ ପାରିଥିଲେ । କଂଗ୍ରେସର ଜଣେ ସଚ୍ଚା କର୍ମୀ ଭାବେ ସ୍ୱରାଜ ଆନ୍ଦୋଳନର ବାର୍ତ୍ତାକୁ ପ୍ରତିମଣିଷଙ୍କ ନିକଟରେ ପହଞ୍ଚାଇ ପାରିଥିଲେ । ୧୯୪୦ ମସିହା ଡିସେମ୍ବର ମାସରେ ଗାନ୍ଧୀଙ୍କ ସତ୍ୟାଗ୍ରହ ଆନ୍ଦୋଳନକୁ ଆଦରି ନେଇ ଏହାକୁ ପତ୍ୟକ୍ଷ ରୂପ ଦେଇଥିଲେ । ଫଳରେ ତାଙ୍କ ଦୀର୍ଘ ୯ ମାସ ବନ୍ଦୀ ଜୀବନ ବିତେଇ ବାକୁ ପଡିଥିଲା । ଜେଲ ଭିତରେ ତାଙ୍କ ପ୍ରତି ଅକଥନୀୟ ଅତ୍ୟାଚାର ଅବର୍ଣ୍ଣନୀୟ । ଜେଲରୁ ଫେରିବା ପରେ ତାଙ୍କ ମନୋବଳ ବୃଦ୍ଧି ପାଇଥିଲା । ବିନୋବାଭାବେ ସତ୍ୟାଗ୍ରହ ଆନ୍ଦୋଳନରେ ବନ୍ଦୀ ହୋଇ ସାରିଥାନ୍ତି । ଲକ୍ଷ୍ମଣ ସତ୍ୟାଗ୍ରହରେ ଦୀକ୍ଷିତ ହୋଇ ୨ ବର୍ଷ କାଳ ସଭାସମିତି କରି ଲୋକମାନଙ୍କୁ ଏକତ୍ରିତ କରାଇ ପାରିଥିଲେ । ଫଳରେ ଜନସାଧାରଣ ତାଙ୍କୁ ନେତାମାନି 'ନାୟକ' ପଦରେ ଅଭିସିକ୍ତ କରାଇଥିଲେ ।

୧୯୪୨ ମସିହା ଗାନ୍ଧିଜୀଙ୍କର ନେତୃତ୍ୱରେ ଆରମ୍ଭ ହୋଇଥିଲା ଭାରତ ଛାଡ ଆନ୍ଦୋଳନ । ଏହି ଡାକରାରେ ଅକୃଷ୍ଟ ହୋଇ ଲକ୍ଷ୍ମଣ ନାୟକ ଏହି ଭାରତ ଛାଡ଼ ଆନ୍ଦୋଳନରେ ଯୋଗ ଦେଇଥିଲେ । ତାଙ୍କ ସହିତ ହଜାର ହଜାର ବିଦ୍ରୋହୀ ଏହି ଆନ୍ଦାଳନରେ ଝାସ ଦେଇଥିଲେ । ଅରଟ ଧରି ସୂତା କାଟିବା, ଖଦି ପିନ୍ଧିବା, ଗାଁ ଗାଁ ବୁଲି ପ୍ରଚାର କରି ଏହି ଆନ୍ଦୋଳନକୁ ଭୀଷଣ ରୂପ ଧାରଣ କରାଇଥିଲେ । ସରକାରୀ ଦପ୍ତରକୁ ଘେରାଉ କରା ଯାଉଥିଲା । ହଜାର ହଜାର ବିଦ୍ରୋହୀ ଜେଲ ଖାନାରେ ଭର୍ତ୍ତି ହେଉଥାନ୍ତି । କୋରାପୁଟ ଏବଂ ଜୟପୁର ଜେଲରେ ହଜାର ହଜାର ବିଦ୍ରୋହୀ ବନ୍ଦୀ ହୋଇ ରହିଥାନ୍ତି । ତେଣୁ ନିଜ ସହଯୋଗୀଙ୍କ ସହିତ ଲକ୍ଷ୍ମଣ ବଣ୍ଡା ପର୍ବତରେ ଆଶ୍ରୟ ନେଇଥାନ୍ତି । ଅଗଷ୍ଟ ୨୧ ତାରିଖ ଦିନ ତାଙ୍କ ନେତୃତ୍ୱରେ ମାଥିଲି ଥାନାକୁ ଘେରାଉ କରି ବିଦେଶୀ ପତାକା ପୋଡ଼ି ଜାତୀୟ ପତାକା ଉତ୍ତୋଳନ କରିବା ପାଇଁ ସ୍ଥିର ହୋଇଥିଲା ।

ହଜାର ହଜାର ରଣ ହୁଙ୍କାର ଦେଇ ମାଡ଼ି ଆସିଲେ ଥାନା ଆଡ଼କୁ । ଏହାଦେଖି ମାଥିଲି ଥାନା ଅଧିକାରୀ ଜଗା ନାଇକୁଲ୍ ଦୋରା ପୋଲିସ ଅଧିକାରୀ ମାନଙ୍କୁ ବିଦ୍ରୋହୀ

ମାନଙ୍କ ଉପରକୁ ଲାଠି ଚାଳନା ଏବଂ ଗୁଳି ମାଡ଼ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ପୋଲିସ ଲାଠି ମାଡ଼ରେ ଆଘାତ ହୋଇ ପଡ଼ିଲେ ଲକ୍ଷ୍ମଣ ନାୟକ । ତାଙ୍କ ନିଶରେ ନିଆଁ ଡେଙ୍ଗ ଦିଆ ଯାଇଥିଲା । ଥାନା ଘେରାଉ ସମୟରେ କର୍ତ୍ତବ୍ୟରତ ଜଣେ ଫରେଷ୍ଟ ଗାର୍ଡ ମେୟାକୁ ଥାନା ଅଧିକାରୀ ଜଗାନାଇକୁଲ ଦୋରା ବନ୍ଧୁକରେ ମାରି ଦେଇଥିଲେ । କିନ୍ତୁ ସେ ଅଭିଯୋଗ କଲେ ଯେ, ଲକ୍ଷ୍ମଣ ନାୟକ ଫରେଷ୍ଟ ଗାର୍ଡ଼କୁ ବନ୍ଧୁକରେ ମାରି ଦେଇଛି ।

ଏହି ଅଭିଯୋଗରେ ଇଂରେଜ ମାନଙ୍କୁ ଏଥିରେ ବଡ଼ ସଫଳତା ମିଳି ପାରି ଥିଲା । ନରହତ୍ୟା ମାମଲାରେ ଲକ୍ଷ୍ମଣଙ୍କ ବିଚାର ହୋଇଥିଲା । ଏହି ବିଚାରରେ ତାଙ୍କୁ ନରହତ୍ୟା ଅପରାଧରେ ମୃତ୍ୟୁ ଦଣ୍ଡ ପାଇବାର ଶୁଣାଣି କରାଯାଇଥିଲା । ବିଚାରରେ ଲକ୍ଷ୍ମଣ ନାୟକ ଯେ ଫାଶୀ ପାଇବେ, ଏକଥା କେବେହେଲେ କେହି ଭାବି ପରି ନଥିଲେ । ସାରା ରାଜ୍ୟରେ ଏକ ଶୋକାକୂଳ ପରିବେଶ ସୃଷ୍ଟି ହୋଇଗଲା । ତୁଣ୍ଡ ବାଇଦ ସହସ୍ର କୋଷ ପରି ଏହି ଖବର ସାରା ରାଜ୍ୟ ବ୍ୟାପୀ ଯାଇଥିଲା । ତାଙ୍କର ପ୍ରିୟଜନମାନେ ବିଦ୍ରୋହ କରି ଉଠିଲେ । ଜଣେ ସ୍ୱାଧୀନତା ସଂଗ୍ରାମୀକୁ ଫାଶୀ ଦେବା ବନ୍ଦକର । ଇଂରେଜ ସରକାର ପାଇଁ ଏହାଥିଲା ଏକ ସୁଯୋଗ । ଏହି ସୁଯୋଗକୁ ସେମାନେ ବା' ହାତଛଡା କରନ୍ତେ କିପରି । ତାଙ୍କୁ ଫାଶୀ ଦେବାପାଇଁ ମାଲକାନଗିରିରୁ ନେଇ ବ୍ରହ୍ମପୁର ଜେଲରେ ରଖାଗଲା ।

ଏ ଶରୀର ଦିନେ ନା ଦିନେ ମାଟିରେ ମିଶିଯିବ । ମା' ମାଟି ପାଇଁ ଏ ଜୀବନ ଯଦି ମାଟିରେ ମିଶିଯାଏ ତାହାହେଲେ ଜୀବନର ସାର୍ଥକତା ମିଳିଥାଏ । ମା' ମାଟି ପାଇଁ ଯଦି ଆମେ ଜୀବନ ଦାନ କରି ପାରିଲେ ତାହା ଠାରୁ ଗୌରବ ଆଉ ଜୀବନରେ କିଛି ନାହିଁ କହିଲେ ଚଳେ । ଏ ଜୀବନ ପ୍ରଦୀପ ଦିନେନା ଦିନେ ଲିଭିଯିବ । ହେଲେ ଏ ଜାତି ପାଇଁ ଲିଭିଯାଉ । ଏହିପରି କେତେ ଯେ କେତେ ଅସୁମାରୀ ଭାବନା ମନ ଭିତରେ ଉଙ୍କି ମାରିଲା । ଫାଶୀ ପାଇବାର ଖବର ଶୁଣିଲା ପରେ ସେଥିପାଇଁ ତାଙ୍କର ଟିକିଏ ହେଲେ ଅନୁଶୋଚନା ନଥିଲା । ସେ ଜଣେ ସ୍ୱାଧୀନତା ସଂଗ୍ରାମୀ ଏ ଦଣ୍ଡାଦେଶ ତାଙ୍କ ପାଇଁ ତଥା ଅନ୍ୟ ମାନଙ୍କ ପାଇଁ ଏକ ଆହ୍ୱାନର ଆବେଗ ସୃଷ୍ଟି କରିଥିଲା । ସେଥିପାଇଁ ସେ ଅସ୍ଥିର ହୋଇ ନଥିଲେ । ସେ ଅନ୍ୟ ବିଦ୍ରୋହୀ ମାନଙ୍କୁ ଦେଖାଇ ଦେଇଥିଲେ ଯେ, ଦେଶର ସ୍ୱାଧୀନତା ପାଇବାକୁ ହେଲେ ଆମେ ଫାଶୀ ଖୁଣ୍ଟକୁ ଡରିବା ନାହିଁ । ଆମର ଜୀବନ ବିନିମୟରେ ଏ ଦେଶ ନିଶ୍ଚିତ ଭାବେ ସ୍ୱାଧୀନତା ପାଇବ । ୧୯୪୩ ମସିହା ମାର୍ଚ୍ଚ ଅଠେଇଶ ତାରିଖ । ସମଗ୍ର ଦେଶରେ ଶୋକର ଛାୟା ଖେଳିଯାଇଥାଏ । ଦେଶ ବାସୀଙ୍କ ଆଖିରେ ଲୁହ । ଆଜି ତାଙ୍କର ପ୍ରିୟନେତା ଲକ୍ଷ୍ମଣ

ନାୟକଙ୍କର ଅନ୍ତିମ ଦିନ । ବହୁ ସ୍ୱାଧୀନତା ସଂଗ୍ରାମୀ ଏକତ୍ରିତ ହୋଇଥାନ୍ତି । ସମସ୍ତେ ବେଢି ଯାଇଥାନ୍ତି ନବକୃଷ୍ଣ ଚୌଧୁରୀଙ୍କୁ । ଇଂରେଜ ସରକାରଙ୍କ ପ୍ରତି ସମସ୍ତଙ୍କ ମନରେ ଘୃଣା । ସଭିଙ୍କ ପ୍ରିୟ ନେତା ଲକ୍ଷ୍ମଣ ନାୟକଙ୍କ ପ୍ରତି ସମସ୍ତଙ୍କ ମନରେ ପ୍ରାଣରେ ଭରି ରହିଥାଏ ଭକ୍ତିପୁତ ଶ୍ରଦ୍ଧାଞ୍ଜଳି । ଅନ୍ତେବାସୀଙ୍କ କ୍ରନ୍ଦନରେ ଫାଟି ପଡୁଥାଏ ଜେଲ ଖାନା, ଛଣ୍ଡି ପଡୁଥାଏ  ଆକାଶ, ବିଦିର୍ଣ୍ଣ ହେଉଥାଏ ଜନ୍ମମାଟି, ଜେଲଖାନା ବାହାରେ ଶୁଭୁଥାଏ କ୍ରନ୍ଦନର ରୋଳ । ନିସ୍ତବ୍ଧ ଜନତା ।

୧୯୪୩ ମସିହା ମାର୍ଚ୍ଚ ୨୮ ତାରିଖ ସକାଳ ପାଞ୍ଚ ଘଣ୍ଟା । ବ୍ରହ୍ମପୁର ଜେଲ ଖାନା ଘଣ୍ଟାରେ ଟାଇଁ ଟାଇଁ ବାଜିଲା ପାଞ୍ଚଟା । ଏତିକି ବେଳେ ସେଣ୍ଟିଆ ଟାଣି ଦେଇଥିଲା ଫାଶୀ ଦଉଡ଼ି । ଜଣେ ମହାନ୍ ଦେଶପ୍ରେମୀ, ଗାନ୍ଧୀ ବାଦୀ, ସ୍ୱାଧୀନ ଚେତା ଆଦିବାସୀ ନେତା ଲକ୍ଷ୍ମଣ ନାୟକ ସେହି ମୂହୁର୍ତ୍ତରେ ହୋଇଗଲେ ଶହୀଦ୍ । ଜନ୍ମମାଟି  ତେନ୍ତୁଳି ଗୁମ୍ମା ଧନ୍ୟ ହୋଇଗଲା । ଧନ୍ୟ ହୋଇ ଗଲା ମାଲକାନଗିରି । ତାଙ୍କର ଦେଶ ପାଇଁ ପ୍ରାଣବଳି ଲାଗି ଆଜି ଦେଶବାସୀ ଗର୍ବିତ ।

## ଖର ପାର୍ବତୀ

ଇତିହାସର ପୃଷ୍ଠା ଲେଉଟାଇଲେ ଆମେ କିଛି ପ୍ରତିଭାବାନ୍ ପୁରୁଷ, କିଛି ସଂସ୍କାରକ, କିଛି ଆତ୍ମବଳି ଦେଇଥିବା ସଂଗ୍ରାମୀ ମାନଙ୍କ ବିଷୟରେ ଅବଗତ ହୋଇଥାଉ । ସମାଜରେ ଯେତେବେଳେ ଅତ୍ୟାଚାରୀଙ୍କର ଅତ୍ୟାଚାରର ସୀମା ଲଙ୍ଘନ କରିଥାଏ  ସେତେବେଳେ କେହି ନା କେହି ମହା ପୁରୁଷ ଜନ୍ମ ନେଇଥାନ୍ତି । କିଛି  ସଂସ୍କାରକ ଓ ସଂଗ୍ରାମୀଙ୍କ ଜୀବନୀକୁ ନେଇ ଇତିହାସ ଶତମୁଖ ହୋଇଥାଏ । ଇତିହାସ ଯେଉଁ ମାନଙ୍କ ପାଇଁ ନିରବ ରହିଥାଏ ଐତିହାସିକ ମାନଙ୍କର ଗବେଷଣା ଦ୍ୱାରା ସେମାନେ ଇତିହାସର ପରିସର ଭୁକ୍ତ ହୋଇଥାନ୍ତି । ଇଂରେଜ ମାନଙ୍କର ଅତ୍ୟାଚରରେ ଉତ୍କଳୀୟ ମାନେ ଯେତେବେଳେ ନିଜ ମାଟି, ପାଣି, ପବନ ଉପରେ ନିଜର ଅଧିକାର ସାବ୍ୟସ୍ତ କରିବାରୁ ବଂଚିତ ହୋଇଥାନ୍ତି ସେତେବେଳେ କିଛି ମହାନ ବ୍ୟକ୍ତିମାନଙ୍କର ଅବିର୍ଭାବ ହୋଇଥାଏ । କିନ୍ତୁ ସେମାନେ ଇତିହାସର ପୃଷ୍ଠା ମଣ୍ଡନ କରି ପାରନ୍ତି ନାହିଁ । ଏପରିକି ଅନେକ ରହିଯାଇଛନ୍ତି । ପ୍ରକୃତରେ ସେମାନେ ଇତିହାସର ଗବେଷଣା ସାପେକ୍ଷ । ଏହିପରି ଏକ ନାରୀ ଚରିତ ଉପରେ ଆମେ ଆସନ୍ତୁ ଆଲୋକ ପାତ କରିବା ।

## "ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟତେ । ତତ୍ର ରମନ୍ତେ ଦେବତାଃ"

ଭାରତୀୟ ସଂସ୍କୃତି ସଦାସର୍ବଦା ନାରୀକୁ ଉଚ୍ଚସ୍ଥାନ ଦେଇ ଆସିଛି । ମହାଭାରତରେ ଦ୍ରୌପଦୀ, କୁନ୍ତୀ, ଗାନ୍ଧାରୀ ଇତ୍ୟାଦି ଏବଂ ରାମାୟଣରେ ସୀତା, ତାରା, ମନ୍ଦୋଦରୀ ଏବଂ ଅରୁନ୍ଧତୀ ଇତ୍ୟାଦି । ଭାରତୀୟ ନାରୀମାନେ କେବଳ ଜନନୀ, ଭଗିନୀ ଏବଂ ଜାୟାରେ ସୀମିତ ନରିହି ବୀରତ୍ୱ ପରାକାଷ୍ଠାରେ ଶତମୁଖ ହୋଇ ଇତିହାସ ପୃଷ୍ଠା ମଣ୍ଡନ କରି ପାରିଥାନ୍ତି । ସେମାନେ ଯେତିକି ମାତୃ ସ୍ନେହ ଦେଇପାରନ୍ତି ମର୍ଯ୍ୟାଦାରେ ଆଞ୍ଚ ଆସିଲେ ସେମାନେ ସେତିକି ରଣ ମୁଖୀ ହୋଇ ଉଠନ୍ତି । ଦ୍ରୌପଦୀଙ୍କ ପାଇଁ ତ ମହାଭାରତ ସୃଷ୍ଟି ହୋଇଥିଲା । ଭାରତୀୟ ଜାତୀୟ ସଂଗ୍ରାମରେ ଆମେ ବହୁ ବୀରା ରମଣୀଙ୍କ କଥା ଶୁଣିଲେ । କିନ୍ତୁ ଓଡ଼ିଶାର ଜଣେ ଆଦିବାସୀ ନାରୀ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଦେଶୀୟ ଏବଂ ବିଦେଶୀ ଶାସକ ମାନଙ୍କର ଆସନ ଥରାଇ ଦେଇଥିଲେ । ଏହିପରି ଏକ ତେଜସ୍ୱୀ ନାରୀ ସଂଗ୍ରାମୀ ଉପରେ ଆମେ ଆସନ୍ତୁ ଆଲୋକପାତ କରିବା ।

୧୮୦୩ ମସିହା ପରେ ଇଂରେଜମାନେ ଓଡ଼ିଶାକୁ ଅଧିକାର କଲାପରେ କଳେବଳେ କୌଶଳ କ୍ରମେ ଗୋଟିଏ ପରେ ଗୋଟିଏ ରାଜ୍ୟ ଜୟକରି ଚାଲିଲେ । ଏଥିରେ ଯେଉଁମାନେ ପ୍ରତିବନ୍ଧକ ସୃଷ୍ଟି କରୁଥିଲେ ସେମାନଙ୍କୁ ରାସ୍ତାରୁ ହଟାଇ ଦେଉଥିଲେ । ରାସ୍ତାରୁ ହଟାଇବା ପାଇଁ ସେମାନଙ୍କୁ ଦେଶୀୟ ମୁନାଫାଖୋର ବ୍ୟକ୍ତିମାନେ ବିଶେଷତଃ ସାହାର୍ଯ୍ୟ କରୁଥିଲେ । ଏହା ଫଳରେ ଅନେକ ଜମିଦାର ଏବଂ ରାଜା ମାନଙ୍କ ହାତରୁ ବହୁ କ୍ଷମତା କାଢି ନିଆଗଲା । କିଛି ରାଜ୍ୟ ଏବଂ ଜମିଦାର ଇଂରେଜମାନଙ୍କର ବଶ୍ୟତା ସ୍ୱୀକାର କରି ରହିଲେ । କ୍ଷମତା ଲୋଭରେ ବହୁତ ରାଜା ଏବଂ ଜମିଦାର ନିଜ ପ୍ରଜାମାନଙ୍କ ଉପରେ ମଧ୍ୟ ଅତ୍ୟାଚାର ଚଳାଇଲେ । ଏହିପରି ଏକ ରାଜ୍ୟ ଥିଲା ଜୟପୁର । ୧୮୨୩ ମସିହାରେ ଜୟପୁର ରାଜ୍ୟ ବ୍ରିଟିଶ ଶାସନାଧିନ ହୋଇଥିଲା । ରାଜଗାଦି ଲୋଭରେ ଜୟପୁର ରାଜା ଇଂରେଜ ମାନଙ୍କୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କଲେ । ତେଣୁ ଇଂରେଜ ମାନେ ଖଜଣା ଅସୁଲ କରିବା ବ୍ୟତୀତ ଅନ୍ୟାନ୍ୟ ସମସ୍ତ କ୍ଷମତା ରାଜାଙ୍କ ହାତରୁ କାଢି ନେଇଗଲେ ଏବଂ ଜୟପୁରରେ ଏକ କୋର୍ଟ ପ୍ରତିଷ୍ଠା କରିଥିଲେ । ସେ ଭୂସଂସ୍କାର ଆଇନ ପ୍ରଚଳନ ଦ୍ୱାରା ଅଧିକ କର ଆଦାୟ କରିବା ଯୋଗୁଁ ରାଜାଙ୍କର ଏହି କାର୍ଯ୍ୟରେ ନିରୀହ ଆଦିବାସୀମାନେ ଅତିଷ୍ଠ ହୋଇ ପଡ଼ିଲେ । ଏହି ବଣ ପାହାଡ଼ ଘେରା ଜୟପୁର ରାଜ୍ୟର ଅଧିକାଂଶ ପ୍ରଜା ହେଉଛନ୍ତି ଆଦିବାସୀ । ସ୍ୱାଧୀନ ଚେତା ଆଦିବାସୀ ମାନଙ୍କ ଠାରୁ କର ଆଦାୟ ସେମାନଙ୍କ

ସ୍ୱାଭିମାନ ଉପରେ କୁଠାରଘାତ କରିବାକୁ ଲାଗିଲା । ଏଣୁ ସେମାନେ ପାଲଟା ଜବାବ ଦେବାପାଇଁ ରଣ ହୁଙ୍କାର ଦେଲେ । ଭୂସଂସ୍କାର ଆଇନ ବଳରେ ଜମି ହସ୍ତାନ୍ତର କରିବାକୁ ଚେଷ୍ଟା କଲେ । ଫଳରେ କିଛି ଛୋଟ ଶାସକ ମଧ ପ୍ରତିବାଦ କରିବାକୁ ଚେଷ୍ଟା କରିଥିଲେ । ଏହିପରି ଅସନ୍ତୋଷର ନିଆଁ ଆସ୍ତେ ଆସ୍ତେ ଜଳିବାକୁ ଲାଗିଲା ।

'ଘସବା' ହେଉଛି ଜୟପୁର ରାଜ୍ୟର ଗୋଟିଏ ଛୋଟ ଗାଁ । ସେହି ଗାଁର ମୁଖିଆ ଥିଲେ ମୁକନ୍ଦର ଖରମଳୟ । ସେ ଜଣେ ଆଦିବାସୀ ହେଲେ ମଧ ଅନ୍ୟାୟକୁ ପ୍ରସୟ ଦିଅନ୍ତି ନାହିଁ । ତେଣୁ ସେ ପ୍ରଥମେ ଏହି ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ ପାଇଁ ଡାକରା ଦେଇଥିଲେ । ମୁକନ୍ଦର ଖରମଳୟଙ୍କ ପନ୍ନୀ ଥିଲେ ଖରପାର୍ବତୀ ।

ଆଦିବାସୀ ହେଲେ ମଧ ସେମାନେ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ଥିଲେ । ଶ୍ରୀକୃଷ୍ଣଙ୍କ ପ୍ରତି ସେମାନଙ୍କର ପ୍ରଗାଢ ବିଶ୍ୱାସ ଥିଲା । ବିପଦ ସମୟରେ ଶ୍ରୀକୃଷ୍ଣଙ୍କୁ ଡାକିଲେ ସେମାନେ ବିପଦ ମୁକ୍ତ ହୋଇ ଥାନ୍ତି । ଏହି ବିଶ୍ୱାସ ନେଇ ଖରମଳୟ ବ୍ରିଟିଶ ବାହିନୀ ବିରୁଦ୍ଧରେ ଅନ୍ୟାୟ ଅତ୍ୟାଚାରକୁ ରୋକିବା ପାଇଁ ଅହ୍ୱାନ ଦେଇଥିଲେ । ତେଣୁ ସେ କିଛି ଅସନ୍ତୁଷ୍ଟ ରାଜା, ପ୍ରଜା ଏବଂ ଗ୍ରାମ ମୁଖୀଆ ମାନଙ୍କୁ ନେଇ ଏକ ଦଳ ଗଠନ କରିଥିଲେ । ଏହି ବିପ୍ଳବୀ ମାନେ ସଂଘଠିତ ହୋଇ ବଣ ପାହାଡ଼ରେ ଲୁଚି ଲୁଚି ଇଂରେଜ ବାହିନୀ ସହିତ ବିଦ୍ରୋହ କରିବା ଆରମ୍ଭ କଲେ । ଏଥିରେ ବହୁ ସିପାହି ପ୍ରାଣ ହରାଇଥିଲେ । ଇଂରେଜ ବାହିନୀ ସେଠାକାର ବଣ ଜଙ୍ଗଲ ସହିତ ପରିଚିତ ନଥିବାରୁ ଖରମଳୟ ଦଳକୁ ଠାବ କରିବା ସେମାନଙ୍କ ପକ୍ଷରେ ସମ୍ଭବ ହୋଇ ପାରୁନଥିଲା । ତେଣୁ ଇଂରେଜ ମାନେ ଗୁପ୍ତଚରଙ୍କ ସାହାର୍ଯ୍ୟରେ ସେମାନଙ୍କ ଆଡା ପ୍ରଥମେ ଠାବ କରିଥିଲେ । ଠାବ କରିଲା ପରେ ଇଂରେଜ ବାହିନୀ ଖରମଳୟ ଦଳ ଉପରେ ଆକ୍ରମଣ କଲେ । ଉଭୟଙ୍କ ମଧରେ ତୁମୁଳ ସଂଗ୍ରାମ ହେଲା । ପରିଶେଷରେ ଉଭୟ ପକ୍ଷର ବହୁ ସେନା ମୃତ୍ୟୁ ବରଣ କରିଥିଲେ । ଏମାନଙ୍କ ସହିତ ଖରମଳୟ ମଧ ଇଂରେଜ ଗୁଳିରେ ନିହତ ହୋଇଥିଲେ ।

ଖରମଳୟଙ୍କ ମୃତ୍ୟୁ ପରେ ସ୍ତ୍ରୀ ପାର୍ବତୀ ଯେତିକି ମର୍ମାହତ ହେଲେ ସେତିକି ଉତ୍ତେଜିତ ମଧ ହୋଇଥିଲେ । ସେ ପୂନର୍ବାର ରଣ ହୁଙ୍କାର ଦେଇ ନିଜ ସମର୍ଥକ ମାନଙ୍କୁ ଏକାଠି କରି ଇଂରେଜ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କରିଥିଲେ । ନିଜ ଦଳକୁ ନୂତନ ରଣ କୌଶଳରେ ସଜ୍ଜିତ କରି ଇଂରେଜ ମାନଙ୍କୁ ଯୁଦ୍ଧଂଦେହୀ ଡାକରା ଦେଇଥିଲେ । ୧୯୦୦ ମସିହାରେ ବୁଦ୍ଧିମତୀ ବୀରାରମଣୀ ଇଂରେଜ ମାନଙ୍କ ସହିତ ଖୋଲା ଖୋଲି ଭାବେ ଯୁଦ୍ଧ ଘୋଷଣା

କରିଥିଲେ । ଦୀର୍ଘ ୧୫ ଦିନ ଧରି ଏହି ଯୁଦ୍ଧ ଲାଗି ରହିଥିଲା । ଇଂରେଜ ବାହିନୀ ସମ୍ମୁଖରେ ମୁହାଁ ମୁହିଁ ଯୁଦ୍ଧ କରିବା ଦ୍ୱାରା ପାର୍ବତୀଙ୍କ ସମର୍ଥକ ମାନେ ବହୁ ପରିମାଣରେ ପ୍ରାଣ ହରାଇଥିଲେ । ଆଦିବାସୀ ମାନଙ୍କର ଧନୁ ତୀର ଏବଂ ପାରମ୍ପରିକ ଅସ୍ତ୍ରଶସ୍ତ୍ର ଇଂରେଜ ବାହିନୀର ଗୁଳିଗୋଳା ରଣ ସମ୍ମୁଖରେ ଧୂଆଁ ଧାର ପରି ମିଶି ଯାଉ ଥାଏ । ପାର୍ବତୀ ବହୁ ସମର୍ଥକ ମାନଙ୍କ ମୃତ୍ୟୁ ଦେଖି ଯୁଦ୍ଧ ବନ୍ଦକରି ଦେଇଥିଲେ । କିନ୍ତୁ ସେ ବୀରା ରମଣୀ ହତୋତ୍ସାହ ହୋଇ ପଡ଼ି ନଥିଲେ । ପୁଣି ଜଙ୍ଗଲର ପାହାଡ ଗୁମ୍ଫାରେ ଆଶ୍ରୟ ନେଇ ଗରିଲା ଯୁଦ୍ଧ ଆରମ୍ଭ କରିଥିଲେ । ରାତିରେ ଇଂରେଜ ବାହିନୀ ଉପରେ ଆକ୍ରମଣ କରବା ଫଳରେ ବହୁ ଇଂରେଜ ସେନା ପ୍ରାଣ ହରାଇଥାନ୍ତି । କିଛି  ବିଶ୍ୱାସ ଘାତକ ସୁବିଧା ବାଦୀ ଦେଶୀୟ ଲୋକମାନଙ୍କ ଦ୍ୱାରା ଇଂରେଜ ମାନେ ପାର୍ବତୀଙ୍କ ଗୁପ୍ତ ଆଡ଼ା ସ୍ଥଳୀ ଉପରେ  ଆକ୍ରମଣ କରି ପାର୍ବତୀଙ୍କୁ ବନ୍ଦୀ କରିଥିଲେ । ୧୯୧୫ ମସିହାରେ ତାଙ୍କର କୋର୍ଟରେ ବିଚାର ହେଲା । ଇଂରେଜ ଅଧିକାରୀମାନେ ତାଙ୍କୁ ଅର୍ଥ ଦଣ୍ଡରେ ଦଣ୍ଡିତ କଲେ । ଜଣେ ଆଦିବାସୀ ରମଣୀ ଖରପାର୍ବତୀ ଜାତିର ସ୍ୱାର୍ଥ ପାଇଁ ଯାହା କିଛି ସେ ତ୍ୟାଗ କରିଛନ୍ତି ତାହା ଆଜି ଆମ୍ଭମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରୁଛି ।  ଏହିପରି ଜଣେ ମହିୟସୀ ବୀରା ମହିଳା ଇତିହାସରେ ବିରଳ । ଦେଶପାଇଁ ସେ ଯାହାକିଛି ଉତ୍ସର୍ଗ କରିଯାଇଛନ୍ତି ଦେଶ ତାଙ୍କୁ ଯଥାର୍ଥ ସମ୍ମାନ ଦେଇନି । ଆଜି ସେହି ମହାନ ଜନ ନାୟୀକାଙ୍କୁ ସ୍ମୃତି ଚାରଣ ଆମର ଏକାନ୍ତ କର୍ତ୍ତବ୍ୟ ହେବା ଉଚିତ୍ ।

## ଅସହଯୋଗ ଆନ୍ଦୋଳନ ଓ ଓଡ଼ିଶା

ସହଯୋଗ ନକରିବା ହିଁ ହେଉଛି ଅସହଯୋଗ । ପୁର ପଲ୍ଲୀଠାରୁ ଆରମ୍ଭ କରି ସହର ପର୍ଯ୍ୟନ୍ତ ଭାରତର ସବୁ କ୍ଷେତ୍ରରେ ଗାନ୍ଧିଜୀଙ୍କ ଦ୍ୱାରା ପ୍ରବର୍ତ୍ତିତ ଏହି ଆନ୍ଦୋଳନର ପ୍ରଭାବ ପଡ଼ିଥିଲା । ଓଡ଼ିଶାର ଅଧିବାସୀମାନେ ମଧ୍ୟ ଏହା ଦ୍ୱାରା ପ୍ରଭାବିତ ହୋଇଥିଲେ । ୧୯୨୦ ମସିହା ଡ଼ିସେମ୍ବର ମାସରେ ଜାତୀୟ କଂଗ୍ରେସର ଏକ ଅଧିବେଶନ ନାଗପୁରଠାରେ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନରେ ଅସହଯୋଗ ଆନ୍ଦୋଳର ବିଭିନ୍ନ କାର୍ଯ୍ୟକ୍ରମ ଗୃହୀତ ହୋଇଥିଲା । ଓଡ଼ିଶାରୁ ପ୍ରାୟ ୪୦ ଜଣ କଂଗ୍ରେସ କର୍ମୀ ଏହି ଅଧିବେଶନରେ ଯୋଗ ଦେଇଥିଲେ । ସେଥି ମଧ୍ୟରୁ ଗୋପବନ୍ଧୁ ଦାସ, ହରେ କୃଷ୍ଣ ମହାତାବ, ଜଗବନ୍ଧୁ ସିଂ, ଧରଣୀଧର ମିଶ୍ର ଇତ୍ୟାଦି ପ୍ରମୁଖ ଥିଲେ । ଗୋପବନ୍ଧୁ  ଦାସ ନାଗପୁରରେ ମହାତ୍ମା ଗାନ୍ଧୀଙ୍କ ସହ ସାକ୍ଷାତ କରି ଫେରି ଆସି କାଠଯୋଡ଼ି ନଦୀ କୂଳରେ ଏକ ସାଧାରଣ

ସଭାର ଆୟୋଜନ କରିଥିଲେ । ଏହି ସାଧାରଣ ସଭାରେ ଅସହଯୋଗ ଆନ୍ଦୋଳନର କାର୍ଯ୍ୟକ୍ରମ ଉପରେ ଲୋକମାନଙ୍କୁ ବୁଝାଇ ଥିଲେ । ଗୋପବନ୍ଧୁଙ୍କର ଏହି ଭାଷଣରେ ଉପସ୍ଥିତ ଜନତାଙ୍କ ହୃଦୟରେ ସ୍ୱାଧୀନତାର ଭାବ ଅଙ୍କୁରିତ ହୋଇଥିଲା । ଗୋପବନ୍ଧୁଙ୍କ ଭାଷଣରେ ଜନତା ଏପରି ଭାବରେ ଆପ୍ୟାହିତ ହୋଇଥିଲେ ଯେ, ଆନ୍ଦୋଳନରେ ଲୋକମାନେ ପତଙ୍ଗ ପରି ଝାସ ଦେଇଥିଲେ । ୧୯୨୧ ମସିହାରେ ଗୋପବନ୍ଧୁଙ୍କ ନେତୃତ୍ୱରେ ଓଡ଼ିଶାରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଏହା ପରେ ପରେ ଗଠନ କରାଯାଇଥିଲା ଉତ୍କଳ ପ୍ରଦେଶ କଂଗ୍ରେସ କମିଟି । ଏଥିରେ ୪ ଜଣ କର୍ମକର୍ତ୍ତା ଥିଲେ । ସଭାପତି ଥିଲେ ଗୋପବନ୍ଧୁ ଦାସ । ସଂପାଦକ ଥିଲେ ଭାଗିରଥୀ ମହାପାତ୍ର ଏବଂ ସହସଂପାଦକ ଥିଲେ ବ୍ରଜସୁନ୍ଦର ଦାସ । ଗୋପବନ୍ଧୁଙ୍କର ଆଦର୍ଶ କେବଳ ସ୍ୱାଧୀନତା ଆନ୍ଦୋଳରରେ ସୀମିତ ନରିହି ଜନ ଜୀବନକୁ ସମୃଦ୍ଧ କରୁଥିବା ପ୍ରତିଟି ବିଭବକୁ ପରିବ୍ୟାପ୍ତ ହୋଇଯାଇଥିଲା । ସ୍ୱାଧୀନତା ସଂଗ୍ରାମ ପାଇଁ ଓଡ଼ିଶାକୁ ଏକ କରିବା ଏବଂ ଏକ ବଳିଷ୍ଠ ଯୁବ ବାହିନୀ ଗଠନ ପାଇଁ ସେ ଚିନ୍ତାକଲେ । ଏଥିରୁ ଆମେ ଉପଲବ୍ଧି କରି ପାରିବା ଯେ, ପରାଧୀନତାର ଅନ୍ଧକାରକୁ ଭେଦକରି ଦୂର ଦିଗ୍‌ବଳୟରୁ ସ୍ୱାଧୀନତାର ସୂର୍ଯ୍ୟକୁ ବୋଧହୁଏ ଗୋପବନ୍ଧୁ ସ୍ୱପ୍ନରେ ଦେଖିଥିଲେ । ତେଣୁ ଜନସାଧାରଣଙ୍କୁ ଏକ ସ୍ୱାଧୀନ ଭାରତ ଗଠନ ପାଇଁ ବୁଝାଉ ଥିଲେ ଏବଂ ସେମାନଙ୍କ ପ୍ରାଣରେ ସ୍ୱାଧୀନତାର ଉତ୍ସ ଭରି ଦେଉଥିଲେ । ଅସହଯୋଗ ଆନ୍ଦୋଳନର ପୂର୍ବ ମୂହୁର୍ତ୍ତରୁ ଓଡ଼ିଆ ଜନ ଜୀବନରେ ଜାତିପ୍ରତି ଆଣିଥିଲା ଏକ ମମତା ବୋଧ, ମା' ମାଟି ପ୍ରତି ବିଶେଷ ଆକର୍ଷଣ ଓ ଦେଶବାସୀଙ୍କ ପ୍ରତି ଜାତୀୟତାବୋଧ । ଜନସାଧାରଣଙ୍କ ମନରେ ଜାତୀୟତାବୋଧର ପରିପ୍ରକାଶ ପାଇଁ ଗୋପବନ୍ଧୁ ତାଙ୍କର ଲେଖନୀ ମଧ ଚଳାଇ ଥିଲେ । ଅହିଂସା ନୀତିକୁ ମୂଳ ପାଥେୟ କରି ସ୍ୱରାଜ ହାସଲ କରିବା ତାଙ୍କର ଥିଲା ମୂଳମନ୍ତ୍ର । ସ୍ୱରାଜ ହେଲା ପ୍ରଜାମାନଙ୍କ ରାଜ୍ୟ । ସେ ଲୋକ ମାନଙ୍କୁ ବୁଝାଉ ଥିଲେ ।

*ପ୍ରଜା ଲାଗି କଲେ ପ୍ରଜାପତି ସୃଷ୍ଟି ପ୍ରଜା ଲାଗି ଇନ୍ଦ୍ର କଲେ ଜଳବୃଷ୍ଟି*
*ପ୍ରଜା ଲାଗି ଉଦେ ରବି ଶଶୀତାରା ପ୍ରଜା ଲାଗି ବହେ ଶତନଦୀ ଧାରା*
*ପ୍ରଜାଲାଗି ରାଜ୍ୟ, ପ୍ରଜାର ଶାସନ ଯୁଗେ ଯୁଗେ ଏହା ଶାସନ କଥନ*

(ଗୋପବନ୍ଧୁ)

ଇଂରେଜ ଶାସନ ସମୟରେ ପ୍ରଜାମାନଙ୍କର ଅବସ୍ଥା ସ୍ୱଚ୍ଛଳ ନଥିଲା । ଯେତେବେଳେ ରାଜ୍ୟରେ ସେମାନଙ୍କର ଅଧିକାର ସୁରକ୍ଷିତ ନରହିବ ସେତେବେଳେ ସେମାନେ ନିଶ୍ଚିତ

ଭାବେ ସ୍ୱର ଉତ୍ତୋଳନ କରିବେ । ସେତେବେଳେ ପ୍ରଜାମାନଙ୍କ ଉପରେ ଶାସନର ନିର୍ଯ୍ୟାତନା, ନିରୀହ ପ୍ରଜାମାନଙ୍କ ଉପରେ କରଭାର, ଜାତି ଅଜାତି ଭେଦଭାବ, ଗାଁ ଗାଁରେ ମାଲି ମକଦ୍ଦମା, ପରସ୍ପର ମଧ୍ୟରେ କଳହ ଓ ମତାନ୍ତର, ବିଦେଶୀ ଦ୍ରବ୍ୟର ବ୍ୟବହାର ଫଳରେ ଗ୍ରାମ୍ୟ ଶିଳ୍ପୀ ମାନଙ୍କର ମୁମୂର୍ଷୁ ଅବସ୍ଥା, ଅସୁରକ୍ଷିତ ଜୀବନ ଏବଂ ଶାସକ ଗୋଷ୍ଠୀଙ୍କ ଉଦାସୀନତା ବାସ୍ତବରେ ପ୍ରଜାମାନଙ୍କ ପାଇଁ ଅସହ୍ୟ ହୋଇ ପଡିଥିଲା । ଅଗଣିତ ଜନତା ପଶୁଠାରୁ ହୀନ ଜୀବନ ଜାପନ କରୁଥିଲେ । ଓଡ଼ିଶାରେ ଏହାର ଏକମାତ୍ର ଉପାୟ ଥିଲା ପୂର୍ଣ୍ଣ ଅସହଯୋଗ । ଏହି ସବୁ ସମସ୍ୟାର ସମାଧାନ ପାଇଁ ଏବଂ ଦେଶବାସୀଙ୍କୁ ଉଦ୍‌ବୋଧନ ଦେଇ ଗୋପବନ୍ଧୁ ତାଙ୍କର "ବନ୍ଦୀର ଆତ୍ମକଥା" କାବ୍ୟରେ ଲେଖିଥିଲେ :

"ଅରଟ ଚଳାଅ ପ୍ରତି ଘରେ ଘରେ ଗ୍ରାମର କଳହ ତୁଟାଅ ଗ୍ରାମରେ<br>
ଚାଲ ସତ୍ୟ ପଥେ ନାହିଁ ଡରଭୟ ଅସହଯୋଗର ବିଜୟ ନିଶ୍ଚୟ ।<br>
ଛାଡ ଉଚ୍ଚନୀଚ ଭେଦ ଅହଙ୍କାର ହେଉ ନୀଳାଚଳୁ ସମତା ପ୍ରଚାର ।<br>
ଖଣ୍ଡଗିରି ଭେଦି ଅହିଂସା ମନ୍ତର ଜାଗୁ ପୁଣିଥରେ ଉତ୍କଳ ଅନ୍ତର ।

ତତ୍କାଳୀନ ରାଜନୈତିକ ପୃଷ୍ଠଭୂମିକୁ ନେଇ ସୃଷ୍ଟି ହୋଇଥିଲା ଜନପ୍ରିୟ ଓଡ଼ିଆ ଜାତୀୟ ସାହିତ୍ୟ । ସେହି ସମୟରେ ଓଡ଼ିଶାର ବିଭକ୍ତି କରଣ ଓଡ଼ିଶାର ପ୍ରାଣଗତିକୁ ଶିଥିଳ କରିଦେଇଥିଲା । ଶାସନର ଦ୍ୱାହି ଦେଇ ଇଂରେଜ ସରକାର ମନଇଚ୍ଛା ଶାସନର ନିର୍ଯ୍ୟାତନା ଚଳାଇ ଥିଲେ । ଏହି ରାଜ ନୈତିକ ଦୌରାତ୍ମ୍ୟର ପ୍ରତିବାଦ ପାଇଁ ସେତେବେଳେ ଓଡ଼ିଶାରେ କୌଣସି ସଫଳ ନେତା ନଥିଲେ । ଇଂରେଜ ଶାସନ ବିରୁଦ୍ଧରେ ଦୃଢ ପ୍ରତିବାଦ ଜଣାଇବା ପାଇଁ ସେପରି କୌଣସି ଦୃଢ ରାଜନୈତିକ ସଂଗଠନ ନଥିଲା । ତେଣୁ ଜନ ଯାଗରଣ ସୃଷ୍ଟି କରିବା ଦାୟିତ୍ୱ ନେଇଥିଲା ସାହିତ୍ୟ । ଫଳରେ ଜାତୀୟତାର ଜନ୍ମ ହେଲା । ଉତ୍କଳୀୟ ଚେତନାରେ ଉତ୍କଳୀୟ ମାନେ ଉଦ୍‌ଭାଷିତ ହେଲେ । ସ୍ୱତନ୍ତ୍ର ଭାଷା, ସ୍ୱତନ୍ତ୍ର ସଂସ୍କୃତି, ସ୍ୱତନ୍ତ୍ର ଉଦ୍ୟମ ଏବଂ ସ୍ୱତନ୍ତ୍ର ଉତ୍ସାହର ଅରୁଣୋଦୟ ହେଲା । ଉନବିଂଶ ଶତାବ୍ଦୀରେ ମଧ୍ୟ ଭାଗରେ ଆଧୁନିକ ଶିକ୍ଷାର ପ୍ରସାର ଫଳରେ ସମଗ୍ର ଓଡ଼ିଶାରେ ଶିକ୍ଷିତ ଗୋଷ୍ଠୀର ଅଭ୍ୟୁଦୟ ହେଲା । ସୀପାହି ବିଦ୍ରୋହର ବିଫଳତା, ନ'ଅଙ୍କ ଦୁର୍ଭିକ୍ଷର କରାଳ କାହାଣୀ, ସେମାନଙ୍କୁ ନୂତନ ମାର୍ଗ ପ୍ରଦର୍ଶୀତ କରିଥିଲା । ଆହୁରି ସେମାନଙ୍କୁ ଦିଗ୍‌ଦର୍ଶନ ଦେଇଥିଲା ପଣ୍ଡିତ ଗୋପବନ୍ଧୁଙ୍କର ସେହି କେତେ ପଦ :-

"ପରହିତେ ପ୍ରାଣ ଉତ୍ସର୍ଗୀ ପୂରୁବେ    କେତେ କେତେ ମହାଜନ
ଲଭିଛନ୍ତି ତ୍ୟାଗେ ପରାଣ ପୂର୍ଣ୍ଣତା    ମରଣେ ନିତ୍ୟ ଜୀବନ ।
କୋରକତ ପ୍ରାଣ ଫୁଟେ ପ୍ରେମ ରସେ    ପବନେ ମିଶାଏ ହସ,
ବିଶ୍ୱବ୍ୟାପୀ ରବି ଉଜ୍ଜ୍ୱଳ ଆଲୋକେ    ଚାରୁ ସ୍ନିଗ୍ଧ ମନ୍ଦହାସ ।"

ଦେଶ ଦଶ ପାଇଁ ଆତ୍ମନିବେଦନର ପରଂପରା ସୃଷ୍ଟି କରିବାରେ ସିଦ୍ଧହସ୍ତ ଥିବାରୁ ତାଙ୍କରି ଆହ୍ୱାନରେ ୧୯୨୧ ମସିହା ଜାନୁୟାରୀ ଓ ଫେବୃଆରୀ ମାସରେ ରେଭେନ୍‌ସା କଲେଜର ପ୍ରାୟ ୭୦/୮୦ ଜଣ ଛାତ୍ର ଧର୍ମଘଟ କରିଥିଲେ । କେତେକ ଓକିଲ ଏବଂ ସରକାରୀ କର୍ମଚାରୀ ନିଜନିଜର କର୍ତ୍ତବ୍ୟକୁ ଜଳାଞ୍ଜଳି ଦେଇ ଏହି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ପରେ ପରେ ସତ୍ୟବାଦୀ ବନ ବିଦ୍ୟାଳୟର ଶିକ୍ଷକ ମାନେ ନିଜର ଶିକ୍ଷକତା ଛାଡ଼ି ଗୋପବନ୍ଧୁଙ୍କ ସହିତ ହାତ ମିଳାଇ ଥିଲେ । ବହୁ ଆଇନଜୀବୀ ଆଇନ ବ୍ୟବସାୟ ଛାଡ଼ି ଆନ୍ଦୋଳନ ରେ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରୁ ଜଗବନ୍ଧୁ ସିଂ, ଭାଗିରଥୀ ମହାପାତ୍ର, ସମ୍ବଲ ପୁରର ରାମନାରାୟଣ ମିଶ୍ର, ବ୍ରହ୍ମପୁରର ନଟବର ଗଡତିଆ ଓ ବିଶ୍ୱନାଥ ଦାସ ପ୍ରମୁଖ । ଆହୁରି ମଧ୍ୟ କେତେଜଣ ବ୍ୟକ୍ତି ସରକାରୀ ଚାକିରିରୁ ଇସ୍ତଫା ଦେଇ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରୁ ଗୋପବନ୍ଧୁ ଚୌଧୁରୀ ଡ଼େପୁଟି ମାଜିଷ୍ଟ୍ରେଟ ଚାକିରୀରୁ ଇସ୍ତଫା ଦେବା ସଙ୍ଗେ ସଙ୍ଗେ ମୁକୁନ୍ଦ ପ୍ରସାଦ ଦାସ, ସୁରେନ୍ଦ୍ର ନାଥ ଦାସ ପୋଲିସ ସବଇନିସ୍‌ପେକ୍ଟର, ମହମ୍ମଦ ଉନିଫ ଅବକାରୀ ଇନିସ୍‌ପେକ୍ଟର, ଚନ୍ଦ୍ରଶେଖର ବେହେରା, ଶ୍ରୀବତ୍ସ ପଣ୍ଡା ସରକାରୀ ଚାକିରି ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । କଲିକତା ବିଶ୍ୱ ବିଦ୍ୟାଳୟରୁ ଅଧ୍ୟାପକ ଚାକିରୀ ଛାଡ଼ି ନୀଳକଣ୍ଠ ଦାସ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେହି ସମୟର ଏମ୍.ଏ. ଡ଼ିଗ୍ରୀ ହାସଲ କରିଥିବା ନନ୍ଦକୀଶୋର ଦାସ ଓ ଗୋଦାବରୀଶ ମିଶ୍ର ସରକାରୀ ଚାକିରି ଗ୍ରହଣ ନକରି ଗୋପବନ୍ଧୁ ଦାସଙ୍କ ଆନ୍ଦୋଳନରେ ଯୋଗ ଦେଇଥିଲେ । କେତେଜଣ ଛାତ୍ର ମଧ୍ୟ ପାଠ ପଢା ଛାଡି ଆନ୍ଦୋଳନରେ ଯୋଗ ଦେଇଥିବା ସଙ୍ଗେ ସଙ୍ଗେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରୁ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ନବ କିଶୋର ଦାସ, ନିତ୍ୟାନନ୍ଦ କାନୁନ୍‌ଗୋ, ରାଧାକୃଷ୍ଣ ବିଶ୍ୱାସ ରାୟ ଓ ରାମକୃଷ୍ଣ ବୋଷଙ୍କ ନାମ ଉଲ୍ଲେଖ ଯୋଗ୍ୟ । ଅଧିକାଂଶ ଛାତ୍ର ଥିଲେ ରେଭେନ୍‌ସା କଲେଜର ଏବଂ ରାମକୃଷ୍ଣ ବୋଷ ଥିଲେ ମେଡ଼ିକାଲ ସ୍କୁଲର ଛାତ୍ର ।

ତତ୍କାଳୀନ ଶିକ୍ଷା ବ୍ୟବସ୍ଥା ମୁଖ୍ୟତଃ ଇଂରେଜ ସରକାରଙ୍କର ଅନୁଗତ ଅଧିକାରୀ ଓ ବାଧ୍ୟ ସରକାରୀ ରୂପେ ପ୍ରସ୍ତୁତ କରୁଥିଲେ । ସ୍ୱାଧୀନତା ସଂଗ୍ରାମ ପାଇଁ ଅନୁକୂଳ ମନୋଭାବ ଜାତିପ୍ରେମ, ସ୍ୱାଧୀନ ଚିନ୍ତା ଆଦିର ବିକାଶ ଘଟାଇବା ସମ୍ଭବ ନଥିଲା । ତେଣୁ ମଣିଷ ଗଢିବା ପାଇଁ ସତ୍ୟବାଦୀ ଠାରେ ଗୋପବନ୍ଧୁ ଏକ ବନ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ମଣିଷ ଗଢିବା ପାଇଁ ଅର୍ଥାତ୍ ଏକ ସୁସ୍ଥ ନାଗରିକ ଗଠନ କରିବା, ଏକ ସୁସ୍ଥ ସମାଜ ଗଠନ କରିବା, ଦେଶର ପ୍ରତି ନାଗରିକ ନିଜର ଦାୟିତ୍ୱ ବୋଧତା ଉପଲବ୍ଧି କରିବା ଏହାଥିଲା ତାଙ୍କର ଉଦ୍ଦେଶ୍ୟ । ସାକ୍ଷୀ ଗୋପାଳ ମନ୍ଦିର ଠାରୁ ଅନତି ଦୂରରେ ଛୁରିଅନା କୁଞ୍ଜ ମଧ୍ୟରେ ଏହି ବିଦ୍ୟାଳୟ ଗଢି ଉଠିଥିଲା । କେତେକ ବୁଦ୍ଧିଜୀବୀ, ସ୍ୱାଧୀନଚେତା, ସ୍ୱଜାତି ପ୍ରେମିକ ଶିକ୍ଷକ ମାନଙ୍କୁ ନେଇ ଏଠାରେ ଅଧ୍ୟାପନା କାର୍ଯ୍ୟ ଆରମ୍ଭ ହୋଇଥିଲା । ତେଣୁ ସେମାନଙ୍କ ଆଦର୍ଶରେ ଛାତ୍ର ଛାତ୍ରୀ ମାନେ ଅନୁପ୍ରାଣିତ ହେଉଥିଲେ । ଶିକ୍ଷକ ମାନେ ଛାତ୍ର ଛାତ୍ରୀ ମାନଙ୍କୁ ଜାତୀୟତାରେ ଉଦ୍‌ବୁଦ୍ଧ କରାଇ ମାତୃ ଭୂମିକୁ ପରାଧୀନ ତାର ଶୃଙ୍ଖଳରୁ ଉଦ୍ଧାର କରିବା ପାଇଁ କାର୍ଯ୍ୟ କରୁଥିଲେ । ତତ୍କାଳୀନ ସାମନ୍ତ ବାଦରୁ ସମାଜରୁ ମୁକ୍ତ କରି ଶିକ୍ଷା ମାଧ୍ୟମରେ ସମାଜ ସେବାର ମନ୍ତ୍ରରେ ଶିକ୍ଷାର୍ଥୀ ମାନଙ୍କୁ ଦୀକ୍ଷିତ କରାଇବା ଥିଲା ଉକ୍ତ ବିଦ୍ୟାଳୟର ଲକ୍ଷ । ଏହି ମୁକ୍ତାକାଶ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା ହୋଇଥିଲା । ୧୯୦୯ ମସିହା ଅଗଷ୍ଟ ୧୨ ତାରିଖରେ ମହାତ୍ମା ଗାନ୍ଧୀ ୱାର୍ଦ୍ଧାର ସେବା ଗ୍ରାମରେ ମୌଳିକ ବିଦ୍ୟାଳୟ ପ୍ରତିଷ୍ଠା କରିବା ଆଗରୁ ଏବଂ ବିଶ୍ୱକବି ରବିନ୍ଦ୍ରନାଥ ଠାକୁର ଶାନ୍ତି ନିକେତନରେ "ବିଶ୍ୱ ଭାରତୀ" ପ୍ରତିଷ୍ଠା କରିବା ପାଇଁ ଚିନ୍ତା କରିବା ବହୁ ପୂର୍ବରୁ ସେହି ନୀତି ଓ ଆଦର୍ଶକୁ ନେଇ ଗୋପବନ୍ଧୁ "ସତ୍ୟବାଦୀ ବନ ବିଦ୍ୟାଳୟ" ପ୍ରତିଷ୍ଠା କରିଥିଲେ ।

ସେହି ସମୟରେ ଓଡ଼ିଶାରେ ଶିକ୍ଷା କ୍ଷେତ୍ରରେ କିଛି ପରିବର୍ତ୍ତନ ଦେଖାଦେଇଥିଲା । ବିଭିର୍ଣ୍ଣ ସ୍ଥାନରେ ଜାତୀୟ ବିଦ୍ୟାଳୟମାନ ସ୍ଥାପନ କରା ଯାଇଥିଲା । ଏହି ସତ୍ୟବାଦୀ ବନ ବିଦ୍ୟାଳୟକୁ ୧୯୨୧ ମସିହାରେ ଜାତୀୟ ବିଦ୍ୟାଳୟରେ ପରିଣତ କରା ଯାଇଥିଲା । ଚକ୍ରଧର ପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟକୁ ଜାତୀୟ ବିଦ୍ୟାଳୟରେ ରୂପାନ୍ତରିତ କରାଯାଇଥିଲା । ସେହି ସମୟରେ ସମ୍ବଲପୁର, ଜଗତସିଂହପୁର, ଭଦ୍ରକ ଏବଂ ବାଲେଶ୍ୱରରେ ଜାତୀୟ ବିଦ୍ୟାଳୟ ମାନ ସ୍ଥାପନ କରାଯାଇଥିଲା । ଏହି ବିଦ୍ୟାଳୟ ମାନଙ୍କରେ ସାଧାରଣ ଶିକ୍ଷା ବ୍ୟତୀତ ସୂତାକଟା, ଲୁଗାବୁଣା, ଇତ୍ୟାଦି ଉପରେ ଶିକ୍ଷାଦାନ କରାଯାଉଥିଲା । ନୀଳକଣ୍ଠ ଦାସ ସମ୍ବଲପୁର ଜାତୀୟ ବିଦ୍ୟାଳୟର ଅଧ୍ୟକ୍ଷ ଥିଲେ ।

ଏହି ସମୟରେ ଆଉ ଏକ ଉଲ୍ଲେଖନୀୟ ଘଟଣା ହେଲା କଂଗ୍ରେସ କର୍ମୀ ଏବଂ ସ୍ୱେଚ୍ଛାସେବୀ ମାନଙ୍କୁ ପ୍ରଶିକ୍ଷଣ ଦେବାଲାଗି ବିଭିନ୍ନ ସ୍ଥାନରେ ଅଶ୍ରମ ସ୍ଥାପନ କରାଯାଇଥିଲା । ଓଡ଼ିଶାରେ ମୋଟ ୭ ଗୋଟି ଆଶ୍ରମ ସ୍ଥାପନ କରା ଯାଇଥିଲା । ସେଗୁଡିକ ହେଲା କଟକ, ଜଗତସିଂହପୁର, ପୁରୀ, ସାକ୍ଷୀ ଗୋପାଳ, ବାଲେଶ୍ୱର, ଭଦ୍ରକ ଓ ସୋର । ଏହି ଆଶ୍ରମ ମାନଙ୍କରେ ସୁତାକଟା, ଲୁଗାବୁଣା ଓ କଂଗ୍ରେସ କର୍ମୀ ମାନଙ୍କୁ ପ୍ରଶିକ୍ଷଣ ଦିଆ ଯାଉଥିଲା । ଏହି ଆଶ୍ରମ ମାନଙ୍କ ମଧ୍ୟରେ ମୁଖ୍ୟ ଥିଲା କଟକର ସ୍ୱରାଜ ଆଶ୍ରମ, ଏହି ସ୍ୱରାଜ ଆଶ୍ରମ ଥିଲା ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ମୁଖ୍ୟ କେନ୍ଦ୍ର । ତତ୍ ସଙ୍ଗେ ସଙ୍ଗେ ଜଗତସିଂହ ପୁରରେ ଭାଗିରଥୀ ମହାପାତ୍ରଙ୍କ ପ୍ରଚେଷ୍ଟାରେ ଖୋଲାଗଲା ଅଳକା ଆଶ୍ରମ । ସେଠାରେ ଗୋପବନ୍ଧୁ ଚୌଧୁରୀ ମଧ୍ୟ ଯୋଗ ଦେଇଥିଲେ । ଏହାପରେ ମହତାବଙ୍କ ନେତୃତ୍ୱରେ ବାଲେଶ୍ୱର ଠାରେ ଖୋଲାଗଲା ସ୍ୱରାଜ ମନ୍ଦିର । ଏହି ସବୁ ଆଶ୍ରମ ମାନଙ୍କରେ କଂଗ୍ରେସର ସ୍ୱେଚ୍ଛାସେବୀ ମାନଙ୍କୁ ଅସହଯୋଗ ଆନ୍ଦୋଳନର କାର୍ଯ୍ୟକ୍ରମ ବିଷୟରେ ଶିକ୍ଷା ଦିଆ ଯାଉଥିଲା ।

## ଗାନ୍ଧିଜୀଙ୍କ ଓଡ଼ିଶା ଆଗମନ

ଅସହଯୋଗ ଆନ୍ଦୋଳନର ପ୍ରଚାର ଏବଂ ପ୍ରସାର ପାଇଁ ୧୯୨୧ ମସିହା ମାର୍ଚ୍ଚ ୨୧ ତାରିଖ ଦିନ ଗାନ୍ଧିଜୀ ରେଳ ଯୋଗେ ଆସି କଟକ ଷ୍ଟେସନରେ ପହଞ୍ଚିଲେ । ତାଙ୍କ ସହିତ ତାଙ୍କର ସ୍ତ୍ରୀ କସ୍ତୁରବା ମଧ୍ୟ ଥିଲେ । ସେଠାରୁ ତାଙ୍କୁ ଏକ ବିରାଟ ଶୋଭାଯାତ୍ରାରେ କଟକ ସ୍ଥିତ ସ୍ୱରାଜ ଆଶ୍ରମକୁ ନିଆ ଯାଇଥିଲା । କାଠଯୋଡ଼ି ନଦୀ ବାଲି ଉପରେ ତାଙ୍କ ପାଇଁ ଗୋପବନ୍ଧୁଙ୍କ ପ୍ରଚେଷ୍ଟାରେ ଏକ ବିରାଟି ସାଧାରଣ ସଭାର ଆୟୋଜନ କରା ଯାଇଥିଲା । ଜାତି ଧର୍ମ ବର୍ଣ୍ଣ ନିର୍ବି ଶେଷରେ ଏଥିରେ ହଜାର ହଜାର ଲୋକ ଯୋଗ ଦେଇଥିଲେ । ଗାନ୍ଧିଜୀଙ୍କ ଜୟଧ୍ୱନିରେ କଟକ ସହର ଉଚ୍ଛୁଳି ପଡୁଥିଲା । ସାଧାରଣ ସଭାରେ ପ୍ରଥମେ ଗୋପବନ୍ଧୁ ଅଭ୍ୟର୍ଥନା ଜଣାଇଥିଲେ । ଗାନ୍ଧିଜୀ ତାଙ୍କର ଭାଷଣ ମାଧ୍ୟମରେ ଜନସାଧାରଣଙ୍କୁ ସ୍ୱରାଜ ପାଇବା ପାଇଁ କାମ କରିବାକୁ ଅନୁରୋଧ କରିଥିଲେ । ହିନ୍ଦୁ ମୁସଲମାନ ଭିତରେ ସହମତି ରଖିବା ପାଇଁ ଗାନ୍ଧିଜୀ କଟକରେ ଭିନ୍ନ ଭିନ୍ନ ସଭାରେ ଯୋଗଦାନ କରି ଛାତ୍ର ଏବଂ ଓକିଲ ମାନଙ୍କୁ ଉଦ୍‌ବୋଧନ ଦେଇଥିଲେ । କଟକରେ ଏକ ନାରୀ ସଭା ଅନୁଷ୍ଠିତ ହୋଇଥିଲା । ସେଠାରେ ରମା ଦେବୀ ଏବଂ ସରଳା ଦେବୀ ପ୍ରଭୃତି ବହୁ ନାରୀ ଯୋଗ ଦେଇଥିଲେ । ସେଠାରେ ମଧ୍ୟ ଗାନ୍ଧିଜୀ ଉଦ୍‌ବୋଧନ ଦେଇଥିଲେ ।

ମାର୍ଚ୍ଚ ୨୫ ତାରିଖ ଦିନ ଗାନ୍ଧିଜୀ ପୁରୀ ଯିବା ବାଟରେ ସତ୍ୟବାଦୀ ବନ ବିଦ୍ୟାଳୟ ପରିଦର୍ଶନ କରିଥିଲେ । ସେଠାକାର ଶିକ୍ଷକ ଏବଂ ଛାତ୍ର ମାନଙ୍କର ସରଳ ଓ ଶୃଙ୍ଖଳିତ ଜୀବନ ଯାପନ ପ୍ରଣାଳୀକୁ ପ୍ରସଂସା କରିବା ସହିତ ସେଠାର ଶିକ୍ଷାଦାନର ପଦ୍ଧତିକୁ ଉଚ୍ଚ କୁଟୀର ବୋଲି କହିଥିଲେ । ସେଠାରେ ଛାତ୍ର ଶିକ୍ଷକ ଓ ଜନସାଧାରଣ ମାନଙ୍କୁ ଉଦ୍‌ବୋଧନ ଦେଇ ପୁରୀ ଯାଇଥିଲେ । ପୁରୀରେ ଏକ ବିଶାଳ ଜନସାଧାରଣ ସଭାରେ ଜାତୀୟ ତଥା ଅସହଯୋଗ ଆନ୍ଦୋଳନ ଉପରେ ଭାଷଣ ଦେଇଥିଲେ ।

ଗାନ୍ଧିଜୀଙ୍କର ଓଡ଼ିଶା ଆଗମନ ପରେ ପରେ ଓଡ଼ିଆ ମାନଙ୍କ ପ୍ରାଣରେ ଏକ ସ୍ୱତନ୍ତ୍ର ଜାତୀୟ ଚେତନାର ଉଦ୍ରେକ ହୋଇଥିଲା । ତାପରେ ଗୋପବନ୍ଧୁଙ୍କ ନେତୃତ୍ୱରେ ପ୍ରତି ଗାଁ ଗାଁରେ କଂଗ୍ରେସ ଅନୁଷ୍ଠାନ ମାନ ଗଢା ଯାଇଥିଲା । ବିଦେଶୀ ବସ୍ତୁକୁ ବର୍ଜନ କରି ଖଦଡ ବସ୍ତ୍ରର ପରିଧାନ କରିବା ଫଳରେ ଖଦଡ଼ ବସ୍ତ୍ରର ଚାହିଦା ବୃଦ୍ଧି ପାଇଲା । ବଡ ବଡ ସହର ମାନଙ୍କରେ ଲୁଗା ବ୍ୟବସାୟୀ ମାନେ ବିଦେଶୀ ବସ୍ତ୍ର ବିକ୍ରୀ ନକରିବା ପାଇଁ ନିଷ୍ପତି ନେଇଥିଲେ । ବହୁ ସ୍ୱେଚ୍ଛାସେବୀ କଟକରେ ବିଦେଶୀ ବସ୍ତ୍ରର ଆମଦାନୀକୁ ପ୍ରତିରୋଧ କରିଥିଲେ । ଅକ୍ଟୋବର ୨ ତାରିଖ ଦିନ ଗାନ୍ଧିଜୀଙ୍କ ଜନ୍ମ ଦିନରେ ଓଡ଼ିଶାର ସହର ମାନଙ୍କରେ ବିଦେଶୀ ବସ୍ତ୍ରକୁ ପୋଡ଼ି ଦିଆ ଯାଇଥିଲା । ଓଡ଼ିଶାରେ ପର୍ବପର୍ବାଣୀ ମାନଙ୍କରେ ବିଦେଶୀ ବସ୍ତ୍ର ନକିଣି ଖଦୀ ବସ୍ତ୍ର ବ୍ୟବହାର ପାଇଁ ସମସ୍ତଙ୍କୁ ଅନୁରୋଧ କରାଯାଇଥିଲା । ଇଂରାଜୀ ଶିକ୍ଷା ଦିଆଯାଉଥିବା ଅନୁଷ୍ଠାନ ଗୁଡ଼ିକୁ ମଧ ପୋଡି ଦିଆଯାଇଥିଲା । ଜନ ସାଧାରଣ ଅଦାଲତ ଓ ବିଚାରାଳୟକୁ ନିଜର ମାମଲା ନନେଇ ପଞ୍ଚାୟତ ମାଧମରେ ସବୁ ମାମଲା ଫଇସଲା କରିବାକୁ ଲାଗିଲେ । ଏହା ବିଶେଷ ଭାବରେ ଲୋକାଦୃତ ମଧ ହୋଇଥିଲା । ଫଳରେ ପଞ୍ଚାୟତ ମାଧମରେ ଅଦାଲତ ସ୍ଥାପନ କରି ମାମଲା ଫଇସଲା କରବା ପାଇଁ ଲୋକମାନେ ଆଗ୍ରହୀ ହେଉଥିଲେ ।

କୌଣସି କାରଣ ବଶତଃ ଅସହଯୋଗ ଆନ୍ଦୋଳନକୁ ବନ୍ଦ କରି ଦିଆଯାଇଥିଲା । ୧୯୨୬ ରେ ପୁନର୍ବାର ଏହି ଆନ୍ଦୋଳନ ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ଭାବେ ସଂଘଟିତ ହୋଇ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲା । ସାଇମନ କମିଶନର ନିଯୁକ୍ତି ହୋଇ ଏକ ନୂତନ ଅଧ୍ୟାୟ ସମଗ୍ର ଭାରତ ବର୍ଷରେ ମୁଣ୍ଡ ଟେକି ଥିଲା । ଏହା ପରେ ସଂଘଟିତ ହୋଇଥିଲା ଆଇନ ଅମାନ୍ୟ ଆନ୍ଦୋଳନ । ଏହା ପରେ ପରେ ଦେଖା ଦେଇଥିଲା ଲବଣ ଆଇନ ଭଙ୍ଗ । ଭାରତୀୟ ଜାତୀୟ କଂଗ୍ରେସର ନିର୍ଦ୍ଦେଶକ୍ରମେ ଉତ୍କଳ ପ୍ରଦେଶ କଂଗ୍ରେସ

କମିଟିର ସଦସ୍ୟ ମାନେ ଗୋପବନ୍ଧୁଙ୍କ ବାସ ଭବନରେ ମିଳିତ ହୋଇ ତାଙ୍କୁ ଆଇନ ଅମାନ୍ୟ ଆନ୍ଦୋଳନର ନିର୍ଦ୍ଦେଶକ ରୂପେ ନିର୍ବାଚିତ କରିଥିଲେ । ଗୋପମନ୍ଧୁ ଦାସଙ୍କର ଇହଲୀଳା ସମ୍ବରଣ ପରେ ହରେ କୃଷ୍ଣ ମହତାବ ହୋଇଥିଲେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭାପତି । ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳର ବ୍ୟବସାୟୀ ମାନେ ସାଧାରଣତଃ ସମୁଦ୍ର  ପାଣିରୁ ଲୁଣମାରି ଜୀବିକା ନିର୍ବାହ କରିଥାନ୍ତି । ଇଂରେଜ ସରକାର ୧୯୨୩ ମସିହାରେ ଲବଣ କରକୁ ଦ୍ୱିଗୁଣିତ କରି ଦେଇଥିଲେ । ଏହି ଲବଣ ଆଇନ ପ୍ରବର୍ତ୍ତନ ଯୋଗୁଁ ଉପକୂଳବର୍ତ୍ତୀ ଅଧିବାସୀ ମାନଙ୍କର ଆର୍ଥିକ ପରିସ୍ଥିତି ଦୁର୍ବଳ ହୋଇ ପଡ଼ିଥିଲା । ଫଳରେ ସେମାନେ ବହୁ ଅଭାବ ଅନାଟନରେ ଦିନ କାଟୁଥିଲେ । ତେଣୁ ଗୋପବନ୍ଧୁ ଚୌଧୁରୀଙ୍କୁ ସେମାନଙ୍କ ସମସ୍ୟା ଦୂରକରିବା ପାଇଁ ଦାୟିତ୍ୱ ଦିଆଗଲା । ତେଣୁ ସେ ଉପକୂଳବର୍ତ୍ତୀ ଅଞ୍ଚଳରେ କେତେକ ସ୍ଥାନରେ ଲବଣ ଆଇନ ଭଙ୍ଗ କରିବା ପାଇଁ ସ୍ଥିର କଲେ । ତେଣୁ ସେ ବାଲେଶ୍ୱର, କଟକ, ପୁରୀ ଏବଂ ଗଞ୍ଜାମ ଜିଲ୍ଲାରେ ଲବଣ ଆଇନ ଭଙ୍ଗ କାର୍ଯ୍ୟକ୍ରମ ଚଳାଇଲେ ।

ହରେକୃଷ୍ଣ ମହାତାବଙ୍କ ନେତୃତ୍ୱରେ ବାଲେଶ୍ୱରଠାରେ କଂଗ୍ରେସ ତରଫରୁ ଯେଉଁ ଆଶ୍ରମ ନିର୍ମାଣ କରାଯାଇଥିଲା ତାର ନାମ ଥିଲା ସ୍ୱରାଜ ମନ୍ଦିର । ତେଣୁ ବାଲେଶ୍ୱରଠାରେ ମହତାବଙ୍କ ନେତୃତ୍ୱରେ ଲବଣ ଆଇନ ଭଙ୍ଗ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ପ୍ରଦେଶ କଂଗ୍ରେସର ସଦସ୍ୟ ମାନେ ବାଲେଶ୍ୱର ନିକଟବର୍ତ୍ତୀ 'ଇଞ୍ଚୁଡ଼ି' ଠାରେ ଲବଣ ସତ୍ୟାଗ୍ରହର ଆରମ୍ଭ କରିବା ପାଇଁ ସ୍ଥିର କଲେ । ଏହି ସ୍ଥାନଟି କେତେକ ଅନୁକୂଳ ପରିବେଶ ଯୋଗୁଁ କରା ଯାଇଥିଲା । ଏହି ସ୍ଥାନଟି ବାଲେଶ୍ୱର ସହରର ନିକଟବର୍ତ୍ତୀ ପ୍ରାୟ ୧୫/୧୬ କିଲୋମିଟର ହେବ । ଏଠାକୁ ଗମନା ଗମନର ବିଶେଷ ସୁବିଧା ନାହିଁ । ଫଳରେ ଇଂରେଜ ସୈନ୍ୟ ସେଠାକୁ  ସହଜରେ ପ୍ରବେଶ କରିପାରିବେ ନାହିଁ । ଏଠାରେ ପ୍ରସ୍ତୁତି ଲୁଣ ବିକ୍ରୟ ପାଇଁ ବାଲେଶ୍ୱର ପ୍ରଶସ୍ତ କ୍ଷେତ୍ର । ତେଣୁ ହରେକୃଷ୍ଣ ମହତାବ 'ଇଞ୍ଚୁଡି'ଠାରେ ଲବଣ ସତ୍ୟାଗ୍ରହକୁ ସଫଳ କରବା ପାଇଁ ଆୟୋଜନ କଲେ ।

ଭାରତର ସବୁଠାରେ ଲବଣ ଆଇନ ଭଙ୍ଗ କରିବା ପାଇଁ ଗାନ୍ଧିଜୀ ୧୯୩୦ ମସିହା ଏପ୍ରିଲ ୬ ତାରିଖ ଦିନ ଜନସାଧାରଣଙ୍କୁ ଅନୁରୋଧ କରିଥିଲେ । ସେହି ଉଦ୍ଦେଶ୍ୟରେ କିଛି ସତ୍ୟାଗ୍ରହୀ କଟକ ସ୍ୱରାଜ ଆଶ୍ରମରୁ ଇଞ୍ଚୁଡି ଅଭିମୂଖେ ପଦଯାତ୍ରା କରିଥିଲେ । ସେମାନଙ୍କର ନେତୃତ୍ୱ ନେଇଥିଲେ ଗୋପବନ୍ଧୁ ଚୌଧୁରୀ ଏବଂ ଆଚାର୍ଯ୍ୟ ହରିହର ଦାସ ।  କିନ୍ତୁ ସେହିଦିନ

ଗୋପବନ୍ଧୁ ଚୌଧୁରୀଙ୍କୁ ବନ୍ଦୀକରି କଟକ ଜେଲରେ ରଖା ଯାଇଥିଲା । ତେଣୁ ସତ୍ୟାଗ୍ରହୀ ମାନଙ୍କର ନେତୃତ୍ୱ ନେଇଥିଲେ ଆଚାର୍ଯ୍ୟ ହରିହର ଦାସ । ଏହି ସତ୍ୟାଗ୍ରହୀ ମାନେ କଟକରୁ ବାହାରିବା ସମୟରେ ଆମର ପ୍ରଥା ଅନୁଶାରେ ରମାଦେବୀ ଏବଂ ମାଳତୀ ଦେବୀ ଇତ୍ୟାଦି ନାରୀ ନେତୃବୃନ୍ଦ ସତ୍ୟାଗ୍ରହୀ ମାନଙ୍କ ମଥାରେ ସିନ୍ଦୁର ବନ୍ଦାପନା କରିଥିଲେ । ଏକ ସଂକୀର୍ତ୍ତନ ଦଳ ସହିତ ସତ୍ୟାଗ୍ରହୀ ମାନେ "ମହାତ୍ମା ଗାନ୍ଧି ଜିନ୍ଦାବାଦ" ଧ୍ୱନୀ ଦେଇ ଇଞ୍ଚୁଡ଼ି ଅଭିମୁଖେ ଯାତ୍ରା ଆରମ୍ଭ କରିଥିଲେ ।

କଟକ ଛାଡିବା ପରେ ସତ୍ୟାଗ୍ରହୀ ମାନେ ବାଲେଶ୍ୱର ରେ ଏପ୍ରିଲ ୧୭ ତାରିଖ ସକାଳେ ପହଞ୍ଚ ଥିଲେ । ସେଠାରୁ ସନ୍ଧ୍ୟା ପ୍ରାର୍ଥନା ପରେ ଇଞ୍ଚୁଡ଼ି ଅଭିମୁଖେ ଯାତ୍ରା କରିଥିଲେ । ରାସ୍ତାରେ ସେମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଦିଆ ଯାଇଥିଲା । ହୁଳହୁଳି ଏବଂ ଶଙ୍ଖ ଧ୍ୱନିରେ ଗାଁ ଗୁଡ଼ିକ ଉଚ୍ଛୁଳି ପଡୁଥାଏ । ଏହା ପରଦିନ ନାରୀ ନେତୃବୃନ୍ଦ ଯଥା ରାମା ଦେବୀ, ମାଳତୀଦେବୀ, ସୁଭଦ୍ରା ମହତାବ ପ୍ରମୁଖ ବାଲେଶ୍ୱରରେ ପହଞ୍ଚ ଇଞ୍ଚୁଡ଼ି ଅଭିମୁଖେ ଯାତ୍ରା କରିଥିଲେ । ଇଞ୍ଚୁଡି ନିକଟରେ ଥିବା ଗ୍ରାମ ଗୁଡ଼ିକର ଆବାଳ ବୃଦ୍ଧ ବନିତାଙ୍କର ସମାବେଶ ସେଠାରେ ହୋଇଥିଲା । ସେ ସ୍ଥାନ ମହାତ୍ମାଗାନ୍ଧିଙ୍କର ଜୟଧ୍ୱନିରେ ଉଚ୍ଛୁଳି ପଡୁଥାଏ । ତା ପରଦିନ ଅର୍ଥାତ ଏପ୍ରିଲ୍ ୧୩ ତାରିଖ ସକାଳେ ଆଚାର୍ଯ୍ୟ ହରିହର ଦାସ ଓ ତାଙ୍କର ୭ ଜଣ କର୍ମୀଙ୍କୁ ଗିରଫ କରାଯାଇଥିଲା । ଗିରଫ କରିବା ପରେ ମଧ ଲୁଣ ମରାକାର୍ଯ୍ୟ ବନ୍ଦ ରହିନଥିଲା । ସ୍ୱଦେଶୀ ଲୁଣ ଦେଖିବା ପରେ ସତ୍ୟାଗ୍ରହୀ ମାନେ ଆନନ୍ଦ ବିଭୋର ହୋଇ ଉଠିଥିଲେ । ଗାନ୍ଧିଜୀଙ୍କ ସମ୍ମାନାର୍ଥେ ଏପ୍ରିଲ ୧୩ ତାରିଖ ପରେ ବିଭିନ୍ନ ସ୍ଥାନରୁ ସତ୍ୟାଗ୍ରହୀ ମାନେ ଆସି ଇଞ୍ଚୁଡିଠାରେ ଲୁଣ ମାରିଥିଲେ । ସେମାନଙ୍କ ମଧ୍ୟରୁ ପୁରୀରୁ ପତିତ ପାବନ ବାହିନୀ, କଟକର ଲୌହସ୍ତମ୍ଭ ବାହିନୀ, ସମ୍ବଲପୁରରୁ ସମ୍ବଲପୁର ବାହିନୀ, ଗଞ୍ଜାମରୁ ଗଞ୍ଜାମ ବାହିନୀ ଓ ଓଡ଼ିଶା ଗୁଜୁରାଟି ବାହିନୀର ନାମ ଉଲ୍ଲେଖଯୋଗ୍ୟ । ଇଞ୍ଚୁଡି ଠାରୁ ଉତ୍ପାଦିତ ପ୍ରାୟ ୨୦ ମହଣ ଲୁଣ ଅଣାଯାଇ ବାଲେଶ୍ୱରରେ ପରମିଟ ପଡ଼ିଆରେ ରଖାଯାଇଥିଲା । ସେଠାରୁ ମଳତୀ ଚୌଧୁରୀ କିଛି ଲୁଣ କଟକ ଆଣି ଏକ ସଭାରେ ନିଲାମ କରିଥିଲେ । ଦାଣ୍ଡି ଭାରତର ପ୍ରଥମ ଲବଣ ତୀର୍ଥ ହୋଇଥିବା ବେଳେ ଇଞ୍ଚୁଡି ହୋଇଥିଲା ଦ୍ୱିତୀୟ । ଏହି ଇଞ୍ଚୁଡି ଲବଣ ସତ୍ୟାଗ୍ରହର ଏକ ମୁଖ୍ୟ ସ୍ଥାନ ରୂପେ ପ୍ରତିଷ୍ଠିତ ହୋଇ ପାରିଥିଲା । ବର୍ତ୍ତମାନ ସୁଦ୍ଧା ଏହା ଏକ ଐତିହାସିକ ସ୍ଥଳୀ ରୂପେ ଦଣ୍ଡାୟମାନ ହୋଇ ରହିଅଛି ।

କେବଳ ଇଞ୍ଚୁଡି ନୁହେଁ ବାଲେଶ୍ୱର ଜିଲ୍ଲାର ବିଭିନ୍ନ ସ୍ଥାନ ଏହିପରି ସତ୍ୟାଗ୍ରହୀ ପୀଠ ରୂପେ ପ୍ରସିଦ୍ଧି ଲାଭ କରିଥିଲା । ସେମାନଙ୍କ ମଧ୍ୟରୁ ଇରମ, ବିଦେଇପୁର, ଚୂଡାମଣି, ଜାମକୁଣ୍ଡା ଓ ସାର୍ଥ ଇତ୍ୟାଦି ଜାଗାର ନାମ ଥିଲା ମୁଖ୍ୟ । ଉତ୍କଳ କଂଗ୍ରେସ କମିଟିର ସଭ୍ୟମାନେ ଇଞ୍ଚୁଡିର ସଫଳତା ପରେ ଉପକୂଳବର୍ତ୍ତୀ ଅଞ୍ଚଳରେ ଲବଣ ଆଇନ ଭଙ୍ଗ ଆନ୍ଦୋଳନକୁ ପ୍ରସାରିତ କରିଥିଲେ । ସେଥି ମଧ୍ୟରୁ ମୁଖ୍ୟ ସ୍ଥାନ ଥିଲା କଟକ ଜିଲ୍ଲାର କୁଜଙ୍ଗ । ଏହି ଅଞ୍ଚଳରେ ରମା ଦେବୀ ଏବଂ ମାଳତୀ ଦେବୀ ଲବଣ ସତ୍ୟାଗ୍ରହର ପରିଚାଳନା ଦାୟିତ୍ୱ ଗ୍ରହଣ କରିଥିଲେ । କୁଜଙ୍ଗର ରାଣୀ ଭାଗ୍ୟବତୀ ପାଟ ମହାଦେଇ ନିଜେ ରାଜ ପ୍ରସାଦରୁ ବାହାରି ମାଳତୀ ଦେବୀ ଏବଂ ରମାଦେବୀଙ୍କ ସହିତ ବିଭିନ୍ନ ସ୍ଥାନକୁ ଯାଇ ପ୍ରଚାର କରିବା ଫଳରେ ସତ୍ୟାଗ୍ରହୀ ମାନଙ୍କ ମନରେ ନୂତନ ଉନ୍ମାଦନା ସୃଷ୍ଟି ହୋଇଥିଲା । କୁଜଙ୍ଗ ବ୍ୟତୀତ ପାରାଦ୍ୱୀପ, ଏରସମା, ଛଟୁଆ ଇତ୍ୟାଦି ସ୍ଥାନ ମାନଙ୍କରେ ଲବଣ ଆଇନ ଭଙ୍ଗ କରା ଯାଇଥିଲା ।

ଲବଣ ସତ୍ୟାଗ୍ରହ ଦୃଷ୍ଟିରୁ ପୁରୀ ଜିଲ୍ଲାର ଅବଦାନ ମଧ୍ୟ କମ ନଥିଲା । ପୁରୀର କାକଟପୁର ଅଞ୍ଚଳ ଥିଲା ଲବଣ ସତ୍ୟାଗ୍ରହର ଏକ ପ୍ରକୃଷ୍ଟ ସ୍ଥଳୀ । କେବଳ କାକଟପୁର ନୁହେଁ ମଦାକି, କୁହୁଡ଼ି, ଖଣ୍ଡାସାହି, ଲାଟରା ଏବଂ ଅସ୍ତରଙ୍ଗ ଇତ୍ୟାଦି ସ୍ଥାନ ମାନଙ୍କରେ ଲବଣ ଆଇନ ଭଙ୍ଗ ମଧ୍ୟ କରାଯାଇଥିଲା । ଓଡ଼ିଶାରେ ଲବଣ ସତ୍ୟାଗ୍ରହର ସଫଳତାକୁ ନେଇ ବିଚାର କରାଗଲେ ଇଞ୍ଚୁଡ଼ି ପରେ ଦ୍ୱିତୀୟରେ ଥିଲା ଗଞ୍ଜାମ ଜିଲ୍ଲା । ଏହି ଜିଲ୍ଲାରେ ଲବଣ ସତ୍ୟାଗ୍ରହକୁ ଦୁଇ ଭାଗରେ ବିଭକ୍ତ କରାଯାଇଥିଲା । ଗୋଟିଏ ପାଖରେ ନେତୃତ୍ୱ ନେଇଥିଲେ ଓଡ଼ିଆ ମାନେ ଓ ଅନ୍ୟପାଖରେ ଥିଲେ ତେଲୁଗୁ ମାନେ । ଓଡ଼ିଆମାନେ ଯେଉଁ ସ୍ୱତନ୍ତ୍ର ଦଳ ଗଠନ କରିଥିଲେ ସେହି ସତ୍ୟାଗ୍ରହୀ ମାନଙ୍କର ନେତୃତ୍ୱ ନେଇଥିଲେ ନିରଂଜନ ପଟ୍ଟନାୟକ ଏବଂ ବିଶ୍ୱନାଥ ଦାସ । ଉଭୟ ଦଳର ସଦର ମହକୁମା ଥିଲା ବ୍ରହ୍ମପୁର । ଗଂଜା, ହୁମା, ଗୋପାଳପୁର ଇତ୍ୟାଦି ସ୍ଥାନ ମାନଙ୍କରେ ପ୍ରଚୁର ପରିମାଣରେ ଲୁଣ ପ୍ରସ୍ତୁତ କରାଯାଉଥିଲା । ନିରଞ୍ଜନ ପଟ୍ଟନାୟକ ଏବଂ ମାଳତୀ ଚୌଧୁରୀ ଗଞ୍ଜାମ ଜିଲ୍ଲାର ସମସ୍ତ ଜାଗା ବୁଲି ସ୍ୱେଚ୍ଛାସେବୀ ମାନଙ୍କୁ ଉତ୍ସାହିତ କରାଉଥିଲେ ।

## ଭାରତ ଛାଡ଼ ଆନ୍ଦୋଳନ ଏବଂ ଓଡ଼ିଶା

ଭାରତୀୟ ଜାତୀୟ ଆନ୍ଦୋଳନରେ ୧୯୪୨ ମସିହା ହେଉଛି ଏକ ଉଲ୍ଲେଖନୀୟ ବର୍ଷ । ଉଲ୍ଲେଖନୀୟ ଏଇଥି ପାଇଁ ଏହି ଆନ୍ଦୋଳନ ଭାରତରେ ଇଂରେଜ ଶାସନର ପରିସମାପ୍ତି

ଘଟାଇ ଥିଲା । ଏହି ଆନ୍ଦୋଳନର ନାମ ଥିଲା ଭାରତ ଛାଡ଼ ଆନ୍ଦୋଳନ । ଦେଶ ସ୍ୱାଧୀନତା ପାଇଁ ଅନେକ ସମୟରେ ଅନେକ ଆନ୍ଦୋଳନ ସଂଘଠିତ ହୋଇଛି । ଦେଶରେ ବହୁ ଘଟଣା ବହୁଳ ଇତିହାସ ଘଟି ଯାଇଛି । କିନ୍ତୁ ଅନ୍ୟ କୌଣସି ଆନ୍ଦୋଳନ ଏହି ଆନ୍ଦୋଳନ ପରି ରାଜନୈତିକ ଝଡ଼ ସୃଷ୍ଟି କରିନଥିଲା କିମ୍ବା ଅନ୍ୟ କୌଣସି ଆନ୍ଦୋଳନରେ ଏହି ଆନ୍ଦୋଳନ ପରି ଜନସାଧାରଣ ଅଂଶ ଗ୍ରହଣ କରି ନଥିଲେ । ଏହି ଆନ୍ଦୋଳନର ଅନ୍ୟନାମ ହେଉଛି 'ଅଗଷ୍ଟ ବିପ୍ଳବ' । କାରଣ ୧୯୪୨ ମସିହା ଅଗଷ୍ଟ ୭ ତାରିଖ ଦିନ ଭାରତ ଛାଡ ପ୍ରସ୍ତାବକୁ ଅନୁମୋଦନ କରିବା ପାଇଁ ବମ୍ବେଠାରେ ଭାରତୀୟ ଜାତୀୟ କଂଗ୍ରେସର ଏକ ଅଧିବେଶନ ବସିଥିଲା । ଗତ ୮ ତାରିଖ ଦିନ ସେଠାରେ ଏହି ଐତିହାସିକ ଭାରତ ଛାଡ଼ ପ୍ରସ୍ତାବ ଅନୁମୋଦିତ ହୋଇଥିଲା । ଏହି ଆନ୍ଦୋଳନ ଅନୁମୋଦିତ ହେଲା ପରେ ପରେ ଭାରତର କୋଣେ କୋଣେ ବ୍ୟାପୀ ଯାଇଥିଲା । ଅନ୍ୟାନ୍ୟ ଅଞ୍ଚଳ ପରି ଏହି ଆନ୍ଦୋଳନ ଓଡ଼ିଶାର ସବୁ ଅଞ୍ଚଳକୁ ବ୍ୟାପୀ ଯାଇ ଓଡ଼ଶାର ସ୍ୱାଧୀନତା ସଂଗ୍ରାମକୁ ଉଦ୍ଧିମନ୍ତ କରିଥିଲା । ଏହି ଆନ୍ଦୋନଳରେ ଓଡ଼ିଶାର ସବୁ ଜିଲ୍ଲା ଏବଂ କିଛି ଗଡ଼ଜାତ ରାଜ୍ୟ ଅଂଶ ଗ୍ରହଣ କରିଥିଲେ । ସ୍ଥାନ ବିଶେଷରେ ଏହି ଆନ୍ଦୋଳନ ମଧ ଉଗ୍ରରୂପ ନେଇଥିଲା ।

୧୯୪୨ ମସିହା ଅଗଷ୍ଟ ୯ ତାରିଖ ଦିନ ଭାରତୀୟ ଜାତୀୟ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ହରେକୃଷ୍ଣ ମହତାବଙ୍କ ସହିତ କଂଗ୍ରେସର ତୁଙ୍ଗ ନେତାମାନେ ଗିରଫ ହେଲେ । ଓଡ଼ିଶାର ବିଭିନ୍ନ ସ୍ଥାନରେ କଂଗ୍ରେସର ନେତୃତ୍ୱ ନେଇଥିବା ତୁଙ୍ଗ ନେତାମାନଙ୍କୁ ମଧ ଗିରଫ କରାଯାଇଥିଲା । ଗିରଫ କରିବା ବ୍ୟତୀତ ଭାରତର ସବୁ ଆନ୍ଦୋଳନ ଅନୁଷ୍ଠାନ ଗୁଡ଼ିକୁ ବେଆଇନ ଘୋଷଣା କରାଯାଇଥିଲା । ଫଳରେ ଓଡ଼ିଶା କଂଗ୍ରେସ କମିଟି ଏବଂ କଂଗ୍ରେସ ଆଶ୍ରମ ଗୁଡ଼ିକୁ ବେଆଇନ ଘୋଷଣା କରି ତାଲା ପକାଇ ଦିଆ ଯାଇଥିଲା । ଯାହାହେଲେ ମଧ ଗାନ୍ଧିଜୀଙ୍କର ଆହ୍ୱାନ କ୍ରମେ ଜନସାଧାରଙ୍କର ଐକାନ୍ତିକ ନିଷ୍ଠା ଏପରି ଭାବରେ ପ୍ରଭାବ ପକାଇଥିଲା ଯେ, ତୁଙ୍ଗ ନେତା ମାନଙ୍କର ଅନୁପସ୍ଥିତରେ ମଧ ଏହି ଆନ୍ଦୋଳନ ପୁର ପଲ୍ଲୀକୁ ବ୍ୟାପୀ ଯାଇଥିଲା । ଫଳରେ ଗାନ୍ଧୀଙ୍କର ଅଂହିସା ଆନ୍ଦୋଳନ ହିଂସାତ୍ମକ ରୂପ ନେଇଥିଲା । ଅଗଷ୍ଟ ୧୧ ତାରିଖ ଦିନ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଏବଂ ଅଗଷ୍ଟ ୧୨ ତାରିଖ ଦିନ ମାଳତୀ ଚୌଧୁରୀ ବମ୍ବେରୁ ଫେରି ଆସିଥିଲେ । ସେମାନେ ଓଡ଼ିଶାକୁ ଫେରି ଆସିବା ଫଳରେ ଓଡ଼ିଶା ଆନ୍ଦୋଳନର ବାତାବରଣ ଉଷ୍ମ ହୋଇ ଉଠିଥିଲା । ଓଡ଼ଶାର ତୁଙ୍ଗ ନେତାମାନେ ମଧ ସେତେବେଳକୁ କାରାଗାରରେ ଥିବାରୁ କର୍ମୀମାନଙ୍କୁ ନିର୍ଦ୍ଦେଶ ଦେବାପାଇଁ କେହି ନଥିଲେ । ଫଳରେ ପରିସ୍ଥିତି ହିଂସାତ୍ମକ ଆଡ଼କୁ ଗତି କରିଥିଲା ।

ବହୁ ଜାଗାରେ ସରକାରୀ କାର୍ଯ୍ୟାଳୟ ଓ ଥାନା ଗୁଡ଼ିକୁ ପୋଡ଼ି ଦିଆ ଯାଇଥିଲା । ପୋଲିସର ଗୁଳି ଚାଳନାରେ ଅନେକ ସତ୍ୟାଗ୍ରହୀ ମୃତ୍ୟୁ ବରଣ କରିଥିଲେ ।

ଭାରତ ଛାଡ଼ ଆନ୍ଦୋଳନ ସମୟରେ ଓଡ଼ିଶାରେ କୌଣସି କୌଣସି ଜାଗାରେ ହିଂସାକାଣ୍ଡ ମଧ୍ୟ ଘଟିଥିଲା । ଭଦ୍ରକ ଜିଲ୍ଲା ଭଣ୍ଡାରୀ ପୋଖରୀ ଥାନାକୁ ୧୯୪୨ ମସିହା ଅଗଷ୍ଟ ୧୭ ତାରିଖ ଦିନ ଆନ୍ଦୋଳନକାରୀ ମାନେ ପୋଡ଼ି ଦେଇଥିଲେ । ଧାମନଗର ନିକଟବର୍ତ୍ତୀ କଟ ସାହି ଗ୍ରାମ ନିକଟରେ ଏକ ପଡିଆରେ ସେପ୍ଟେମ୍ବର ୨୨ ତାରିଖ ଦିନ ପୋଲିସ ଗୁଳିରେ ସମୁଦାୟ ୧୮ ଜଣ ପ୍ରାଣ ହରାଇଥିଲେ । ସେହିପରି ବାଲେଶ୍ୱର ଜିଲ୍ଲାର ତୁଡ଼ିଗଡ଼ିଆ ଓ ଖଇରାଡ଼ିହ ଗ୍ରାମରେ ସେପ୍ଟେମ୍ବର ୧୮ ତାରିଖ ଦିନ ପୋଲିସ ଗୁଳିରେ ତିନିଜଣ ପ୍ରାଣ ହରାଇ ଥିଲେ ଭାରତ ଛାଡ଼ ଆନ୍ଦୋଳନ ସମୟରେ । ବାସୁଦେବପୁର ନିକଟବର୍ତ୍ତୀ ଇରମରେ ଏକ ଐତିହାସିକ ଘଟଣା ସଂଗଠିତ ହୋଇଥିଲା । ପୋଲିସ ଗୁଳି ଚାଳନାରେ ଅନେକ ପ୍ରାଣ ହରାଇବା ସଙ୍ଗେ ସଙ୍ଗେ ବହୁଲୋକ ଆହତ ମଧ୍ୟ ହୋଇଥିଲେ । ସେହି ଶହୀଦ ମାନଙ୍କ ମଧ୍ୟରୁ ଜଣେ ଥିଲା ମହିଳା । ସେ ଥିଲେ ଓଡ଼ିଶାର ପ୍ରଥମ ମହିଳା ଶହୀଦ । ସେ ଦିନର ଐତିହାସିକ ଘଟଣା ଥିଲା ହୃଦୟ ବିଦାରକ ।

ଇରମ ହେଉଛି ଅଧୁନା ଭଦ୍ରକ ଜିଲ୍ଲାର ବାସୁଦେବପୁର ଥାନା ଅନ୍ତର୍ଗତ ଏକସ୍ଥାନ । ଏହି ସ୍ଥାନଟି ସମୁଦ୍ର କୂଳରେ ଅବସ୍ଥିତ । ଗୋଟିଏ ପାର୍ଶ୍ୱରେ ବଙ୍ଗୋପସାଗର ଅନ୍ୟ ତିନି ପାର୍ଶ୍ୱରେ ନଦୀ ଦ୍ୱରା ଆବୃତ ଥିବା ସଂଙ୍ଗେ ସଙ୍ଗେ ଏହି ଅଞ୍ଚଳ ବଡ଼ ସୁରକ୍ଷିତ ଥିଲା । ପୋଲିସ କିମ୍ବା ଇଂରେଜ ପ୍ରଶାସକ ମାନେ ଏଠାରେ ପ୍ରବେଶ କରିବା ଏତେ ସହଜ ସାଧ୍ୟ ନଥିଲା । ନିକଟରେ ଥିବା ଏହି ମେଲନ ପଡ଼ିଆ ସଭା ସମିତି ପାଇଁ ବହୁ ସହାୟକ ହୋଇଥାଏ । ଏହି ମେଲନ ପଡ଼ିଆଟିର ଗୋଟିଏ ପ୍ରବେଶ ଦ୍ୱାର ଥିଲା ଏବଂ ଅନ୍ୟ ତିନିପାର୍ଶ୍ୱ ଆବଦ୍ଧ ଥାଏ । ଏହି ଐତିହାସିକ ପଡ଼ିଆ ସେପ୍ଟେମ୍ବର ୨୮ ତାରିଖ ଦିନ ସଂଘଟିତ ସେହି ନାରକୀୟ ଗୁଳି କାଣ୍ଡରେ ରକ୍ତ ରଞ୍ଜିତ ହୋଇ ଉଠିଥିଲା । ଏଥିପାଇଁ ଏହାକୁ ରକ୍ତତୀର୍ଥ କୁହା ଯାଇଥାଏ । ସେ ଦିନଥିଲା ୧୯୪୨ ମସିହା ସେପ୍ଟେମ୍ବର ୨୮ ତାରିଖ ସନ୍ଧ୍ୟା ସାଢେ ୬ଟା । ଇରମ ଠାରେ ଏକ ସଭା ଅନୁଷ୍ଠିତ ହୋଇଥାଏ । ହଜାର ହଜାର ଲୋକଙ୍କର ସମାଗମ ହୋଇଥିଲା । ସେଠାରେ କୌଣସି ପୋଲିସ ଫୌଜ ନଥିଲେ । ହଠାତ୍ କୌଣସି ସତର୍କତା ମୂଳକ ସଂକେତ ନଦେଇ ସେଠାରେ ପୋଲିସ ଫୌଜ ପହଞ୍ଚି ଦ୍ୱାର ଦେଶରେ ରହି ଗୁଳି ଚାଳନା କରିଥିଲେ । ଫଳରେ କିଛି ସାଧାରଣ ଜନତା ଏବଂ ସତ୍ୟାଗ୍ରହୀ ମୃତ୍ୟୁ

ବରଣ କରିଥିଲେ । ଉପସ୍ଥିତ ଜନତା କୌଣସି ହିଂସାତ୍ମକ ଆଚରଣ ଭିଆଇ ନଥିଲେ ଏବଂ ସେମାନେ ଥିଲେ ନିରସ୍ତ୍ର । ପଞ୍ଜାବର ଜାଲିଓ୍ୱାନ ବାଗ ପରି ଲୋକମାନେ ଜାଣି ନଥିଲେ ସେଠାରେ ସେ ଦିନ ଗୁଳିକାଣ୍ଡ ହେବ ବୋଲି । ଭାରତ ଛାଡ଼ ଆନ୍ଦୋଳନ ସମୟରେ ଏହି ସ୍ଥାନକୁ ଛାଡିଦେଲେ ଅନ୍ୟ କୌଣସି ଠାରେ ଏତେ ସଂଖ୍ୟକ ଲୋକ ପୋଲିସ ଗୁଳିରେ ମୃତାହତ ହୋଇନଥିଲେ । ତେଣୁ ଏହାକୁ ଭାରତର ଦ୍ୱିତୀୟ ଜାଲିଓ୍ୱାନ ବାଗ କୁହାଯାଏ ।

ଏହି ଭାରତ ଛାଡ଼ ଆନ୍ଦୋଳନ ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲା ଗୁଡ଼ିକରେ ଏକ ଭୟଙ୍କର ରୂପ ନେଇଥିଲା । ଏହି ଜିଲ୍ଲା ଗୁଡ଼ିକରେ ଅଧିକ ସଂଖ୍ୟାରେ ଲୋକ ପୋଲିସ ଗୁଳିରେ ଶହୀଦ୍ ହୋଇଥିଲେ । ବହୁଲୋକ କାରାବରଣ ମଧ କରିଥିଲେ । ଭାରତ ଛାଡ଼ ଆନ୍ଦୋଳନରେ ଅବିଭକ୍ତ ବାଲେଶ୍ୱର କଟକ ଜିଲ୍ଲା ଏକ ଭୟଙ୍କର ରୂପ ନେଇଥିଲା । କଟକ ଜିଲ୍ଲାର କଟକ ସଦର, ଯାଜପୁର, କେନ୍ଦ୍ରାପଡ଼ା, ତିର୍ତ୍ତୋଲ, ଏରସମା ଏବଂ ଜଗତ ସିଂହପୁର ଇତ୍ୟାଦି ଅଞ୍ଚଳର ଲୋକମାନେ ଉଣା ଅଧିକେ ଆନ୍ଦୋଳନରେ ଅଂଶ ଗ୍ରହଣ କରିଥିଲେ । ଗଞ୍ଜାମ ଜିଲ୍ଲାରେ ଭାରତଛାଡ଼ ଆନ୍ଦୋଳନର ପ୍ରଭାବ ମଧ ପଡ଼ିଥିଲା । ନଡ଼ାଛପର ଘରେ ଚାଲିଥିବା ସରକାରୀ ଅଫିସ ଗୁଡ଼ିକରେ ଲୋକମାନେ ଅଗ୍ନି ସଂଯୋଗ କରିଥିଲେ । ଫଳରେ ବହୁ ସରକାରୀ ଅବାସ ପତ୍ର ନଷ୍ଟ ହୋଇ ଯାଇଥିଲା । ବ୍ରହ୍ମପୁର ଆଦି ସ୍ଥାନରୁ ବହୁ ସତ୍ୟାଗ୍ରହୀ କାରାବରଣ କରିଥିଲେ । ଭାରତ ଛାଡ଼ ଆନ୍ଦୋଳନ ଅବିଭକ୍ତ କୋରାପୁଟ ଜିଲ୍ଲାରେ ମଧ ପ୍ରତି'ଳିତ ହୋଇଥିଲା । ପୋଲିସ୍ ଗୁଳିରେ ବହୁଲୋକ ପ୍ରାଣ ହରାଇଲେ । ଏହି ଜିଲ୍ଲାର ଅଧିକାଂଶ ଅଧିବାସୀ ଥିଲେ ଆଦିବାସୀ । ଭାରତ ଛାଡ଼ ଆନ୍ଦୋଳନ ପୂର୍ବରୁ ଇଂରେଜ ସରକାର ବିରୁଦ୍ଧରେ ସେମାନେ ନେତୃତ୍ୱ ନେଇଥିଲେ । ପୂର୍ବରୁ ଆମେ ଓଡ଼ିଶାର ଆଦିବାସୀ ମାନଙ୍କର ସଂଗଠନ ଦେଶଭକ୍ତି, ନିର୍ଭିକତା ତଥା ଲକ୍ଷ୍ମଣ ନାୟକଙ୍କର ଫାଶୀଦଣ୍ଡ ବିଷୟରେ ସଂକ୍ଷିପ୍ତ ଭାବରେ ଆଲୋଚନା କରିଥିଲେ । ଯାହାହେଉ ଓଡ଼ଶାରେ ଆଦିବାସୀ ମାନଙ୍କର ଇଂରେଜ ସରକାର ବିରୋଧୀ କାର୍ଯ୍ୟକ୍ରମ ଏବଂ ଦେଶର ସ୍ୱାଧୀନତା ପ୍ରତି ଅବଦାନ ଥିଲା ଅତୁଳନୀୟ ଏବଂ ଅବିସ୍ମରଣୀୟ ।

ଭାରତୀୟ ଜାତୀୟ ଆନ୍ଦୋଳନର ୧୮୫୭ ମସିହା ସିପାହି ବିଦ୍ରୋହକୁ ଭାରତର ପ୍ରଥମ ସ୍ୱାଧୀନତା ଆନ୍ଦୋଳନ କୁହାଯାଉଥିଲେ ମଧ ୧୮୦୪ ମସିହାରେ ଓଡ଼ିଶାର ପାଇକ ବିଦ୍ରୋହକୁ କେହି କେହି ପ୍ରଥମ ସ୍ୱାଧିନତା ସଂଗ୍ରାମର ମାନ୍ୟତା ଦେଇଥାନ୍ତି । ଖୋରଧା ପାଇକ ବିଦ୍ରୋହର କୁଶଳୀ ପରାମର୍ଶଦାତା ଜୟୀରାଜଗୁରୁଙ୍କୁ ୧୮୦୫ ମସିହା ନଭେମ୍ବର

୫ତାରିଖଦିନ ମେଦିନପୁର ବାଘିତୋଟାରେ ଥିବା ଫାଶୀଦିଆ ବରଗଛରେ ଅତି ବିଭତ୍ସ ଭାବେ ମୃତ୍ୟୁ ଦଣ୍ଡ ଦିଆଯାଇଥିଲା । ଜୟୀରାଜ ଗୁରୁ ଥିଲେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ପ୍ରଥମ ଶହୀଦ । ତାଙ୍କ ପରି ଅନେକ ଦେଶପ୍ରେମୀଙ୍କର ଅମର ବଳିଦାନ ଯୋଗୁଁ ଆମଦେଶ ଇଂରେଜ ଶାସନ କବଳରୁ ମୁକ୍ତି ଲାଭ କରିପାରି ଥିଲା । ସେହିପରି ଦେଶର ପ୍ରଥମ କିଶୋର ଶହୀଦ ଭାବେ ଢେଙ୍କାନାଳର ବାରବର୍ଷ ବୟସର ବାଳକ ବାଜିରାଉତ ୧୯୩୮ ମସିହା ଅକ୍ଟୋବର ମାସ ୧୧ ତାରିଖ ଦିନ ବ୍ରାହ୍ମଣୀ ନଦୀ କୂଳରେ ନୀଳକଣ୍ଠ ପୁର ଘାଟରେ ଫିରିଙ୍ଗି ଫୌଜ ଗୁଳିରେ ଟଳି ପଡ଼ିଥିଲେ । ସେ ଦେଶର ପ୍ରଥମ କିଶୋର ଶହୀଦ ଭାବରେ ସୌଭାଗ୍ୟ ଅର୍ଜନ କରିଥିଲେ । ଏହିପରି ଅନେକ ଐତିହାସିକ ଘଟଣା ମା'ମାଟିର ମୁକ୍ତି ପାଇଁ ଘଟି ଯାଇଥିଲେ ସୁଦ୍ଧା ଇତିହାସ ବକ୍ଷରେ ସ୍ଥାନ ପାଇନାହିଁ । ସବୁ ପ୍ରେରଣାର ଉତ୍ସ ରୂପେ ଅନେକ ଶହୀଦ ରହିଥିଲେ ମଧ୍ୟ ଶହୀଦ ରଘୁ-ଦିବାକରଙ୍କର କରୁଣ କାହାଣୀ ଆଦି ଇତିହାସ ପୃଷ୍ଠା ମଣ୍ଡନ କରିଅଛି ।

ଓଡ଼ିଶାରେ ଗଡ଼ଜାତ ରାଜାମାନଙ୍କର ପ୍ରଜାମାନଙ୍କ ଉପରେ ନିର୍ମମ ଅତ୍ୟାଚାର ସଙ୍ଗେ ସଙ୍ଗେ ଇଂରେଜ ସରକାରଙ୍କର କଠୋର ଅର୍ଥନୀତି ପ୍ରଜାମାନଙ୍କୁ ଅସହ୍ୟ କରି ଦେଇଥିଲା । ଓଡ଼ିଶାରେ ଗଡ଼ଜାତ ରାଜାମାନଙ୍କର ପ୍ରଜା ପୀଡ଼ନକୁ ନେଇ ଗଠନ କରାଯାଇଥିଲା 'ପ୍ରଜା ମଣ୍ଡଳ' । ପ୍ରଜା ମଣ୍ଡଳ ଆହ୍ୱାନରେ ସମଗ୍ର ଓଡ଼ିଶାର କୋଣଅନୁକୋଣରୁ ସ୍ୱାଧୀନତା ସଂଗ୍ରାମ ତୀବ୍ରତର ହେବାକୁ ଲାଗିଲା । ରାଜାମାନେ ଇଂରେଜୀ ଫଉଜ ମାନଙ୍କ ଦ୍ୱାରା ପ୍ରଜାମାନଙ୍କୁ ଭୟଭୀତ କରାଇ ଆନ୍ଦୋଳନକୁ ଦମନ କରୁଥିଲେ । ଏହି ସମୟରେ ଏକ ଅଭାବନୀୟ ଘଟଣା ଘଟିଥିଲା ରଣପୁର ଗଡ଼ଜାତରେ । ୧୯୩୯ ମସିହା ଜାନୁୟାରୀ ୫ ତାରିଖ ଦିନ ପ୍ରଜା ମଣ୍ଡଳର ଆହ୍ୱାନ କ୍ରମେ ରଣପୁର ରାଜଉଆସ ନିକଟରେ ଏକ ଜନ ସମାବେଶ ଅନୁଷ୍ଠିତ ହୋଇଥିଲା । ଏହି ଜନସମାବେଶକୁ କରାଇ ନଦେବା ପାଇଁ ସେଠାକାର ପଲିଟିକାଲ ଏଜେଣ୍ଟ ମେଜର ବେଜଲଗେଟ୍ ଗୁଳି ଚାଳନା କରିଥିଲେ । ସେହି ଗୁଳିର ଶିକାର ହୋଇଥିଲେ ମୟୁର ଝାଳିଆର ଅର୍ଜୁନ ରାଉତ ନାମକ ଜଣେ ବ୍ୟକ୍ତି । ଏହି ଅମାନୁଷିକ ହତ୍ୟାକାଣ୍ଡର ପ୍ରତିବାଦ ସ୍ୱରୂପ ରଘୁନାଥ ମହାନ୍ତି ଏବଂ ଦିବାକର ପରିଡ଼ାଙ୍କ ନେତୃତ୍ୱରେ ଉତ୍ୟକ୍ତ ଜନତା ବେଜଲଗେଟ୍‌ଙ୍କୁ ବାଉଁଶ ଠେଙ୍ଗାରେ ପିଟିପିଟି ହତ୍ୟା କରିଥିଲେ । ଏହି ସମ୍ବାଦ ସମଗ୍ର ଓଡ଼ିଶାରେ ପ୍ରଚାରିତ ହୋଇଗଲା । ଏହି ହତ୍ୟା ମୋକଦ୍ଦମାରେ ୧୦୪ ଜଣଙ୍କୁ ଜଡ଼ିତ କରାଗଲା, ଏବଂ ରଘୁନାଥ ମହାନ୍ତି ଏବଂ ଦିବାକର ପରିଡ଼ାଙ୍କୁ ଏହି ମୋକଦ୍ଦମାରେ ଜଡ଼ିତ କରାଯାଇ ଥିଲା । ଏହି ମୋକଦ୍ଦମାର ବିଚାର କରି ତତ୍‌କାଳୀନ

ଦୌରାଢଙ୍କ୍ ଜେ.ଜେ ସଅଚର ୧୯୩୯ ମସିହା ଜୁଲାଇ ମାସ ୧ ତାରିଖ ଦିନ ରାୟ ପ୍ରକାଶ କରି ୧୧ ଜଣଙ୍କୁ ଦ୍ୱୀପାନ୍ତର ଆଦେଶ ପ୍ରଦାନ କରିବା ସଙ୍ଗେ ସଙ୍ଗେ ରଘୁନାଥ ମହାନ୍ତି ଏବଂ ଦିବାକର ପରିଡ଼ାଙ୍କୁ ଫାଶୀ ପ୍ରଦାନ କରିଥିଲେ । ରଘୁ ଦିବାକର ଗଡ଼ବାଣୀ କିଲୋ ପ୍ରାଥମିକ ବିଦ୍ୟାଳୟ ଏବଂ ରଣପୁର ଗଡ଼ରୁ ମାଇନର ଶିକ୍ଷା ସମାପ୍ତ କରିଥିଲେ । ତତ୍‌କାଳୀନ ରାଜାଙ୍କ ଦ୍ୱାରା କରାଯାଇଥିବା ପ୍ରଜା ଗଠନରେ ବ୍ୟଥିତ ହୋଇ ପ୍ରଜାମଣ୍ଡଳ ସଂଗ୍ରାମରେ ସାମିଲ ହୋଇ ଥିଲେ । ବନ୍ଦୀ ଭାବରେ ଜୀବନ ଯାପନ କରୁଥିବା ରଘୁନାଥ ମହାନ୍ତ ଏବଂ ଦିବାକର ପରିଡ଼ାଙ୍କୁ ବିହାରର ଭାଗଲପୁର କାରାଗାରରେ ୧୯୪୫ ମସିହା ଏପ୍ରିଲ ମାସ ୪ ତାରିଖ ଦିନ ସୂର୍ଯ୍ୟୋଦୟ ପୂର୍ବରୁ ଫାଶୀ ଖୁଣ୍ଟରେ ଝୁଲାଇ ଦିଆ ଯାଇଥିଲା । ଭାରତ ମାତାର ଏହି ଦ୍ୱୟ ଯୁବ ଶହୀଦ୍ ଙ୍କର ଦେଶ ପ୍ରେମର ଅଭୂଲା ସ୍ମୃତି ଓଡ଼ିଶା ଇତିହାସ କାହିଁକି ଭାରତୀୟ ସ୍ୱାଧୀନତା ଇତିହାସରେ ଉଦ୍‌ଜୀବୀତ ହୋଇ ରହିଛି ଏବଂ ରହିବା ସଙ୍ଗେ ସଙ୍ଗେ ଆଜିର ଯୁବ ଶକ୍ତିକୁ ମଧ ଦେଶ ମାତୃକାର ପ୍ରେରଣା ଦେଇଆସୁଅଛି । ସେହି ଶହୀଦ ମାନଙ୍କୁ ଆଜି ସ୍ୱାଧୀନ ଭାରତର ପ୍ରତ୍ୟେକ ନାଗରିକ ମାନେ ରଖିବା ସଙ୍ଗେ ସଙ୍ଗେ ସେମାନଙ୍କ ଠାରୁ ଦେଶ ପ୍ରେମର ନମୁନା ଆହରଣ କରିବା ଉଚିତ୍ ।

୧୯୪୨ ମସିହା ଅଗଷ୍ଟ ୮ ତାରିଖ ଦିନ ମୁମ୍ବାଇର ଗୋଓ୍ୱାଲିଅର ଟ୍ୟାଙ୍କ ପଡ଼ିଆରେ ଜାତିର ପିତା ମହାତ୍ମାଗାନ୍ଧୀ ବିଶାଳ ଜନସମାବେଶକୁ ଉଦ୍‌ବୋଧନ ଦେଇ କହିଥିଲେ ଦେଶର ସ୍ୱାଧୀନତା ପାଇବାକୁ ହେଲେ "ମୁଁ ଆଜି ତୁମକୁ ଦୁଇଟି ମନ୍ତ୍ର ଦେଉଛି – "କର ବା ମର" । ମହାତ୍ମାଗାନ୍ଧୀଙ୍କର ଏହ "କର ବା ମର"ଉପସ୍ଥିତ ଜନତାଙ୍କ ମଧରେ ଶବ୍ଦ ତରଙ୍ଗ ଖେଳାଇ ଦେଇଥିଲା । ତା ପରଦିନର ଘଟଣା ସମୂହ ଭାରତର ସ୍ୱାଧୀନତା ସଂଗ୍ରାମରେ ଇତିହାସ ପାଲଟି ଗଲା ଏବଂ ଅଗଷ୍ଟ ବିପ୍ଳବ ଭାବେ ସ୍ୱାର୍ଣ୍ଣାକ୍ଷରରେ ଅଦ୍ୟାବଦ୍ଧି ଇତିହାସ ପୃଷ୍ଠା ମଣ୍ଡନ କରି ରହିଅଛି । ମୁମ୍ବାଇର ସେହି ଗୋଓ୍ୱାଲିଆ ଟ୍ୟାଙ୍କ ପଡ଼ିଆ ଯେଉଁଠାରେ ଗାନ୍ଧିଜୀ ଜନସାଧାରଣ ମାନଙ୍କୁ ଆହ୍ୱାନ ଦେଇଥିଲେ ତାହା 'ଅଗଷ୍ଟ କ୍ରାନ୍ତି' ମଇଦାନ ରୂପେ ଇତିହାସ ସାକ୍ଷ୍ୟ ବହନ କରି ରହିଅଛି ।

ତାଙ୍କର ସେହି ବଜ୍ର ଅହ୍ୱାନରେ ଦେଶର ଗ୍ରାମଠାରୁ ସହର ପର୍ଯ୍ୟନ୍ତ ଆବାଳ ବୃଦ୍ଧ ବନୀତା ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଆନ୍ଦୋଳନରେ ସାମିଲ ହୋଇଗଲେ । ବ୍ରିଟିଶ ସରକାର ଏହି ଆନ୍ଦୋଳନକୁ ପଶମିତ କରିପାରି ନଥିଲେ । ଏହି ଆନ୍ଦୋଳନ ଏପରି ଭାବରେ ପ୍ରଜ୍ୱଳିତ ହୋଇଥିଲା ତାହା ଦେଶ ସ୍ୱାଧୀନ ହେବା ପର୍ଯ୍ୟନ୍ତ ଆଉ ନିର୍ବାପିତ ହୋଇ

ନଥିଲା । ସେହି ସମୟ ଥିଲା ଦେଶର ଘଡ଼ିସନ୍ଧି ମୂହୁର୍ତ୍ତ । କାରଣ ଏହି ଦ୍ୱିତୀୟ ବିଶ୍ୱ ଯୁଦ୍ଧର ସମୟ ଥିଲା ସେତେବେଳେ । ଇଂରେଜ ସରକାର ଯୁଦ୍ଧରେ ଭାରତୀୟ ମାନଙ୍କର ସାହାଯ୍ୟ ପ୍ରତି ବଦଳରେ ସ୍ୱାଧୀନତା ଦେବାପାଇଁ କହୁଥିଲେ । କିନ୍ତୁ ଅହିଂସାର ମୂର୍ତ୍ତିମନ୍ତ ପ୍ରତିକ ଗାନ୍ଧିଜୀ ଚାହୁଁ ନଥିଲେ ବିଶ୍ୱ ଯୁଦ୍ଧ ବେଳେ ବ୍ରିଟିଶ ମାନଙ୍କ ପାଉଁଶରୁ ଭାରତକୁ ସ୍ୱାଧୀନତା ମିଳୁବୋଲି ।

ଲେଖିବାର ଉଦ୍ଦେଶ୍ୟ ହେଲା ଏହି ଅଗଷ୍ଟ ବିପ୍ଳବ ଦେଶର କୋଣ ଅନୁକୋଣକୁ ବ୍ୟାପୀଯିବା ଫଳରେ ଓଡ଼ିଶାର ଗଡ଼ଜାତ ଆନ୍ଦୋଳନ ବା ପ୍ରଜାମଣ୍ଡଳ ଆନ୍ଦୋଳନ ବହୁମାତ୍ରାରେ ତେଜିଆନ ହୋଇ ଉଠିଲା । ପୂର୍ବରୁ ଘଟି ଯାଇଥିବା ବିଭିନ୍ନ ଆନ୍ଦୋଳନର ପ୍ରଭାବ କଂଗ୍ରେସ ଅଞ୍ଚଳ ତଥା କୁହାଯାଉଥିବା ମୋଗଲ ବନ୍ଦୀ ଅଞ୍ଚଳରେ ଅଧିକ ପ୍ରଭାବ ପକାଇଥିଲା । କିନ୍ତୁ କୁହାଯାଉଥିବା ଏହି ଅଗଷ୍ଟ ବିପ୍ଳବ ଓଡ଼ିଶାର ପ୍ରତି ଗଡ଼ଜାତକୁ ବ୍ୟାପୀ ଯାଇଥିଲା । ଓଡ଼ଶାରେ ଥିବା ୨୬ଟି ଗଡ଼ଜାତକୁ ଅସହଯୋଗ ଆନ୍ଦୋଳନ ବ୍ୟାପିବା ସଙ୍ଗେ ସଙ୍ଗେ ପ୍ରଜା ମଣ୍ଡଳ ଆନ୍ଦୋଳନ ଏହାକୁ ଅଧିକ ପ୍ରଜ୍ୱଳିତ କରିଦେଇ ଥିଲା । ଏହି ଆନ୍ଦୋଳନ ଢେଙ୍କାନାଳ, ତାଳଚେର ଓ ନୟାଗଡ଼ ଜିଲ୍ଲାରେ ଅଧିକ ହିଂସାତ୍ମକ ରୂପ ନେଇଥିଲା । ଏହି ୨୬ଟି ଗଡ଼ଜାତ ମଧ୍ୟରୁ ଢେଙ୍କାନାଳ ଗଡ଼ଜାତରେ ଅଧିକ କ୍ଷୟକ୍ଷତି ଉପୁଜିଥିଲା । କେତେକ ସତ୍ୟାଗ୍ରହୀ ପୋଲିସ ଗୁଳିରେ ଶହୀଦ ହୋଇ ଯାଇଥିଲେ । କେତେକ ଅସଙ୍ଗଠିତ ଭାବରେ ଆନ୍ଦୋଳନର କାର୍ଯ୍ୟକ୍ରମ ଗ୍ରହଣ କରିଥିବାରୁ ଆନ୍ଦୋଳନ କାର୍ଯ୍ୟକାରୀ ହୋଇ ପାରିନଥିଲା । ଢେଙ୍କାନାଳର ମଢି ନାମକ ଏକ ସ୍ଥାନରେ ଆନ୍ଦୋଳନ ଭୟାବହ ରୂପ ଧାରଣ କରିଥିଲା । ଢେଙ୍କାନାଳର ମଢି ଆନ୍ଦୋଳନ ଉପରେ ଆଜି ଭାରତ କିମ୍ବା ଓଡ଼ିଶା ଇତିହାସ ନିରବ । ପରବର୍ତ୍ତି ଅଧ୍ୟାୟରେ ଆମେ ଇତିହାସ ନିରବ ରହିଥିବା ଢେଙ୍କାନାଳ ଏବଂ ହିନ୍ଦୋଳର ଘଟଣାବଳି ଉପରେ ଆମେ ଆଲୋକପାତ କରିବା ।

ଏହା ଥିଲା ଭାରତର ସ୍ୱାଧୀନତା ଆନ୍ଦୋଳନକୁ ଓଡ଼ିଶାର ଲୋମ ହର୍ଷଣକାରୀ ଗୁରୁତ୍ୱ ପୂର୍ଣ୍ଣ ଅବଦାନ ।



# ୪ର୍ଥ ପରିଚ୍ଛେଦ

## ଜାତୀୟ ଆନ୍ଦୋଳନରେ ଢେଙ୍କାନାଳର ଭୂମିକା

ଇତିହାସର କ୍ଷିପ୍ର ସ୍ରୋତରେ ବିଭିନ୍ନ ରାଜବଂଶର ରାଜା ମାନଙ୍କର ନମାନୁସାରେ ସେହି ଅଞ୍ଚଳକୁ ନମାଙ୍କିତ କରାଯାଇଥାଏ ଏବଂ ସେହି ଅଞ୍ଚଳର ଅଧିବାସୀମାନେ ସେହି ଅନୁସାରେ ନିଜର ପରିଚୟ ପ୍ରଦାନ କରିଥାନ୍ତି । ଅଧିକାଂଶ ଗଡ଼ଜାତ ମାନଙ୍କରେ ଏହା ଦେଖିବାକୁ ମିଳିଥାଏ । ବେଶାଳିଆର ଶବର ରାଜା ଢେଙ୍କାନାଳର ସ୍ମାରକୀ ସ୍ୱରୂପ ପାଣିଓହଳା ପର୍ବତର କଟୀଦେଶରେ "ଢେଙ୍କାନାଳ" ଗଡ଼ ହରିସିଂହ ବିଦ୍ୟାଧରଙ୍କ ଦ୍ୱାରା ସ୍ଥାପିତ ହୋଇ ଏହି ଅଞ୍ଚଳ ବା ରାଜ୍ୟ ଢେଙ୍କାନାଳ ନାମରେ ବିଦିତ ହୋଇଅଛି । ରାଜା ହରିସିଂହ ବିଦ୍ୟାଧର ବେଶାଳିଆର ଭଞ୍ଜ ବଂଶୀୟ ରାଜା ଶ୍ରୀଧର ଭଞ୍ଜଙ୍କୁ ପରାଜିତ କରିବା ସମୟରେ "ଢେଙ୍କା" ଶବର ର ଅନ୍ତିମ ଇଛାକୁ ସାକାର କରିବା ପାଇଁ ହରିସିଂହ ବିଦ୍ୟା ଧରଙ୍କୁ ଅନୁରୋଧ କରିଥିଲେ । ଆଉମଧ କହିଥିଲେ, ଢେଙ୍କା ଶବରର ଅନ୍ତିମ ଇଛାକୁ ସମ୍ମାନ ନଦେବା ଫଳରେ ଆଜି ଯେପରି ମୋତେ ରାଜ୍ୟ ହରାଇବାକୁ ପଡ଼ିଲା । ହେ ରାଜ - ଆପଣଙ୍କ ପକ୍ଷରେ ତାହା ଯେପରି ନହୁଏ । ଏହାକୁ ସ୍ୱର୍ଗୀୟ ପ୍ରେରଣା ମନେକରି ରାଜା ହରିସିଂହ ବିଦ୍ୟାଧର 'ଢେଙ୍କା' ଶବରର ଇଛାକୁ ସମ୍ମାନ ଦେଇଥିଲେ । ଏହା ଅଦ୍ୟାବଧି ଜନ ମୁଖରୁ ଶୁଣାଯାଏ । ରାଜନୈତିକ ଭାଷାରେ ଏହା ଓଡ଼ିଶାର ଛବିଶ ଗୋଟି ଗଡ଼ଜାତ ମଧରୁ ଗୋଟିଏ ଗଡ଼ଜାତ । ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟ, ଏହାର ସବୁଜିମା, ଏହାର ସୌନ୍ଦର୍ଯ୍ୟ ଅଦ୍ୟାବଧି ସୁଦ୍ଧା ଉଦ୍‌ଜିବିତ ହୋଇ ରହି ଆସି ଅଛି । ଶଙ୍ଖ ଏବଂ କୋହିଲି ର ମିଳିତ ଚିରସ୍ରୋତା ସ୍ୱତସ୍ୱନୀ ବ୍ରାହ୍ମଣୀ ଏହି ଗଡ଼ଜାତକୁ ଦ୍ୱିଖଣ୍ଡିତ କରି ତାର ଶୋଭାବବର୍ଦ୍ଧନ କରିବା ସଙ୍ଗେ ସଙ୍ଗେ ବହୁ ଐତିହାସିକ ଘଟଣାର ମୁକସାକ୍ଷୀ ରୂପେ ପ୍ରବାହିତା । ଏହି ଚିର ସ୍ୱତସ୍ୱନୀର ଉଭୟ ପାର୍ଶ୍ୱ ଶସ୍ୟ ସବୁଜିମାରେ ସଦାସର୍ବଦା ଭରି ରହି ଏହି ଆଦିବାସୀ ଅଧୁଷିତ ଅଞ୍ଚଳକୁ ଧନାଢ୍ୟ କରିଥାଏ । ଏହି ଗଡ଼ଜାତରେ ପୂର୍ଣ୍ଣ ଐତିହର ଯୁଦ୍ଧ ଘଟଣାକୁ ନେଇ ରଚିତ "ସମର ତରଙ୍ଗ" ଏହାର ଗର୍ବ ବହନ କରି ଆସୁଅଛି । କବି ବ୍ରଜନାଥ ବଡ଼ଜେନାଙ୍କର ଲେଖନୀ ଏହି ଗଡ଼ଜାତର ସାହିତ୍ୟ ସମ୍ଭାରକୁ ଉଜ୍ଜିବିତ କରି ରଖିଅଛି । ଏହି ଗଡ଼ଜାତର ଅଧିବାସୀ ମାନେ ଶାନ୍ତ, ସୌମ୍ୟ ଏବଂ ସୌଜନ୍ୟତାର ପୃଷ୍ଟପୋଷକ ହେଲେ ମଧ ଶିକ୍ଷା ଦିକ୍ଷା ଏବଂ କଳା କୌଶଳରେ ବେଶ୍ ଦକ୍ଷତା ଅର୍ଜନ କରିଥାନ୍ତି । ବଣ ପାହାଡ଼ ଘେରା ଏକ

ଅଦିବାସୀ ଅଧ୍ୟୁଷିତ ଅଞ୍ଚଳ ଦିନେ ଭାରତର ମୁକ୍ତି ସଂଗ୍ରାମରେ ଭାରତର ପ୍ରଥମ ୧୨ ବର୍ଷର ବାଳକ ପ୍ରଥମ ଶହୀଦ ଭାବେ ନିଜ ଜନ୍ମ ମାଟିର ପରିଚୟ ଦେଇ ଢେଙ୍କାନାଳର ଐତିହାସିକ ଗୌରବ ଅର୍ଜନ କରିପାରି ଥିଲା । ତତ୍କାଳୀନ ଜାତିୟ ଆନ୍ଦୋଳନରେ ଢେଙ୍କାନାଳର ଅଗ୍ରଗଣ୍ୟ ଭୂମିକା ଥିଲା ଏହା ଅସ୍ୱୀକାର କରାଯାଇ ନପାରେ ।

ପୂର୍ବରୁ ଆମେ ଆଲୋଚନା କରିଛେ ଯେ, ଓଡ଼ିଶା କହିଲେ କେବଳ ମୋଗଲବନ୍ଦୀ ଅଞ୍ଚଳକୁ ବୁଝାଉଥିଲା । ଓଡ଼ିଶାର ଅନାନ୍ୟ ଅଞ୍ଚଳ ଗୁଡିକ ଜଣେ ଜଣେ ପ୍ରାଦେଶିକ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା । ଇଂରେଜ ରାଜତ୍ୱ କାଳରେ ଛବିଶ ଗଡ଼ଜାତର ପ୍ରଜାମାନେ ସ୍ୱତନ୍ତ୍ର ଶାସିତ ହେବା ଫଳରେ ଓଡ଼ିଆ ମାନଙ୍କର ଜାତୀୟ ସଂହତି ଓ ସମନ୍ୱୟ ନଥିଲା । କିଛି ପ୍ରାଦେଶିକ ରାଜାମାନେ ଇଂରେଜ ଶାସନକୁ ବିରୋଧ କରୁଥିଲେ ଏବଂ କିଛି ରାଜାମାନେ ଇଂରେଜ ମାନଙ୍କର ବଶ୍ୟତା ସ୍ୱୀକାର କରି ଶାସନ କରୁଥିଲେ । ତେଣୁ ଗଡ଼ଜାତ ମାନଙ୍କ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା ହୋଇ ପାରୁନଥିଲା । ମୋଟା ମୋଟି ଉପରେ କହିବାକୁ ଗଲେ ଓଡ଼ିଶାରେ ଜାତୀୟ ଚେତନା ନଥିଲା । ତଥାପି ତତ୍କାଳୀନ କିଛି ରାଜା ସ୍ୱତନ୍ତ୍ର ଭାବରେ ଇଂରେଜ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ୧୭୬୭ ଖ୍ରୀଷ୍ଟାବ୍ଦରେ ଦକ୍ଷିଣ ଓଡ଼ିଶାର ପାରଳାଖେମୁଣ୍ଡି ରାଜା ଇଂରେଜ ବିରୁଦ୍ଧରେ ଯୁଦ୍ଧ କରିଥିଲେ । ୧୮୦୫ ମସିହାରେ ଜୟୀ ରାଜଗୁରୁଙ୍କ ନେତୃତ୍ୱରେ ଖୋର୍ଦ୍ଧା ବିଦ୍ରୋହ, ୧୮୧୭ ରେ ବକ୍ସି ଜଗବନ୍ଧୁଙ୍କ ପାଇକ ବିଦ୍ରୋହ, ୧୮୩୫ ରେ ଘୁମୁସର ବିଦ୍ରୋହ, ୧୮୪୭ ରେ ରାଜା ସୋମନାଥ ସିଂହଙ୍କ ଅନୁଗୁଳ ବିଦ୍ରୋହ, ୧୮୫୭ ରେ ସମ୍ବଲପୁର ସୁରେନ୍ଦ୍ର ସାଏଙ୍କ ବିଦ୍ରୋହ ଉଦାହରଣ ସାପେକ୍ଷ । ଅବଶିଷ୍ଟ ଗଡ଼ଜାତ ଗୁଡିକ ଇଂରେଜ ଶାସନର ବଶ୍ୟତା ସ୍ୱୀକାର କରି ନିଜ ନିଜର ସରହଦ ଭିତରେ  ବା ସୀମା ଭିତରେ ଶାସନ କରୁଥିଲେ । ଫଳରେ ପ୍ରଜାମାନେ ଅଧିକ ପ୍ରପୀଡ଼ିତ ହେଉଥିଲେ । ଇଂରେଜ ମାନଙ୍କର କରଭାର, ରାଜା ମାନଙ୍କର ବେଠି, ଜଙ୍ଗଲ କର ଇତ୍ୟାଦି ଫଳରେ କିଛି ଗଡ଼ଜାତ ଅଞ୍ଚଳରେ ପ୍ରଜାମାନେ ଅଧିକ ପ୍ରପୀଡିତ ହେବାରୁ ପ୍ରଜାମାନଙ୍କ ମଧ୍ୟରେ ପ୍ରଜା ଆନ୍ଦୋଳନର ଦାନା ବାନ୍ଧିଥିଲା । କାଳକ୍ରମେ ଏହା ପ୍ରଜାମଣ୍ଡଳ ଆନ୍ଦୋଳନରେ ପରିଣତ ହୋଇଥିଲା ।

୧୯୨୦ ମସିହା ଡ଼ିସେମ୍ବର ମାସରେ ନାଗପୁର ଠାରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନରୁ ଉତ୍କଳମଣି ଗୋପବନ୍ଧୁ ଦାସ ଫେରିଲା ପରେ ୧୯୨୧ ମସିହା ମାର୍ଚ୍ଚ ମାସରେ ଉତ୍କଳ କଂଗ୍ରେସକମିଟି ଗଠନ କରାଯାଇଥିଲା । ଏହାକୁ କୁହାଯାଉଥିଲା

'ମୋଗଲ ବନ୍ଦୀ କଂଗ୍ରେସ" । ଏହା ସୀମାବଦ୍ଧ ଥିଲା ବାଲେଶ୍ୱର, କଟକ ଏବଂ ପୁରୀ ଜିଲ୍ଲା ମଧ୍ୟରେ । ରାଜା ରାଜୁଡ଼ାଙ୍କ ଭୟରେ ଗଡ଼ଜାତର ଲୋକମାନେ କେହି କଂଗ୍ରେସର ନାଁ ନେଉ ନଥିଲେ । ସେତେବେଳେ କଂଗ୍ରେସର ମଧ୍ୟ ବିଧିବଦ୍ଧ ପ୍ରସ୍ତାବ ଥିଲା ଯେ, କୌଣସି ଗଡ଼ଜାତରେ କଂଗ୍ରେସ ନାମରେ କୌଣସି ସଂଗଠନ ଗଢା ଯିବନାହିଁ କିମ୍ବା କଂଗ୍ରେସ ତରଫରୁ କୌଣସି ଗଡ଼ଜାତରେ କୌଣଷି ଆନ୍ଦୋଳନ କରାଯିବ ନାହିଁ । ତେବେ ବ୍ୟକ୍ତିଗତ ଭାବେ କୌଣସି ଗଡ଼ଜାତର ଆନ୍ଦୋଳନ କୁ କୌଣଷି କଂଗ୍ରେସ ଲୋକ ପରିଚାଳନା କରିବାରେ କିମ୍ବା ନେତୃତ୍ୱ ଦେବାରେ କିଛି ବାରଣ ନଥିଲା । ସେ ଯାହାହେଉ କାଣୀ ଆଖିରେ କଜ୍ଜଳ ଗାର ପରି କିଛି କିଛି ଗଡ଼ଜାତିଆ ନେତା ଲୁଚି ଛପି କଟକ ଆସି କଂଗ୍ରେସ ସହ ମିଶି ଯାନ୍ତି । ରଜାଙ୍କ ଭୟରେ ସେମାନଙ୍କୁ ମଧ୍ୟ ବହୁବେଶ ବଦଳାଇବାକୁ ପଡ଼ିଥାଏ । କେତେବେଳେ ବାବାଜୀ ବେଶତ କେତେବେଳେ ଚାଷୀ ବେଶ, କେତେବେଳେ ଗାଈଆଳ ବେଶତ କେତେବେଳେ କାଠୁରିଆ ବେଶ ହୋଇ ଗଡ଼ଜାତ ପାରି ହୋଇ ଥାନ୍ତି ।

ଢେଙ୍କାନାଳରେ ପ୍ରଜାମାନେ ବେଠି, କରଭାର ଏବଂ ଜଙ୍ଗଲ କରରେ ଅତିଷ୍ଠ ହୋଇ ପଡ଼ିଥିଲେ । କଠୋର ଦଣ୍ଡ ଭୟରେ କେହି ମୁହଁ ଖୋଲୁ ନଥିଲେ । ସାଧାରଣତଃ ଓଡ଼ିଆ ମାନଙ୍କର ପ୍ରିୟ ଥିଲା 'ପାନ' । ପାନ ଖାଇବାକୁ ଓଡ଼ିଆ ମାନେ ପସନ୍ଦ କରିଥାନ୍ତି । ପ୍ରାୟ ପ୍ରତି ଘରେ ଘରେ ଥାଏ ପାନବଟୁଆ । ଢେଙ୍କାନାଳ ଲୋକଙ୍କର ପ୍ରଚୁର ପାନ ବ୍ୟବହାର ଫଳରେ ପାନ ଉପରେ ବଇକଟ କରାଗଲା । ଢେଙ୍କାନାଳ ରାଜା ଇଂରେଜ ସରକାରଙ୍କୁ କିଛି କରଦେଇ ତାର ରାଜ୍ୟ ଢେଙ୍କାନାଳକୁ ତା'ର ଗୋଟିଏ ସାର୍ବଭୌମ ରାଷ୍ଟ୍ରଭାବି ଆଇନ କାନୁନ୍ ପ୍ରଚଳନ କରୁଥିଲେ । ଢେଙ୍କାନାଳ ରାଜ୍ୟରେ ଅବକାରୀ ନିଜିଷ ଆଦିକୁ ରାଜା ଯେପରି ଢେଙ୍କାନାଳରେ ଏକ ଚାଟିଆ ବ୍ୟବସାୟ କରି ଜଣେ ପଟ୍ଟାଦାର ଦ୍ୱାରା ଏସବୁ ଜିନିଷ (ଗଞ୍ଜେଇ, ଅଫିମ, ମଦ, ବିଡି) ଚଢା ମୂଲ୍ୟରେ ବିକ୍ରି କରାଉ ଥିଲେ । କିରାସିନୀ ମଧ୍ୟ ପଟ୍ଟାଦାର ମାଧ୍ୟମରେ ବିକ୍ରି କରାଉ ଥିଲେ । ପଟ୍ଟାଦାର ଥିଲା ରାଜାଙ୍କର ବେତନ ପ୍ରାପ୍ତ ଚାକର । ରାଜାଙ୍କ ବଦଳରେ ସେ ନିଲାମ ବଢି ଲାଇସେନ୍ସ କରି ସମସ୍ତ ଅବକାରୀ ଜିନିଷ ବିକ୍ରି କରୁଥିଲା । ରାଜାଥିଲେ ସର୍ବେସର୍ବା । ପଟ୍ଟାଦାର ଥିଲା ନାମକୁ ମାତ୍ର ଜଣେ ବେତନ ପ୍ରାପ୍ତ କର୍ମଚାରୀ ।

ଅବକାରୀ ସାମଗ୍ରୀ ପରି 'ପାନ' କୁ ମଧ୍ୟ ବିକ୍ରି କରିବା ପାଇଁ ଜଣକୁ ମଧ୍ୟ ପଟ୍ଟା ଦିଆଯାଇଥିଲା । ମନେକରନ୍ତୁ 'ପାନ' ନିଲାମ କରାଗଲା । ନିଲାମରେ ଜଣେ ଲୋକ

ପାନବିକ୍ରି କରିବା ପାଇଁ ପଟ୍ଟା ପାଇଲା । ଏହି ନିଲାମରେ ସର୍ବୋଚ୍ଚ ଟଙ୍କାରେ ନିଲାମ ଡାକିଥିବା ଲୋକ ଯେତେ ଟଙ୍କା ଡାକିଥିବ ସେ ଟଙ୍କାକୁ ରାଜା ପାଇବା ସଙ୍ଗେ ସଙ୍ଗେ ସେ ଏପରି ବ୍ୟବସ୍ଥା କରୁଥିଲେ ଯେ, ଯେଉଁ ଲୋକ ପାନ ବିକିବା ପାଇଁ ଲାଇସେନ୍‌ସ ପାଇଥିବ ସେ ଲୋକ ପ୍ରକୃତରେ ଦେଖିଲା ବେଳକୁ ରାଜାଙ୍କ ଲୋକ । ଅର୍ଥାତ୍ ସେ ଲୋକ ହେଉଛି ରାଜା ନିଜେ ଏବଂ କାଗଜ କଲମରେ କେବଳ ସେ ଲୋକର ନାମ ରହିବ । ତେଣୁ ପାନ ପ୍ରଜାମାନଙ୍କୁ ବିକ୍ରି କରିଲା ବେଳକୁ ତାର ମୂଲ୍ୟ ରାଜା ନରୁପଣ କରିଥାନ୍ତି । ତେଣୁ ପଟ୍ଟାଦାର ଯାହା ଲାଭ ପାଇଲା ତାହାମଧ୍ୟ ରାଜାଙ୍କର । ପଟ୍ଟାଦାର କେବଳ ଚାକର ପରି ଦରମା ପାଉଥିବ । ପଟ୍ଟାଦାର ଠାରୁ ଗ୍ରାମ ମାନଙ୍କର ଦୋକାନୀ ମାନେ ବନ୍ଧା ଦରରେ ପାନ କିଣିନେଇ ସେମାନଙ୍କର ଲାଭରଖି ପ୍ରଜାମାନଙ୍କୁ ପାନ ବିକ୍ରି କଲା ବେଳେ ଯାହା ମୂଲ୍ୟ ପଡ଼ିଲା ସେ ମୂଲ୍ୟରେ ପ୍ରଜାମାନେ ପାନ କିଣିବାକୁ ବାଧ୍ୟ ହେଉଥିଲେ । ସେତେ ବେଳକୁ ପାନର ମୂଲ୍ୟ ଆକାଶ ଛୁଆଁ ହେଉ ଥିଲା । କିନ୍ତୁ ପ୍ରଜାମାନେ ପାନ କିଣିବାକୁ ବାଧ୍ୟ ହେଉଥିଲେ ।

ଢେଙ୍କାନାଳ ରାଜା ରାଜ୍ୟରେ ପାନ ଉପରେ ଏକ ଆଇନ ପ୍ରଣୟନ କରିଥିଲେ । ଏହି ଆଇନ ଅନୁସାରେ ଗ୍ରାମର ପାନ ଦୋକାନ ପାନ କ୍ରୟ କରିପାରିବ । ଢେଙ୍କାନାଳ ରାଜ୍ୟର ସୀମା ଚାରିପାଖରେ ଥିବା ପାନ କେହି କିଣି ପାରିବେ ନାହିଁ କିମ୍ୱା "ଗଏଲ ଜିଲ୍ଲା"ର କେହି ୫୦ଟି ପାନ କେହି ଘରେ ରଖି ପାରିବେ ନାହିଁ । ଯଦି ଏପରି କେହି ବାହାର ରାଜ୍ୟରୁ ପାନ ରାଜ୍ୟ ଭିତରକୁ ଆଣିବା ବେଳେ ବାଟରେ ଯଦି କେହି ଧରା ପଡ଼ନ୍ତି କିମ୍ୱା ଘରେ ରଖି ଥିବାର ଧରା ପଡ଼ନ୍ତି, ସେଥିପାଇଁ କଡ଼ା ଦଣ୍ଡ ବିଧାନ, ପାନ ବିଷୟକ ଆଇନରେ ବ୍ୟବସ୍ଥା ଥିଲା । ଢେଙ୍କାନାଳର 'ଗଏର କିଲା' କହିଲେ ବ୍ରିଟିଶ ଶାସିତ ଅଞ୍ଚଳ ଅନୁଗୋଳ ଓ କଟକ ଜିଲ୍ଲାର କଳକଳା, ବଳରାମ ପୁର, ସୁକିନ୍ଦା ଆଦି ଅଞ୍ଚଳ ଏବଂ ଗଡ଼ଜାତ ମାନଥିଲେ କେନ୍ଦୁଝର, ପାଲଲହଡ଼ା, ତାଳଚେର, ହିନ୍ଦୋଳ, ଆଠଗଡ଼ ଏବଂ ତିଗିରିଆ । ସେ ସବୁ ଅଞ୍ଚଳ (ଗଏର କିଲ୍ଲା) ମାନଙ୍କରେ ସେତେବେଳେ ଏପରି କଟକଣା ପାନ ଉପରେ ନଥିଲା । ତେଣୁ ସେହି ଅଞ୍ଚଳ ମାନଙ୍କରେ ପାନର ମୂଲ୍ୟ ଢେଙ୍କାନାଳ ଅପେକ୍ଷା କମ୍ ଥିଲା । ଯେହେତୁ ସେହି ଅଞ୍ଚଳରେ ପାନ ଶସ୍ତା ଥିଲା ସେହି ଅଞ୍ଚଳରେ ହାଟ ବଜାରରୁ ଢେଙ୍କାନାଳ ପ୍ରଜା ୫୦ ଟା କିମ୍ୱା ତାହା ଠାରୁ କମ୍ ପାନ ନିଶ୍ଚିତ ଭାବେ ଆଣୁ ଥିଲେ । ଏହା ବ୍ୟତୀତ ଢେଙ୍କାନାଳର ସୀମାନ୍ତ ଅଞ୍ଚଳରେ ବନ୍ଧୁବାନ୍ଧବ ସଂପର୍କ ଥିବାରୁ ଯିବା ଆସିବା ସମୟରେ କେହି ୫୦ଟା ପାନ ଆଣିଥାଉ କିମ୍ୱା ଆଣି ନଥାଉ ଘରେ ପାନ ଥାଉ

କିମ୍ବା ନଥାଉ କିନ୍ତୁ ରାଜକର୍ମଚାରୀ ମାନଙ୍କ ଦ୍ୱାରା ବର୍ବର ଅତ୍ୟାଚାର ର ସମ୍ମୁଖିନ ହେଉଥିଲେ । କାରଣ ପାନ ବିଷୟକ ଆଇନରେ ନିୟମ ଥିଲା ଯେ, ଗଏରକିଲା, ଅଞ୍ଚଳରୁ ପାନ ଆଣୁଛନ୍ତି ବୋଲି ସନ୍ଦେହ କଲେ କୌଣସି ରାଜ କର୍ମଚାରୀ ତଲାସୀ କରି ପାରିବାର ଅଧିକାର ପାଉଥିଲେ । ଏପରିକି ଝିଅ ବୋହୁମାନେ ଶଗଡ଼ ରେ କିମ୍ବା ସବାରୀରେ ସୀମା ପାର ହେବାବେଳେ ଝିଅ ବୋହୁ ମାନଙ୍କୁ ତଲାସି କରୁଥିଲେ । ସାଧାରଣ ପ୍ରଜାଙ୍କ କଥା ପଚାରେ କିଏ ? ପାନ ପାଇଁ ଘର ତଲାସୀ ଥିଲା ବେଶୀ ଅମାନୁଷିକ ।

ପାନ ଲାଇସେନ୍‌ସ ପାଇଁ ପାନର ମୂଲ୍ୟ ରାଜା ଯାହା ଠିକ୍ କରିଥାଆନ୍ତୁ ନା କାହିଁକି, ତାହା ଗଏର କିଲା ଠାରୁ ବେଶୀ ହୋଇ ନଥିବ ଏଥିରେ ସନ୍ଦେହ ନାହିଁ । କିନ୍ତୁ ଉପୋରୁକ୍ତ ଅତ୍ୟାଚାର ମୂଳକ କାମ ପାଇଁ ଏବଂ ରାଜକର୍ମଚାରୀ ମାନଙ୍କର ଘର ତଲାସୀ ଓ ଅମାନୁଷିକ ଅତ୍ୟାଚାର କାମ ପାଇଁ ଢେଙ୍କାନାଳ ପ୍ରଜା ପାନ ଲାଇସେନ୍‌ସ ବିରୋଧୀ ହୋଇ ଉଠିଥିଲେ । ପାନ ଦର ଯାହା ଥାଉନା କାହିଁକି ପାନ ବିଷୟକ ଆଇନର କଟକଣା ଯୋଗୁଁ ପ୍ରଜାମାନେ ଉତ୍ୟକ୍ତ ଅବସ୍ଥାରେ ଥିଲେ । ସେହି ସମୟର ପାନ ଦର ଉପରେ ଟିକିଏ ଆଲୋକ ପାତ କରିବା ।

## ପାନର ମୂଲ୍ୟ

(କ) ଏକ କଡ଼ା କହିଲେ ୫୦ ଗୋଟି ପାନ ପତ୍ରକୁ ବୁଝାଏ ।

(ଖ) ନିଆଳି ବା ନରସିଂହ ପୁରୀ ପାନ ।

ବୈଶାଖ ଠାରୁ ଆଶ୍ୱିନ କଡ଼ା ପ୍ରତି ଆଜରି ମୂଦ୍ରାରେ ଟ.୦.୦୯ ଠାରୁ ଟ.୦.୧୨ ଆଶ୍ୱିନ ଠାରୁ ଚୈତ୍ର କଡ଼ା ପ୍ରତି ଆଜିର ମୁଦ୍ରାରେ ଟ.୦.୧୨ ଠାରୁ ଟ.୦.୧୫

(ଗ) ପରମ ହଂସି – ବର୍ଷତମାମ କଡ଼ା ପ୍ରତି ଟ.୦.୧୫ ଠାରୁ ଟ.୦.୧୮

(ଘ) ଦକ୍ଷିଣୀ – ବର୍ଷତମାମ କଡ଼ା ପ୍ରତି ଟ.୦.୦୭

ଉପର ଲିଖିତ ପାନକୁ ହାରାହାରି ଧରିଲେ କଡ଼ାପ୍ରତି ଆଜିର ମୂଦ୍ରାରେ ଟ.୦.୧୨ (ବାର ନୂଆ ପଇସା) ରୁ କମ୍ ଥିଲା ବେଳେ ଆଜି ୨୦୧୦ ମସିହାରେ ଢେଙ୍କାନାଳ ବଜାରରେ କଡ଼ା ପ୍ରତି ଟ ୧୦.୦୦ ଙ୍କା ଥିଲା ।

ସେତେବେଳେ ଢେଙ୍କାନାଳରେ ପାନଦର, ଗଏରକିଲାରୁ ବେଶୀ ଥିଲା କି କମ ଥିଲା ସେଟା ବଡ଼ କଥା ନୁହେଁ । କିନ୍ତୁ ପାନ ବିଷୟକ ଆଇନର କଟକଣା ଯୋଗୁଁ ଲୋକେ ଉତ୍ୟକ୍ତ ଅବସ୍ଥାରେ ଥିଲେ ।

## ଢେଙ୍କାନାଳ ରାଜ୍ୟରେ ପାନ ବୟକଟ୍

'ବୟକଟ୍' ଶବ୍ଦଟି ହେଉଛି ଗୋଟିଏ ଇଂରାଜୀ ଭାଷାର ଶବ୍ଦ, ଯାହାର ଓଡ଼ିଆ ହେଉଛି 'ବର୍ଜନ' ବା 'ବାସନ୍ଦ' କରିବା । ତେଣୁ 'ପାନ ଖାଅନାହିଁ' । ଏହି ବୟକଟ୍ ଶବ୍ଦଟି ସାରା ଭାରତରେ ୧୯୨୦ ମସିହାରୁ ୧୯୩୦ ମସିହା ପର୍ଯ୍ୟନ୍ତ ଏକ ଗୌରବ ମୟ ଇତିହାସ ସୃଷ୍ଟି କରିଥିଲା । ଯାହାର ସ୍ରଷ୍ଟା ଥିଲେ ମହାତ୍ମାଗାନ୍ଧୀ । ସେ କହୁଥିଲେ "ବିଦେଶୀ ଲୁଗା ବୟକଟ୍" 'ବିଦେଶୀ ଜିନିଷ ବର୍ଜନ କର' । ଅର୍ଥାତ ଆମେ ବିଦେଶୀ ଜିନିଷ ବ୍ୟବହାର କରିବୁ ନାହିଁ । ସେହିପରି ଢେଙ୍କାନାଳରେ 'ପାନ ବୟକଟ୍' ଅର୍ଥାତ ଆମେ ପାନ ଖାଇବୁ ନାହିଁ ।

୧୯୩୮ ମସିହା ଅଗଷ୍ଟ ମାସରେ ବର୍ଷା ନହେବାରୁ ଢେଙ୍କାନାଳରେ ମରୁଡ଼ିର କରାଳ ଛାୟା ଦେଖା ଦେଇଥିଲା । ସେଥିପାଇଁ ଚାଷୀମାନେ ରୁଆ ବେଉଷଣ କରି ପାରୁନଥିଲେ । ପାଣି ଅଭାବରେ ଧାନ କ୍ଷେତ ବିହୁଡ଼ି ପାରୁ ନଥିଲେ କିମ୍ଵା ତଳି ମାରି ପାରୁ ନଥିଲେ । ଢେଙ୍କାନାଳ ପ୍ରଜା ମାନଙ୍କର ବିଶ୍ଵାସ ଥାଏ ଯେ, ଇନ୍ଦ୍ର ଦେବଙ୍କୁ ସନ୍ତୁଷ୍ଟ କଲେ ଇନ୍ଦ୍ର ଦେବ ବର୍ଷା କରିବେ । ତେଣୁ ଇନ୍ଦ୍ର ଦେବଙ୍କୁ ସନ୍ତୁଷ୍ଟ କରିବା ପାଇଁ "ଯଜ୍ଞ" ମାନ କରୁଥିଲେ । ଇନ୍ଦ୍ରଦେବ ସନ୍ତୁଷ୍ଟ ହେଲେ ବର୍ଷା ହେବ ଏବଂ ପ୍ରଜାମାନେ ଅଧିକ ଫସଲ ଅମଳ କରିପାରିବେ । ସେଥି ପାଇଁ ଯଜ୍ଞର ଆୟୋଜନ କରାଯାଉ ଥିଲା । ତିନି ଦିନ ଧରି ଯଜ୍ଞମାନ ଅନୁଷ୍ଠିତ କରାଯାଉଥାଏ । ସେଥିପାଇଁ ଯଜ୍ଞ ସ୍ଥାନରେ ଶହ ଶହ ପ୍ରଜା ଏକତ୍ରିତ ହେଉଥିଲେ । ସେତେବେଳେ ଲୋକମାନଙ୍କ ମଧ୍ୟରେ ପାନ ର ନିର୍ଯ୍ୟାତନା ଉପରେ ଆଲୋଚନା କରାଯାଉଥିଲା । ସେତିକି ବେଳେ ପ୍ରଜା ମଣ୍ଡଳରେ କର୍ମୀମାନେ ସକ୍ରୀୟ ରହୁଥିଲେ । ଯଜ୍ଞ ସ୍ଥଳୀରୁ ଡ଼ାକରା ଉଠୁଥିଲା 'ପାନ ବୟକଟ୍' କର । କେବଳ ଯଜ୍ଞ ନୁହେଁ ତ୍ରୀନାଥ ମେଳା, ଖଞ୍ଜଣୀ ଭଜନ ଇତ୍ୟାଦିର ଛୋଟବଡ ଜନସମାଗମ ରେ ମଧ୍ୟ ଲୋକ ମାନଙ୍କୁ ପ୍ରଜା ମଣ୍ଡଳ ବିଷୟରେ ସଚେତନ କରା ଯାଉଥିବା ଫଳରେ ବଣ ପୋଡ଼ି ଭଳି ଢେଙ୍କାନାଳର ଚାରିଆଡେ ପ୍ରଜା ମଣ୍ଡଳର ଆନ୍ଦୋଳନ ନିଆଁ ପରି ବ୍ୟାପୀ ଯାଉଥିଲା । ଏହି

ଐତିହାସିକ ଓ ବୈପ୍ଲବୀକ ପ୍ରଜା ମଣ୍ଡଳ ଆନ୍ଦୋଳନ "ଢେଙ୍କାନାଳ ପ୍ରଜାମଣ୍ଡଳ" ନାମରେ କ୍ଷାତ ହୋଇଥିଲା ।

"କଂଗ୍ରେସର ସଭାପତି ଭାବରେ ସୁଭାଷ ଚନ୍ଦ୍ର ବୋଷ ୧୯୩୮ ମସିହା ଜାନୁୟାରୀ ମାସରେ ନର୍ବାଚିତ ହେଲେ । ସେହି ସମ୍ବାଦ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଜାନୁୟାରୀ ୧୯ ତାରିଖରେ କଟକରୁ ତାଙ୍କୁ "ଢେଙ୍କାନାଳ ପ୍ରଜାମଣ୍ଡଳ" ପକ୍ଷରୁ ଗୋଟିଏ ଟେଲିଗ୍ରାମ ପଠାଯାଇ ଥିଲା । ଏହି ଟେଲିଗ୍ରାମ୍ ସମ୍ବାଦଟି କଟକର ଏନ୍.ଆର.ସ୍ୱାମୀ "ଷ୍ଟେଟସମାନ୍" କାଗଜରେ ଛାପିଦେଲେ । ଏହି ସମ୍ବାଦ ପ୍ରକାଶିତ ହେବା ମାତ୍ରେ କଟକ ସହରରେ ଏବଂ ପରେ ପରେ ଓଡ଼ିଶା ବ୍ୟାପୀ ଏକ ଚମକ ଖେଳିଗଲା । ଏହା ହେଲା ଓଡ଼ିଶାର ପ୍ରଥମ ଏବଂ ଭାରତର ଦ୍ୱିତୀୟ ପ୍ରଜାମଣ୍ଡଳ । ସଭାପତି ହେଲେ ହର ମୋହନ ପଟ୍ଟନାୟକ, ସଂପାଦକ ଲକ୍ଷ୍ମୀଧର ସାହୁ ଏବଂ ସହ ସଂପାଦକ ରୂପେ ବୈଷ୍ଣବ ଚରଣ ପଟ୍ଟନାୟକ ଢେଙ୍କାନାଳ ପ୍ରଜାମଣ୍ଡଳ କୁ ଗଢିବାକୁ ଲାଗିଲା" ।

(ଢେଙ୍କାନାଳ ଆନ୍ଦୋଳନ ପୁସ୍ତକର ପୃଷ୍ଠା ୧୭)

ଉପର ଲେଖା ମତେ ଢେଙ୍କାନାଳ ପ୍ରଜାମଣ୍ଡଳର ଗଠନକୁ ପ୍ରଥମ ବୋଲି ଧରାଯାଇପାରେ । କାରଣ ହରମୋହନ ପଟ୍ଟନାୟକଙ୍କର ଉପର ଲିଖିତ ମତେ ୧୯୩୮ ଜାନୁୟାରୀ ବେଳକୁ "ଢେଙ୍କାନାଳ ପ୍ରଜା ମଣ୍ଡଳ" ଗଠନ ଓଡ଼ିଶାରେ ଥିଲା ପ୍ରଥମ ଓ ଭାରତରେ ଥିଲା ଦ୍ୱିତୀୟ ।

"ଢେଙ୍କାନାଳ ପ୍ରଜାମଣ୍ଡଳ ନେତା ବୈଷ୍ଣବ ଚରଣ ପଟ୍ଟନାୟକ ନେତାଜୀଙ୍କ ନିକଟକୁ ଗୋଟିଏ ଟେଲିଗ୍ରାମ କରିଥିଲେ । ତାହା ନିମ୍ନ ପ୍ରକାରର ।

- Wish Congress success

Anxciously await marvelous lead for states

Baishnab Charan Pattnaik

Secretary,

Dhenkanal Prajamandal

ବ୍ରିଟିସ୍ ଗୁଇନ୍ଦା ସଂସ୍ଥା ଦ୍ୱାରା ପରବର୍ତ୍ତି କାଳରେ ଏହି ଟେଲିଗ୍ରାମ ପଉରେ ଅନୁସନ୍ଧାନ ହେଲା ଏବଂ ଏଥିପାଇଁ ବୈଷ୍ଣବ ବାବୁଙ୍କୁ ଦୋଷୀ ସାବ୍ୟସ୍ତ କରାଗଲା ।

ଦେଶର ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଢେଙ୍କାନାଳର ଏହି ଅତ୍ୟାଚାରୀ ରାଜା ଶାସନରେ ଥାଇ ଏଭଳି ନିର୍ଭିକ ତଥା ସ୍ୱାଧୀନଚେତା ହେବାର ଗୌରବ କେବଳ ବୈଷ୍ଣବ ବାବୁଙ୍କୁ ହିଁ ମିଳିଛି" ।

(ସୁରେନ୍ଦ୍ର ନାଥ ମିଶ୍ରଙ୍କ 'ଅମର ଶହୀଦ୍ ବାଜିରାଉତ' ପୃଷ୍ଠା ୧୮)

ତତ୍ କାଳୀନ କଂଗ୍ରେସ କରଦ ରାଜ୍ୟ ବା ଗଡ଼ଜାତ ମାନଙ୍କ ସମସ୍ୟାକୁ ବିଶେଷ ଗୁରୁତ୍ୱ ନଥିବାରୁ ପରେ ପରେ ଜବାହର ଲାଲ ନେହେରୁ କରଦ ରାଜ୍ୟ ପ୍ରଜା ଆନ୍ଦୋଳନର ସଭାପତ ହେଲେ । ଓଡ଼ିଶାର ଗଡ଼ଜାତ ମାନଙ୍କରେ ପ୍ରଜା ପ୍ରପୀଡ଼ନ ଏବଂ ଏକଛତ୍ର ବାଦୀ ଶାସନକୁ 'ଗଡ଼ଜାତ ଅନୁସନ୍ଧାନ କମିଟି' ଗଠିତ ହେଲା । ଏହି କମିଟି ବିଭିନ୍ନ ଗଡ଼ଜାତ ଭ୍ରମଣ କରି ପ୍ରଜାମାନଙ୍କର ସୁବିଧା ଅସୁବିଧାକୁ ପର୍ଯ୍ୟାଲୋଚନା କରି ଆବଶ୍ୟକୀୟ ପଦକ୍ଷେପ ନେବାକୁ ଏହି କମିଟିରେ ସ୍ଥିର ହେଲା । ଏହି 'ଗଡ଼ଜାତ ଅନୁସନ୍ଧାନ କମିଟି'ର ପ୍ରଥମ ସଂପାଦକ ଥିଲେ ଢେଙ୍କାନାଳର ଗଡ଼ଜାତ ଗାନ୍ଧୀ ସାରଙ୍ଗ ଧର ଦାସ ।

୧୯୩୮ ମସିହା ଜୁନ୍ ୨୬ ତାରିଖ ଦିନ ଏହି ଗଡ଼ଜାତ ଅନୁସନ୍ଧାନ କମିଟି ଅନୁଗୁଳଠାରେ ପହଞ୍ଚି ଜନସାଧାରଣ ମାନଙ୍କର ସୁବିଧା ଅସୁବିଧା ଉପରେ ଆଲୋକ ପାତ କରିଥିଲେ । ସେମାନଙ୍କ ସହିତ ଗଡ଼ଜାତର ଗାନ୍ଧୀ ସାରଙ୍କ ଧର ଦାସ ମଧ ଉପସ୍ଥିତ ଥିଲେ । ଢେଙ୍କାନାଳ ରାଜ୍ୟରୁ ବହୁ ସଂଖ୍ୟାରେ ଅତ୍ୟାଚାରିତ ପ୍ରଜା ଅନୁଗୁଳ ଆସି କମିଟି ଆଗରେ ନିଜ ନିଜ ଅତ୍ୟାଚାରିତ ଘଟଣା ବହୁଳ ଜୀବନର ସାକ୍ଷ୍ୟ ପ୍ରଦାନ କରିଥିଲେ ଏବଂ ଶପଥ ନେଇଥିଲେ ଅତ୍ୟାଚାରୀ ଢେଙ୍କାନାଳ ରାଜାଙ୍କର ଶାସନକୁ ଲୋପ କରିବା ପାଇଁ । ସେହି ସମୟରେ ଆନ୍ଦୋଳକୁ ସୁଦୃଢ଼ କରିବା ପାଇଁ ଏବଂ ଏହାର ସାଙ୍ଗଠନିକ ଦକ୍ଷତା ସୁଦୃଢ଼ କରିବା ପାଇଁ ଗୋଟିଏ କମିଟି ଗଠନ କରାଗଲା । ଏହାର ଉପଦେଷ୍ଟା ରହିଲେ ଗଡ଼ଜାତ ଗାନ୍ଧୀ ସାରଙ୍କ ଧର ଦାସ । ସଭାପତି ରହିଲେ ପରଜଙ୍ଗର ଆର୍ତ୍ତତ୍ରାଣ ପାତ୍ର । ଉପସଭାପତି ରହିଲେ କୃତ୍ତିବାସ ସୁବୁଦ୍ଧି ଏବଂ ଶ୍ୟାମ ସୁନ୍ଦର ସାହୁ । ସଂପାଦକ ଦାୟୀତ୍ୱରେ ରହିଲେ ପୂର୍ଣ୍ଣଚନ୍ଦ୍ର ମହପାତ୍ର । କୋଷାଧକ୍ଷ ତ୍ରିଲୋଚନ ପ୍ରଧାନ ରହିବା ସଙ୍ଗେ ସଙ୍ଗେ ସେମାନଙ୍କ ସହିତ ଆଉ ୧୩ ଜଣ କମିଟିର ସଦସ୍ୟ ରହିଲେ । ଢେଙ୍କାନାଳ ପ୍ରଜା ମଣ୍ଡଳ ସଂଗଠନ ଲୋକ ମାନଙ୍କର ଏକମାତ୍ର ସଂଗଠିତ ଅନୁଷ୍ଠାନ । ଜନ ସାଧାରଣଙ୍କ ସମସ୍ୟା ପ୍ରଜା ମଣ୍ଡଳର ସମସ୍ୟା ବୋଲି ସେମାନେ ସଭାକରି ଜନସାଧାରଣଙ୍କୁ ପ୍ରତିଶୃତି ଦେଲେ । ଫଳରେ ଢେଙ୍କାନାଳର ପ୍ରଜାମାନେ ଆସ୍ୱସ୍ତି ଲାଭ କରିଥିଲେ ।

ପ୍ରଜାମଣ୍ଡଳର ପ୍ରଥମ ଐତିହାସିକ ଆନ୍ଦୋଳନ ରୂପ ନେଇଥିଲା ପାନ ବୟକଟ୍‌ରୁ ଅଧିକାଂଶ ବ୍ୟକ୍ତି ପାନ ଖାଇବାର ସୂତ୍ରପାତ ସ୍ୱରୂପ ବେଠି ଓ ଭେଟି ର ନିୟମରେ କିଛିଟା ପରିବର୍ତ୍ତନ ଆସିଲା । ରାଜାଙ୍କର ଦୌରାତ୍ମ୍ୟ ଓ ଅନୀତି ବିରୁଦ୍ଧରେ ପ୍ରଜା ମଣ୍ଡଳ ସ୍ୱର ଉତ୍ତୋଳନ କଲେ । ମଡି ଉପଖଣ୍ଡର ପରଜଙ୍ଗ ଅଞ୍ଚଳରେ ପ୍ରଜା ମଣ୍ଡଳ ଆନ୍ଦୋଳନ ଢେଙ୍କାନାଳ ସହରରେ ଥିବା ଖଡ୍‌ଗପ୍ରସାଦ, ମୋଟଗାଁ ଏବଂ ବୁଡା ପଙ୍ଗ ଆଦି ଅଞ୍ଚଳରେ ପ୍ରଜା ମଣ୍ଡଳ ଆନ୍ଦୋଳନ ପ୍ରସାରିତ ହେବା ସଙ୍ଗେ ସଙ୍ଗେ ମଡି ଅଞ୍ଚଳକୁ ମଧ୍ୟ ପରିବ୍ୟାପ୍ତ ହେଲା । ପ୍ରଜା ମଣ୍ଡଳ ସଂଗଠନ ଦିନକୁ ଦିନ ସୁଦୃଢ଼ ଏବଂ ଲୋକ ପ୍ରିୟ ହେବାକୁ ଲାଗିଥାଏ ।

ସୁନିଆଁ ଓଡ଼ିଶାର ଗଡ଼ଜାତ ଅଞ୍ଚଳର ଏକ ବିଧିବଦ୍ଧ ପ୍ରଥା । ଏହି ଦିନ ମଧ୍ୟ ଭଗବାନ ବାମନଙ୍କ ଜନ୍ମଦିନ ହୋଇଥାଏ । ଏହି ଦିନ ପୁରୀ ଗଜପତି ମହାରାଜାଙ୍କର ନୂଆ ଅଙ୍କ ପ୍ରଚଳିତ ହୋଇଥାଏ । କେହି କେହି ଏହାକୁ ଓଡ଼ିଶାର ନୂଆ ବର୍ଷବୋଲି ଆଖ୍ୟା ଦେଇଥାନ୍ତି । ଏହି ଦିନଟି ରାଜ ଉଆସର ଏକ ଆଭିଜାତ୍ୟ ମହତ୍ୱ ପୂର୍ଣ୍ଣ ପରଂପରା ବୋଲି ରାଜା ଘରେ ଗଣା ଯାଏ । ତେଣୁ ସେହିଦିନ ପ୍ରଜାମାନଙ୍କ ଠାରୁ ଆଦାୟ କରା ଯାଉଥିବା ଅନ୍ୟାୟ ପାଉଣା ରାଜାଙ୍କୁ ପ୍ରଦାନ କରାଯାଏ । ଏହାକୁ କୁହାଯାଏ 'ସୁନିଆଁ ଭେଟି' । ଏହି ଅର୍ଥ ରାଜ କୋଷକୁ ନଯାଇ ରାଜାଙ୍କ ବ୍ୟକ୍ତିଗତ ଖର୍ଚ୍ଚକୁ ଆସେ । ଏହି ରାଜ ପରଂପରାରେ ଢେଙ୍କାନାଳ ରାଜା ଏବଂ ରାଜକର୍ମଚାରୀ ମାନେ ଆଗୁଆ ଥାନ୍ତି । ସୁନିଆଁ ଭେଟି ନାଁରେ ଗରିବ ପ୍ରଜାମାନଙ୍କୁ ଲହୁ ଲହୁାଣ କରି କିଛି ବଟି ଯେ ଯାହା ମତେ ଆଦାୟ କରି ରାଜ ଉଆସକୁ ଭରପୁର କରି ଦିଅନ୍ତି । ଉଆସ ଭରିପୁରି ହୋଇଥାଏ । ତେଲିଆ ରାଜକର୍ମଚାରୀ ମାନେ ମଧ୍ୟ ରାଜାଙ୍କଠାରୁ ବାହା ବାହା ପଦନେଇ ଉପକୃତ ହୁଅନ୍ତି । ଗଡ଼ଜାତ ମୁଲକରେ ଏହି ସୁନିଆଁ ଭେଟି ଥିଲା ଏକ ଅପସଂସ୍କୃତି । ସେହି ବର୍ଷ ସୁନିଆଁ ପଡିଥାଏ ୧୯୩୮ ମସିହା ସେପ୍ଟେମ୍ବର ମାସରେ । ପ୍ରଜାମଣ୍ଡଳ ନେତୃତ୍ୱରେ ସେହି ବର୍ଷ ରଜାଘରକୁ ଭେଟି ନଦେବା ପାଇଁ ନିଷ୍ପତି ନିଆଗଲା । ଫଳରେ କୌଣସି ପ୍ରଜା ରାଜ ଉଆସକୁ ଭେଟି ଦେଇ ନଥିଲେ । ତେଣୁ ପରବର୍ତ୍ତି ଦିନ ମାନଙ୍କରେ ରାଜା ରାଜ୍ୟବାସୀଙ୍କ ଉପରେ ଉଦ୍ଦେଶ୍ୟ ମୂଳକ ଭାବରେ ଦାଉ ସାଧିବାକୁ ଲାଗିଲେ ।

ସୁନିଆଁ ଭେଟିରେ ରାଜା ଶଙ୍କର ପ୍ରତାପ ଅପମାନିତ ହେବାରୁ ପ୍ରଜା ମଣ୍ଡଳ ନେତାମାନଙ୍କୁ ଆଲୋଚନା ପାଇଁ ଉଆସକୁ ନିମନ୍ତ୍ରଣ କରିଥିଲେ । ପ୍ରଜା ମଣ୍ଡଳର ନେତୃବର୍ଗ

ନିମନ୍ତ୍ରଣ ପାଇ ରାଜ ଉଆସକୁ ଗଲେ ଏବଂ ରଜା ଶଙ୍କର ପ୍ରତାପଙ୍କ ସହ ରାଜ୍ୟର ବିଭିନ୍ନ ସମସ୍ୟା ଉପରେ ଅଲୋକପାତ କରିଥିଲେ । ଆଲୋଚନାରେ ରଜା ପ୍ରଜାମଣ୍ଡଳର କୌଣସି ପ୍ରସ୍ତାବକୁ ଗୁରୁତ୍ୱ ନଦେବାରୁ ଏବଂ ପ୍ରଜାମଣ୍ଡଳ ନେତୃବର୍ଗଙ୍କ ପ୍ରତି କୁତ୍ସିତ ବ୍ୟବହାର ଫଳରେ ପ୍ରଜା ମଣ୍ଡଳ ନେତୃମଣ୍ଡଳୀ ବୈଠକ ବର୍ଜନ କରିଥିଲେ । ଏହି ଖବର ଢେଙ୍କାନାଳ ରାଜ୍ୟରେ ବିଦ୍ୟୁତ୍ ବେଗରେ ପ୍ରଚାରିତ ହୋଇଗଲା । ରାଜା ଶଙ୍କର ପ୍ରତାପଙ୍କର ଅପାରଗତା ଏବଂ ହୀନ ଉଦ୍ଦେଶ୍ୟ ପଦାରେ ପଡ଼ିଗଲା । ରାଜ୍ୟ ବାସୀଙ୍କର ରାଜାଙ୍କ ପ୍ରତି ଯେଉଁ ଘୃଣ୍ୟ ଧାରଣା ଥିଲା ତାହା ସେମାନଙ୍କ ମନରେ ଦୃଢ଼ିଭୁତ ହୋଇଗଲା ।

ସେହିଦିନଠାରୁ ଢେଙ୍କାନାଳ ରାଜ୍ୟାକାଶରେ ଅଶୁଭ ଧୂମକେତୁ ଦେଖା ଦେଇଥିଲା । ପ୍ରଜାମାନଙ୍କର ବହୁବିଧ ସମସ୍ୟା ନେଇ ପ୍ରଜାମଣ୍ଡଳ ନେତୃ ମଣ୍ଡଳୀ ମାନଙ୍କ ମଧ୍ୟରେ ଘମାଘୋଟ ଆଲୋଚନା ନାନା ତର୍କ ବିତର୍କ ଲାଗି ରହୁଥିବା ବେଳେ ଯୁବକ ମାନଙ୍କର ରକ୍ତ ଗରମ ହୋଇ ଉଠୁଥାଏ । ରାଜ ଉଆସ ଉପରେ ସମସ୍ତେ ପ୍ରତିଶୋଧ ପରାୟଣ ହୋଇ ଉଠୁଥାନ୍ତି । ପ୍ରଜା ମଣ୍ଡଳ କାର୍ଯ୍ୟାଳୟ ସରଗରମ ହୋଇ ଉଠୁଥାଏ । ରାତି ତୃତୀୟ ପ୍ରହର । ଅନ୍ଧକାରରେ ମୁହଁକୁ ମୁହଁ ଦେଖା ଯାଉ ନଥାଏ । ପ୍ରଜାମଣ୍ଡଳ କାର୍ଯ୍ୟାଳୟ ମଧ୍ୟରେ ଘମାଘୋଟ ଆଲୋଚନା ଚାଲିଥାଏ । ହଠାତ୍ ଇଂରେଜ ଫୌଜମାନଙ୍କର ଠକ୍ ଠକ୍ ଶବ୍ଦ ଶୁଭିଲା । କବାଟ ଖୋଲିଲା ପରେ ଫଉଜ ପ୍ରବେଶ କରି କିଛି ନେତା ମାନଙ୍କୁ ଗିରଫ କରି ନେଇଗଲେ । ଏହି ସହରର ଚାରି ପାଞ୍ଚ ଜାଗାରେ ଚଢ଼ାଉ କରି ଅନେକ ପ୍ରଜାଙ୍କୁ ଜେଲକୁ ପଠାଇ ଦେଲେ । ଆରମ୍ଭ ହେଲା ରାଜାଙ୍କର ପ୍ରଜାମାନଙ୍କ ପ୍ରତି ଦମନ ଲୀଳା । ଉଦ୍ଦେଶ୍ୟମୂଳକ ଭାବେ ଘର ଖାନ ତଲାସ କରାଗଲା । ଆଇନ୍ ନାହିଁ, ଶାସନ ନାହିଁ । ଗୁହାରୀ କରିବେ କାହାକୁ । ଆଖି ଲୁହ ଆଖିରେ ମରିଯାଏ । ରାଜାର ଆଇନ୍ ରଜାର ମୁହଁରେ । ଢେଙ୍କାନାଳ ଗଡ଼ଜାତର ଅନ୍ଧାରୀ ଶାସନକୁ ମୁଣ୍ଡପାତି ସହିନେବା ବ୍ୟତୀତ ନିରୀହ ପ୍ରଜାମାନଙ୍କର ଉପାୟ ବା କ'ଣ ଥିଲା । ସହରସାରା ଇଂରେଜୀ ଫଉଜରେ ପରିପୂର୍ଣ୍ଣ ।

ଏହି ଗିରଫଦାରୀ ଖବର ଗାଁ ଗଣ୍ଡାକୁ ରାତାରାତି ପ୍ରଚାର ହୋଇ ଗଲା । ଗାଁ ଗାଁରେ ଶଙ୍ଖ ବାଜି ଉଠିଲା । ଫଳରେ ସମସ୍ତେ ଚେତେଇ ଉଠିଲେ । ହାତରେ କପିଳାସିଆ ଠେଙ୍ଗା ଏବଂ ନିଆଁହୁଳା । ସମସ୍ତେ ହୁରି ପକାଇଲେ :-

| | |
|---|---|
| ଗାଁ ଗାଁ କରେ | ହୁଅରେ ଠୁଳ |
| ଡ଼ାକ ଦେଇଛି | ପ୍ରଜାମଣ୍ଡଳ |

ଗଡ଼ ଢେଙ୍କାନାଳେ ହୁଅରେ ଠୁଳ

ଡ଼ାକ ଦେଇଅଛି ପ୍ରଜାମଣ୍ଡଳ ।

ଇତ୍ୟାଦି ଇତ୍ୟାଦି

ଗାଁ ଭାର କିଛି ଭେଣ୍ଡିଆ ଟୋକାଙ୍କୁ ଦେଇ ସମସ୍ତେ ରାତା ରାତି ଚାଲି ଆସିଲେ ଗଡ଼ ଢେଙ୍କାନାଳକୁ । ଏହାଥିଲା ପ୍ରଜାମଣ୍ଡଳର ଡାକରା ।

ରାତି ପାହିଲା ବେଳକୁ ଢେଙ୍କନାଳ ରେଳ ଷ୍ଟେସନଠାରୁ ଅଳସୁଆ ହାଟତୋଟା ପର୍ଯ୍ୟନ୍ତ ପ୍ରାୟ ୫୧ ହଜାର ଲୋକଙ୍କ ସମାଗମ । ସେଦିନ ତା ୧୨-୯-୧୯୩୮ ମସିହା । ରାଜରାସ୍ତା ଲୋକାରଣ୍ୟ । ରାଜ ଉଆସ ଆଡ଼କୁ ସମସ୍ତେ ଅଗ୍ରସର ହେଉଥାନ୍ତି । ସମସ୍ତଙ୍କ ମୁହଁରେ ଗୋଟିଏ କଥା "ରାଜଉଆସ ଭଙ୍ଗାହେବ" ।

ଠିକ୍ ଏହି ସମୟରେ କିଛି ସପାହି, କିଛି ଇଂରେଜ ଫଉଜ ଏବଂ ଆଉକିଛି ପେଷ୍କାର, ରେଞ୍ଜର ଇତ୍ୟାଦିଙ୍କୁ ରାଜା ଗୁଳି ଗୁଳା ସହ ହାଟତୋଟାକୁ ପଠାଇ ଥିଲେ । ଏହା ଥିଲା ଆଉ ଏକ ଜାଲିଆନ ବାଗ ବିଭତ୍ସ ହତ୍ୟା କାଣ୍ଡର ଦ୍ୱିତୀୟ ଐତିହାସିକ ଘଟଣା । ହାତୀ ଉପରେ ମାହୁନ୍ତ ସବାର ହୋଇ ହୁକମ୍ ଦେଲା ଲୋକମାନଙ୍କୁ ଦଳି ଚକଟି ମାରି ଦେବା ପାଇଁ । କିନ୍ତୁ ହାତୀ ପଶୁ ହେଲେ ମଧ ତାର ବିବେକ ଥିଲା ମହାନ । ହାତୀ ମାରିବାକୁ ମନାକଲା । ଜନ ସମୁହକୁ ଥୋଡ଼ ଟେକି ସମ୍ମାନ ଜଣାଇଲା । ମାହୁନ୍ତ କଥା ମାନିଲା ନାହିଁ । ହାତୀ ପଛଘୁଞ୍ଚା ଦେଇ ଚାଲିଗଲା । ଅମଣିଷ ସିପାହି ମାନେ ଗୁଳି ଗୁଳା ବର୍ଷଣ କରି ଲୋକଙ୍କୁ ଭୟଭୀତ କରାଇଲେ ।

ଢେଙ୍କାନାଳ ସହରବାସୀ ପ୍ରଜାମଣ୍ଡଳ ଆନ୍ଦୋଳନରେ ଆସିଥିବା ଜନସାଧାରଣ ମାନଙ୍କୁ ଆତିଥ୍ୟ ଦେଖାଇବା ସଙ୍ଗେ ସଙ୍ଗେ ଆଲୋଚନାରେ ସାମିଲ ହୋଇଥିଲେ । ବାହାରୁ ଆସିଥିବା ସଂଗ୍ରାମୀ ମାନଙ୍କ ପାଇଁ ସେମାନେ ଖାଇବାର ବନ୍ଦୋବସ୍ତ ମଧ କରିଥିଲେ । ଶଗଡ଼ ଗାଡ଼ିରେ ଭାତ ଓ ଡାଲାମା ନେଇ ହାଟ ତୋଟାରେ ସଂଗ୍ରାମୀ ମାନଙ୍କୁ ଖାଇବାକୁ ଦେଇଥିଲେ । ଏହାଥିଲା ଢେଙ୍କାନାଳ ବାସୀଙ୍କର ପ୍ରଜାମଣ୍ଡଳ ଆନ୍ଦୋଳନ ପ୍ରତି ସ୍ୱତଃପ୍ରୁତ ସହଯୋଗ । ଫଳରେ ସଂଗ୍ରାମୀ ମାନଙ୍କର ମନୋବଳ ବୃଦ୍ଧି ପାଇଥିଲା । ତେଣୁ ସଂଗ୍ରାମୀ ମାନେ ରାଜ ଉଆସକୁ ଭାଙ୍ଗିବା ପାଇଁ ଅଗ୍ରସର ହେଲେ । ସମୁଦ୍ରର ଲହଡ଼ି ପରି ସେମାନଙ୍କ ମନରେ ରାଜଉଆସ ଭାଙ୍ଗିବାର ଲହଡ଼ି ତୋଳିଲା । ରାଜଉଆସର ସିଂହଦ୍ୱାର ଠାରୁ ଖେଳ

ପଡ଼ିଆ ପର୍ଯ୍ୟନ୍ତ ଜନସମୁଦ୍ର, ସଭିଙ୍କ ମୁହଁରେ ଗୋଟିଏ ଶବ୍ଦ "ଇନ୍‌କଲାବ, ଜିନ୍ଦାବାଦ" "ଆମ ନେତାଙ୍କୁ ଖଲାସ କର" ନଚେତ୍ ଗାଦି ଛାଡ଼, ରେ ଗଗନ ପବନ ପ୍ରକମ୍ପିତ ହେଉଥାଏ ।

ଏହି ଧ୍ୱନି ରାଜ ପରିବାରକୁ ଭୟଭୀତ କରିଦେଲା । ରାଜ ପରିବାର ଜୀବନ ବିକଳରେ କଟକ ଚାଲିଯିବା ପାଇଁ ବିଚାର କରୁଥାନ୍ତି । କିନ୍ତୁ ରାସ୍ତା ନାହିଁ । ରଜା ଅନ୍ୟ ଉପାୟ ନପାଇ ପୂର୍ବ ସନ୍ଧ୍ୟାରେ ହାଜତରେ ରଖିଥିବା ପ୍ରଜାମଣ୍ଡଳର ନେତୃବୃନ୍ଦ ମାନଙ୍କୁ ସସମ୍ମାନେ ଖଲାସ କରିଦେଲେ । ପ୍ରିୟ ନେତାମାନଙ୍କୁ ଦେଖି ଉଆସ ଘେରାଉ କରିଥିବା ସଂଗ୍ରାମୀ ମାନେ ବିପୁଳ ସମ୍ବର୍ଦ୍ଧନା ଦେଇଥିଲେ । ପରେ ପରେ ଲୋକମାନେ ଶାନ୍ତ ହେଲେ ଏବଂ ପରବର୍ତ୍ତି କାର୍ଯ୍ୟପନ୍ଥା ନିର୍ଣ୍ଣୟ କଲେ । ସେ ଦିନର ପ୍ରଜାମଣ୍ଡଳର ପରାକାଷ୍ଠା ଇତିହାସ ପୃଷ୍ଠାରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଅଛି । 'ହାଟତୋଟା' ପ୍ରଜାମଣ୍ଡଳ ଇତିହାସର ଏକ ସ୍ମାରକୀ । ରାଜତନ୍ତ୍ର ବିରୁଦ୍ଧରେ ଏହାଥିଲା ପ୍ରଜାମଣ୍ଡଳର ଏକ ଆଶ୍ରୁତ ପର୍ବ ।

## ଢେଙ୍କାନାଳର ବୀର ଶହୀଦ୍ 'ବାଜି ରାଉତ' :-

ଭୂବନ ଗ୍ରାମ । ପ୍ରଜାମଣ୍ଡଳ ଆନ୍ଦୋଳନର ପ୍ରାଣକେନ୍ଦ୍ର । ଏହା ଗୋଟିଏ ବଡ଼ ଗାଁ । ଜନବସତି ପ୍ରାୟ ସାତ ହଜାର । ଏହି ଗାଁର ଶହେଭାଗ ଲୋକ ପ୍ରଜାମଣ୍ଡଳର ସମର୍ଥକ । ଏହି ଗାଁ ଥିଲା ବ୍ୟବସାୟର କେନ୍ଦ୍ରସ୍ଥଳୀ । ଏହା ଉପରେ ଆଖପାଖ ୨୦/୩୦ ଖଣ୍ଡ ଗାଁର ଲୋକ ମାନେ ନିର୍ଭର କରୁଥିଲେ । ଏହି ଭୂବନ ବଜାର ପ୍ରଜାମଣ୍ଡଳ ଆନ୍ଦୋଳନର ମୂଖ୍ୟ ପୀଠ ରୂପେ ବିଦିତ ଥିଲା । ଗାଁର ଲୋକମାନେ ସାଧାରଣତଃ ମେଳାପି ଥିଲେ ଓ ସେମାନେ ପିଲାରୁ ଲଢୁଆ । ଗାଁର ସର୍ବରାକାର, ଗାଁ ପଧାନ ଏବଂ ଲାଖରାଜଦାର ମାନେ ମଧ୍ୟ ପ୍ରଜାମଣ୍ଡଳ ସବୁ ଦିଗରୁ ସାହାର୍ଯ୍ୟ କରୁଥାନ୍ତି । ଗାଁର ହାତଗଣତି କେତେଜଣ ରାଜା ଶଙ୍କର ପ୍ରତାପଙ୍କର ସମର୍ଥକ ଥିଲେ ମଧ୍ୟ ସେମାନେ ପ୍ରଜା ମଣ୍ଡଳକୁ ବିରୋଧ କରୁ ନଥିଲେ ।

ଏହି ଗ୍ରାମଟି ଆୟତନରେ ବଡ଼ ଥିବା ହେତୁ ଏହାକୁ ବାରଗୋଟି ପାଟଣାରେ ବିଭକ୍ତ କରାଯାଇଥିଲା । କଥାରେ କହନ୍ତି ବାରପାଟଣା ଭୁବନ । ବ୍ରାହ୍ମଣ ସାହିଟି ବାର ପାଟଣା ଠାରୁ ଅଲଗା । ଜାତିଗତ ଦୃଷ୍ଟିରୁ ପ୍ରାୟ ସବୁଜାତିର ଲୋକ ଏଠାରେ ଦେଖାଯାନ୍ତି । ସବୁ ପାଟକର କୋଠ ଥାଏ ଏବଂ ବ୍ରାହ୍ମଣ ଶାସନରେ ଗୋଟିଏ ଭାଗବତ ଟୁଙ୍ଗି ଥାଏ । ଗାଁରେ ଉପ୍ରାସ୍କୁଲ ତହସିଲ, ଥାନା, ଡାକ୍ତର ଖାନା, ଦୈନିକ ହାଟ ମଧ୍ୟ ଅଛି । ଗ୍ରାମର

ଏକତା ଦୃଷ୍ଟିରୁ ପ୍ରତି ପାଟଣାରେ ଲୋକ ଏକତ୍ରିତ ହୋଇ ଭଲ ମନ୍ଦ ଆଲୋଚନା କରିବା ସଙ୍ଗେ ସଙ୍ଗେ ପ୍ରଜାମଣ୍ଡଳ ବିଷୟରେ ମଧ ଆଲୋଚନା କରାଯାଇଥାଏ । ବିପ୍ଳବର ପୀଠ ହେଉଛି ଏହି ଗାଁ । ଆଦ୍ୟରୁ ରାଜତନ୍ତ୍ରକୁ ବିରୋଧ କରିଆସିଛି ଏ ଗାଁ । ଶଙ୍ଖ ବାଜିଲେ ସମସ୍ତେ ବିଭିର୍ଣ୍ଣ ଧରଣର ଅସ୍ତ୍ର ଧରି ଏକତ୍ରିତ ହୁଅନ୍ତି । ଲୋକମାନେ ସଦାସର୍ବଦା ଯାଗ୍ରତ । ଗାଁଟି ପ୍ରାକୃତିକ ପରିବେଶ ଦ୍ୱରା ସୁସଜ୍ଜିତ । ପୂର୍ବରେ ପାଣ୍ଡରା ଓ ରଗଡ଼ି ନାଳ, ପଶ୍ଚିମରେ ବିସ୍ତାର୍ଣ୍ଣ ଶସ୍ୟ କ୍ଷେତ୍ର ପରେ ପରେ ସବୁଜ ଜଙ୍ଗଲ । ଉତ୍ତର ଦିଗରେ ହରିତ ପାହାଡ଼ ପ୍ରାଚୀର ସଦୃଶ । ଦକ୍ଷିଣ ଦିଗରେ ଚିରସ୍ରୋତା ସ୍ୱତସ୍ୱନୀ ବ୍ରାହ୍ମଣୀ ଐତିହାସିକ ଏବଂ ପୌରାଣିକ ଘଟଣାବଳୀକୁ ନେଇ ପ୍ରବାହିତା । ଗାଁଟିର ପ୍ରାକୃତିକ ସୌନ୍ଦର୍ଯ୍ୟ, ଶସ୍ୟ ଶାମଳା ପରିବେଶ ବେଶ୍ ମନୋରମ । ଭରତୀ ପାହାଡ଼ ଗାଁର ପ୍ରାଚୀର ସଦୃଶ ଦଣ୍ଡାୟମାନ । ପ୍ରାକୃତିକ ବିଭବ ହିଁ ଭୂବନର ସୁରକ୍ଷାର ବଳୟ । ପ୍ରାକୃତିକ ଶୋଭା ସଙ୍ଗେ ସଙ୍ଗେ ଗାଁ ର ଶାନ୍ତ ବାତାବରଣ ଗ୍ରାମର ସୌନ୍ଦର୍ଯ୍ୟକୁ ଅଧିକ ପରିବୃଦ୍ଧି କରାଇ ଥାଏ । ଭୂବନ ଏତେ ପ୍ରାକୃତିକ ସୌନ୍ଦର୍ଯ୍ୟ ଭରପୂର ଯେ ଭୂବନ ଗ୍ରାମକୁ ମୋହିନୀ କୁହାଯାଇପାରେ ।

ଏହାଥିଲା ୧୦-୧୧-୧୯୩୮ ମସିହା ମାଜିଷ୍ଟ୍ରେଟ ବିନୟ ଘୋଷଙ୍କ ନେତୃତ୍ୱରେ ପ୍ରାୟ ୨୦ ଜଣ ପୋଲିସ ଫୌଜ ଏହି ଭୂବନ ଗ୍ରାମରେ ଦମନଲୀଳା ଚଳାଇବାକୁ ବ୍ରାହ୍ମଣୀର ଉପର ମୁଣ୍ଡରେ ଚଷାପଡ଼ା ଘାଟରୁ ଆସି ଭୂବନର ସୁଲେଇପାଳ ତୋଟା ଘାଟରେ ଡ଼ଙ୍ଗା ରଖି ରାତ୍ରିର ଦ୍ୱିତୀୟ ପ୍ରହର ବେଳକୁ ଭୂବନ ଗାଁ ଭିତରକୁ ପ୍ରବେଶ କଲେ । ଗାଁ ଭିତର ଦେଇ ଯିବା ସମୟରେ ସେମାନେ ଖୁବ ସତର୍କତା ଅବଲମ୍ବନ କରୁଥିଲେ । କାରଣ ଭୂବନ ପ୍ରଜାଙ୍କୁ ସେମାନଙ୍କର ଖୁବ୍ ଭୟଥିଲା । ସେହି ଅନ୍ଧାର ରାତିରେ ଯାଇ ସେମାନେ ଥାନାରେ ପହଞ୍ଚିଲେ । ଗାଁ ମୁଣ୍ଡରେ ଏକ ଅପନ୍ତରିଆ ଅଞ୍ଚଳରେ ଥାନା । ରାତିହେଲେ ସେ ନିର୍ଜ୍ଜନ ଅଞ୍ଚଳକୁ କେହି ଯାଆନ୍ତି ନାହିଁ । ଆକାଶ ମେଘୁଆ । ବର୍ଷା ଝିପି ଝିପି ପଡୁଥାଏ । ନିଗୋଢ ଅନ୍ଧାର ଭିତରେ ବିଜୁଳି ବାଟ ଦେଖାଉ ଥାଏ । ପାଗର ପ୍ରତିକୂଳ ଯୋଗୁଁ ଲୋକମାନେ ରାତ୍ରିର ପ୍ରଥମ ପ୍ରହରରୁ ଶୋଇ ପଡ଼ିଥିଲେ । ସେହି ରାତ୍ରି ଥିଲା ଭୂବନବାସୀଙ୍କ ପାଇଁ କାଳରାତ୍ରି । କିଏ ବା ଜାଣିଥିଲା ସେହି ରାତିରେ ଏତେବଡ଼ ଅଘଟଣ ଘଟିଯିବ ବୋଲି ।

ସ୍ୱାଧୀନଚେତା ଭୂବନର ଅଧିବାସୀମାନେ ଥିଲେ ରଜାଙ୍କର ଚିରଶତ୍ରୁ । ଭୂବନ ପ୍ରଜାମାନଙ୍କର କ୍ଷତି ଘଟାଇବା ରାଜବଂଶର ପରମ ଲକ୍ଷଥିଲା । ଏହା ବହୁକାଳୁ ରହିଆସିଅଛି । ତେଣୁ ରାଜା ଭୂବନକୁ ବାର ଭାଗରେ (ବାର ପାଟଣା) ବିଭକ୍ତ କରି ଦେଇଥିଲେ ବୋଲି

ଶୁଣାଯାଏ । ପୂର୍ବ ମାସରେ ଢେଙ୍କାନାଳରେ ଘଟି ଯାଇଥିବା ପ୍ରଜାମଣ୍ଡଳ ଆନ୍ଦୋଳନର ଭୟ ରାଜ ପରିବାର ନିକଟରୁ ଛାଡି ନଥାଏ । ତେଣୁ ଭୂବନ ବାସୀଙ୍କୁ ଭୟ ଦେଖାଇବା ପାଇଁ ରାଜା ବେଆଇନ ପରୁଓ୍ୱାନାରେ ଲୋକଙ୍କୁ  ଗିରଫ କରିବା ପାଇଁ ଆଦେଶ ଦେଇଥାନ୍ତି । ସାଙ୍ଗରେ ଥାନ୍ତି ଥାନାବାବୁ ମିଥ୍ୟା ଅଭିଯୋଗରେ ଅଭିଯୁକ୍ତ ମାନଙ୍କୁ ଗଛକଟା, ଆଇନ ଅବମାନନା, ପ୍ରଜାମଣ୍ଡଳକୁ ସମର୍ଥନ, ଅନାଦେୟ  ଖଜଣା  ଇତ୍ୟାଦି ଏହିପରି କିଛି ମିଥ୍ୟା ଘଟଣାର ବାହାନା ଦେଖାଇ ଲୋକଙ୍କୁ ଗିରଫ କରିବା ପାଇଁ ରାଜାର ନିର୍ଦ୍ଦେଶରେ ମାଜିଷ୍ଟ୍ରେଟଙ୍କ ସହିତ କିଛି ରାଜକର୍ମଚାରୀ କିଛି ଫଉଜ ରାଜରାସ୍ତାକୁ ବାହାରି ପଡ଼ିଲେ ।

ଅର୍ଦ୍ଧରାତ୍ରରେ ଘରେ ଶୋଇଥିବା ନିରୀହ ଲୋକଙ୍କୁ ନିଦରୁ ଉଠାଇ ନର୍ଦ୍ଦୋଷରେ ଜଣେ ନୁହେଁ ଆଠ ଜଣଙ୍କୁ ଗିରଫ କଲେ । କିଛି ଦୋଷ ନଥିଲା ତାଙ୍କର । ଜବରଦସ୍ତ ସେମାନଙ୍କୁ ବାନ୍ଧି ଆଣିଲେ ଥାନାକୁ । ଘରେ ଥିବା ଅନ୍ୟାନ୍ୟ ପୁରୁଷ ଏବଂ ମହିଳା ମାନଙ୍କୁ ନିସ୍ଠୁର ମାଡ଼ ମାରିଲେ । ପରେ ପରେ ଘରମଣିଷଙ୍କ ଚିତ୍କାରରେ ସାହି ପଡ଼ିଶାଙ୍କ ନିଦ ଭାଙ୍ଗି ଗଲା । ସମସ୍ତେ ଚେଇଁ ଉଠିଲେ । କିଛି ପ୍ରଜା ମଣ୍ଡଳ କର୍ମୀଙ୍କର ଶଙ୍ଖ ଧ୍ୱନୀରେ ଭୂବନର ହଜାର ହଜାର ଲୋକ ଚେଇଁ ଉଠିଲେ । ହାତରେ ମାରଣାସ୍ତ୍ର ମାନଧରି ବାହାରି ପଡ଼ିଲେ । ଭୂବନ ଗ୍ରାମର ଆବାଳ ବୃଦ୍ଧ ବନୀତା ଶଯ୍ୟା ତ୍ୟାଗ କରି ଦାଣ୍ଡ ଦୂଆରକୁ ବାହାରି ପଡ଼ିଲେ । ସମଗ୍ର ଗାଁକୁ ପ୍ରତିଧ୍ୱନିତ କରୁଥାଏ "ପ୍ରଜାମଣ୍ଡଳ ଜିନ୍ଦାବାଦ" । ହଜାର ହଜାର ଲୋକ ଆସି ଥାନାକୁ ଘେରାଉ କଲେ । ସମଗ୍ର ଗାଁର ଲୋକମାନେ ଏକଜୁଟ ହୋଇଗଲେ । ସମସ୍ତଙ୍କ ମୁହଁରେ ପ୍ରତିବାଦର ସ୍ୱର । ଲୋକଙ୍କୁ ଘଉଡାଇବା ପାଇଁ ଥାନା ଭିତରୁ ଲୋକ ମାନଙ୍କ ଉପରକୁ ଗୁଳି ଚଳାଗଲା । ଗୁଳି ବର୍ଷଣ ଫଳରେ ଗୁଳିର ଶିକାର ହେଲେ ରଘୁନାୟକ ଓ ଗୁରି ନାୟକ । ଶହ ଶହ ଲୋକ ରକ୍ତାକ୍ତ ହେଲେ । ହଠାତ୍ ଲୋକମାନେ ପଛଘୁଞ୍ଚା ଦେଲେ । ଲୋକଙ୍କ ମଧ୍ୟରେ ବିଚାର ବିମର୍ଷ ହେଲା, କିପରି ଭାବରେ ସିପାହି ଗୁଳିର ମୁକାବିଲା କରାଯିବ । ବିଚାର ବିମର୍ଶ ପାଇଁ ବୁଦ୍ଧିଜୀବୀ ଏବଂ ପୁରଖା ଲୋକ ମାନଙ୍କ ମଧ୍ୟରେ ସଭା ବସିଲା ।

ଏହି ସୁଯୋଗ ନେଇ ରାଜ ପଲଟଣ ମାନେ ପ୍ରାଣ ଭୟରେ ନିଜିଗଡ଼କୁ ପଳାଇ ଆସିବା ପାଇଁ ବିଚାର ବିମର୍ଷ କଲେ । ଯାହା ହେଲେବି ନିଜିଗଡ଼କୁ ଆସିବାକୁ ହେଲେ ବ୍ରାହ୍ମଣୀ ନଦୀ ପାରି ହେବାକୁ ହେବ । ଯଦି ବିଳମ୍ବ ହୁଏ ତାହହେଲେ ବିଦ୍ରୋହୀ ମାନେ ମାଜିଷ୍ଟ୍ରେଟଙ୍କ ସହ ସମସ୍ତ ସିପାହୀ ମାନଙ୍କୁ ଜୀବନରେ ମାରିଦେବେ । ତେଣୁ ଥାନା ବାବୁଙ୍କ

ପରାମର୍ଶ କ୍ରମେ ପ୍ରାଣ ବିକଳରେ ସେମାନେ ଭୂବନରୁ ନୀଳକଣ୍ଠ ପୁର ବ୍ରାହ୍ମଣୀ କୂଳକୁ ଆସିଲେ । ସେହିଠାରୁ ମନ୍ଦାର ବାଟ ଦେଇ ନିଳିଗଡ଼କୁ ଚାଲିଯିବେ । ଏହି ଭାବନାରେ ବଶବର୍ତ୍ତୀ ହୋଇ ସେମାନେ ଆସି ବ୍ରାହ୍ମଣୀକୂଳ ନିଳକଣ୍ଠପୁର ଘାଟରେ ପହଞ୍ଚି ଗଲେ । ନୀଳକଣ୍ଠପୁର ନଈ ଘାଟ ପ୍ରଜାମଣ୍ଡଳର ଚାବିକାଠି । ସେତେବେଳକୁ ରାତି ପାହିପାହି ଆସିଲାଣି ।

ଭୂବନ ଲୋକମାନଙ୍କର ବିଚାର ବିମର୍ଶପରେ ମାଜିଷ୍ଟ୍ରେଟ ଏବଂ ତାଙ୍କ ସହିତ ଥିବା ରାଜ ପଲଟଣ ମାନଙ୍କୁ ଜୀବନରେ ମାରିଦେବା ପାଇଁ ଥାନା ଆଡ଼କୁ ମୁହାଁଇଲେ । ପ୍ରଥମେ ଥାନା ଉପରେ ଆକ୍ରମଣ କରାଯିବ । ଥାନାରେ ପହଞ୍ଚି ଦେଖିଲେ ଥାନା ଜନଶୂନ୍ୟ । ଖବର ପାଇଲେ ଯେ ଫଉଜ ଦଳ ମଣିପୁର ବାଟଦେଇ ନିଳକଣ୍ଠପୁର ନଈ ଘାଟକୁ ଚାଲି ଯାଇଛନ୍ତି । ଏହା ଶୁଣିବା ମାତ୍ରେ ହଜାର ହଜାର ଭୂବନ ବାସୀ "ଇନକିଲାବ ଜିନ୍ଦାବାଦ" ଧ୍ୱନିଦେଇ ଦେଇ ନୀଳକଣ୍ଠପୁର ନଈଘାଟ ଆଡ଼କୁ ଅଗ୍ରସର ହେଲେ । ସେମାନଙ୍କର ଗୋଟିଏ ଲକ୍ଷଥିଲା ନିର୍ଦ୍ଦୋଶରେ ଗିରଫ ହୋଇଥିବା ଗ୍ରାମବାସୀଙ୍କୁ ଛାଡି ଦିଅନ୍ତୁ ଏବଂ ପରେ ପରେ ଫଉଜଙ୍କୁ ହତ୍ୟା କରାଯିବ ।

ଭୂବନ ଗ୍ରାମବାସୀ ମାନେ ପହଞ୍ଚିଗଲେ ନୀଳକଣ୍ଠ ପୁର ଗାଁ ମୁଣ୍ଡରେ । ପ୍ରଜା ମଣ୍ଡଳର ଶଙ୍ଖ ଧ୍ୱନିରେ ପ୍ରକମ୍ପିତ ହେଉଥିଲା ସେ ଅଞ୍ଚଳ । ନୀଳକଣ୍ଠପୁର ଗୋଟିଏ ନଈ କୂଳିଆ ଛୋଟିଆ ଗାଁ । ଗାଁର ଲୋକମାନେ ପ୍ରାୟ କୃଷିଜୀବୀ । ସେମାନଙ୍କ ମଧ୍ୟରେ କେତୋଟି ପରିବାର ଥାନ୍ତି ନାଆବାହି ନିଜର ପରିବାର ପୋଷଣ କରିଥାନ୍ତି । କିନ୍ତୁ ଗାଁର ଅନ୍ୟମାନେ କିଛି ଲୋକ ମଧ୍ୟ ନାଆ ବାହି ପାରନ୍ତି । ସେ ଦିନ ନଈରେ ଅଦିନିଆ ପାଣି । ନଈ ଦୁଇକୂଳ ଖାଇ ଚାଲିଥାଏ । ପୂର୍ବଦିଗ ସିନ୍ଦୁରା ଆଭାଷ ଦେଉଥାଏ ।

ପ୍ରଜା ମଣ୍ଡଳର ଆଦେଶ ଥିଲା ଘାଟଠାରୁ ଦୂରେଇ ଡ଼ଙ୍ଗାକୁ ଲୁଚାଇ ରଖିବାକୁ । ଯେପରି ରାଜାର ସିପାହି ଏବଂ ଦଲାଲମାନେ ନଦୀ ପାରିହୋଇ ନପାରନ୍ତି । ସେଥିପାଇଁ ମଧ୍ୟ ନଜର ରଖାଯାଇଥିଲା । ପ୍ରଜାମଣ୍ଡଳର ସ୍ୱେଚ୍ଛାସେବକ ମାନଙ୍କ ସଙ୍ଗେ ରାତିରେ ଡ଼ଙ୍ଗା ଜଗି ଶୋଇବ ବୋଲି ମା' ସାଙ୍ଗରେ ଅଳିକରି ଆସିଛି । ନଦୀ ଘାଟରେ ଡ଼ଙ୍ଗା ଜଗି ଶୋଇଛି ବାର ବରଷର ବୀର ବାଳକ ବାଜି ରାଉତ । ସଙ୍ଗରେ ତାର ଅଛନ୍ତି ପ୍ରଜାମଣ୍ଡଳର କିଛି ସାଙ୍ଗ ।

ମାଜିଷ୍ଟ୍ରେଟ ବିନୟ ଘୋଷଙ୍କ ସହିତ ରାଜ ପଲଟଣ ମାନେ ପହଞ୍ଚି ଗଲେ ନୀଳକଣ୍ଠ ପୁର ନଈ ଘାଟରେ । ଦେଖିଲେ ଘାଟରେ ଡ଼ଙ୍ଗାନାହିଁ । ପ୍ରାୟ ଏକ ମାଇଲ ଓସାରର ବିରାଟ ବ୍ରାହ୍ମଣୀ ନଦୀ । ଦୁଇ କୂଳଖାଇ ନଦୀ ସ୍ରୋତ ଛୁଟିଛି । ରାତି ପାହିପାହି ଆସୁଥିବା ହେତୁ ଅଳ୍ପ ଦୂରରେ ଲୁଚାଇ ଦିଆ ଯାଇଥିବା ଡ଼ଙ୍ଗାଟି ଦେଖିବାକୁ ମିଳିଲା । ସାଙ୍ଗରେ ଥିବା ଗ୍ରାମ ଦଲାଲ ଡ଼ଙ୍ଗା ନିକଟକୁ ସିପାହି ମାନଙ୍କୁ ବାଟ କଢାଇ ନେଲା । ସିପାହିମାନେ ଉଛନ୍ନ ହେଉଥିଲେ ତୁରନ୍ତ ନଦୀ ପାର ହୋଇ ଯିବାକୁ । କାରଣ ହଜାର ହଜାର ସଂଖ୍ୟାରେ ଭୂବନ ଲୋକ ପ୍ରଜାମଣ୍ଡଳ ଧ୍ୱନି ଦେଇ ମାଡ଼ି ଆସୁ ଥାନ୍ତି ନୀଳକଣ୍ଠପୁର ନଈ ଘାଟକୁ । ସିପାହି ମାନେ ଫାଙ୍କା ଗୁଳି ଚଳାଇ ଚଳାଇ ପଛରୁ ଆସୁଥିବା ଲୋକ ମାନଙ୍କୁ ଭୟଭିତ କରାଇ ଆସୁଥିଲେ ।

ଜନକୋଳାହଳ ଏବଂ ଗୁଳିଗୁଳା ଶବ୍ଦରେ ଡ଼ଙ୍ଗାରେ ଶୋଇଥିବା ବାଜି ରାଉତ ଓ ଅନ୍ୟାନ୍ୟ ସ୍ୱେଚ୍ଛାସେବକ ମାନଙ୍କର ନିଦ ଭାଙ୍ଗି ଯାଇଥିଲା । ଡ଼ଙ୍ଗାକୁ କୂଳରେ ଲଗାଇବା ପାଇଁ ନରହନ୍ତା ସିପାହିମାନେ ବ୍ୟାକୁଳ ହୋଇ ଗର୍ଜନ କରୁଥାନ୍ତି । ଅନ୍ୟମାନଙ୍କ ସାଙ୍ଗରେ ବାଜି ରାଉତ କୃଦ୍ଧ ସିଂହଭଳି ଅନ୍ୟମାନଙ୍କ ସଙ୍ଗରେ ବୀର ବାଳକ ପରି ଛିଡା ହୋଇଥାଏ । ଆଖିରେ ତାର ନିଆଁର ଝଲକ, ବୁକୁରେ ତାର କ୍ରୋଧର ଝଡ଼ । ନରହନ୍ତା ସିପାହୀ ମାନେ ଯେତେବେଳେ ଗର୍ଜନ କରି ଉଠିଲେ ଏବଂ କହିଲେ "କୂଳକୁ ଡ଼ଙ୍ଗା ଆଣ, କୂଳକୁ ଡ଼ଙ୍ଗା ଆଣ" । ସେତେବେଳେ ବାଜି ରାଉତ ସ୍ୱେଚ୍ଛାସେବକ ଓ ବାନର ସେନାଙ୍କ ସାମ୍ନାକୁ ଚାଲିଆସି ଗର୍ଜନକରି ଉଠିଲା "ପ୍ରଜା ମଣ୍ଡଳର ଆଦେଶ – ଡ଼ଙ୍ଗା ଦେବିନାହିଁ" ଏହିପରି ଯେତେଥର ସିପାହି ମାନେ ଗର୍ଜନ କରି କହୁଥାନ୍ତି "କୂଳକୁ ଡ଼ଙ୍ଗା ଆଣ" ବାଜି ରାଉତ ପ୍ରତିଥର ଗର୍ଜନ କରି କହୁଥାଏ "ପ୍ରଜାମଣ୍ଡଳର ଆଦେଶ ଡ଼ଙ୍ଗା ଦେବିନାହିଁ" । ବାଳକର ସାହସ ଦେଖି ସିପାହୀମାନେ କହିଲେ, ଡ଼ଙ୍ଗା ନଆଣିଲେ ଆମେ ତୋତେ ଗୁଳି କରି ଉଡ଼ାଇଦେବୁ । "ସାବଧାନ - ଡ଼ଙ୍ଗା କୂଳକୁ ଆଣ" । ବାଜି ରାଉତ କ୍ରୋଧରେ ଉତ୍ତେଜିତ ହୋଇ କହିଲା – "ଆରେ ରଖ ତୋ ଗୁଳି, ତୁମେ ହେଉଛ ଅତ୍ୟାଚାରୀ ରାଜାର ପୋଷା କୁକୁର । ତୁମ୍ଭେମାନେ ନରହନ୍ତା, ମୁଁ ଡ଼ଙ୍ଗା ନେବି ନାହିଁ" ।

ସେତିକି ବେଳକୁ ହଜାର ହଜାର ସଂଖ୍ୟାରେ ଭୂବନ ଗ୍ରାମବାସୀ ନଦୀ କୂଳରେ ପହଞ୍ଚି ଯାଇ ଥାନ୍ତି । ନଈ କୂଳରେ ସିପାହି ମାନଙ୍କ ସହ ଚାଲିଲା ଧସ୍ତାଧସ୍ତି । ନୀଳକଣ୍ଠ ପୁର ଘାଟ ରଣ କ୍ଷେତ୍ରରେ ପରିଣତ ହୋଇଗଲା । ହଠାତ୍ ଗର୍ଜି ଉଠିଲା ଗୁଡୁମ୍ ଗୁଡୁମ୍ ଗୁଳି ଗୋଳାର ଶବ୍ଦ । କଅଁଳିଆ ବାର ବର୍ଷର ବାଳକ ବାଜି ରାଉତ ଟଳି ପଡ଼ିଲା । ଚିର ନିଦ୍ରାରେ

ଶୋଇଗଲା ବାଜି । ରକ୍ତ ଡୁବୁଡୁବୁ ଶରୀର ତାର ଯେପରି କହୁଥାଏ – ଡ଼ଙ୍ଗା - - - ଦେବି — ନାହିଁ । ତୁମ୍ଭେ - - - ମାନେ — ନର— ହନ୍ତା । ବାଜି ଟଳି ପଡ଼ିଲା ସତ କିନ୍ତୁ ନଇଁଲା ନାହିଁ । ପୁଣି ଚାଲିଲା ତୁମୂଳ ସଂଗ୍ରାମ । ସିପାହୀ ମାନେ ପ୍ରାଣ ଭୟରେ ଛାନିଆଁ ହୋଇ ଗଲେ । ପୁଣି ଗର୍ଜି ଉଠିଲା ସେମାନଙ୍କର ଗୁଳି । ଗୁଳି ମାଡ଼ରେ ସେହି ନଈ ଘାଟରେ ଟଳି ପଡ଼ିଲେ ନୀଳକଣ୍ଠ ପୁର ଗାଁର ହୁରୁଷି ପ୍ରଧାନ, ଲକ୍ଷ୍ମଣ ମଳିକ ଓ ନଟ ମଳିକ । ଗୁଳିମାନ ବାଜିଲା ନୀଳକଣ୍ଠପୁରରେ ଫଗୁସାହୁଙ୍କ କୋଳ ସନ୍ଧାରେ ଓ ପାଣୁ ଲେଙ୍କା ପେଟରେ । ଏ ଦୁଇଜଣ କଟକ ବଡ଼ ଡାକ୍ତର ଖାନାରେ ମୃତ୍ୟୁ ବରଣ କରିଥିଲେ । ଗୁଳି ମାଡ଼ ବାଜିଲା ଗଙ୍ଗା ଧର ସାହୁଙ୍କ ଡାହାଣ ଜଙ୍ଘରେ (ପରେ ଜଙ୍ଘ କଟାଗଲା ) । ଏହିପରି ଅନେକ ଲୋକ ପ୍ରାଣ ହରାଇବା ସଙ୍ଗେ ସଙ୍ଗେ ଅଙ୍ଗ ହୀନ ମଧ୍ୟ ହୋଇଗଲେ ।

ଗାଁ ଦଲାଲ ପାନ ଡ଼ଙ୍ଗାରେ ବସାଇ ଫଉଜ ଏବଂ ଅନ୍ୟ ମାନଙ୍କୁ ନଈପାର କରିଦେଲା । ନିରସ୍ତ୍ର ଜନତାଙ୍କ ଆଡ଼କୁ ଚାଲିଥାଏ ଅବିଶ୍ରାନ୍ତ ପାଲଟା ଗୁଳି । ଫଉଜ ପହଞ୍ଚିଲେ ନଈ ଆରପାରି ମନ୍ଦାର ଘାଟରେ । ରାଜ ପଲଟଣ ମନ୍ଦାର, ଷଡ଼ଙ୍ଗୀ, ଗଁଦିଆ ଦେଇ ବିଧାରପୁର ସର୍ବରାକାରଙ୍କ ଦ୍ୱାରସ୍ଥ ହୋଇ ବିଶ୍ରାମ ନେଲେ । ଏହି ଖବର ରାଜ ଉଆସ ଚହଳ ପକାଇ ଦେଲା । ରାଜଉଆସରେ ଉତ୍ସବ ମନାଗଲା ।

ବ୍ରାହ୍ମଣୀ ନଦୀକୂଳର ନିଳକଣ୍ଠପୁର ଘାଟ । ନିସ୍ତବ୍ଧ ଜନତା । ଦୁଃଖର କରାଳ ଛାୟା । ସବୁଆଡ଼େ ଅଶ୍ରୁପୂର୍ଣ୍ଣ ଲୋତକ ଭରା ଆଖି ସ୍ତବ୍ଧ ହୋଇ ଅନାଇ ରହିଛି । ପ୍ରକୃତ କାନ୍ଦୁଛି । କାନ୍ଦୁଛି ନୀଳକଣ୍ଠ ପୁର ନଈଘାଟ । ସ୍ଥିର ହୋଇ ଯାଇଛି ଗତିଶୀଳ ସ୍ରୋତ । ପୂର୍ବାକାଶରେ ଉଦିତ ରବି ଏ ବିଭତ୍ସ ଦୃଶ୍ୟ ନଦେଖିବା ପାଇଁ ବାଦଲରେ ମୁହଁ ଢାଙ୍କି ଦେଲେ । ଭଷା ବାଦଲ ସ୍ଥିର ହୋଇଗଲା । କ'ଣ ବା କରିଥାନ୍ତେ ନିରସ୍ତ୍ର ଜନତା ? ପଡ଼ିରହିଛି ଚାରି ଚାରିଟା ଅମର ଶହୀଦଙ୍କର ପରିତ୍ୟକ୍ତ ଶରୀର । ଏ ଜାତି ପାଇଁ ସତେ କେତେ ଉତ୍ସର୍ଗୀ କୃତ ସେମାନଙ୍କ ଜୀବନ । ନିଜ ବକ୍ଷରୁ ରକ୍ତ ନିଗାଡ଼ି ସେମାନେ ଏମାଟିକୁ ରକ୍ତାକ୍ତ କରିଗଲେ - ସେମାନଙ୍କର ବୀରଗତି ପ୍ରାପ୍ତ ହୋଇଗଲା । କିନ୍ତୁ ପଛରେ ଛାଡ଼ିଦେଇ ଗଲେ ହଜାର ହଜାର ଶୋକାକୂଳ ଜନ ସମୁହକୁ । ଏହି ମର ତୀର୍ଥରେ ଅମର ଶହୀଦ୍‌ଙ୍କର ସ୍ମୃତି ଚାରଣ ପାଇଁ ଏବଂ ଶୋକାକୂଳ ଜନତାଙ୍କୁ ପ୍ରବୋଧନା ଦେବାପାଇଁ କାହିଁ କେଉଁ ଆଡୁ ଭାସିଆସିଲା ସେହି କେଇପଦ ଯନ୍ତ୍ରଣାର ବୁକୁ ଚିରି - - -

ମଣିଷର ଗୀତ ଗାଏ ସିଏ
ହାତେ ତାର ମୁକ୍ତିର ମଶାଲ
ହସି ଉଠେ କଳାମେଘ
ଫିଟିଯାଏ ଝଡ଼ର କବରୀ,
ରକ୍ତ ରଞ୍ଜିତ ବ୍ରାହ୍ମଣୀ ତଟ
ବୋହି ଯାଉଅଛି, ଲୋହିତ ଶୋଣିତ ଧାର ।
(ସୁରେନ୍ଦ୍ର ନାଥ ମିଶ୍ର-ଢେଙ୍କାନାଳ)

× × × × × × ×

ଲକ୍ଷ୍ମଣ ମଳିକ ନଟ ମଳିକ
ରଘୁ ନାଏକ ଗୁରି ନାୟକ ହେ
ବାଜି ରାଉତ ଯେ ହୁରୁଷି ପ୍ରଧାନ
ଗୁଳିରେ ମରିଲେ ଠିକ ହେ
ବାଜି ରାଉତ ବାଳକ
ଗୁଳି ବାଜି ଫୁଟିଛି ତା ବେକ ହେ ।
(ଏସ୍ . ହମିଦଙ୍କ "ଢେଙ୍କାନାଳ ନରହତ୍ୟା")

× × × × × × ×

ଛୋଟ ପିଲା ନୁହେଁ ବାଜି ସଂଗ୍ରାମ କେଶରୀ
ପୂଣ୍ୟ ଭୂମି ମାତୃଭୂମି ଅମୃତ ସନ୍ତାନ ,
ମମତାର ମୂକ ସାକ୍ଷୀ ଯଶର କୋଣାର୍କ
କର୍ମ ମୟ ଜୀବନର ପୂଣ୍ୟ ନିକେତନ ।
(ପ୍ରମୋଦ କୁମାର ମିଶ୍ର – ଭୁବନ -ଢେଙ୍କାନାଳ)

× × × × × × ×

ବୀର ବାଜିରାଉତ ଜାତିର ମୁକୁଟ ସେ
ତାରକଥା ଶୁଣିତୁ ଯା
ଢାଳି ଛାଡ଼ି ରକତ ବାଜି ଡ଼ାକୁଛି ଯା
ତାର ଡ଼ାକ ଶୁଣିତୁ ଯା ।
("କୋଟି ଜନତାରେ ଦେଇଛି ସପଥ" ବିପ୍ଳବୀ ବୀର ବୈଷ୍ଣବ ଚରଣ ପଟ୍ଟନାୟକ – ଢେଙ୍କାନାଳ)

ସଂଗ୍ରାମ ଭୂଇଁରେ ଲୁଟିଛି
　　　　　　ହୋଇ ଚିର ନିଦ୍ରିତ,
ପୋଲିସ ଗୁଳିରେ ସହିଦ୍
　　　　　　ଆଜି ବାଜି ରାଉତ ।

× × × × × × ×

କ୍ଷମତା ଲୋଭରେ ନୃପତି
　　　　　　ଅତି ହୋଇ ଉନ୍ମତ,
ଭସାଇଲେ ନଦୀ ବୁକୁରେ
　　　　　　କେତେ ଲାଲ ରକତ ।

(ଗଡ଼ଜାତ ଅନୁସନ୍ଧାନ ରିପୋର୍ଟ , "ସହୀଦ ବାଜି ରାଉତ")

ଏଡ଼ିକି ସେ ଅମାନିଆ ପିଲା
'ଉଜର ଗୁଳି ଗୁଳା, ରଜା, ୯ଡ଼ କିଛି ନମାନିଲା ।
ଧୂଳି ଖେଳ ଛାଡ଼ି
ଗୁଳି ଆଗେ ଜୀବନକୁ ହସି ହସି ଦେଲା ସିନା ବାଢି ।

× × × × × × ×

ଭିଡ଼ି ନାଇ ଘାଟେ ନାହା
　　　　　　ନାଉରିଆ ପାରେକିରେ ମରି ?
ଆଜି ତାର ବାଣୀ
　　　　　　ଶୀତଳ ଧମନି ତଳେ ପଠାଇଛି ଅପୂର୍ବ ଆହ୍ୱାନୀ ।

(" ବାଜି ରାଉତ " ଜ୍ଞାନ ପୀଠ ପୁରସ୍କାର ପ୍ରାପ୍ତ
ସଚ୍ଚିଦା ନନ୍ଦ ରାଉତରାୟ)

ନୀଳକଣ୍ଠ ପୁର ବ୍ରାହ୍ମଣୀ ନଇର ଘାଟ । ନିସ୍ତବ୍ଧ ଜନତା । ଶୋକାକୂଳ ପରିବେଶ । କ'ଣ ହୋଇଗଲା ? ରାଜା ଫଉଜର କି ନାରକୀୟ କାଣ୍ଡ । ସବୁଆଡ଼େ ରକ୍ତ ଛିଟା । ଶହିଦଙ୍କର ପରିତ୍ୟକ୍ତ ଶରୀର । ସ୍ୱାଧୀନ ପ୍ରେମୀ ଭୂବନ ଗ୍ରାମର ହଜାର ହଜାର ଶୋକାକୁଳ ମଣିଷ । କରିବେ ବା କଣ ? ଏହି ଘଡ଼ି ସନ୍ଧି ମୁହୁର୍ତ୍ତରେ ସେମାନେ କେଉଁଠି ଥିଲେ କିଏ

ଜାଣେ ! ହଠାତ୍ ଆସି ପହଞ୍ଚିଲେ ପ୍ରଜାମଣ୍ଡଳର ଲୋକ ତାଙ୍କ ସାଙ୍ଗରେ ଥାନ୍ତି ଅଦମ୍ୟ ସାହାସୀ ବଳବନ୍ତ ଯୋଦ୍ଧାବୀର ବୈଷ୍ଣବ ଚରଣ ପଟ୍ଟନାୟକ । କେତେ ନେତା, କେତେ କର୍ମୀ, ଶୋକାକୂଳ ଜନତାଙ୍କ ପ୍ରାଣରେ ଭରିଦେଲେ ଶତସିଂହର ବଳ । କର୍ମୀଙ୍କ ଗହଣରେ ଭୂବନ ଗ୍ରାମରୁ ରଘୁ ନାୟକ ,ଏବଂ ଗୁରି ନାୟକଙ୍କ ଶବ ନୀଳକଣ୍ଠ ପୁରୁ ଘାଟକୁ ଅଣାଗଲା । ଛଅଜଣ ଶହୀଦଙ୍କର ପରିତ୍ୟକ୍ତ ଶରୀର ଏବଂ ଆହତ ବ୍ୟକ୍ତି ମାନଙ୍କୁ ନେଇ ଚାପ ଡ଼ଙ୍ଗା ଏବଂ ଭେଳାରେ ଐତିହାସିକ ପୂଣ୍ୟତୀର୍ଥ ନିଳକଣ୍ଠପୁର ନଈ ଘାଟରୁ କବାଟ ବନ୍ଧ ବାଟ ଦେଇ ଜେନା ପୁର ରେଳଷ୍ଟେସନକୁ ନିଆଗଲା । ଯେନାପୁର ରେଳଷ୍ଟେସନ ନୀଳକଣ୍ଠପୁର ଘାଟରୁ ନଦୀ କୂଳେ କୂଳେ ପ୍ରାୟ ସାତ ଆଠ ମାଇଲ ଦୂରହେବ । ସାଙ୍ଗରେ ବହୁ ପ୍ରଜାମଣ୍ଡଳ କର୍ମୀମାନେ ଥିଲେ । ଯେନାପୁରରେ ପହଞ୍ଚି ଯେନାପୁର ରେଳଷ୍ଟେସନ ଅଭିମୂଖେ ସମସ୍ତେ ଚାଲିଲେ । ଜେନାପୁର ଥିଲା ଢେଙ୍କାନାଳ ରାଜନୈତିକ ଅଞ୍ଚଳର ପୃଷ୍ଠଭୂମି । ପୂର୍ବ ମାସରେ ଅର୍ଥାତ ସେପ୍ଟେମ୍ବର ୧୯୩୮ ରେ ସେଠାରେ ଢେଙ୍କାନାଳ ପ୍ରଜାମଣ୍ଡଳ ଓ କୃଷକ ସମାଜ ପକ୍ଷରୁ ବହୁ ଆନ୍ଦୋଳନାତ୍ମକ ସାଧାରଣ ସଭା ଅନୁଷ୍ଠିତ ହେଇଯାଇଥିଲା । ତେଣୁ ଢେଙ୍କାନାଳ ସଂଗ୍ରାମୀ ମାନଙ୍କପାଇଁ ଯେନାପୁର ନୂଆ ନଥିଲା, ଥିଲା ପୂର୍ବ ପରିଚିତ ।

ଯୋଗକୁ ଜେନାପୁର ରେଳଷ୍ଟେସନରେ ପହଞ୍ଚିଲା ବେଳକୁ ମାଲ ଗାଡିଟିଏ ପାଣିପାଇଁ ଅଟକି ଯାଇଥିଲା । ଢେଙ୍କାନାଳ ପ୍ରଜାମଣ୍ଡଳର ବରିଷ୍ଠ ନେତା ବୈଷ୍ଣବ ଚରଣ ପଟ୍ଟନାୟକଙ୍କର ପରିଚୟ କ୍ରମେ ବୀର ଶହୀଦ ମାନଙ୍କୁ ମାଲଗାଡ଼ି ଯୋଗେ କଟକ ରେଳଷ୍ଟେସନ ପର୍ଯ୍ୟନ୍ତ ନିଆଗଲା ଏବଂ ସାଙ୍ଗରେ ଥିଲେ ବୈଷ୍ଣବ ଚରଣ ପଟ୍ଟନାୟକଙ୍କ ସହ ପ୍ରଜାମଣ୍ଡଳର ବହୁ ସଦସ୍ୟ । କଟକ ରେଳଷ୍ଟେସନରୁ ଫଉଜଙ୍କ ଦ୍ୱାରା ଆଘାତ ହୋଇଥିବା ବ୍ୟକ୍ତି ଏବଂ ଶହୀଦ ମାନଙ୍କୁ ଚିକିତ୍ସା ଏବଂ ପୋଷ୍ଟ ମଟମ୍ ପାଇଁ କଟକ ବଡ ଡାକ୍ତରଖାନାକୁ ନିଆଗଲା । ନିଳକଣ୍ଠ ପୁରର ଆହାତ ବ୍ୟକ୍ତି ଫଗୁ ସାହୁ ଓ ପାଣ୍ଡୁ ଲେଙ୍କା ଏହି ଦୁଇ ଜଣଙ୍କର ଦୁଇ ଦିନ ପରେ କଟକ ବଡ ଡାକ୍ତର ଖାନାରେ ମୃତ୍ୟୁ ହୋଇଯାଇଥିଲା ।

ପୋଷ୍ଟ ମଟମ ପରେ ଛଅ ଜଣ ଶହୀଦଙ୍କ ମର ଶରୀରକୁ କଟକ ବଡ଼ ଡାକ୍ତରଖାନାରେ ଛଅ ଗୋଟି ଶଗଡ଼ ଗାଡ଼ିରେ ପୁଷ୍ପ ଦ୍ୱାରା ଆଚ୍ଛାଦିତ ହୋଇ ବଡ଼ ଡ଼ାକ୍ତର ଖାନାରୁ ବାହାରିଲା । ଡ଼ାକ୍ତର ଖାନା ଜନ ଗହଳିରେ ପରିପୂର୍ଣ୍ଣ । ଶୋକର ଛାୟା କଟକ ଗଳି କନ୍ଦିରେ ଖେଳିଗଲା । ଆଗପଛ ହୋଇ ଛଅଗୋଟି ଯାକ ଶଗଡ଼ ଗାଡ଼ି ଶହୀଦ ମାନଙ୍କୁ ବହନ କରି ଶୋଭା ଯାତ୍ରା ଆରମ୍ଭ ହେଲା । ହଜାର ହଜାର ଶୋକାକୁଳ ନରନାରୀ ଶହୀଦ

ଶବଯାତ୍ରାରେ ସାମିଲ ହେଲେ । "ଭାରତ ମାତାକି ଜୟ" ଧ୍ୱନିରେ କଟକ ସହର କମ୍ପୁଥାଏ । କଟକ ସହରର ବୁଦ୍ଧିଜୀବୀ ମାନେ ଢେଙ୍କାନାଳ ରାଜାର ନାରକୀୟ କାଣ୍ଡ ଉପରେ ମର୍ମାହତ ହେଉଥାନ୍ତି । ସମଗ୍ର କଟକ ସହର ଉଠୁଥାଏ ପଡୁଥାଏ । ବହିଯାଉଥାଏ ଶୋକର ବୈତରଣୀ । ହଜାର ହଜାର ଲୋକ ଶବ ଧାରରେ ପୁଷ୍ପ ବୃଷ୍ଟି କରୁଥାନ୍ତି । ଅଭୂତ ପୂର୍ବ ଥିଲା ଏହି ଶବ ଶୋଭାଯାତ୍ରା । ଏହି ବିରାଟ ଶୋଭାଯାତ୍ରା କଟକର ମୁଖ୍ୟ ରାସ୍ତା ସହ ଗଳି କନ୍ଦି ଆଦି ପରିକ୍ରମା କରାଯାଇଥିଲା । ସେଦିନ କଟକ ସହରର କି କରୁଣ ଦୃଶ୍ୟ । ଓଡ଼ିଆ ସଂସ୍କୃତିର ପ୍ରାଣକେନ୍ଦ୍ର କଟକ । ବୁଦ୍ଧିଜୀବୀ ମାନଙ୍କର ପୂଣ୍ୟପୀଠ କଟକର ହଜାର ହଜାର ଜନତା ମୁକ୍ତି କାମୀ ଶହୀଦଙ୍କ ଶବ ଶୋଭାଯାତ୍ରାକୁ ଭବ୍ୟ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କରିବ ସଙ୍ଗେ ସଙ୍ଗେ " ବାଜି ରାଉତ ଅମର ରହେ" ଧ୍ୱନିମାନ ମଧ ଦେଉଥିଲେ । କଟକରେ ଏହି ଦୃଶ୍ୟର ଅଭୁଲା ସ୍ମୃତିକୁ ତା ୧୨.୧୧.୧୯୩୮ ଦୈନିକ ସମ୍ବାଦ ପତ୍ର ସମାଜ ଲିପିବଦ୍ଧ କରି ରଖିଅଛି ।।

ଶବାଧାରରେ ହଜାର ହଜାର ଲୋକ ଯାଇ ପହଞ୍ଚିଲେ କାଠଯୋଡ଼ି କୂଳସ୍ଥ ଖାନ ନଗର ମଶାଣି ଭୂଇଁରେ । ଝିପି ଝିପି ବର୍ଷା ଚାଲିଥାଏ । ସନ୍ଧ୍ୟା ଆସିଯାଇଥାଏ । ଶଗଡ଼ ଗାଡ଼ିରୁ ଶବଗୁଡିକ ତଳକୁ ଓହ୍ଲାଇ ଦିଆଗଲା । ଗୋଟିଏ ପରେ ଗୋଟିଏ ଛଅ ଗୋଟି ଶବକୁ ନେଇ ଚିତାରେ ରଖାଗଲା । ସେଇ ଅମର ଶହୀଦଙ୍କ ପ୍ରତି ସମ୍ମାନ ଜଣାଇ ଚିତାରେ ଅଗ୍ନି ସଂଯୋଗ କଲେ କବି ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ, ଗୋବିନ୍ଦ ମହାନ୍ତି, ଡାକ୍ତର ରବି ଘୋଷ, ବିଶ୍ୱନାଥ ପଶାୟତ ଆଉ ଢେଙ୍କାନାଳର ସଂଗ୍ରାମୀ ବୀର ବୈଷ୍ଣବ ଚରଣ ପଟ୍ଟନାୟକ । ଚିତାରେ ଅଗ୍ନି ସଂଯୋଗ ହେଲା । ଜଳି ଉଠିଲା ଚିତାଗ୍ନି । ସହି ପାରିଲେନି କବି, କବି ପ୍ରାଣ ଉଭାଷିତ ହୋଇଉଠିଲା ସଚ୍ଚିରାଉତରାୟଙ୍କର - ସ୍ୱତପ୍ରବୃତ ଭାବରେ କଣ୍ଠରୁ ବାହାରି ଆସିଲା -

" ନୁହେଁ ବନ୍ଧୁ ନୁହେଁ ଏହି ଚିତା

ଏଜାତି ତିମିର ତଳେ ଏ ଅଳିଭା ମୁକତି ସଳିତା

ନୁହେଁ ଏହା ଜଳିଯିବା ପାଇଁ

ଏହାର ଜନମ ଏଥିଜାଳି ପୋଡି ଦେବାକୁ ଧାସାଇ"

××××

"ଏ ଶିକ୍ଷା ଦେଇଛି ଆଜି

ଇତିହାସେ ହାତ ଟେକି ଦାନ

ଶତାବ୍ଦିର ଶ୍ରେଷ୍ଠ ଫୁଲ

ମୁକୁଳିତ ମୃତ୍ୟୁହୀନ ପ୍ରାଣ

('ବାଜିରାଉତ' ସଚ୍ଚିଦାନନ୍ଦ ରାଉତରାୟ)

## ଢେଙ୍କାନାଳ ପ୍ରଜାମଣ୍ଡଳ ଏବଂ ମଢ଼ି

ସମଗ୍ର ଭାରତ ବର୍ଷରେ ଛଅ ଶହ ଗଡ଼ଜାତ ଭାରତର ସ୍ୱାଧୀନତା ସଂଗ୍ରାମରେ ବିଭିନ୍ନ ସଂଗଠନ, ବିଭିନ୍ନ ନାମ ବହନ କରି ସାମିଲ ହୋଇଥିଲେ । ଜାତୀୟ କଂଗ୍ରେସ ଗଡ଼ଜାତର ସଂଗଠନ ଗୁଡ଼ିକୁ ସମ୍ପୂର୍ଣ୍ଣ ରୂପେ ସମର୍ଥନ କରୁଥିଲେ । ଇଂରେଜ ସରକାର ଗଡ଼ଜାତ ଗୁଡ଼ିକର ରାଜା ମାନଙ୍କୁ ଯେତେ ସୁରକ୍ଷା ଦେଲେ ମଧ୍ୟ କ୍ଷୁଦ୍ର କ୍ଷୁଦ୍ର ଗଡ଼ଜାତ ଗୁଡ଼ିକୁ ସୁରକ୍ଷା ଦେଇ ପାରିନଥିଲେ । ଫଳରେ ଗଡ଼ଜାତ ଅଞ୍ଚଳରେ ବିଦ୍ରୋହର ମାତ୍ରା ଦିନକୁ ଦିନ ବଢି ଚାଲିଥିଲା । ରାଜାମାନେ ସେମାନଙ୍କର ନାରକୀୟ ଦମନଲୀଳା ଚଳାଇ ରଖିଥିଲେ । ଗାନ୍ଧିଜୀଙ୍କର ୧୯୪୨ ମସିହାର ଭାରତଛାଡ ଆନ୍ଦୋଳନରେ "କର ବା ମର" ଡାକରା ଗଡ଼ଜାତ ସଂଗଠନର ଆନ୍ଦୋଳନକାରିଙ୍କୁ ଖୋରକ ଯୋଗାଇଥିଲା । ୧୯୩୯ ମସିହା ସମୟରେ ସାରା ପୃଥିବୀ ଆତଙ୍କିତ ଥିଲା ଦ୍ୱିତୀୟ ବିଶ୍ୱଯୁଦ୍ଧ ପାଇଁ । ସ୍ୱାଧୀନତା ଆଶାରେ ଭାରତ ବ୍ରିଟିଶ ସରକାରଙ୍କ ଦ୍ୱାରା ଯୁଦ୍ଧରେ ସାମିଲ ହୋଇଥିଲା । ଯୁଦ୍ଧ ପରେ ଭାରତ ବ୍ରିଟିଶ ସରକାରଙ୍କ ଠାରୁ କିଛି ପାଇ ପାରି ନଥିଲା । ତେଣୁ ୧୯୪୨ ମସିହା ଅଗଷ୍ଟ ମାସର ଆନ୍ଦୋଳନ ସର୍ବୋଚ୍ଚ ସୀମାରେ ଉପନୀତ ହୋଇ ପାରିଥିଲା । ଏହାର ପ୍ରଭାବ ଗଡ଼ଜାତ ଆନ୍ଦୋଳନର ଏକ ନିଛକ ଉଦାହରଣ । ଢେଙ୍କାନାଳର 'ପ୍ରଜାମଣ୍ଡଳ' ଆନ୍ଦୋଳନକୁ ଆମେ ଏକ ଚାକ୍ଷୁଷ ଉଦାହରଣ ରୂପେ ଗ୍ରହଣ କରି ପାରିବା ।

୧୯୪୨ ମସିହାରେ ଢେଙ୍କାନାଳର ଭାରତଛାଡ଼ ଆନ୍ଦୋଳନଟି ୧୯୩୮ ମସିହା ଆନ୍ଦୋଳନର ଆଉ ଏକ ଅଧ୍ୟାୟ ଥିଲା କହିଲେ ଚଳେ । ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନ ଓ ମୁକ୍ତିକାମୀ ଜନସାଧାରଣଙ୍କ ରାଜତନ୍ତ୍ର ବିରୁଦ୍ଧରେ ସଂଗ୍ରାମକୁ ପ୍ରତିହତ କରିବାରେ ରାଜା ଶଙ୍କର ପ୍ରତାପ ସବୁ ଦିଗରୁ ବିଫଳ ହେବାରୁ ରାଜା ଇଂରେଜ ସରକାରଙ୍କର ସହାୟତା

ଲୋଡ଼ିଥିଲେ । ଫଳରେ ଗୋରା ପଲଟଣର ପ୍ଲାଟୁନ୍, ଖୋର୍ଦ୍ଧା ପଲଟଣ, ଡୋଗ୍ରା, ପଞ୍ଜାବୀ, ହାଇଦ୍ରାବାଦ ଏବଂ ଛତିଶଗଡ଼ ପଲଟଣ ଆସି ଢେଙ୍କାନାଳରେ ପହଞ୍ଚିଲେ । ଆସିଲେ ବିଭିନ୍ନ ରାଜ୍ୟର ସିପାହି ଫୌଜ । ଏହି ପଲଟଣ ଓ ସିପାହି ଫୌଜଙ୍କ ସଙ୍ଗରେ ମିଶିଲେ ଢେଙ୍କାନାଳ ଅତ୍ୟାଚାରୀ ରାଜାର ପୋଲିସ ଦଳ । ସମସ୍ତେ ମିଶି ଢେଙ୍କାନାଳର ଗାଁ ଗଣ୍ଡାକୁ ଦଳି ମକ୍ଟି ପକାଇଲେ । ଗାଁ ଗଣ୍ଡାରେ ନୃଶଂସ ମାଡ଼ ସଙ୍ଗେ ସଙ୍ଗେ ନାରୀ ନିର୍ଯ୍ୟାତନା ଅଧିକ ମାତ୍ରାରେ ଚାଲିଥିଲା । ଢେଙ୍କାନାଳର ନିରୀହ ପ୍ରଜାମାନେ ନିଜ ରାଜ୍ୟ ଛାଡ଼ି ପଡ଼ୋଶୀ ରାଜ୍ୟକୁ ଚାଲି ଯିବା ପାଇଁ ମନ ବଳାଇଲେ । ୧୯୩୮ ମସିହା ଦମନ ଲୀଳା ଠାରୁ ଏହା ଅଧିକ ମାତ୍ରାରେ ଘଟିଲା । ନିଜିଗଡ଼ରେ ଏହାର ପ୍ରଭାବ ବିଶେଷ ମାତ୍ରାରେ ପଡ଼ି ନଥିଲା । ଏହାର ପ୍ରଭାବ ପଡ଼ିଥିଲା ବିଶେଷ କରି 'ମଢ଼ି' ଅଞ୍ଚଳରେ ।

ଢେଙ୍କାନାଳ ରାଜ୍ୟଟି ଦୁଇଟି ସବ୍ ଡ଼ିଭିଜନରେ ବିଭକ୍ତ ଥିଲା । ବ୍ରାହ୍ମଣୀ ନଦୀ ଏହି ଦୁଇଟି ସବ୍ ଡ଼ିଭିଜନକୁ ଦୁଇ ଭାଗରେ ବିଭକ୍ତ କରିଥିଲା । ଗୋଟିଏ ନିଜିଗଡ଼ ଅର୍ଥାତ୍ ଢେଙ୍କାନାଳ ଓ ଅନ୍ୟଟି 'ମଢ଼ି' । 'ମଢ଼ି'ର ନୂତନ ନାମ କାମାକ୍ଷା ନଗର । ଏହାର ନାମ କାହିଁକି ପରିବର୍ତ୍ତନ କରାଗଲା ପରିବର୍ତ୍ତି ଅଧ୍ୟୟରେ ଆମେ ଯାଣିବା । ଏହି ମଢ଼ି ସବ୍ ଡ଼ିଭିଜନଟି ଢେଙ୍କାନାଳ ସଦରର ଦୁଇ ଗୁଣରୁ ବଡ଼ ଥିଲା । ପୁରୁଣା ଲୋକ କଥାରୁ ଶୁଣାଯାଏ ଯେ, ୧୮୬୬ ମସିହାରେ ନଅଙ୍କ ଦୁର୍ଭିକ୍ଷ ସମୟରେ ବହୁଲୋକ ଅନାହାରରେ ମୃତ୍ୟୁ ବରଣ କରିଥିଲେ । ମୃତ୍ୟୁର ତାଣ୍ଡବ ଲୀଳା ଏପରି ଥିଲା ଯେ, ମୃତ୍ୟୁ ବରଣ କରିଥିବା ଶବଗୁଡ଼ିକ ମଢ ପରି ଏଠିସେଠି ପଡ଼ି ରହିଥିବା ଦୃଷ୍ଟିରୁ 'ମଢ଼ି' ବୋଲି ଲୋକ ମୁଖରୁ ଶୁଣାଯାଏ । ମଢ଼ି ଠାରେ ଥାନା, ଅସ୍ତ୍ରାଗାର, କୋର୍ଟ, କଚେରୀ, ସରକାରୀ ଅଫିସର ମାନଙ୍କର ରହିବା ଘର ସହିତ ଆହୁରି ଅନେକ ସରକାରୀ ଅଫିସ ଓ ବାସଗୃହ ମାନ ଥିଲା । ନୀଳକଣ୍ଠପୁର ବାଜି ରାଉତ ଘଟଣା ପରେ ପରେ ରାଜା ତଥା ଇଂରେଜ ସରକାରଙ୍କର ମଢ଼ି ଉପରେ ତୀକ୍ଷଣ ଦୃଷ୍ଟି ରଖିଥିଲେ । "ଜହ୍ନିପଡ଼ା" ଗୁଳି ଘଟଣା ପରେ ମଧ୍ୟ ମଢ଼ି ଉପରେ ସତର୍କତା ବଢ଼ି ଯାଇଥିଲା ।

ମଢ଼ି ଆନ୍ଦୋଳନ ଭାରତୀୟ ସ୍ୱାଧୀନତା ସଂଗ୍ରାମ ଉପରେ ଅନେକ ମାତ୍ରାରେ ପ୍ରଭାବ ପକାଇ ଥିଲା । ଏହାର ସୁତ୍ରଧର ଥିଲେ ବୈଷ୍ଣବ ଚରଣ ପଟ୍ଟନାୟକ । ୧୯୪୨ ମସିହା ବେଳକୁ ସେ ଢେଙ୍କାନାଳ ଜେଲରେ ଥିଲେ । ପରେ ପରେ ମୁକ୍ତି ପାଇଁ ଗୃହବନ୍ଦୀ ଭାବରେ ଢେଙ୍କାନାଳରେ ରହୁଥିଲେ । 'ଭାରତଛାଡ଼ ଆନ୍ଦୋଳନ'ର ଡାକରାରେ ସେ ସମ୍ଭାଳି ନପାରି

ଫେରାର ହୋଇ ଯାଇଥିଲେ । ସେ କଟକ ଯାଇ ନବକୃଷ୍ଣ ଚୌଧୁରୀ ଏବଂ ଭଗବତୀ ଚରଣ ପାଣିଗ୍ରାହୀଙ୍କୁ ହାତ କରି ପ୍ରଚାର ପତ୍ରଧରି ଆନ୍ଦୋଳନ ପାଇଁ ପ୍ରସ୍ତୁତ ହୋଇଗଲେ । କଟକର ସମସ୍ତ ରାଜନୈତିକ ଦଳ ଗୁଡ଼ିକ ବୈଷ୍ଣବ ବାବୁଙ୍କୁ ଭିତିରିଆ ସାହାଯ୍ୟ କରୁଥାନ୍ତି । ସେ ଦିନ ଥାଏ ୧୯୪୨ ମସିହା ଅଗଷ୍ଟ ୯ ତାରିକ । ସେ କଟକ ଚାନ୍ଦିନୀ ଚୌକରୁ ବାହାରି ରାତି ଗୋଟାଏ ବେଳେ କଟକ ରେଳ ଷ୍ଟେସନରେ ପହଞ୍ଚିଲେ ।

ତାଳଚେରରୁ କୋଇଲା ଆଣିବା ପାଇଁ ଖାଲି ଓ ଉପରଖୋଲା ୱାଗନ ଡ଼ବାର ଗୋଟିଏ ଲମ୍ବା ପୁରା ଟ୍ରେନ୍ ପ୍ରତ୍ୟେକ ଦିନ ତାଳଚେର ଯାଏ ଓ ସେଠାରୁ କୋଇଲା ଭର୍ତ୍ତି କରି ପୁରା ଲମ୍ବା ଟ୍ରେନ୍ ଆସେ । ସେହିପରି ଗୋଟିଏ ଟ୍ରେନ୍ ତାଳଚେର ଯିବା ପାଇଁ କଟକ ଷ୍ଟେସନରେ ଛିଡ଼ା ହୋଇଥିଲା । ବୈଷ୍ଣବ ବାବୁ ସେହି ମାଲଗାଡି ଟ୍ରେନର ଗୋଟିଏ ଡ଼ବାରେ ବସି ପଡିଲେ । କିନ୍ତୁ ସେ ବସିଥିବା ଡ଼ବାଟି ତାଳଚେର ନଯାଇ ବାଉଁଶ ବୋଝେଇ ପାଇଁ ହିନ୍ଦୋଳ ରୋଡ଼୍‌ରେ ରହିଗଲା । ତେଣୁ ତାଙ୍କୁ ହିନ୍ଦୋଳ ରୋଡ଼ ଠାରୁ ଅନୁଗୋଳ ଚାଲି ଚାଲି ଯିବାକୁ ପଡ଼ିଥିଲା । ସେ ଅନୁଗୋଳରେ ଦୁଇ ଚାରିଦିନ ରହି ଆନ୍ଦୋଳନର ସମସ୍ତ କାର୍ଯ୍ୟକ୍ରମ ଏବଂ କାଗଜ ପତ୍ର ଠିକ୍ କରି ତାଳଚେର ବାଟ ଦେଇ ପରଜଙ୍ଗରେ ପହଞ୍ଚିଲେ । ଅନୁଗୋଳଠାରୁ ପରଜଙ୍ଗ ପ୍ରାୟ ୨୫/୩୦ କିଲୋମିଟର ହେବ । ଆଜିକାଲି ପରି ସେ ସମୟରେ ଯାନବାହନର ବିଶେଷ ସୁବିଧା ନଥାଏ । ମହାତ୍ମା ଗାନ୍ଧିଙ୍କ ଡ଼ାକରା 'କର ବା ମର' ରେ ଉଦ୍‌ବୋଧିତ ହୋଇ, ଢେଙ୍କାନାଳ ରାଜାର ନଜରବନ୍ଦୀରେ ଥିବା ବୈଷ୍ଣବ ପଟ୍ଟନାୟକ ଫେରାର ହୋଇ, କଟକ, କଟକରୁ ଅନୁଗୋଳ, ଅନୁଗୋଳରୁ ତାଳଚେର ବାଟଦେଇ ପରଜଙ୍ଗରେ ପହଞ୍ଚି ଛନ୍ତି ବୈଷ୍ଣବ ବାବୁ । କି 'ଦେଶ ପ୍ରେମ, ମା' ମାଟି ପାଇଁ କି ମମତା, ଗାନ୍ଧିଜୀଙ୍କର ଆହ୍ୱାନରେ କି' ନିଷ୍ଠା ତାଙ୍କର । 'ଜହ୍ନିପଡା'ରେ ବାଜିଥିବା ଗୁଳିର ଘା' ଗୋଡରୁ ଶୁଖିନଥାଏ ତାଙ୍କର । ତଥାପି ସେ ସଂଗ୍ରାମ ପାଇଁ ଅସ୍ଥିର ହୋଇ ପଡୁଥାନ୍ତି ।

ସେଦିନ ଥାଏ ଅଗଷ୍ଟ ୧୪ ତାରିଖ । ବୈଷ୍ଣବ ବାବୁ ଅନୁଗୋଳରୁ ଆସି ପହଞ୍ଚିଥାନ୍ତି ପରଜଙ୍ଗ ଅଞ୍ଚଳରେ । ପହଞ୍ଚି ଦେଖନ୍ତି ମହେନ୍ଦ୍ର ସୁବାହୁସିଂ ଗିରଫ ହୋଇ ଜେଲରେ ଥାନ୍ତି । ସେ ଚିନ୍ତାରେ ପଡ଼ିଗଲେ । ତଥାପି ଦୁଇ ତିନି ଦିନ ମଧ୍ୟରେ ପରଜଙ୍ଗ ଅଞ୍ଚଳର ୨୦/୩୦ ଜଣ ନେତୃସ୍ଥାନୀୟ ଲଢୁଆ ଲୋକଙ୍କୁ ଏକତ୍ରିତ କରି ଭବିଷ୍ୟ ସଂଗ୍ରାମ ବିଷୟରେ ଆଲୋଚନା କଲେ । ଆଲୋଚନା କରି ପରଜଙ୍ଗ, ଭୁବନ, ଜହ୍ନିପଡ଼ା ଓ ଢେଙ୍କାନାଳର

କିଛି ଲଢୁଆ ଭାଇମାନଙ୍କୁ ଡକାଇଲେ । ଲଢୁଆ ଲୋକ ମାନଙ୍କ ମଧ୍ୟରେ ଆମୂଳ ଚୂଳ ଗୁପ୍ତରେ ଆଲୋଚନା ହେଲା ଏବଂ ସଂଗ୍ରାମ ପ୍ରସ୍ତୁତି କାମ ଚାଲିଲା । ନିଷ୍ପତି ହେଲା ଯେ, ଅଗଷ୍ଟ ୨୪ ତାରିଖ ଦିନ ପରଜଙ୍ଗ ଥାନା ଠାରୁ ପାଞ୍ଚ ଛଅ ମାଇଲ ଦୂର ରଙ୍ଗଥଳୀ ନାମକ ଜଙ୍ଗଲରେ ସଭାହେବ ଏବଂ ଏହି ସଭାରେ ୭୦୦ରୁ ୮୦୦ ବଛା ବଛା ସଂଗ୍ରାମୀ ଯୁବକ ଯୋଗ ଦେବେ । ଅଗଷ୍ଟ ୨୪ ତାରିଖ ଦିନ ପରଜଙ୍ଗ ବାହାରୁ ମୂଷା ମଳିକ ଇତ୍ୟାଦି ଲଢୁଆ ଭାଇମାନେ ଆସି ପହଞ୍ଚିଗଲେ । ନିଷ୍ପତି ହେଲା ପରଜଙ୍ଗ ଥାନା ଉପରେ ଆକ୍ରମଣ ହେବ । ଏବଂ ପରଜଙ୍ଗ ଅଞ୍ଚଳରେ ସ୍ୱାଧୀନ ସରାକାର ପ୍ରତିଷ୍ଠା ହେବ । ପରଜଙ୍ଗ ଅଞ୍ଚଳରୁ କିଛି ମାରଣାସ୍ତ୍ର ଯଥା ବନ୍ଧୁକ, ବର୍ଚ୍ଛା, ଖଣ୍ଡା, ଫାର୍ସା ଆଦି ହାତ ହତିଆର ସଂଗ୍ରହ କରାଗଲା । ବଡକଥା ହେଲା, ପରଜଙ୍ଗ ଅଞ୍ଚଳର ଆଠ ଦଶ ଜଣ ଯୁବକଙ୍କୁ ନେଇ ଗୋଟିଏ ମରଣ ସେନା ଗଢାଯାଇଥିଲା । ଅର୍ଥାତ୍ ସେମାନେ ଲଢେଇରେ ମରିବାକୁ ଭୟ କରିବେ ନାହିଁ ।

ପୁର୍ବ ନିର୍ଦ୍ଧାରିତ ସମୟ ଅନୁସାରେ ମୂଷା ମିକିକ ଆଦି ୭୦୦/୮୦୦ ଜଣ ସଂଗ୍ରାମୀ ରଙ୍ଗଥଳୀ ଜଙ୍ଗଲରେ ଏକତ୍ରିତ ହେଲେ ଏବଂ ଦୁଇଜଣଙ୍କୁ ପରଜଙ୍ଗ ଥାନାର ଅବସ୍ଥା ବୁଝିବା ପାଇଁ ପଠାଗଲା । ରଙ୍ଗଥଳୀ ଜଙ୍ଗଲରେ ସଭାହେଲା ଏବଂ ନିଷ୍ପତି ହେଲା ଯେ, ରାତିରେ ପରଜଙ୍ଗ ଥାନା ଦଖଲ କରାଯିବ । ପରଜଙ୍ଗ ଥାନାର ଖବର ବୁଝିବା ପାଇଁ ୫୦ ଜଣ ସିପାହି ଆସି ପହଞ୍ଚିଛନ୍ତି ଏବଂ ପରଜଙ୍ଗରେ ଚାପା ଉତ୍ତେଜନା ଦେଖା ଦେଇଛି । ସେ ଦିନ ପରଜଙ୍ଗ ଥାନା ଦଖଲକୁ ସ୍ଥଗିତ ରଖା ଗଲା । ସଭା ଭଙ୍ଗ ହେଲା ।

ରଙ୍ଗଥଳୀ ଜଙ୍ଗଲରେ ସଭା ଭାଙ୍ଗିବା ସେଥି ମଧ୍ୟରୁ ୧୯ ଜଣ ସଭ୍ୟଙ୍କୁ ନେଇ ଗୋଟିଏ ଗୁପ୍ତ ଆଲୋଚନା କରାଗଲା । ଅନ୍ୟ କାହାକୁ ନଜଣାଇ ସେଇ ରାତା ରାତି ସେଠାରୁ ୩୦ କିଲୋମିଟର ଜଙ୍ଗଲରେ ଯାଇ ମଳି ଜଙ୍ଗଲରେ ପହଞ୍ଚିଲେ । ୨୫ ତାରିଖ ଦିନସାରା ଜଙ୍ଗଲରେ ଲୁଚି ରହିଲେ । ରଙ୍ଗଥଳୀ ଜଙ୍ଗଲରୁ ଆସିବା ସମୟରେ ଦେବରାଜ ପାତ୍ର ବୋଲି ଜଣେ ଟାଣୁଆ ନେତାଙ୍କ ସହିତ କିଛି କର୍ମୀ ମାନଙ୍କୁ ଦିଆଯାଇଥିଲା । ସେମାନେ ସାରିଆ ପଦା ଓ କଙ୍କଡା ହାଡ଼ ପ୍ରଭୃତି ଅଞ୍ଚଳରେ ଥିବା ରାଜାଙ୍କ ଖମାର ଦଖଲ କରି ଖମାରରେ ଥିବା ଧାନକୁ ଜନସାଧାରଣଙ୍କୁ ବାଣ୍ଟି ଦିଅନ୍ତୁ ଏବଂ ଧାନ କରଜ ଦେଇଥିବା ଖାତା କାଗଜ ପତ୍ରକୁ ପୋଡ଼ି ଦିଅନ୍ତୁ ବୋଲି କୁହାଯାଇ ସେମାନଙ୍କୁ ସାରିଆ ପଦା ପଠାଗଲା । ସେମାନେ ନିର୍ଦ୍ଧାରିତ ଆଦେଶ ଅନୁସାରେ ସମସ୍ତ କାର୍ଯ୍ୟ ସମାପନ କରିଥିଲେ । ସେଠାକାର ଜନସାଧାରଣ ବୋଝ ଟୋକେଇ ନେଇ ଧାନ ସବୁ ବୋହି ନେଲେ । ଜନ ସାଧାରଣ ଧାନ

ନେବା ସମୟରେ ଖୁସିରେ ସାରା ଉଛୁଳିଲା ନାହିଁ ॥ ସେ ଦିନ ପ୍ରାୟ ପାଞ୍ଚୋଟି ଖମାରର ଧାନକୁ ବାଜ୍ୟାପ୍ତି କରାଯାଇଥିଲା ॥

୧୯ ଜଣ ସଂଗ୍ରାମୀ ବୈଷ୍ଣବ ପଟ୍ଟନାୟକଙ୍କ ନେତୃତ୍ୱରେ ୨୫ ତାରିଖ ଦିନ ସକାଳୁ ଆସି ମାଡି ନିକଟସ୍ଥ ତିକୁଳା ପାଣି ଗ୍ରାମ ନିକଟରେ ପହଞ୍ଚିଲେ । ତିକୁଳା ପାଣି ଗ୍ରାମରେ ଥିବା କର୍ମୀଙ୍କ ଦ୍ୱାରା ତାଙ୍କୁ ଖାଦ୍ୟ ପଦାର୍ଥ ଯୋଗାଡ଼ କରି ଖୁଆଇବା ହେଲା ଏବଂ ସମସ୍ତେ ଜଙ୍ଗଲରେ ଲୁଚିରହି କିଛି ବିଶ୍ରାମ ନେଲେ ॥ ମାଡିର ଖବର ନେବାପାଇଁ ଦୁଇଜଣ ମାଉସୀ ସେମାନଙ୍କୁ ମାଡି ପଠାଗଲା ଏବଂ ସେମାନେ ସନ୍ଧ୍ୟା ସୁଦ୍ଧା ଆସି ମାଡି ଖବର ଜଣାଇଲେ । ମାଡିରେ ଅସ୍ୱାଭାବିକ ଅବସ୍ଥା କିଛି ନଥିଲା ॥ ଥାନା ଭିତରେ ଥିବା ଅସ୍ତ୍ରାଗାର ଏବଂ ଟ୍ରେଜେରୀରେ ଦୁଇଜଣ ସଶସ୍ତ୍ର ପ୍ରହରୀ ସର୍ବଦା ପ୍ରହରାରେ ଥାନ୍ତି । ଏହି ଖବର ପାଇଲା ପରେ ସମସ୍ତେ ଆଶ୍ୱସ୍ତ ହେଲେ ॥ ଦଳରେ ଥିବା ୧୯ ଜଣ ମାଉଣ୍ଟ ଯୋଦ୍ଧା ହେଲେ – ପଟ୍ଟନାୟକର ୧୨ ଜଣ ଯଥା :- ୧- ନିଶୋଗା ବେହେରା ପ୍ରଧାନ, ୨- ଦିବାକର ବିଶ୍ୱାଳ, ୩- ରଘୁନାଥ ବେହୁରା, ୪- ଲୋକନ ସିଂହ, ୫- ଜୟଦେବ ସାହୁ, ୬- ଲକ୍ଷ୍ମଣ ନାୟକ, ୭- ଗାର୍ଗୀ ସାହୁ, ୮- ରାଧାନାଥ ଭୂୟାଁ, ୯- ନବଘନ ବେହେରା, ୧୦- ସଦାଶିବ ସାହୁ, (ପଙ୍କାତିରା), ୧୧- ହରେକୃଷ୍ଣ ସାହୁ ((ଜଳଭ ସିଂଘା)), ଓ ୧୨- କାର୍ତ୍ତିକ ସାହୁ (ଜଳତସିଂଘା) । ମାଡି ଅଞ୍ଚଳର ପାଞ୍ଚଜଣ ଯଥା :- ୧- ମୁକ୍ତା ମଲିକ, ୨- ଆନନ୍ଦ ସ୍ୱାଇଁ, ୩- ବାଲଠର ସ୍ୱାଇଁ, ୪- କୁଳମଣି ପ୍ରଧାନ ଓ ୫- ପଦ୍ମନାଭ ସାହୁ ଏବଂ ସଦର ଅଞ୍ଚଳର ୧- ବାଲୁଙ୍ଗୁ ସିଂଘାର, ୨- ଅନୁଭୂତ ସାହୁ ॥ ଦଳର ନେତୃତ୍ୱ ନେଉଥିଲେ ବୈଷ୍ଣବ ଚରଣ ପଟ୍ଟନାୟକ ।

ଆକ୍ରମଣ ପୂର୍ବରୁ ସେମାନଙ୍କ ନିକଟରେ ଥିଲା କ୍ରିତଲା ଝଣ୍ଡା, ଛ ଖଣ୍ଡ ବାରୁଦ ଭରା ବନ୍ଧୁକ, କେତେ ଖଣ୍ଡ ଚାଲିଣାର, କେତେ ଖଣ୍ଡ ଖଣ୍ଡା, ବର୍ଚ୍ଛା, ଫାର୍ଶା, ଟେଣ୍ଟା, ଟାଙ୍ଗିଆ, କଟୁରି, ଖାଜଲ, ଦଉଡ଼ି , ନିଶାସିଜି, ଦିଆସିଲି, ଛୁରିସିଲ ଏବଂ କିଛି ପ୍ରଚାର ପତ୍ର ।

ଅଗଷ୍ଟ ହେଲା ସଂଗ୍ରାମ, ପ୍ରାୟ ରାତି ତିନିଟା । ଛଜଣ ସଂଗ୍ରାମୀ ଛ ଗୋଟି ବନ୍ଧୁକ ଧରି ଥାନା ଆଡ଼କୁ ଅଗ୍ରସର ହେଲେ ॥ ଦେଖିଲେ ଦୁଇଜଣ ସିପାହି ଥାନା ବାରଣ୍ଡାରେ କାନ୍ଧରେ ବାୟୋନେଟ୍ ଫିଟ୍ କରା ବନ୍ଧୁକ ପକାଇ ପହରା କରୁଥାନ୍ତି । ଥାନାର ସ୍ୱାର ବେଞ୍ଚରେ ଲୁଚିଥାନ୍ତି ସଂଗ୍ରାମୀ ମାନେ ॥ ଯେତେବେଳେ ସେମାନେ ସଂଗ୍ରାମୀ ମାନଙ୍କୁ ପଛକରି ଛିଡାହେଲେ ଠିକ୍ ସେତେବେଳେ ସଂଗ୍ରାମୀ ମାନେ ସିପାହି ମାନଙ୍କ ନିକଟକୁ ଦଉଡ଼ି ଯାଇ ଛଜଣଙ୍କ ହାତରେ ଥିବା ଛଟି ବନ୍ଧୁକ ସିପାହି ମାନଙ୍କୁ ଦେଖାଇ ପାଟି ବନ୍ଦ କରିବାକୁ

କହିଲେ । ପାଟିତୁଣ୍ଡ କଲେ ଗୁଳିକରି ଦିଆଯିବ ବୋଲି ସତର୍କ କରାଇ ଦେଲେ । ସେମାନଙ୍କ ମଧ୍ୟରୁ ଦୁଇଜଣ ଯାଇ ସୀପାହି ଧରିଥିବା ବନ୍ଧୁକ ଦୁଇଟିକୁ ଛଡ଼ାଇ ଆଣିଲେ ଏବଂ ହାତ ଉପରକୁ ଉଠାଇ ରଖିବାକୁ ନିର୍ଦ୍ଦେଶ ଦିଆଗଲା । ସିପାହି  ଦ୍ୱୟ  ଉପରକୁ ହାତ ଟେକି ଜଡ଼ପରି ଛିଡା ହୋଇ ରହିଲେ । ପରେ ସେମାନଙ୍କୁ ଥାନା ଭିତରେ ଥିବା ହାଜତ ଭିତରକୁ ଯିବାକୁ କୁହାଗଲା । ସେମାନେ ସୁନା ପୁଅପରି ହାଜତ ଭିତରକୁ ଚାଲିଗଲେ । ହାଜତରେ ଲାଗିଥିବା ଲୁହା କବାଟ ଟିକୁ ବନ୍ଦକରି ଦିଆଗଲା । ଥାନା ପଛ ପାଖରେ ଦୁଇଜଣ ଗ୍ରାମ୍ୟ ଚୌକିଦାର ଶୋଇଥିଲେ । (ଯେଉଁମାନେ କି ପାଳିକରି ଥାନାରେ ଶୁଅନ୍ତି) । ଦୁଇଜଣ ବନ୍ଧୁକ ଧାରୀ ମରଣ ସେନା ସେମାନଙ୍କ ପାଖକୁ ଯାଇ ସେମାନଙ୍କୁ ଉଠାଇଲେ ଏବଂ ସେମାନଙ୍କୁ ଚୁପ୍ କରାଯାଇ ସିପାହି ମାନଙ୍କ ସହିତ ହାଜତରେ ରଖିଦେଲେ ।

ସେତେବେଳକୁ ରାତି ପାହି ଆସୁଥାଏ । ଅର୍ଥାତ୍ ପାହାନ୍ତା ପହର । ସମୟ ହାତରେ କମ । ତେଣୁ ସେମାନେ ସାଥୀରେ ନେଇଥିବା ଶାବଳ ସାହାର୍ଯ୍ୟରେ ଥାନା  ଘରର ତାଲା ଏବଂ ଅସ୍ତ୍ରାଗାରର ତାଲା ଭାଙ୍ଗି ଦେଲେ । ଅସ୍ତ୍ରାଗାର ଭାଙ୍ଗିବା ପାଇଁ ଯଦିଓ ଏହା ଭିତରେ ଅନେକ ଗୁଡ଼ିଏ ରାଇଫଲ୍ ଓ ବନ୍ଧୁକ ଥିଲା ସେଥି ମଧ୍ୟରୁ ମୋଟା ଗ୍ରାମର କୁଳମଣି ପ୍ରଧାନ ଚାରୋଟି ରାଇଫଲ୍ ଆଣିଲେ କାରଣ ତାଙ୍କୁ ରାଇଫଲ ବ୍ୟବହାର ଜଣାଥିଲା । ଏହାପରେ ପକ୍କାଚଟାଣ ଭିତରେ ପୋତା ଯାଇଥିବା ଟ୍ରେଜେରୀ ବାକ୍ସ ଭାଙ୍ଗିବାକୁ ଚେଷ୍ଟା କରି ମଧ୍ୟ ଭାଙ୍ଗି ପାରି ନଥିଲେ । ତେଣୁ ପାଖରେ ଥିବା ଲୁହା ଆଲମିରାକୁ ଭାଙ୍ଗି ସେଥିରେ ଥିବା ପ୍ରାୟ ୧୦୦୦ ଟଙ୍କା ନେଇ ଯାଇଥିଲେ ।

ଏହାପରେ ହାଜତରେ ରହିଥିବା ଦୁଇ ସିପାହି ଏବଂ ଦୁଇ ଚୌକିଦାର ସେମାନଙ୍କୁ ଛାଡ଼ି ଦେଲେ । ଛାଡ଼ି ଦେଲା ପରେ ପରେ ସେମାନେ ନିଜ ନିଜ ବାଟରେ ଚାଲି ଯାଇଥିଲେ । ତାପରେ ସଂଗ୍ରାମୀ ମାନେ ଥାନା ସାମ୍ନାରେ ଏକତ୍ରିତ ହୋଇ ପାଖରେ ଥିବା ବନ୍ଧୁକ ଏବଂ ରାଇଫେଲ୍ ଗୁଡ଼ିକର ଫାଙ୍କା ଗୁଳି ଚଳାଇଲେ । ୧୯ ଜଣ ଜାକ ବିଦ୍ରୋହୀ ଉଚ୍ଚ ସ୍ୱରରେ ଶ୍ଲୋଗାନ ମାନ ଦେଲେ – ମହାତ୍ମା ଗାନ୍ଧିକି ଜୟ, ଭାରତ ମାତା କି ଜୟ, ପ୍ରଜାମଣ୍ଡଳ କି ଜୟ, ଜାତୀୟ ପତାକା କି ଜୟ, ସ୍ୱାଧୀନ ଭାରତ କି ଜୟ, ବିଦେଶୀ ସରକାର ଭାରତ ଛାଡ଼ । କିଛି ବିପ୍ଳବୀ ଦେଶାତ୍ମବୋଧକ ଧ୍ୱନିରେ ମୁଖରିତ ହୋଇ ଉଠିଲା । କିଛି କିଛି ସାଧାରଣ ଜନତା ଗୁଣ୍ଡ ହେବାକୁ ଲାଗିଲେ ।

ଫାଙ୍କା ଗୁଳିର ଶବ୍ଦ, ଭାରତ ମାତାର ଜୟ ଗାନ, ପ୍ରଜା ମଣ୍ଡଳର ଜୟଗାନ ଧ୍ୱନିରେ ନିକଟରେ ଥିବା ପୋଲିସ ଅଫିସର ଏବଂ ସିପାହୀ ମାନଙ୍କ ନିଦ୍ରା ଭଙ୍ଗ ହୋଇଗଲା । ପୋଲିସ ଅଫିସର ସଙ୍ଗେ ୩୦ ଜଣ ସିପାହୀ ସେମାନଙ୍କ ବରାକରୁ ବାହାରି ଆସିଲେ ଏବଂ ବିଦ୍ରୋହୀଙ୍କ ଆଡ଼କୁ ମାଡ଼ି ଆସିଲେ । ସେମାନେ ମାଡ଼ି ଆସିବା ଫଳରେ ବିଦ୍ରୋହୀମାନେ ଫାଙ୍କା ଗୁଳି ଚଳାଇଲେ । ଗୁଳି ଚଳାଇବା ଫଳରେ ସିପାହି ମାନେ କିଛି ଦୂରରେ ଅଟକି ଯାଇଥିଲେ, କାରଣ ସିପାହି ମାନେ ଥିଲେ ନିରସ୍ତ୍ର । ସଂଗ୍ରାମୀ ମାନେ ଥିଲେ ସଶସ୍ତ୍ର । ଏହି ଘଡ଼ି ସନ୍ଧି ସମୟରେ ମରଣ ସେନାର ନେତୃତ୍ୱ ନେଇଥିବା ବୈଷ୍ଣବ ଚରଣ ପଟ୍ଟନାୟକ ପୋଲିସ ଅଫିସର ଏବଂ ସିପାହି ମାନଙ୍କୁ ସମ୍ବୋଧନ କରି କହିଲେ " ଆମ୍ଭେ ମହାତ୍ମା ଗାନ୍ଧୀଙ୍କ ଲୋକ । କଂଗ୍ରେସ ଓ ପ୍ରଜା ମଣ୍ଡଳ ଲୋକ । ଆମେ ଚୋର କିମ୍ବା ଡ଼କାୟତ ନୋହୁଁ । ମହାତ୍ମା ଗାନ୍ଧୀ ଆମକୁ କହିଛନ୍ତି 'କର ବା ମର' । ଏଥିରେ ଯଦି ଆମେ ମରିଯାଉ, ତେବେ ସେପରି ମରିବା ପାଇଁ ଆମେ ପ୍ରସ୍ତୁତ ହୋଇ ଆସିଛୁ । ଆମେ ରକ୍ତ ମୁଖା ହୋଇ ସାରିଛୁ । ଆପଣମାନେ ଏ ଦେଶର ନାଗରିକ । ଆମର ଶତ୍ରୁ ନୁହନ୍ତି । ଦେଶକୁ ସ୍ୱାଧୀନ କରିବା ପାଇଁ ଆଜି ସାରା ଭାରତରେ ନିଆଁ ଜଳୁଛି । ଆମେ ଏଠାରେ ନିଆଁ ଜଳାଇବୁ । ତୁମ୍ଭ ମାନଙ୍କୁ ୧୫ ମିନିଟି ସମୟ ଦିଆ ଗଲା, ତୁମ୍ଭେମାନେ ସରକାରୀ ଘରୁ ତୁମର ବ୍ୟକ୍ତିଗତ ଜିନିଷ ପତ୍ର ଖାଲି କରିଦିଅ । ଆଉ ୧୫ ମିନିଟ ପରେ ଆମେ ସରକାରୀ ଘର ପୋଡ଼ି ପାଉଁଶ କରିଦେବୁ । ଭାଇ ତୁମ୍ଭମାନଙ୍କୁ ସାବଧାନ କରାଇ ଦେଉଛୁ, ଆମକୁ ସାହାର୍ଯ୍ୟ କର । ଯଦି କେହି ବାଧା ଦେଲା ଆମେ ତାକୁ ଗୁଳିକରି ଉଡ଼ାଇ ଦେବୁ ।"

ବୈଷ୍ଣବ ପଟ୍ଟନାୟକଙ୍କ କଥାକୁ ସିପାହିମାନେ ଶୁଣି ପଛକୁ ହଟିବାକୁ ଲାଗିଲେ । ଇତି ମଧ୍ୟରେ ମଢ଼ି ସହରର ଶହ ଶହ ଲୋକ ଆସି ଥାନା ନିକଟରେ ଛିଡା ହୋଇଥାନ୍ତି । ସମସ୍ତଙ୍କ ମନ ଉଲ୍ଲସିତ । ଅନେକ ତାଳି ମାରି ସଂଗ୍ରାମୀ ମାନଙ୍କୁ ଉତ୍ସାହିତ କରାଉ ଥାନ୍ତି । ସାଧାରଣ ଲୋକେ ସଂଗ୍ରାମୀ ମାନଙ୍କ ସହିତ ମିଶିବା ପାଇଁ ଇଚ୍ଛୁକ ଥିଲେ ମଧ୍ୟ ସେମାନଙ୍କୁ ଗ୍ରହଣ କରାଯାଇ ନଥିଲା । କାରଣ ସେମାନେ ଶତ୍ରୁ କି' ମିତ୍ର ତାହା ପରଖିବା ପାଇଁ ସେଇଟା ଉପଯୁକ୍ତ ସମୟ ନଥିଲା । ତେଣୁ ସାଧାରଣ ଲୋକମାନେ ସେମାନଙ୍କ ଠାରୁ ଦୂରେଇ ଯାଇଥିଲେ ।

ଇତି ମଧ୍ୟରେ ମରଣ ସେନାଙ୍କ ମଧ୍ୟରୁ ଦୁଇଜଣ ଯାଇ ଥାନା ଭିତରେ ଥିବା ଚୌକି, ମେଜ, ଆଲମାରୀ, ଆସବାସ ଜିନିଷ ପତ୍ର ସମସ୍ତ କାଗଜ ପତ୍ର ଏବଂ ଫାଇଲ ଗୁଡ଼ିକୁ

ଏକାଠି  କରି ସାଥୀରେ ନେଇଥିବା କିରାସିନିକୁ ଢାଳି ସେଥିରେ ଦିଆସିଲି ମାରି ନିଆଁ ଲଗାଇ ଦେଲେ । ପରେ ସେ ନିଆଁକୁ ଥାନା ଚାଳରେ ଲଗାଇଦେଲେ ।  ସେଠାକାର ଥାନା, ଅସ୍ପତାଳ, ଟ୍ରେଜେରୀ ଆଦି ଛାତ ଗୁଡ଼ିକ ନଡ଼ାରେ ତିଆରି ଚାଳ ଥିଲା । ଘରର ଚଟାଣ ଏବଂ କାନ୍ଥ ଗୁଡ଼ିକ ପକ୍କା ଥିଲା । ଏହି ଛାତ  ଗୁଡ଼ିକ ମୋଟା ଶାଳ କାଠରେ ଖେଣା ଓ ମୋଟା ମୋଟା ବାଉଁଶର ଭୁଆ ଆଉ ବହଳିଆ ନଡ଼ା ଛାଆଣି ଥିଲା । ମଜିରେ ଯେତେଗୁଡ଼ିଏ ସରକାରୀ ଘର ଥାଏ  ସବୁ ଗୁଡ଼ିକ ଏହିପରି ନଡ଼ା ଛପର ଚାଳ ଥାଏ ।  ଏହି ପରି ସବୁ ସରକାରୀ ଗୃହ ଗୁଡ଼ିକରେ ତଥା କାଗଜ ପତ୍ରରେ ଅଗ୍ନି ସଂଯୋଗ କରା ଯାଇ ଥାଏ । ପୋଲିସ ଅଫିସର ଓ ସିପାହି ମାନେ କିଂ କର୍ତ୍ତବ୍ୟ ମୂଢ ହୋଇ ଦେଖିବା ସଙ୍ଗେ ସଙ୍ଗେ ନିଜ ନିଜ ଘରର ଜିନିଷ ପତ୍ର ଖାଲି କରୁଥାନ୍ତି । ଜନ ସାଧାରଣ ଆନନ୍ଦରେ ଧ୍ୱନି ଦେଇ ନାଚି ମାତୁଥାନ୍ତି । ସବୁ ସରକାରୀ ଅଫିସ ଗୁଡ଼ିକ ହୁ ହୁ ହୋଇ ନିଆଁ ଜଳୁ ଥାଏ ।

ସେତେବେଳେ ମଜିର ଏସ୍.ଡ଼ି.ଓ  ଥାନ୍ତି ଗଙ୍ଗାଧର ମିଶ୍ର । ତାଙ୍କ ନିଜ ଘର ଢେଙ୍କାନାଳ ସହରରେ । ତାଙ୍କ ଘରେ ଅଗ୍ନି ସଂଯୋଗ କରିବା ପୂର୍ବରୁ ବୈଷ୍ଣବ ବାବୁ ତାଙ୍କ ନିକଟକୁ ଯାଇ ତାଙ୍କୁ ଅନୁରୋଧ କରିଥିଲେ, ସରକାରୀ ଘରୁ ତାଙ୍କ ନିଜ ଜିନିଷ ଖାଲି କରି ଦେବାକୁ  । ସେହି ସମୟରେ  ସେ, ବୈଷ୍ଣବ ବାବୁଙ୍କୁ  ଡାକି ପଚାରି ଥିଲେ, –" ଏ ଯେଉଁ କାମ କରୁଛ ଏହା କ'ଣ ଗାନ୍ଧୀଙ୍କ ନୀତି  ?  ସେତେବେଳେ ସେ ତାଙ୍କୁ ଉତ୍ତର ଦେଇଥିଲେ "ଗାନ୍ଧୀ ନୀତି କ'ଣ ସେ ସମ୍ପର୍କରେ ଆଲୋଚନାର ଏହା କ୍ଷେତ୍ର ବା ସମୟ ନୁହେଁ । ବରଂ ଗାନ୍ଧୀ ଯେଉଁ ଡାକ ଦେଇଛନ୍ତି "କର ବା ମର" ସେ ଡାକରେ ମୁଁ ମରିବାକୁ ଆସିଛି" ।  ତେଣୁ ତୁମେ ୧୫ ମିନିଟ ଭିତରେ ତୁମର ନିଜର ଜିନିଷ ପତ୍ର ଖାଲି ନକଲେ ତୁମର ଜିନିଷ ପତ୍ର ପୋଡ଼ି ଯିବ । ବୈଷ୍ଣବ ବାବୁଙ୍କ କଥା ଶୁଣି ଗଙ୍ଗାଧର ମିଶ୍ର ଘର ଖାଲି କରିଦେବା ମାତ୍ରେ ନିଆଁ ଲଗା ଯାଇଥିଲା ।

ମଜି ଜଳୁଛି । କେବଳ ଧୂଆଁ ଧୂଆଁ । ମଜି ସହର କ'ଣ ହୋଇଛି ବୋଲି ଦୂର ଦୂରାନ୍ତରୁ ଲୋକେ ଦଉଡ଼ି ଆସିଲେ ମଜିକୁ । ଜନ ସମୁଦ୍ର ଦେଖାଯାଇଥିଲା ମଜି । ସେଦିନ ୪ଟା ବେଳକୁ ମଜିରେ ଗୋଟିଏ ସଭା ହୋଇଥିଲା । ସେ ସଭାରେ ପ୍ରାୟ ୧୦ ହଜାର ଲୋକ ଜମା ହୋଇଥିଲେ । ସେ ଦିନ ସଭାରେ ବୈଷ୍ଣବ ପଟ୍ଟନାୟକ ବକ୍ତୃତା ଦେଇଥିଲେ ଯେ "ଭାଇମାନେ ଆପଣ ମାନେ ଦେଖୁଛନ୍ତି ଯେ, ମଜି ଜଳୁଛି । ଦେଖନ୍ତୁ କେବଳ ମଜି ଜଳୁନି । ଆଜି ସମଗ୍ର ଦେଶ ଜଳୁଛି । ଗାନ୍ଧୀଙ୍କ ଡାକରା 'କର ବା ମର' । ଏହି ଅଞ୍ଚଳରେ

ଆମେ ଗୋଟିଏ ସ୍ୱାଧୀନ ସରକାର ପ୍ରତିଷ୍ଠା ପାଇଁ ଘୋଷଣା କରୁଛୁ । କୌଣସି ଗାଁରେ ଯେପରି କେହି ଉପବାସ ନରହନ୍ତି ଏହା ଦେଖିବା ସମସ୍ତଙ୍କର ମୁଖ୍ୟ କର୍ତ୍ତବ୍ୟ । 'କର ବା ମର' – ଗାନ୍ଧିଜୀଙ୍କର ଏହି ବାଣୀ ପାଳନ କର । ଇଂରେଜ ସତ୍ତା ଲୋପକର, ସରକାରଙ୍କୁ ଅଚଳ କର ଇତ୍ୟାଦି ଇତ୍ୟାଦି ।

ମଢି ଠାରୁ ପ୍ରାୟ ତିନି ମାଇଲ ଦୂରରେ ପୂର୍ବ ଦିଗରେ ଅବସ୍ଥିତ ମାଳପୁର ଗ୍ରାମ । ସେଠାରେ ଢେଙ୍କାନାଳ ରାଜାଙ୍କର ଗୋଟିଏ ବଡ଼ ଖମାର ଥିଲା । ସେ ଖମାରରେ ହଜାର ହଜାର ଭରଣ ଧାନ ମହଜୁଦ ଥିଲା । ସେହି ଖମାର କବଳରେ ଶହ ଶହ ଲୋକ ବହୁ ବର୍ଷଧରି ଋଣି ହୋଇ ଛଟପଟ ହେଉଥିଲେ । କରଜ ସୁଝି ପାରୁ ନଥିଲେ । ବୈଷ୍ଣବ ପଟ୍ଟନାୟକ ଏବଂ ସଂଗ୍ରାମୀ ଦଳ ତା'ପରଦିନ ସକାଳେ ଯାଇ ମାଳପୁର ଗ୍ରାମ ଖମାର ନିକଟରେ ପହଞ୍ଚି ଥିଲେ । ସେ ଖମାରକୁ ହଣା ଯାଇ ମହଜୁଦ୍ ଥିବା ଧାନସବୁ ଜନ ସାଧାରଣଙ୍କୁ ବାଣ୍ଟି ଦିଆଯାଇଥିଲା । ଧାନ ନେବା ପାଇଁ ଲୋକମାନେ ବୋଝ, ଟୋକେଇ, ବସ୍ତା, ହାଣ୍ଡି, ମାଠିଆ ନେଇ ଆସିଲେ ତାର ହିସାବ ନାହିଁ । ତାପରେ ଖମାରୀ କୁ ଡ଼କାଗଲା । ତା ନିକଟରେ ଯେତେ ଲୋକଙ୍କର ଋଣପତ୍ର ଓ ଲେଖା ପଢି କାଗଜ ପତ୍ର ଥିଲା ତାହା ଅଣାଯାଇ ସମସ୍ତ ପୋଡ଼ି ଦିଆଗଲା । ସେଠାକାର ଜନ ସାଧାରଣ ଋଣ ମୁକ୍ତ ହୋଇଗଲେ । ବହୁଦିନ ଧରି ସେମାନେ ଋଣ ଭାରରେ ଛଟପଟ ହେଉଥିଲେ । ତେଣୁ ସେ ଅଞ୍ଚଳରେ ଆନନ୍ଦର ସୀମା ରହିଲା ନାହିଁ । ସେହି ଦିନ ସେହି ଗ୍ରାମରେ ଆଉ ଗୋଟିଏ ସଂଗ୍ରାମୀ ଦଳ ଗଠନ କରି ଘୋଷଣା କରାଗଲା ଯେ, ମରଣ ସେନା ଭୁବନ ଥାନା ଦଖଲରେ ଯିବେ ।

ମଢିରୁ ଢେଙ୍କାନାଳ ପ୍ରାୟ ୩୫ କିଲୋମିଟର । ମଝିରେ ବ୍ରାହ୍ମଣୀ ନଦୀ । ମଢିରେ ସେଦିନ ଯେଉଁ ବିପ୍ଳବ ଘଟିଥିଲା ସେ ଖବର ଢେଙ୍କାନାଳ ରାଜାଙ୍କୁ ଜଣାଇବା ପାଇଁ କିଛି ରାଜ କର୍ମଚାରୀ ସକାଳୁ ସକାଳୁ ଢେଙ୍କାନାଳକୁ ବାହାରି ପଡ଼ିଲେ । ବ୍ରାହ୍ମଣୀ ନଦୀରେ ବଢି ଆସିଥାଏ । ନଦୀରେ ପାରିହେବା ବଡ଼ କଠିନ ଏବଂ ସମୟ ସାପେକ୍ଷ ମଧ୍ୟ । ତେଣୁ ଢେଙ୍କାନାଳ ଗଡ଼ରେ ଖବର ପହଞ୍ଚିଲା ବେଳକୁ ସନ୍ଧ୍ୟା ହୋଇ ଯାଇଥାଏ ।

ସେଦିନ ସନ୍ଧ୍ୟାରେ ରାଜାଙ୍କ ନଅରରେ ଗୋଟିଏ ଭୋଜିର ଆୟୋଜନ ଚାଲିଥାଏ । ରାଜା ଶଙ୍କର ପ୍ରତାପ ଦୀର୍ଘ ୧୮ ବର୍ଷ ପର୍ଯ୍ୟନ୍ତ ନିଃସନ୍ତାନ ଥିଲେ । ୧୮ ବର୍ଷ ବିବାହ ପରେ, ରାଜାଙ୍କର ଗୋଟିଏ ପୁତ୍ର ସନ୍ତାନ ଜନ୍ମଲାଭ କରିଥିଲା । ଆସାମର କାମାକ୍ଷା ଠାକୁରାଣୀଙ୍କୁ ଆରାଧନା କରିବା ଦ୍ୱାରା କୁଆଡ଼େ ପୁଅ ହୋଇ ଥିବାରୁ ରାଜା ତାଙ୍କ ପୁଅଙ୍କ

ନାମ କାମାକ୍ଷା ଦେଇଥିଲେ । ଜନ୍ମର ଏକବର୍ଷ ପୂର୍ତ୍ତି ଉପଲକ୍ଷେ । ସେ ଦିନ ରାଜାଙ୍କ ନଅରରେ ଭୋଜିର ଧୂମ୍ ଧାମ୍ ଉତ୍ସବ ଚାଲିଥାଏ । ଖିଆପିଆ ଆରମ୍ଭ ହୋଇ ନଥାଏ । ନିମନ୍ତ୍ରିତ ଭଦ୍ର ବ୍ୟକ୍ତିମାନେ ଆସି ପହଞ୍ଚି ଯାଇ ଥାନ୍ତି । ଭୋଜିର ରନ୍ଧା ବଢା, ଖାଦ୍ୟ ପ୍ରସ୍ତୁତି ସବୁ ସରିଥାଏ । ରାଜା ଶଙ୍କର ପ୍ରତାପ ଉତ୍ସବ ମୁଖରେ ଥାନ୍ତି । ଏହି ସମୟରେ ଖବର ଆସି ରାଜାଙ୍କ ନଅରରେ ପହଞ୍ଚିଲାଯେ, 'ମଢି ଜଳୁଛି' । ଭୋଜି, ମହୋତ୍ସବ ଖିଆ ପିଆ ଆୟୋଜନ ଭାଙ୍ଗିଗଲା । ବିମର୍ଷ ବଦନରେ ନିମନ୍ତ୍ରିତ ଭଦ୍ରବ୍ୟକ୍ତି ମାନେ ଫେରିଗଲେ । କିଛି ମାସ ପରେ ଭାରତ ଛାଡ଼ ଆନ୍ଦୋଳନ ଥମି ଯାଇଥିଲା । ପରେ ପରେ ରାଜାଙ୍କ ଶାସନ ପୁନରାୟ ଚାଲୁ ହୋଇଥିଲା । ସେହି ସମୟରେ ଭସ୍ମିଭୂତ ହୋଇ ଯାଇଥିବା 'ମଢି' ରାଜାଙ୍କ ମନରେ ଗଭୀର ରେଖାପାତ କରିଥିଲା । ତେଣୁ ରାଜା ପୁନର୍ବାର ମଢି ନାମ ଉଚ୍ଚାରଣ କରିବାକୁ ଚାହୁଁନଥିଲେ । ତେଣୁ ମଢି କବଳରେ ନୂଆ ନାମ ଦେବାକୁ ଚାହିଁ ଥିଲେ । ସେହି ସମୟରେ ରାଜା ତାଙ୍କ ପୁଅ 'କାମାକ୍ଷା'ଙ୍କ ନାମ ଅନୁସାରେ ମଢିର ନାମ "କାମାକ୍ଷା ନଗର" ଦେଇଥିଲେ ।

୧୯୪୨ ମସିହା ଅଗଷ୍ଟ ୧୬ ତାରିଖ ଦିନ ଯେଉଁ ମଢି ପୋଡ଼ି ଘଟଣା ଘଟିଥିଲା, ସେତେବେଳେ ବ୍ରିଟିଶ ସରକାର ରାଜାଙ୍କୁ ସାହାଯ୍ୟ କରିବା ଅବସ୍ଥାରେ ନଥିଲେ । କାରଣ ସେତେବେଳେ ସାରା ଭାରତରେ ବିଦ୍ରୋହର ନିଆଁ ଜଳୁଥିଲା । ସେତେବେଳକୁ ଢେଙ୍କାନାଳ ରାଜା ଶକ୍ତିହୀନ ହୋଇ ପଡ଼ି ଥିଲେ । ସମଗ୍ର ଦେଶର ପରିସ୍ଥିତି ଭିନ୍ନ ଥିବାରୁ ରାଜା ଇଂରେଜ ସହାୟତା ପାଇ ପାରି ନଥିଲେ । ତେଣୁ ମଢି ଅଞ୍ଚଳକୁ ପୋଲିସ ପଠାଇ ଆନ୍ଦୋଳନକୁ ଦମନ କରିବା ସମ୍ଭବପର ନଥିଲା । ତେଣୁ ବିପ୍ଳବୀ ମାନେ 'ମଢି' ମାଳପୁରା' ପରେ ପରେ ମଢି ଏବଂ ଭୂବନ ମଝିରେ ଥିବା ଗ୍ରାମ ଗୁଡ଼ିକୁ ଯାଇ, ଜାତୀୟ ପତାକା ଉଡ଼ାଇ ବିପ୍ଳବୀ ଗୀତ ମାନ ଗାଇ ଗାଇ ସଂଗଠନ ମାନ ଗଠନ କଲେ । ବିପ୍ଳବୀ ମାନଙ୍କର ଖାଇବା ପିଇବା ଗାଁ ଲୋକମାନେ ବୁଝୁଥାନ୍ତି ।

କେବଳ ସେତିକି ନୁହେଁ, ଆହୁରି ଅନେକ ଐତିହାସିକ ଘଟଣାବଳୀ ଇତିହାସର ପୃଷ୍ଠା ମଣ୍ଡନ କରି ନପାରି ସୁପ୍ତ ଅବସ୍ଥାରେ ପଡ଼ି ରହିଛି । ତାକୁ ଲୋକ ଲୋଚନକୁ ଆଣିବା ପାଇଁ ବହୁ ଉଦ୍ୟମ ଲୋଡ଼ା । ଉଦ୍ୟମ ନହେଲେ ସେହି ଘଟଣାବଳୀ ଗୁଡ଼ିକ ଲୁପ୍ତ ପ୍ରାୟ ହୋଇ ଯାଇପାରେ । କାରଣ ଆଜିର ଯୁବ ସମାଜର ପ୍ରଭାବେ ପୁରାତନ ଐତିହାସିକ ଘଟଣାବଳୀ ଗୁଡ଼ିକ ଉପରେ ନାହିଁ କହିଲେ ଚଳେ । ଇତିହାସ ଯେ, ଆଜିର ଯୁବ ସମାଜକୁ

ଦେଶଭକ୍ତିର ପ୍ରେରଣା ଯୋଗାଇବ ସେହି କଥା କେହି କେବେ ଭାବି ପାରୁନାହାନ୍ତି । ତେଣୁ ଦେଶ ପ୍ରେମର ଅବକ୍ଷୟ ଘଟିବାରେ ଲାଗିଛି । ଏହା ଆମେ ଅସ୍ୱୀକାର କରି ପାରିବା ନାହିଁ । ଭାରତର ସ୍ୱାଧୀନତା ଆନ୍ଦୋଳନ ଉପରେ ଯେଉଁ ଆଲୋଚନା କରାଗଲା । ତାହା ସଂପୂର୍ଣ୍ଣ ଇତିହାସର କିଛି ଅଂଶ ବିଶେଷ । 'ଚାନ୍ଦପୁର' ଥାନା ଅଧିକାର, କୁଆଁପାଳ ଯଜ୍ଞ, ଭୌମକର ବଂଶ ରାଜୁତି, ପରଜଙ୍ଗ ଥାନ ଉପରେ ଆକ୍ରମଣ ସମୟରେ ଘଟିଥିବା ଦୟନୀୟ ଘଟଣା, ଜହ୍ନୀପଡ଼ା ଗ୍ରାମରେ ଗୁଳିଗୋଳା ବର୍ଷଣ, ରାଜାଙ୍କର ଜେଲ ଜୁରୁମନା, ଫାଶୀଦଣ୍ଡ ଆଦେଶ, ବିଭିନ୍ନ ଅଞ୍ଚଳରେ ରାଜାଙ୍କ ଖମାର ଲୁଟ ଇତ୍ୟାଦି ଇତ୍ୟାଦି ଘଟଣା ସମୂହକୁ ଦର୍ଶାଯାଇ ପାରିଲା ନାହିଁ । ପୁସ୍ତକରେ ଏହି ଘଟଣାବଳୀ ଗୁଡ଼ିକୁ ବାଦ୍ ଦେବାର ପ୍ରୟାସ ନଥିଲେ ମଧ୍ୟ ପୁସ୍ତକର କଳେବର ଦୃଷ୍ଟିରୁ ବାଦ ଦେବାକୁ ପଡ଼ିଲା । ଆଜିର ସବ୍‌ଡ଼ିଭିଜନ କୁହାଯାଉଥିବା 'କାମାକ୍ଷାନଗର'ର ପୂର୍ବ ସୁପ୍ତ ଇତିହାସକୁ ଯାଗ୍ରତ କରିବାର ଚେଷ୍ଟା ମୋ ପକ୍ଷରେ ହାସ୍ୟାସ୍ପଦ ହୋଇପାରେ, କିନ୍ତୁ ତାହା ଯାଗ୍ରତ କରିବା ନିମନ୍ତେ ପୁସ୍ତକ ପ୍ରକାଶିତ ହୋଇଛି କି ନାହିଁ ତାହା ମୁଁ ଯାଣେନା – କିନ୍ତୁ ଯଦି ନହୋଇଥାଏ, ହେବା ନିତ୍ୟାନ୍ତ ଜରୁରୀ । ଭାରତୀୟ ଜାତୀୟ ଜାଗରଣ ଉପରେ ଗଡ଼ଜାତ ମୂଳକର ଏପରି ପ୍ରଭାବ ପ୍ରାୟ ଓଡ଼ିଶା ଇତିହାସରେ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । କାହିଁକି କେ'ଜାଣି ଢେଙ୍କାନାଳ ଜିଲ୍ଲାର ସାହିତ୍ୟ, ଇତିହାସ ଏବଂ ଭୌଗଳିକ ପରପାଟୀ ଉଚ୍ଚ କୁଟୀର ହେଲେ ମଧ୍ୟ ଦେଶ ଜାତିର ଦ୍ୱାର ଦେଶରେ ପହଞ୍ଚି ପାରୁନି । ବୋଧହୁଏ ଏହା ଗଡ଼ଜାତିଆ ମାନଙ୍କର ଇଚ୍ଛା ଶକ୍ତିର ଅଭାବ ହୋଇପାରେ କିମ୍ବା ଲେଖକ ମାନଙ୍କୁ ପ୍ରୋତ୍ସାହନର ଅଭାବ ଥାଇ ପାରେ ।

ଗଡ଼ଜାତର ଗାନ୍ଧୀ ସାରଙ୍ଗଧର ଦାସଙ୍କର ଘଟଣା ବହୁଳ ଜୀବନୀ ଆଜି ସମସ୍ତଙ୍କ ନିକଟରେ ପହଞ୍ଚି ପାରିନି । ଢେଙ୍କାନାଳ ପ୍ରତି ତାଙ୍କର ଐତିହାସିକ ଅବଦାନର ତୁଳନା ନାହିଁ । ତାଙ୍କ ଇତିହାସ ଆଜି ସୁପ୍ତ । ପୂର୍ବ ଗୌରବ ସାଂପ୍ରତିକ ସମାଜର ଉନ୍ନତିର ସୋପାନ । କିନ୍ତୁ ତାହା ଆଜି ଆମେ ଭୂଲି ଯାଇଛେ ।

ସୁରେନ୍ଦ୍ର ନାଥ ମିଶ୍ରଙ୍କର 'ବାଜିରାଉତ' ପୁସ୍ତକରେ ସେ ଢେଙ୍କାନାଳର ପ୍ରଜା ଆନ୍ଦୋଳନ ତଥା ପ୍ରଜାମଣ୍ଡଳ ବିଷୟରେ ଦର୍ଶାଇ ଥିବା ତଥ୍ୟ ପ୍ରଣିଧାନ ଯୋଗ୍ୟ । ଭାରତୀୟ ଜାତୀୟ ଆନ୍ଦୋଳନରେ "ଢେଙ୍କାନାଳ ପ୍ରଜାମଣ୍ଡଳର ଭୂମିକା ଉପରେ ସେ ଯେଉଁ ଦାବୀ ଉପସ୍ଥାପିତ କରିଛନ୍ତି ତାହା ଢେଙ୍କାନାଳର ବୀରତ୍ୱ, ଢେଙ୍କାନାଳର ପ୍ରଜାମଣ୍ଡଳ ଆନ୍ଦୋଳନ ଭାରତର ଜାତୀୟ ସ୍ୱାଧୀନତା ସଂଗ୍ରାମର ଅଂଶ ବିଶେଷ ହେଲେ ମଧ୍ୟ ଏହାର ସ୍ୱାତନ୍ତ୍ର୍ୟ ଅଛି

ଏବଂ ଅଛି ଦୁର୍ଲ୍ଲଭ ବୈଶିଷ୍ଟ୍ୟ । ରାଜଶକ୍ତି ବିରୁଦ୍ଧରେ ସନ ୧୭୪୨ ରୁ ୧୯୪୨ ମସିହା ଯାଏ ଦୁଇ ଶତକଧରି ଅନେକ ବାର ପ୍ରଜାଙ୍କ ପ୍ରତିବାଦର ସ୍ୱର ଉତ୍ତୋଳନ କରି ସେମାନଙ୍କର ନ୍ୟାୟ ପୂର୍ଣ୍ଣ ଅଧିକାର ପାଇଁ ଏକଛତ୍ରବାଦୀ ରାଜୁଡ଼ା ଶାସନ ବିରୁଦ୍ଧରେ ଆନ୍ଦୋଳନ କରିଛନ୍ତି ।

(ପ୍ରାକ୍ କଥନ । ଅମର ଶହୀଦ ବାଜି ରାଉତ – ସୁରେନ୍ଦ୍ର ନାଥ ମିଶ୍ର )

ଆଜୀବନ ବିପ୍ଳବୀ, ଯାହାଙ୍କର ପ୍ରତି ଧମନୀରେ ପ୍ରବାହିତ ରକ୍ତ କଣିକା ରାଜତନ୍ତ୍ର ବିରୋଧରେ ଅସି ଉତ୍ତୋଳନ କରି ଆସିଛି । ସତ୍ୟ, ନ୍ୟାୟ, ନିଷ୍ଠା, କର୍ମ ଯାହାଙ୍କ ଜୀବନର ଆଦର୍ଶ, ଯେ ଛାତ୍ର ଜୀବନରୁ ଦେଶର ସ୍ୱାଧୀନତା ପର୍ଯ୍ୟନ୍ତ ରାଜନୈତିକ ପଶାପାଲିରେ ନିକ୍ଷେପିତ, ସେହି ଅପ୍ରତିଦ୍ୱନ୍ଦୀ ସ୍ୱାଧୀନତା ସଂଗ୍ରାମୀଙ୍କର ଜୀବନୀ ଢେଙ୍କାନାଳର ସ୍ୱାଧୀନତା ସଂଗ୍ରାମର ଇତିହାସ କହିଲେ ଚଳେ । ସେ ହେଉଛନ୍ତି ଢେଙ୍କାନାଳ ପ୍ରଜା ମଣ୍ଡଳର ପ୍ରଥମ ସଂପାଦକ ଶ୍ରୀଯୁକ୍ତ ବୈଷ୍ଣବ ଚରଣ ପଟ୍ଟନାୟକ । ତାଙ୍କ ଜୀବନର ଘଟଣା ଉପରେ ଲେଖନୀ ଚାଳନା କରିବା ମୋ ପକ୍ଷେ ଧୃଷ୍ଟତା ବ୍ୟତୀତ ଆଉ କିଛି ନୁହେଁ । ତାଙ୍କର ନିରଳସ ଜୀବନ ଆଜିର ଯୁବ ସମାଜ ପ୍ରତି ଧ୍ୟେୟ ହେବା ଉଚିତ୍ । ତାଙ୍କ ପାଣ୍ଡୁ ଲିପିରୁ ସଂଗୃହୀତ କିଛି ତଥ୍ୟାବଳୀ ଏଥିରେ ସ୍ଥାନ ପାଇଅଛି । ତାଙ୍କ ପାଣ୍ଡୁଲିପି ଏକ ସ୍ୱତନ୍ତ୍ର ଇତିହାସ ପୁସ୍ତକ ରୂପେ ଯଦି ପ୍ରକାଶିତ ହୋଇ ପାରନ୍ତା ସେଥିରୁ ଢେଙ୍କାନାଳ ଏବଂ କାମାକ୍ଷା ନଗରର ବହୁ ସୁପ୍ତ ତଥ୍ୟାବଳୀ ଯାଗ୍ରତ ହୋଇ ପାରନ୍ତା । ଢେଙ୍କାନାଳ ଇତିହାସ ହେଉଛି ଗବେଷଣା ସାକ୍ଷେପ । ଏହା ଉପରେ ବୈଷ୍ଣବ ଚରଣ ପଟ୍ଟନାୟକଙ୍କର ଉତ୍ତର ଦାୟାଦ ମାନେ ଖୋଲା ମନରେ ଅପେକ୍ଷା ରତ ।

କେବଳ ସେତିକି ନୁହେଁ ଅବିଭକ୍ତ ଢେଙ୍କାନାଳର ଦେଶୀୟ ରାଜ୍ୟ ଗୁଡ଼ିକରେ ଏହିପରି ଅନେକ ସ୍ୱାଧୀନତା ସଂଗ୍ରାମୀ ଅଦ୍ୟାବଧି ଇତିହାସ ପୃଷ୍ଠା ମଣ୍ଡନ କରି ପାରିନାହାନ୍ତି । ଅବିଭକ୍ତ ଢେଙ୍କାନାଳର ଦେଶୀୟ ରାଜ୍ୟ ଢେଙ୍କାନାଳ, ହିନ୍ଦୋଳ, ତାଳଚେର, ଆଠମଲ୍ଲିକ ଓ ପାଲଲହଡ଼ା ଅଞ୍ଚଳରେ ଏହି ପ୍ରଜାମଣ୍ଡଳ ଆନ୍ଦୋଳନ ଉଗ୍ରରୂପ ନେଇଥିଲା । କଂଗ୍ରେସର ଦେଶୀୟ ରାଜ୍ୟ ବ୍ୟାପାରରେ ସିଧାସଳଖ ହସ୍ତକ୍ଷେପ କରିନଥିଲେ ମଧ୍ୟ ବିଭିନ୍ନ ଦଳର ନେତାମାନେ ଦେଶୀୟ ରାଜ୍ୟ ଆନ୍ଦୋଳନର ପୁରୋଭାଗରେ ଥିଲେ ଏବଂ ସେମାନଙ୍କ ଦ୍ୱାରା ଜନତା ପ୍ରଭାବିତ ହୋଇଥିଲେ । ଫଳରେ ଢେଙ୍କାନାଳର ପ୍ରତ୍ୟେକ ରାଜ୍ୟରେ ପ୍ରଜାମଣ୍ଡଳ ମାନ ଗଢି ଉଠିଥିଲା ଓ ଶେଷରେ ସଂଗ୍ରାମୀ ମାନେ ସଫଳ ହେଲେ । ଭାରତୀୟ ସ୍ୱାଧୀନତା ସଂଗ୍ରାମର ଏହି ରାଜ୍ୟମାନଙ୍କ ଉପରେ ପ୍ରଭାବ ଓ ପ୍ରଜା ମଣ୍ଡଳ ଗଠନ ସାମଗ୍ରିକ

ଭାବେ ସଫଳତା ବିଫଳତାର ଏକ ଇତିହାସ ସୃଷ୍ଟି କରି ପାରିଥିଲା । ଏହି ରାଜନୈତିକ ଘଟଣାବଳୀ ଏହି ଅଞ୍ଚଳଗୁଡ଼ିକର ଅତୀତକୁ ଗୌରବୋଜ୍ଜ୍ୱଳ ଓ ମହିମା ମଣ୍ଡିତ କରିବା ସହିତ ଏହି ଅଞ୍ଚଳର ଭବିଷ୍ୟତ ପିଢିମାନଙ୍କ ମନରେ ଭବିଷ୍ୟତର ସଫଳ ଅଗ୍ରଗତି ପାଇଁ ନିଜ ଉପରେ ବିଶ୍ୱାସ, ସାହାସ, ଶକ୍ତି, ଏବଂ ଦମ୍ଭ ଭରିଦେବା ସଙ୍ଗେ ସଙ୍ଗେ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ପ୍ରେରଣା ଯୋଗାଇବ ।

ଇତିହାସ ହେଉଛି କିଛି ଘଟଣାବଳୀ, କିଛି ତଥ୍ୟ, କିଛି କିମ୍ବଦନ୍ତୀ, କିଛି ଜନଶ୍ରୁତି ଏବଂ କିଛି ଲୋକ କଥାକୁ ନେଇ ଏକ ସମ୍ମିଳିତ ପୁସ୍ତକ । ଏଥିରେ ନୂଆ ପୁରୁଣା, ଜଣା ଅଜଣା ଉପରେ ବିଶେଷ ଗୁରୁତ୍ୱ ନଥାଏ । ଆମେ ଯେତେ ତଥ୍ୟର ଗଭୀର ସ୍ତରକୁ ଯାଇ ପାରିବା ଆମେ ସେତିକି ସଂଗ୍ରହ କରି ପାରିବା, ତାହା ମଧ୍ୟ ସେତେ ସମୟ ସାପେକ୍ଷ । କିନ୍ତୁ ଇତିହାସର ସବୁବେଳେ ଉପାଦେୟତା ରହି ଆସିଛି ଏଥିରେ ଦ୍ୱିମତ ନାହିଁ । ଜଣେ ଅଧମ ଲେଖକ ଭାବେ ଏହା ମୋର ବ୍ୟକ୍ତିଗତ ମତ । ପରବର୍ତ୍ତି ଅଧ୍ୟାୟରେ ଆମେ ସେହିପରି ଦେଖିବା ଅବିଭକ୍ତ ଢେଙ୍କାନାଳର ଦେଶୀୟ ରାଜ୍ୟ ହିନ୍ଦୋଳ ଗଡ଼ଜାତ ଉପରେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର କିପରି ପ୍ରଭାବ ବିସ୍ତାର କରିଥିଲା ।



# ପଞ୍ଚମ ପରିଚ୍ଛେଦ

## ସ୍ୱାଧୀନତାର ପୂର୍ବବର୍ତ୍ତୀ ଏବଂ ପରବର୍ତ୍ତୀ ଐତିହାସିକ, ରାଜନୈତିକ ଏବଂ ଶିକ୍ଷାର ପୃଷ୍ଠଭୂମି ଓ "ହିନ୍ଦୋଳ ଗଡ଼ଜାତ"

ପୃଷ୍ଠା ବହୁଳ, ଘଟଣା ବହୁଳ, ତଥ୍ୟ ବହୁଳ, ରାଜବଂଶ ବହୁଳ ଏବଂ ପରଂପରା ବହୁଳ ଓଡ଼ିଶା ଇତିହାସ । କେତେ ଦଳପତି, ଜମିଦାର, ରାଜା, ଗଜପତି, ନରପତି, ଭଂଜବଂଶୀ, ସୂର୍ଯ୍ୟବଂଶୀ ଇତିହାସ ପୃଷ୍ଠା ମଣ୍ଡନ କରିବା ଫଳରେ ଆଜିର ଓଡ଼ିଶା ଇତିହାସ ରସାପ୍ଲୁତ ହୋଇ ପାରିଅଛି । ଖ୍ରୀଷ୍ଟପୂର୍ବରୁ ଆରମ୍ଭ କରି ସ୍ୱାଧୀନତା ପରେ ଗଡ଼ଜାତ ଗୁଡ଼ିକର ମିଶ୍ରଣ ପର୍ଯ୍ୟନ୍ତ କେତେ ଯେ ରାଜବଶଂର ଉତ୍‌ଥାନ ପତନ ଘଟି ଯାଇଛି ତାର ହିସାବ ନାହିଁ । ମଧ ପ୍ରଦେଶରେ ବାସ କରୁଥିବା ଚେଦୀ ବଂଶର ରାଜା ଖାରବେଳ ବିରାଟ ସେନାବାହିନୀକୁ ନେଇ ଓଡ଼ିଶାରେ ରାଜ୍ୟ ପ୍ରତିଷ୍ଠା କରିଥିଲେ । ତାଙ୍କର ରାଜଧାନୀ ଥିଲା କଳିଙ୍ଗ ନଗର । ତାଙ୍କର ଉଦୟ ଗିରି ପାହାଡ଼ର ହାତୀଗୁମ୍ଫାରେ ଥିବା ଅନୁଶାସନ ଐତିହାସିକ ମାନଙ୍କୁ ଲେଖିବାରେ ଉପାଦାନ ଯୋଗାଇ ପାରିଛି । ଉନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଐତିହାସିକ ଷ୍ଟାର୍ଲିଂନ ଏହାକୁ ପ୍ରଥମେ ଆବିଷ୍କାର କରି ଖାରବେଳଙ୍କର ତ୍ରୟୋଦଶ ବର୍ଷର କୃତିତ୍ୱ ବର୍ଣ୍ଣନା କରିଥିଲେ । ତ୍ରୟୋଦଶ ବର୍ଷପରେ ତାଙ୍କ ରାଜତ୍ୱର କୌଣସି ବିବରଣୀ ମିଳେନାହିଁ । ଉଦୟଗିରି ପାହାଡ଼ର ହାତୀ ଗୁମ୍ଫା ପରି ବିଭିନ୍ନ ରାଜବଂଶର ବିବରଣୀ ତାମ୍ର ପ୍ରସ୍ଥରେ କିମ୍ବା ବଡ ବଡ ପ୍ରସ୍ତର ମାନଙ୍କରେ ଉତ୍‌କୀର୍ଣ୍ଣ ହୋଇଥିବା ଶିଳା ଲେଖ ଗୁଡ଼ିକରୁ ପ୍ରତୀୟମାନ ହୋଇଥାଏ । କେଉଁଠି ଭଗ୍ନ ରାଜବାଟୀ, ଭଗ୍ନ ପ୍ରାଚୀର, ପୋତିହୋଇ ଯାଇଥିବା ଗଡ଼ଖାଇ ରାଜବଂଶ ମାନଙ୍କର ମୂକସାକ୍ଷୀ ରୂପେ ଦଣ୍ଡାୟମାନ ହୋଇଅଛି । ଏସବୁ ଐତିହାସିକ ମାନଙ୍କୁ ଇତିହାସ ଲେଖିବାର ଖୋରାକ ଯୋଗାଇ ଥାଏ । ଭାରତ ବାହାରୁ ଅର୍ଥାତ୍ ଗ୍ରୀକ୍, ଚୀନ୍, ୟୁରୋପୀୟ ରାଷ୍ଟ୍ର ମାନଙ୍କର ବିଭିନ୍ନ ସମୟରେ ପରିବ୍ରାଜକ ମାନେ ଭାରତକୁ ଆସି ସେମାନେ ସେମାନଙ୍କର ବିଭିନ୍ନ ମତ ପୋଷଣ କରିଥାନ୍ତି । ଯାହାକୁ ଆମେ କହିଥାଉ 'ଭାରତ ବିବରଣୀ' ଯଥା – ମେଘାସ୍ଥିନ୍‌ସ୍‌ଙ୍କ ଭାରତ ବିବରଣୀ, ହୁଏନ୍‌ସାଂଙ୍କ ଭାରତ ବିବରଣୀ ଏବଂ ଆଇନ-ଇ-ଆକବରି ଇତ୍ୟାଦି । ଏହି ବିବରଣୀ ଗୁଡ଼ିକ ଅଦ୍ୟାବଧି ଐତିହାସିକ ମାନଙ୍କୁ ନୂତନ ନୂତନ୍ ତଥ୍ୟ ଯୋଗାଇଥାଏ । ସେମାନଙ୍କର ଭାରତ ବିବରଣୀ ସମଗ୍ର ଭାରତ ବର୍ଷର ଏକ ବିସ୍ତୃତ ଭୌଗଳିକ ବିବରଣୀ ପ୍ରଦାନ କରିଥାଏ । ଓଡ଼ିଶାର ନାମକରଣ

ଦୃଷ୍ଟିରୁ ଓଡ଼ିଶାକୁ କେତେବେଳେ କଳିଙ୍ଗ, କେତେବେଳେ ଉତ୍କଳ, କେତେବେଳେ ଓଡ୍ର ଏବଂ କେତେବେଳେ କୋଶଳ ଇତ୍ୟାଦି ନାମରେ ନାମିତ କରା ଯାଇଥାଏ ।

ତେଣୁ ବିଭିନ୍ନ ସମୟରେ ବିଭିନ୍ନ ନରପତି ମାନଙ୍କର ରାଜ୍ୟ ଶାସନ ଓଡ଼ିଶାର ବିଭିନ୍ନ ଭୂଖଣ୍ଡରେ ଥିଲା । ଏହା ଆଜିର ଇତିହାସ ପ୍ରମାଣ କରେ । ଇଂରେଜମାନେ ଭାରତକୁ ଅଧିକାର କରିଲା ପରେ ଦେଶୀୟ ରାଜନୈତିକ ପରିସ୍ଥିତି ହେଉ କିମ୍ବା ଭୌଗଳିକ ପରିବେଶ ହେଉ ପୁରାତନ ଏବଂ ନୂତନ ଶାସନ ବିବରଣୀ ଇତ୍ୟାଦି ଷ୍ଟେଟ ଗେଜେଟ (State Gazette) ମାନଙ୍କରେ ପ୍ରକାଶ ପାଉଥିଲା । ଷ୍ଟେଟ ଗେଜେଟ ହେଉଛି ଏକ ଭୌଗଳିକ ଅଭିଧାନ । କୌଣସି ରାଜ୍ୟ କିମ୍ବା ଅଧିବାସୀ ମାନଙ୍କ ଉପରେ କିଛି ନୂତନ ତଥ୍ୟ ଜାଣିବାକୁ ହେଲେ ଐତିହାସିକ ପୁସ୍ତକ ପରି ଷ୍ଟେଟ ଗେଜେଟର ମଧ ସହାୟତା ନେବାକୁ ପଡ଼ିଥାଏ । ଭାରତ ବର୍ଷରେ ପୁରାତନ ପ୍ରସ୍ତର ଯୁଗରୁ ସାଂପ୍ରତିକ ସଭ୍ୟତା ଭିତରେ କେତେ ଐତିହାସିକ, ରାଜନୈତିକ ଏବଂ ଭୌଗଳିକ ପରିବର୍ତ୍ତନ ହୋଇଛି ତାହା କଳନା କରିବା ଆଜି ସମ୍ଭବ ନୁହେଁ ।

ବହୁ ପୂରାକାଳରୁ ଓଡ଼ିଶାରେ ଶବର ଜାତୀୟ ଅଧିବାସୀ ମାନେ ବସତି ସ୍ଥାପନ କରି ଆସୁଥିଲେ । ତେଣୁ ଓଡ଼ିଶାର ସଂସ୍କୃତିକୁ ଶାବର ସଂସ୍କୃତି କୁହାଯାଏ । ଆର୍ଯ୍ୟମାନେ ଯେତେବେଳେ ଏହି ଅଞ୍ଚଳକୁ ତୀର୍ଥ କରିବା ପାଇଁ ଆସନ୍ତି ସେମାନଙ୍କୁ ନିଜ ଦେଶକୁ ଗଲାପରେ ସଂସ୍କାର ହେବାକୁ ପଡ଼ିଥାଏ । ତେଣୁ ମନୁ ସଂହିତାରେ ଉଲ୍ଲେଖ ଅଛି :-

**"ଅଙ୍ଗ ବଙ୍ଗ କଳିଙ୍ଗେଷୁ ମଗଧେ ସୌରାଷ୍ଟ୍ରେଷୁଚ,**

**ତୀର୍ଥ ଯାତ୍ରାଂ ବିନା ଗଚ୍ଛନ୍ ପୁନଃ ସଂସ୍କାର ମର୍ହତି ।।"**

ଏଥିରୁ ଅନୁମାନ କରାଯାଏ ଯେ, ସେତେବେଳେ କଳିଙ୍ଗରେ ସଂସ୍କାର ବିହୀନ ଜନଜାତିମାନେ ବସବାସ କରୁଥିଲେ । ଏହି ସଂସ୍କାର ବିହୀନ ଜନଜାତି ମାନଙ୍କ ଉପରେ ଆମେ ଟିକିଏ ଦୃଷ୍ଟିପାତ କରିବା ।

ଢେଙ୍କାନାଳ ହେଉଛି ଓଡ଼ିଶାର ମଧ ଭାଗରେ ଅବସ୍ଥିତ । ଏହା ଭାରତ ବର୍ଷର ଗୋଟିଏ ପ୍ରାଚୀନ ଭୂଖଣ୍ଡ । ଏହା ଅନେକ ଗୁଡ଼ିଏ ଛୋଟ ଛୋଟ ରାଜ୍ୟରେ ବିଭକ୍ତ ଥିଲା । ଏହି ଭୂଖଣ୍ଡକୁ 'ଓଡ୍ର' କୁହାଯାଏ । ଏହାର ପୂର୍ବରେ କଳିଙ୍ଗ ଅର୍ଥାତ୍ ଓଡ଼ଶାର ଉପକୂଳବର୍ତ୍ତୀ ଅଞ୍ଚଳ କଟକ, ପୁରୀ ଏବଂ ବାଲେଶ୍ୱର ଇତ୍ୟାଦି । ପଶ୍ଚିମରେ କୋଶଳ ରାଜ୍ୟ ଅର୍ଥାତ୍

ସମ୍ବଲପୁର, ସୋନ୍‌ପୁର ଏବଂ ବଲାଙ୍ଗୀର ଇତ୍ୟାଦି । ଏହି ଓଡ୍ର ଦେଶ, କୋଶଳ ଦେଶ ଏବଂ କଳିଙ୍ଗ ପରସ୍ପର ଠାରୁ ଭିନ୍ନ ଥିଲା । କିଛି ଅଭିଲେଖକୁ ନେଇ ଐତିହାସିକ ମାନେ ମତ ପୋଷଣ କରନ୍ତି ଯେ, ଓଡ୍ର ଦେଶ ଅଧୁନା ଖୋର୍ଦ୍ଧା ପର୍ଯ୍ୟନ୍ତ ପରି ବ୍ୟାପ୍ତ ଥିଲା । ଅଦ୍ୟାବଧି କେତେ ଗୁଡ଼ିଏ ଗ୍ରାମ ମାନଙ୍କର ନାମ କରଣରୁ ଏହା ଅନୁମାନ କରାଯାଇଥାଏ । ଏହି ପ୍ରାଚୀନ ଭୂଖଣ୍ଡ କେତେଗୁଡ଼ିଏ ଛୋଟ ଛୋଟ ରାଜ୍ୟରେ ବିଭକ୍ତ ହୋଇଥିଲା ଯଥା:- ଓଡ୍ର, ଝାଡ଼ଖଣ୍ଡ ମଣ୍ଡଳ, କୋଦାଳକ ମଣ୍ଡଳ, କରମୂଳ ମଣ୍ଡଳ ଏବଂ ହିନ୍ଦୋଳ ମଣ୍ଡଳ । ସେତେବେଳେ କୌଣସି ଜନଜାତି ହୁଅନ୍ତୁ ନା କାହିଁକି ସେମାନେ ପଶୁ ପାଳନ ଏବଂ କୃଷି ନିମନ୍ତେ ଜଳ ଥିବା ନିକଟବର୍ତ୍ତୀ ଏବଂ ଚାଷୋପଯୋଗୀ ଅଞ୍ଚଳ ଗୁଡ଼ିକରେ ବସତି ସ୍ଥାପନ କରୁଥିଲେ । ଏହା କୁହାଯାଇ ପାରେ ଯେ, ଏଠାରେ ବ୍ରାହ୍ମଣୀ ନଦୀ ଥିବାରୁ ତାର ନିକଟବର୍ତ୍ତୀ ଅଞ୍ଚଳରେ ବହୁ ଆଦିମ କାଳରୁ ଓଡ୍ର ଜନଜାତି ବାସକରି ଆସୁଥିଲେ । ତେଣୁ ଏହି ଭୂଖଣ୍ଡ ପ୍ରଥମେ ଆଦିବାସୀ ଅଧୁଷିତ ଅଞ୍ଚଳଭାବେ ପରିଗଣିତ ହେଉଥିଲେ ହେଁ, ପରବର୍ତ୍ତୀ କାଳରେ ଓଡ୍ର ଜାତିର ଆଦି ନିବାସ ସ୍ଥଳୀରେ ମର୍ଯ୍ୟଦା ଲାଭ କରିଥିଲା । ଏହି ଅଞ୍ଚଳରେ ଛୋଟ ଛୋଟ ରାଜ୍ୟ ଗୁଡ଼ିକୁ ମଣ୍ଡଳ କୁହାଯାଉଥିଲା । ପ୍ରତି ମଣ୍ଡଳରେ ଜଣେ ଲେଖାଁଏ ମଣ୍ଡଳ ନାୟକ, ମଣ୍ଡଳ ମୁଖିଆ, ମଣ୍ଡଳ ସର୍ଦ୍ଦାର କିମ୍ବା ରାଜା ଅଧିନରେ ଥିଲା । ଅନୁମାନ କରାଯାଏ ଯେ, ପ୍ରଥମ କିମ୍ବା ଦ୍ୱିତୀୟ ଶତାବ୍ଦୀ ବେଳକୁ ଆଜିର ଢେଙ୍କାନାଳ, ପାଲଲହଡ଼ା, ତାଳଚେର ର କିଛି ଅଂଶ, ଦେବଗଡ଼ ଏବଂ ସୁନ୍ଦରଗଡ଼ର କିଛି ଅଂଶ ଏବଂ ଆଜିର ହିନ୍ଦୋଳ ଓଡ୍ର ଭାବେ ପରିଚିତ ଥିଲା । ସେତେବେଳେ ହିନ୍ଦୋଳ ମଧ୍ୟ କିଛି ମଣ୍ଡଳରେ ବିଭକ୍ତ ହୋଇଥିଲା । ଅଷ୍ଟମ ଶତାବ୍ଦୀବେଳକୁ ଓଡ଼ିଶାରେ ଭୌମକରବଂଶ ରାଜୁତି କାଳରେ ଢେଙ୍କାନାଳରେ ମଧ୍ୟ ଛୋଟ ଛୋଟ ଅଞ୍ଚଳରେ ରାଜୁତି କରୁଥିଲେ ।

ଇତିହାସରୁ ଏବଂ ବିଭିନ୍ନ ଐତିହାସିକ ମାନଙ୍କର ଆଲୋଚନାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ଓଡ୍ରମାନେ ବ୍ରାହ୍ମଣୀ ନଦୀର ଅବବାହିକାରେ ବସତି ସ୍ଥାପନ ପୂର୍ବକ ସେମାନଙ୍କର ସଂସ୍କୃତି ଓ ସଭ୍ୟତାର ଉନ୍ମେଷ ଘଟାଇ ଥିଲେ । ପରବର୍ତ୍ତୀ ସମୟରେ ଓଡ୍ରମାନେ ଆଦିବାସୀ ଓ ଆର୍ଯ୍ୟ ମାନଙ୍କର ସଂସ୍ପର୍ଶରେ ଆସିବା ଫଳରେ ସେମାନଙ୍କର ସଂସ୍କୃତି ଓ ସଭ୍ୟତାର ପରିବର୍ତ୍ତନ ଘଟିବା ସଙ୍ଗେ ସଙ୍ଗେ ବିକାଶ ମଧ୍ୟ ଘଟିଥିଲା । ଫଳରେ ସେମାନେ ସେମାନଙ୍କର କାୟା ବିସ୍ତାର କରି ଏକ ବିଶାଳ 'ଓଡ୍ର' ସାମ୍ରାଜ୍ୟ ଗଠନ କରିଥିଲେ । ଅଦ୍ୟାବଧି ଓଡ଼ିଶାର ପୂର୍ବନାମ କଳିଙ୍ଗ, ଉତ୍କଳ ଏବଂ କୋଶଳ ପରି 'ଓଡ୍ର' ମଧ୍ୟ ରହିଅଛି । ସେହି ସମୟରେ

ଓଡ୍ର ବଂଶଧରମାନେ ଢେଙ୍କାନାଳର ବିଭିନ୍ନ ଅଞ୍ଚଳକୁ ପରିବ୍ୟାପ୍ତ ହୋଇ ବିଭିନ୍ନ ଅଞ୍ଚଳରେ ଦଳ ବା ମଣ୍ଡଳ ମାନ ଗଠନ କରିଥିଲେ । ସେହି ସମୟରୁ ଅଧୁନା ହିନ୍ଦୋଳର ସୃଷ୍ଟି ହୋଇଥାଇ ପାରେ ବୋଲି ଅନୁମାନ କାରାଯାଇପାରେ । ହିନ୍ଦୋଳ ହେଉଛି ଢେଙ୍କାନାଳ ସଂଲଗ୍ନିତ ଅନ୍ୟାନ୍ୟ ମୂଳକ ପରି ଏକ ମୂଳକ । ଯେପରି କପିଳାସ ମୂଳକ, ଝାଡ଼ଖଣ୍ଡ ମୂଳକ, ବେଶାଳିଆ ମୂଳକ ଏବଂ କରମୂଳ ମୂଳକ ସେହିପରି ହିନ୍ଦୋଳ ଏକ ମୂଳକ । ମଣ୍ଡଳ, ଇଲାକା ଏବଂ ମୂଳକ ଇତ୍ୟାଦି ଶବ୍ଦ ତତ୍କାଳୀନ ଓଡ୍ର ଶବ୍ଦ ।

ଏହାର ଅନ୍ୟ ଏକ କାରଣ ହଉଛି ଭାବ ସାମଞ୍ଜସ୍ୟତା । ସେହି ସମୟରେ ଝାଡ଼ଖଣ୍ଡ ଇଲାକା (ଅଧୁନା ପରଜଙ୍ଗ ଅଞ୍ଚଳ) ବଡ଼ଗଡ଼ (ଅଧୁନା ଢେଙ୍କାନାଳ ଅଞ୍ଚଳ), ହିନ୍ଦୋଳ, କପିଳାସ ତଳ ଅଞ୍ଚଳ, ଦୋଶାଳିଆ ଅଞ୍ଚଳ ପ୍ରତାପି ଶବରମାନଙ୍କର ରାଜୁତି ଥିଲା । ଏହି ଅଞ୍ଚଳ ଓଡ୍ର ଭାଷା, ଜଙ୍ଗଲୀ ଭାଷା, ଅଦିବାସୀ ଭାଷା ଓ ଆଞ୍ଚଳିକ ଭାଷାର ସମ୍ମିଶ୍ରଣରେ ଏକ ନିର୍ଦ୍ଦିଷ୍ଟ ଭାଷାର ଉନ୍ମେଷ ହୋଇଥିଲା । ଅଦ୍ୟାବଧି ସୁଦ୍ଧା ଏହି ଅଞ୍ଚଳର ଭାଷା ଗୁଡ଼ିକରେ ଭାଷାର ସାମଞ୍ଜସ୍ୟତା ରହିଅଛି । ଯଥା :- କିରା, ମୁଁଇ, ତୁଇ, ହେରା, ବୁଲେ ଇତ୍ୟାଦି ଇତ୍ୟାଦି । ଯାହା ହେଉନା କାହିଁକି ଏହି ଭାଷା ଗୁଡ଼ିକ ହେଉଛି ଢେଙ୍କାନାଳ ଅଞ୍ଚଳର ନିଜସ୍ୱ ସୃଷ୍ଟି । ତେଣୁ କୁହାଯାଯଇ ପାରେ ଯେ, ବେଶାଳିଆ, ଗୁଡ଼ିଆନାଳୀ, କଣ୍ଟାନାଳୀ, ଘୁସୁରାନାଳୀ ଶବର ରାଜ୍ୟ ଗୁଡ଼ିକର ସମସାମୟିକ ହିନ୍ଦୋଳ ଏକ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ । ତା ମଧ୍ୟରେ ଚିତଲପୁର ଏକ ସମତଳ ମାଳଭୂମି । ଏହା ବାସୋପଯୋଗୀ ଏବଂ ଚାଷୋପଯୋଗୀ । ନିକଟରେ ଚିରସ୍ରୋତା ବଡ଼ଯୋଡ଼ା ବ୍ରାହ୍ମଣୀର ଏକ ଉପନଦୀ ଥିବାରୁ ଏହା ଏକ ବହୁଳ ଆଦିବାସୀ ଅଞ୍ଚଳ ରୂପେ ବିଦିତ ଥିଲା । ସମୟର ଆବର୍ତ୍ତନ ଓ ବିବର୍ତ୍ତନ ମଧ୍ୟରେ ଭାଷା ଏବଂ ସଂସ୍କୃତିରେ ପରିବର୍ତ୍ତନ ଘଟି ଆଧୁନିକତାରେ ଆମେ ପହଞ୍ଚିଥାଉ । ଯାହାହେଉ ଓଡ଼ିଶାକୁ ଆର୍ଯ୍ୟମାନଙ୍କର ଆଗମନ ପରେ ପରେ ସେମାନଙ୍କର ସଭ୍ୟତା ଓ ସଂସ୍କୃତି ସଂସ୍ପର୍ଶରେ ଆସି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ଗୁଡ଼ିକର ସଭ୍ୟତା, ସଂସ୍କୃତି ଏବଂ ଭାଷାର ପରିବର୍ତ୍ତନ ଆମେ ଲକ୍ଷକରୁ ।

ଇତିହାସକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ଖ୍ରୀଷ୍ଟପୂର୍ବ କାଳରୁ ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ଢେଙ୍କାନାଳ ଅଞ୍ଚଳରେ ଓଡ୍ର ସଭ୍ୟତାର ବିକାଶ ଘଟିଥିଲା । ଏହା ଭୌମକର ବଂଶଙ୍କ ଦ୍ୱାରା ଶାସିତ ହେଉଥିଲା । ସେମାନେ ଏ ଅଞ୍ଚଳକୁ କେନ୍ଦଳକ, ଯମଗର୍ତ୍ତ ଓ କରମୂଳ ମଣ୍ଡଳରେ ବିଭକ୍ତ କରି ଶାସନ କରୁ ଥିବାରୁ ଓଡ୍ର ମାନଙ୍କର ପ୍ରାଧାନ୍ୟ ରହିଲା

ନାହିଁ । କିନ୍ତୁ ପ୍ରଦତ୍ତ ତାମ୍ର ଶାସନରେ ଓଡ୍ର ବିଷୟ ଉଲ୍ଲେଖ ରହିଥିବାରୁ ପ୍ରମାଣିତ ହୁଏ । ଓଡ୍ର ମାନଙ୍କର ସ୍ୱାତନ୍ତ୍ର୍ୟ ସୋମବଂଶ ରାଜତ୍ୱ ପର୍ଯ୍ୟନ୍ତ ବଳବତ୍ତର ରହିଥିଲା । ସୋମବଂଶୀ ରାଜାମାନେ ଓଡ଼ିଶାକୁ ପଶ୍ଚିମ ଦିଗରୁ ଧିରେ ଧିରେ ଅଧିକାର କରି ଆସିଥିଲେ । ସେହି ବଂଶର ରାଜା ଜନ୍ମେଜୟ କୁନ୍ତ ଉଡ୍ର ଦେଶର ନରପତି ମାନଙ୍କୁ ଯୁଦ୍ଧରେ ପରାଜୟ କରି ଏକ ବିଶାଳ ରାଜ୍ୟ ସ୍ଥାପନ କରି ଚୌଦ୍ୱାର ଠାରେ ରାଜଧାନୀ ସ୍ଥାପନ କରିଥିଲେ । ଫଳରେ ଓଡ୍ରଦେଶ ଓ ଓଡ୍ରଜାତି ପରାଧୀନ ହୋଇ ନିଜର ପ୍ରାଧାନ୍ୟ ହରାଇ ବସିଲେ । ଏହା ହରେକୃଷ୍ଣ ମହତାବ ତାଙ୍କର 'ଓଡ଼ିଶା ଇତିହାସ'ରେ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି । କେଶରୀବଂଶର ରାଜତ୍ୱ କାଳ ଦୀର୍ଘଦିନ ଧରି ଚାଲିଥିଲା । ସେମାନଙ୍କ କୀର୍ତ୍ତିରାଜି ଓଡ଼ିଶା ଇତିହାସକୁ ସମୃଦ୍ଧ କରିଅଛି । ସେମାନଙ୍କ ରାଜତ୍ୱ କାଳରେ ବହୁ ଶୈବକୀର୍ତ୍ତିମାନ ଗଢି ଉଠିଥିଲା । ବୋଧହୁଏ ସେମାନେ ଶୈବ ଥିଲେ ।

ହିନ୍ଦୋଳ ଗଡ଼ଜାତର ଇତିହାସ ଲେଖିବା ମୋର ଅଭିପ୍ରାୟ ନୁହେଁ କିମ୍ବା ରାଜତନ୍ତ୍ରର ପ୍ରତିଷ୍ଠା, ତାର ବିକାଶ ଏବଂ ତାର ଗୌରବ ଗାଥା ଉପରେ ଆଲୋକପାତ କରିବା ମଧ ଉଦ୍ଦେଶ୍ୟ ନୁହେଁ । ଯେତେବେଳେ ତତ୍‌କାଳୀନ ଗୋଟିଏ ଗଡ଼ଜାତର (ହିନ୍ଦୋଳ) ଦେଶପ୍ରେମ ଉପରେ ଏକ ସ୍ୱାଧୀନତା ସଂଗ୍ରାମୀ ମାନଙ୍କ ଉପରେ ଆଲୋକ ପାତ କରିବାକୁ ଯାଉଛେ ସେହି ଗଡ଼ଜାତର ବିଶଦ୍ ବିବରଣୀ ନହେଲେ ମଧ ତାର ଭୌଗଳିକ ବାତାବରଣ, ଐତିହାସିକ ପରିପାଟୀ ଉପରେ ଟିକିଏ ଦୃଷ୍ଟିପାତ କରିବା ବିଧେୟ ମନେକର । ଇତିହାସ ଲୁଚି ରହିଥାଏ । ତାକୁ ଖୋଜିବାକୁ ପଡ଼େ । ଲୋକମତ, କିମ୍ବଦନ୍ତୀ, ଲୋକ କଥାକୁ ଗୁରୁତ୍ୱ ଦେଇ ଐତିହାସିକ ମାନେ ଇତିହାସର ବିଷୟ ବସ୍ତୁକୁ ଉତ୍‌ଥାପନ କରିଥାନ୍ତି । ସେହି ବିଷୟରେ ଲୁଚି ରହିଥାଏ ଜାତିର ଗୌରବ ଗାଥା, ପ୍ରେରଣାର ଉତ୍ସ ଏବଂ ଜଗଜ୍ଜମାନୀର ଅନ୍ତର୍ନିହିତ ସତ୍ତା । ଯେପରି ଆଞ୍ଚଳିକ ଭାଷାରେ କୁହାଯାଏ 'ନନ୍ଦାଗଡ଼ ପଥର ପରି ସବୁ ସହିଛି' ଏହି ନନ୍ଦାଗଡ଼ ପଥର ମଧ୍ୟରେ କେତେ ଯେ ଐତିହାସିକ ଏବଂ ପୌରାଣିକ କିମ୍ବଦନ୍ତୀ ଲୁଚି ରହିଛି ତାର ହିସାବ ନାହିଁ । ଯାହାହେଉ ନିଜ ଦେଶ ଓ ଜାତିର ଗୌରବ କଥା ଶୁଣିବା ପାଇଁ କାହାକୁ ବା ଭଲ ନଲାଗେ ? ତେଣୁ ହିନ୍ଦୋଳର ଭିତ୍ତି ଉପରେ କିଛି ମାତ୍ରାରେ ଆଲୋକ ପାତ କରିବାକୁ ବିଧେୟ ମନେକରେ । ନିଜ ଜନ୍ମମାଟିର ଇତିହାସ ଯାଣିବା, ହୃତ ଗୌରବକୁ ଉଦ୍ଧାର କରିବା ପ୍ରତ୍ୟେକ ନାଗରିକ ମାନଙ୍କର କର୍ତ୍ତବ୍ୟ ହେବା ଉଚିତ । ପୂର୍ବ ଗୌରବ ସ୍ମରଣ ବ୍ୟତୀତ ଜାତୀୟତା ଆସିବ କେଉଁଠୁ ? ପାଶ୍ଚାତ ଶିକ୍ଷାରେ ଅନ୍ଧିଭୂତ ଆମର ତରୁଣ ତରୁଣୀ ମାନେ ଜାତୀୟ ଐତିହ ଓ ପରମ୍ପରା ପ୍ରତି ଆଜି ବିମୁଖ ।

ପୂର୍ବ ଗୌରବ ପ୍ରତି ସେମାନଙ୍କର ସ୍ପୃହା ଆସିବ ବା କାହିଁକି ? ସେଇଥି ପାଇଁତ ପୂଣ୍ୟାତ୍ମା ଗୋପବନ୍ଧୁ ବିକଳ ହୋଇ ଏ ଜାତିକୁ ଆହ୍ୱାନ ଦେଇଥିଲେ :

"ପୂର୍ବ ପୁରୁଷର ପବିତ୍ର ଶ୍ମଶାନ,
ଦେଶର ଜାତିର ଗଉରବ ଗାନ ।
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ,
ଉଦ୍ଧରିବା ପାଇଁ କଲେ ତନୁକ୍ଷୟ ।
ମାନବ-ଜନମ ହୁଅଇ ସଫଳ,
ଏ ମହା ଦୀକ୍ଷା କି ବୁଝିବ ଉତ୍କଳ" ?

ଆଜି ଏକବିଂଶ ଶତାବ୍ଦୀର ପ୍ରଥମ ଦଶକ ଶେଷ ହେଲାବେଳେ ଗୋପବନ୍ଧୁ ହୁଏତ ଜନ ମାନସରେ ନାହାନ୍ତି କିନ୍ତୁ ଏବେ ମଧ ତାଙ୍କ ଆଦର୍ଶର ପ୍ରେରଣା ରହିଛି ପ୍ରତି କ୍ଷେତ୍ରରେ, ପ୍ରତି ଉତ୍କଳୀୟ ମାନଙ୍କ ହୃତୟରେ ।

ହିନ୍ଦୋଳ ଏକ ଅନ୍ଧାରୀ ମୂଲକ । ସେତେବେଳେ ଅଶିକ୍ଷାର ଘନ ଅନ୍ଧକାର ରାଜପଣ କରୁଥାଏ । ଜାତୀୟ ଭାବନା ଏବଂ ଦେଶପ୍ରେମ ସ୍ୱପ୍ନପ୍ରାୟ ଥାଏ । କିନ୍ତୁ ସେହି ଅନ୍ଧାରୀ ମୁଲକ ହିନ୍ଦୋଳ ବିଷୟରେ ଚିନ୍ତାକଲେ ସ୍ୱତଃ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଅଷ୍ଟମ ଶତାବ୍ଦୀ ଠାରୁ ସ୍ୱାଧୀନତା ପର୍ଯ୍ୟନ୍ତ ଓଡ଼ିଶାରେ କେତେକେତେ ରାଜବଂଶର ଉତ୍‌ଥାନ ପତନ ହୋଇଛି କିନ୍ତୁ ହିନ୍ଦୋଳ ରାଜତନ୍ତ୍ରକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ଏହା କୌଣଷି ମୋଗଲ, ମରହଟ୍ଟା ଏବଂ ମୁସଲମାନ ମାନଙ୍କ ଦ୍ୱାରା ଅତ୍ୟାଚାରିତ ହୋଇନାହିଁ । ହିନ୍ଦୋଳ ଅଧିବାସୀ ମାନେ କେବେ କୌଣସି ଅଣ ହିନ୍ଦୁ ଶାସକ ମାନଙ୍କ ଦ୍ୱାରା ଶାସିତ ହୋଇନାହାନ୍ତି । କେବଳ ଇଂରେଜ ମାନେ ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଅଧିକାର କରିଲା ପରେ ୧୮୦୪ ଖ୍ରୀଷ୍ଟାବ୍ଦରେ ରାଜା କୃଷ୍ଣସିଂହ ମର୍ଦ୍ଦରାଜ ଜଗଦେବଙ୍କ ସହିତ ଏକ ଚୁକ୍ତିପତ୍ର ସ୍ୱାକ୍ଷର କରାଇଥିଲେ । ସେହି ଚୁକ୍ତି ଅନୁସାରେ ୫୫୧ ଟଙ୍କା କର ଧାର୍ଯ୍ୟ କରାଯାଇଥିଲା । ପ୍ରଥମେ ଗୋଷ୍ଠୀ ନାୟକ ଭାବେ ବନମାଳୀ ପାତ୍ରଙ୍କ ଠାରୁ ଆରମ୍ଭ କରି (୮୬୦-୮୯୫) ହିନ୍ଦୋଳର ଶେଷ ସ୍ୱାଧୀନ ରାଜା ନବକିଶୋର ସିଂହ ମର୍ଦ୍ଦରାଜ ଜଗଦେବ (୧୯୦୪-୧୯୪୮) କ୍ରମାନ୍ୱୟ ରାଜବଂଶ ନିର୍ଦ୍ଦିଷ୍ଟ ଥିଲା । ସେତେବେଳେ ହିନ୍ଦୋଳ ଏକ ସ୍ୱତନ୍ତ୍ର ଗଡ଼ଜାତର

ମାନ୍ୟତା ବଜାଇ ରଖିଥିଲା । ଏହା ହିନ୍ଦୋଳ ଅଧିବାସୀ ମାନଙ୍କ ପ୍ରତି ଏକ ଗୌରବର ଗାଥା ନୁହେଁ କି ?

'ହିନ୍ଦୋଳ'ରେ ରାଜତନ୍ତ୍ର ପ୍ରତିଷ୍ଠା ହେବାର ବହୁ ପୂର୍ବରୁ ଅର୍ଥାତ୍ ଅଷ୍ଟମ ଶତାବ୍ଦୀର ବହୁ ପୂର୍ବରୁ ଏଠାରେ ନିଶ୍ଚିନ୍ତ ଭାବରେ ଜନବସତି ଥିଲା । ଜନ ବସତି କହିଲେ ଏଠାରେ କନ୍ଧ, କୋହ୍ଲ, ମଲ୍ଲାର, ପାତୁଆ, ଜୁଆଙ୍ଗ, ଶବର ପ୍ରଭୃତି ଜାତିମାନେ ବାସ କରୁଥିଲେ । ଶୀକାର କରିବା ଏବଂ ବଣର ଫଳମୂଳ ଏମାନଙ୍କର ପ୍ରଧାନ ଖାଦ୍ୟଥିଲା । ଏମାନେ ପ୍ରାୟ ଉଲଗ୍ନ ରହୁଥିଲେ । କେତେକ ବୃକ୍ଷର ପତ୍ର ଏବଂ ବଲ୍‌କଲ ଦ୍ୱାରା ଗାତ୍ରାଚ୍ଛାଦନ ଥିଲା । ଜଉ ଏବଂ କାଇଁଚ ମାଳୀଥିଲା ନାରୀମାନଙ୍କର ଭୂଷଣ । ଏମାନେ ନିବିଡ଼ ଅରଣ୍ୟ ମଧ୍ୟରେ କ୍ଷୁଦ୍ର ପଲ୍ଲୀ ନିର୍ମାଣ କରି ବାସକରନ୍ତି । ପ୍ରତ୍ୟେକ ପଲ୍ଲୀ ମଧ୍ୟରେ ଗୋଟିଏ କୋଠଘର ଥାଏ । ତାହାକୁ 'ମଣ୍ଡୁଆ ଘର' କହନ୍ତି । ଏମାନଙ୍କର ମଧ୍ୟ ଜାତିପ୍ରଥା ଥାଏ ଯଥା, ଗିରିଣ୍ଡିଆ, ପାତୁଆ, ପତର ଶଅର ଏବଂ ଯୁଆଙ୍ଗ ଇତ୍ୟାଦି । ବହୁ ପୂର୍ବରୁ ଏମାନେ ଶିଆରି ବୃକ୍ଷର ବଲ୍‌କଲ ଏବଂ ପତ୍ରକୁ ଆଚ୍ଛାଦିତ କରି ଏବଂ ଯୁବତୀ ମାନେ ବହୁଳ ଜଉମାଳମାନ ହୃଦୟରେ ଲମ୍ବାଇ ବକ୍ଷ ଆଚ୍ଛାଦନ କରୁଥିଲେ । ବନଜାତି, ଫଳମୂଳ ଏବଂ ବଣ୍ୟ ପଶୁଲବ୍ଧ ମାଂସ ଏମାନଙ୍କର ପ୍ରଧାନ ଖାଦ୍ୟ । ସେମାନଙ୍କର ମଧ୍ୟ ପର୍ବ ପର୍ବାଣୀ ଥାଏ । ସେହିଦିନ ଗୁଡ଼ିକରେ ବିଭିନ୍ନ ପଲ୍ଲୀର ସ୍ତ୍ରୀ ଏବଂ ପୁରୁଷ ମାନେ ଚାଙ୍ଗୁ ବଜାଇ ସଙ୍ଘବଦ୍ଧ ଭାବରେ ନୃତ୍ୟ ଗୀତାଦି କରନ୍ତି । ମାଂସ ଏବଂ ହାଣ୍ଡିଆ ଦ୍ୱାରା ବନ୍ଧୁ ବାନ୍ଧବ ଚର୍ଚ୍ଚା ମଧ୍ୟ କରିଥାନ୍ତି । ଏମାନଙ୍କର ଧର୍ମ ବିଶ୍ୱାସ ମଧ୍ୟ ଥାଏ । ଐହିକ ଦୁଃଖ ଓ ବିପଦରୁ ରକ୍ଷା ପାଇବା ପାଇଁ ସେମାନେ ଦେବତା ପୂଜା ମଧ୍ୟ କରନ୍ତି । ଜଙ୍ଗଲ ସଫାକରି ସେମାନେ କାଙ୍ଗୁ, ଶୁଆଁ, ମକ୍କା, କୋହିରୀ ଏବଂ ମାଣ୍ଡିଆ ଫସଲ ମଧ୍ୟ ଚାଷ କରନ୍ତି । ନୂଆ ଫସଲ ଅମଳ କରି ପୀଢରେ ନୁଆ ଦିଅନ୍ତି । ଆଜିର ନୂଆ ଖାଇର ପରମ୍ପରା ସେହି ଦିନର ସୃଷ୍ଟି ହୋଇଥାଇ ପାରେ । ଅଦ୍ୟାବଧି ମଧ୍ୟ ହିନ୍ଦୋଳରେ ଏହି ପରମ୍ପରା ଦେଖାଯାଏ । ନୂଆ କରି ଆମ୍ବ, ତାଳ, ସାରିଆ ଧାନ ଏବଂ ଶୁଆଁ ଇତ୍ୟାଦି ଫସଲ ଅମଳ କରି ନିଜ ଗାଁ ଠାକୁରାଣୀଙ୍କ ନିକଟରେ ଉତ୍ସର୍ଗ କରିବା ପରେ ଖାଇଥାନ୍ତି । ଏହାକୁ ନୂଆ ଖାଇବା ବା ନୁଆ ଦିଆ କୁହା ଯାଇଥାଏ । ନୂଆ ଦିଆ ନହେବା ପୂର୍ବରୁ ସେମାନେ ଏହାକୁ ଗ୍ରହଣ କରନ୍ତି ନାହିଁ । ଏହି ପରମ୍ପରା ଆଦ୍ୟାବଧି ହିନ୍ଦୋଳରେ ମଧ୍ୟ ରହି ଆସିଅଛି । ଭାଦ୍ରବ ମାସ ଶୁକ୍ଲପକ୍ଷ ପଞ୍ଚମି ଦିନ ଏହି 'ନୂଆ ଖାଇ' ଉତ୍ସବଟି ପାଳନ କରାଯାଇଥାଏ । ନୂଆ ଶସ୍ୟକୁ ସେମାନେ ତାଙ୍କ ଦେବା ଦେବୀଙ୍କ ନିକଟରେ ଉତ୍ସର୍ଗ କରିଥାନ୍ତି । ଆମ୍ବ ସମୟରେ ସେମାନେ ଆମ୍ବ, ଏବଂ ତାଳ ସମୟରେ ତାଳ ଫଳକୁ

ମଧ୍ୟ ଅଦ୍ୟାବଧି 'ନୂଆ' ଭାବରେ ଉତ୍ସର୍ଗ କରିଥାନ୍ତି । କୁକୁଡା ଏବଂ ହାଣ୍ଡିଆ ମଦ ମଧ୍ୟ ସେମାନଙ୍କର ନୈବେଦ୍ୟ ବସ୍ତୁ । ଏବେ ମଧ୍ୟ ଏହି ଜନଜାତି ମାନଙ୍କର ବଂଶଧର ମାନେ ହିନ୍ଦୋଳରେ କାଠକୁମ୍ଭା, କନକା, ହାତୀଖଦା, ଗୁରୁଜାଙ୍ଗ ଏବଂ ବାଙ୍କମୁଣ୍ଡି ଇତ୍ୟାଦି ଜଙ୍ଗଲ ଅଞ୍ଚଳରେ ଦେଖିବାକୁ ମିଳିଥାଏ ।

ବର୍ତ୍ତମାନ ସଭ୍ୟତାର ପରିବର୍ତ୍ତନ ଫଳରେ ସେମାନେ ସମାଜର ମୂଖ୍ୟ ସ୍ରୋତରେ ସାମିଲ ହେବାକୁ ଆଗେଇ ଆସିଲେଣି । ଅବସ୍ଥା ଭେଦରେ ସେମାନେ ଉନ୍ନତି ପ୍ରାପ୍ତ ହୋଇ ଗଲେଣି । ସେମାନେ ନିମ୍ନ ଶ୍ରେଣୀର ହିନ୍ଦୁ ମାନଙ୍କର ଉତ୍ସବ ସମାରୋହକୁ ଅନୁକରଣ କଲେଣି । ସେମାନଙ୍କର ଭାଷାରେ ଓଡ଼ିଆ ଶବ୍ଦ ସ୍ଥାନ ପାଇଲାଣି । ପୂର୍ବେ ଶବରମାନେ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ରାଜତ୍ୱ କରୁଥିବାର 'ଢେଙ୍କା' ଶବର ନାମରୁ ଅନୁମାନ କରାଯାଏ ।

ଏହା ପରେ ପରେ ମୁଣ୍ଡ ଟେକିଲେ କନ୍ଧମାନେ । କନ୍ଧମାନେ ସମୟକ୍ରମେ ଅନ୍ୟ ଜାତି ମାନଙ୍କ ଠାରୁ ବଳଶାଳୀ ହୋଇ କ୍ଷମତାକୁ ଆସିଲେ । ସେମାନେ ଗୋଟିଏ ଗୋଷ୍ଠୀ ଗଠନ କଲେ ଏବଂ ଗୋଷ୍ଠୀର ମୂଖିଆଙ୍କୁ ସର୍ଦ୍ଦାର କୁହାଗଲା । ସେହି ସର୍ଦ୍ଦାରର ମୃତ୍ୟୁ ପରେ ଆଉଜଣେ ବଳଶାଳୀ କନ୍ଧ ସର୍ଦ୍ଦାର ହେଉଥିଲେ । ସେମାନେ ବାହ୍ୟ ଆକ୍ରମଣରୁ କନ୍ଧ ସମାଜକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ଅପରାଧିମାନଙ୍କର ବିଚାର କରି ସେମାନଙ୍କୁ ସମାଜରୁ ବାସନ୍ଦ ମଧ୍ୟ କରୁଥିଲେ । ଏହି କନ୍ଧ ମାନଙ୍କର ବଳିଷ୍ଠ ନେତୃତ୍ୱ ୮୬୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବଳବତ୍ତର ରହିଥିଲା । ଏବେ ମଧ୍ୟ ହିନ୍ଦୋଳ ବଜାର ନିକଟବର୍ତ୍ତି ଗୋବିନ୍ଦ ବେରିଣୀ ଏବଂ ସରଧାପୁର ଗ୍ରାମ ମାନଙ୍କରେ କନ୍ଧ ମାନଙ୍କର ବଂଶଧରମାନେ ଦେଖାଯାନ୍ତି । କନ୍ଧ ସମାଜର ଅଧିଷ୍ଠାତ୍ରୀ ଦେବୀ "ପିତାବଳୀ" ଏବଂ "ବ୍ରାହ୍ମଣୀ ଦେଇ" କନ୍ଧ ସମାଜ ଦ୍ୱାରା ପୂଜିତ ହେଉ ଅଛନ୍ତି । ଏଥିରୁ ସ୍ପଷ୍ଟ ଅନୁମେୟ କରାଯାଏ ଯେ, ଏଠାରେ ପ୍ରାଚୀନ ଜନପଦ ମାନଙ୍କରେ କନ୍ଧମାନେ ଶାସନ କରୁଥିଲେ । ହିନ୍ଦୋଳ ଆଖପାଖ ଜଙ୍ଗଲ ମାନଙ୍କରେ ଏବେ ମଧ୍ୟ 'କନ୍ଧ ସମାଜ' ରହିଅଛି । ସେହି ସମୟରେ ଢେଙ୍କାନାଳ 'ଓଡ୍ର' ସାମ୍ରାଜ୍ୟର ପୃଷ୍ଠ ଭୂମିର ଜଣେ 'ଓଡ୍ର' ଆସି କନ୍ଧ ରାଜତ୍ୱର ଶେଷ ଦଳପତି 'ଦାରନି'କୁ ହତ୍ୟାକରି ପାତ୍ର ବଂଶର ଦଳପତି ଭାବେ ନିଜକୁ ପ୍ରତିଷ୍ଠା କରିଥିଲେ । ହିନ୍ଦୋଳର ଆଦିବାସୀ ମାନେ ହେଉଛନ୍ତି ଆର୍ଯ୍ୟ ଭାଷା ଗୋଷ୍ଠୀର ଆଦିମ ଅଧିବାସୀ ।

## ପ୍ରାଚୀନ ଜନପଦ:

ବହୁ ପୁରାତନ ଇତିହାସକୁ ପର୍ଯ୍ୟାଲୋଚନା କଲେ ଜଣା ଯାଏଯେ, ବହୁ ଶତାବ୍ଦୀ ପୂର୍ବରୁ ଅନେକ ଗୁଡ଼ିଏ ଛୋଟ ଛୋଟ ଜନପଦ ବା ମଣ୍ଡଳ ଥିଲା । ଏହି ମଣ୍ଡଳ ଗୁଡ଼ିକରେ ଜଣେ ଲେଖାଁଏ ମଣ୍ଡଳାଧିପତି ରାଜପଣ କରୁଥିଲେ । ପ୍ରତି ମଣ୍ଡଳକୁ କେତେ ଗୁଡ଼ିଏ ଖଣ୍ଡ ବା ବିଷରେ ବିଭକ୍ତ କରାଯାଇଥିଲା । ପ୍ରତି ଖଣ୍ଡରେ ଜଣେ ଲେଖାଏଁ ଖଣ୍ଡାଧିପ ଶାସନ କରୁଥିଲେ । ତାମ୍ର ଶାସନ ମନଙ୍କରୁ ଜଣାଯାଏ ଯେ, ଢେଙ୍କାନାଳ ୨୪ ଗୋଟି ଖଣ୍ଡ ବା ବିଷରେ ବିଭକ୍ତ ହୋଇଥିଲା । ଏହିପରି ହିନ୍ଦୋଳରେ ମଧ ପାଞ୍ଚଗୋଟି ଖଣ୍ଡ ବା ବିଷ ଥିବା ଅନୁମାନ କରାଯାଏ । ଏହି ଖଣ୍ଡ ଗୁଡ଼ିକରେ ଡଁଳା, ଡ଼ମ, ଗଣ୍ଡ ଏବଂ କନ୍ଧ ପ୍ରଭୃତି ଅନାର୍ଯ୍ୟ ଜାତିମାନେ ରାଜତ୍ୱ କରୁଥିଲେ । ଏହି ଖଣ୍ଡାଧିପମାନେ ଜଣେ ଜଣେ ମଣ୍ଡଳେଶ୍ୱର ବା ସାମନ୍ତ ରାଜାଙ୍କର ଅଧିନରେ ଥିଲେ । ତତ୍‌କାଳୀନ ମଣ୍ଡଳ ମାନଙ୍କ ମଧରେ କୋଦାଳକ ଏବଂ ଯମଗର୍ତ୍ତ ଇତିହାସ ପ୍ରସିଦ୍ଧ ଲାଭ କରିଥିଲା । ପ୍ରତି ମଣ୍ଡଳ ମଧରେ ଥିବା ଗ୍ରାମ ଗୁଡ଼ିକରେ ଜଣେ ଜଣେ ଗଡ଼ନାୟକ, ବେହେରା, ପ୍ରଧାନ ଏବଂ ମକଦ୍ଦମ ରହୁଥିଲେ । ଗ୍ରାମର ବିବାଦ ମିମାଂସା ଏବଂ ରାଜକୀୟ ଘୋଷଣା, ପ୍ରଚାର ଏମାନଙ୍କ ଦ୍ୱାରା ହୋଇଥାଏ । ଏହି ସମୟରେ କିଛି 'ପାଟଣା' ମାନ ମଧ ପ୍ରତିଷ୍ଠିତ ହୋଇଥିଲା । ପ୍ରାଚୀନ ଗଡ଼ ମାନଙ୍କରେ ଗୋଟିଏ ଗୋଟିଏ 'ପାଟଣା' ରହୁଥିଲା । କାଳକ୍ରମେ ଶାସନର ସ୍ୱଚ୍ଛତା ଦୃଷ୍ଟିରୁ ଜନପଦ ଗୁଡ଼ିକରେ ବିଭିନ୍ନ ବ୍ୟବସ୍ଥା ମାନ ଲାଗୁ ହୋଇଥାଇ ପାରେ । ଏହି ସୁବ୍ୟବସ୍ଥା ଗୁଡ଼ିକ ହିନ୍ଦୋଳ କନ୍ଧ ଶାସିତ ରାଜ୍ୟ ଉପରେ କିପରି ପ୍ରଭାବ ପକାଇଥିଲା ପରବର୍ତ୍ତି ଅ୍ଧାୟରେ ଆମେ ଆଲୋଚନା କରିବା । ଅଷ୍ଟମ ଶତାବ୍ଦୀ ପୂର୍ବରୁ ଓଡ଼ିଶାରେ ଓଡ୍ର କଳିଙ୍ଗ ରାଜ୍ୟ କିପରି ଥିଲା ଏବଂ ଓଡ୍ର ବଂଶଜ ଲୋକମାନେ କିପରି ହିନ୍ଦୋଳ କନ୍ଧମାନଙ୍କୁ ବିତାଡ଼ିତ କରି ଶାସନ କ୍ଷମତା ଗ୍ରହଣ କରିଥିଲେ ପୂର୍ବ ଅଧାୟରେ ଆମ୍ଭେମାନେ ଆଲୋଚନା କରିଅଛେ । ତଥାପି ଅଷ୍ଟମ ଶତାବ୍ଦୀ ପୂର୍ବରୁ ଢେଙ୍କାନାଳ ଜିଲ୍ଲା ଅଞ୍ଚଳରେ ରାଜନୈତିକ ଦୃଶ୍ୟପଟ୍ଟ କିପରି ଥିଲା ଏବଂ ଏହା ହିନ୍ଦୋଳ ଉପରେ କିପରି ପ୍ରଭାବ ପକାଇଥିଲା ତାର ସମ୍ୟକ ଧାରଣା ଉପସ୍ଥାପନ କରାଗଲା ।

ହଣ୍ଟର ସାହେବଙ୍କ ଦ୍ୱରା ଲିଖିତ କେଶରୀ ରାଜବଂଶ ତାଲିକା ପାଠକଲେ ଜଣାଯାଏ ଯେ, କେଶରୀ ବଂଶର ରଜାମାନେ ଶୈବ ଥିଲେ । ସେମାନଙ୍କ ଶାସନକାଳରେ ଓଡ଼ିଶାରେ ଅନେକ ଗୁଡ଼ିଏ ଶୈବପୀଠ ପ୍ରତିଷ୍ଠା ହୋଇ ପାରିଥିଲା । ଇତିହାସରୁ ଜଣାଯାଏ ଯେ,

କେଶରୀ ବଂଶର ପ୍ରଥମ ରାଜା ଜନ୍ମେଜୟ ଦେବ ପ୍ରଥମେ ରାଜ୍ୟରେ ରାଜତ୍ୱ କରୁଥିଲେ । ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ଶେଷ ଭାଗରେ ଯଯାତିଙ୍କର ରାଜତ୍ୱ ଆରମ୍ଭ ହୋଇଥିଲା । ପଞ୍ଚମ ଶତାବ୍ଦୀରୁ ସପ୍ତମ ଶତାବ୍ଦୀ ଶେଷଭାଗ ପର୍ଯ୍ୟନ୍ତ କେଶରୀ ବଂଶୀୟ ରଜାମାନେ ରାଜତ୍ୱ କରୁଥିଲେ ବୋଲି ହଣ୍ଟର ସାହେବଙ୍କ ଲିଖିତ ଇତିହାସରୁ ଜଣାପଡ଼େ । କେଶରୀ ବଂଶୀୟ ରାଜାମାନେ ଅନ୍ୟ ରାଜବଂଶ ଅପେକ୍ଷା କୀର୍ତ୍ତିଶାଳୀ ଥିଲେ ।

ଏହି ରାଜବଂଶ ହିନ୍ଦୁ ଧର୍ମାବଲମ୍ବୀ ଥିବାରୁ ବୌଦ୍ଧ ଧର୍ମ ଉପରେ ବିଶେଷ ଗୁରୁତ୍ୱ ଦେଉନଥିଲେ । ତେଣୁ ସେମାନଙ୍କ ଉପରେ କାନ୍ୟକୁଜ୍‌ଦାଧିପତି ବୌଦ୍ଧ ହର୍ଷବର୍ଦ୍ଧନ ଶିଳାଦିତ୍ୟଙ୍କର କୋପ ଦୃଷ୍ଟିରେ ପଡ଼ିଥିଲେ । ହର୍ଷବର୍ଦ୍ଧନ କେଶରୀ ବଂଶୀୟ ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରିବା ଫଳରେ ସେମାନେ ଭୁବନେଶ୍ୱର ଛାଡ଼ି ସାରଙ୍ଗ ଗଡ଼ରେ ଅବସ୍ଥାନ କରିଥିଲେ । ଶ୍ରୀଯୁକ୍ତ ଷ୍ଟାଲିନ ସାହେବଙ୍କ ଇତିହାସ ଅନୁସାରେ ଭୁବନେଶ୍ୱର ପତନ ପରେ ସାରଙ୍ଗଗଡ଼ କେଶରୀ ବଂଶୀୟ ରାଜାମାନଙ୍କର ରାଜଧାନୀ ହୋଇଥିଲା । ଦଶମ ଶତାବ୍ଦୀରେ ସର୍ବପ୍ରଥମେ କଟକ ନଗର ନୃପକେଶରୀଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା ।

ଇତିହାସରୁ ଅନୁମାନ କରାଯାଏ ଯେ, ଖ୍ରୀ: ୬୭୭ – ୬୯୩ ମଧ୍ୟରେ ହିନ୍ଦୋଳ ସୀମା ନିକଟବର୍ତ୍ତୀ 'ଭୀମନଗରୀ' କନକ କେଶରୀଙ୍କ ଦ୍ୱାରା ନିର୍ମାଣ କରା ଯାଇଥିଲା । ଆଶା କରାଯାଏ ଯେ, କେଶରୀ ବଂଶୀୟ ରାଜାମାନେ ଶୈବ ଥିବା ହେତୁ ଭୀମନଗରୀ ଗଡ଼ର ପୂର୍ବରେ ରାଜା କନକ କେଶରୀ 'କନକେଶ୍ୱର' ଶିବ ମନ୍ଦିର ପ୍ରତିଷ୍ଠା କହିଥିଲେ । ତେଣୁ ଭକ୍ତକବି ଦୀନକୃଷ୍ଣ ଦାସ ତାଙ୍କ ରସବିନୋଦରେ ଲେଖିଛନ୍ତି :

"ଏ ଗ୍ରନ୍ଥ ଯୋଡ଼ିବାର ବେଳେ, ଘର ବ୍ରାହ୍ମଣୀ ନଦୀ କୂଳେ

କନକେଶ୍ୱର ଲିଙ୍ଗ ପାଶ ଏକ ଘରିଆ ନାମ ଦେଶ ।

ଭୀମ ନଗରୀର ନିକଟବର୍ତ୍ତୀ ହିନ୍ଦୋଳ ରାଜ୍ୟ ସୀମାସ୍ଥିତ କୁଣ୍ଡେଶ୍ୱର ବା କୁଣ୍ଡକେଶ୍ୱର ଶିବ ମନ୍ଦିର କୁଣ୍ଡଳ କେଶରୀଙ୍କ କୀର୍ତ୍ତିବୋଲି ଅନୁମାନ କରାଯାଇଥାଏ (ଖ୍ରୀ: ୮୧୧-୮୨୯) । ବର୍ତ୍ତମାନ ଏହା ହିନ୍ଦୋଳ ସୀମା ନକଲା ଗ୍ରାମରେ ଅବସ୍ଥିତ । ଏଥିରୁ ଅନୁମାନ କରାଯାଏ ଯେ, ନିଜ ନାମ ଅନୁସାରେ ବହୁ ସ୍ଥାନରେ ଶିବ ମନ୍ଦିର ପ୍ରତିଷ୍ଠା କରି ଅଛନ୍ତି । ଯାହାହେଉ ଅଷ୍ଟମ ନବମ ଶତାବ୍ଦୀ ବେଳକୁ ଅଧୁନା ଢେଙ୍କାନାଳ (ଭୀମନଗରୀ) ହିନ୍ଦୋଳ ଅଞ୍ଚଳ ଉପରେ କେଶରୀ ବଂଶ ରାଜତ୍ୱର ପ୍ରଭାବ ପଡ଼ିଥିଲା । କେଶରୀ ରାଜାମାନେ

କେବଳ ଶୈବ ଥିଲେ । କିନ୍ତୁ ଚନ୍ଦ୍ର କେଶରୀଙ୍କ ରାଜତ୍ୱର ଇତିବୃତ୍ତ ଆଲୋଚନାକଲେ ଦେଖାଯାଏଯେ, ବୈଷ୍ଣବ ଧର୍ମାଲମ୍ବୀ ମାନଙ୍କର ପ୍ରଭାବ ସେତେବେଳକୁ ପ୍ରକାଶ ପାଇଥିଲା ।

## ହିନ୍ଦୋଳ ଉପରେ ଅନ୍ୟାନ୍ୟ ରାଜବଂଶର ପ୍ରଭାବ (ପ୍ରଥମ ଶତାବ୍ଦୀରୁ ଅଷ୍ଟମ ଶତାବ୍ଦୀ ପର୍ଯ୍ୟନ୍ତ

ଖ୍ରୀଷ୍ଟିୟ ଅଷ୍ଟମ ଶତାବ୍ଦୀ ପ୍ରାରମ୍ଭରେ ଶୈବଧର୍ମ ବିରୋଧରେ ରାଜା ହର୍ଷବର୍ଦ୍ଧନ ଅତ୍ୟନ୍ତ ପ୍ରତାପୀ ଥିଲେ । କାମରୂପ ଅଧିପତି ଏହି ହର୍ଷଦେବ ଗୌଡ଼, କଳିଙ୍ଗ ଓ କୋଶଳ ଦେଶ ଅଧିକାରକରି ଚକ୍ରବର୍ତ୍ତି ହୋଇଥିଲେ । ଶ୍ରୀହର୍ଷ ନାମରେ ଏହି ରାଜାଙ୍କର ଗୋଟିଏ ସ୍ୱତନ୍ତ୍ର 'ସମ୍ବତ୍' ପ୍ରଚଳିତ ଥିଲା । ନେପାଳ ରାଜ୍ୟରେ ଥିବା ଗୋଟିଏ ମନ୍ଦିର ତୋରଣରେ ଉତ୍କୀର୍ଣ୍ଣ ଶିଳା ଲିପିରୁ ଜଣା ଯାଏ ଯେ, ହର୍ଷଦେବ ଗୌଡ଼, ଓଡ୍ର, କଳିଙ୍ଗ ଓ କୋଶଳପତି ଉପାଧିରେ ଭୂଷିତ ହୋଇଥିଲେ । ନବମ ଓ ଦଶମ ଶତାବ୍ଦୀରେ ଓଡ଼ିଶା ଇତିହାସ ଯେପରି ଗହନ ଏବଂ ସଂଶୟ ସଙ୍କୁଳ ସେଥିରେ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇ ପାରିବା ବଡ଼ ଦୂରୂହ ବ୍ୟାପାର ।

ମଗଧରେ ଗୁପ୍ତ ରାଜା ମାନଙ୍କର ରାଜତ୍ୱ ସମୟରେ ଗୌଡ଼, ବଙ୍ଗ ଓ ଉତ୍କଳର ଅରାଜକତା ଉପସ୍ଥିତ ହୋଇଥିଲା । ସେହି ସମୟରେ ମାଳବର ବର୍ମବଂଶ, ଗୁର୍ଜରର ରାଷ୍ଟ୍ରକୂଟ ବଂଶ ଏବଂ ଶେଷରେ ଉତ୍ତରର ପାଳବଂଶ ପ୍ରବଳ ପ୍ରତାପୀ ହୋଇ ଉଠିଥିଲେ । କାନ୍ୟ କୁବ୍ଜର ରାଜା ଯଶୋବନ୍ତ ବର୍ମା, କାମରୂପ ପତି ହର୍ଷଦେବ ଏବଂ ଗୁର୍ଜର ପତି ବତ୍ସରାଜାଙ୍କ ଦ୍ୱାରା ଗୌଡ଼ ଓ ଓଡ୍ର ପ୍ରଦେଶ ଆକ୍ରାନ୍ତ ହେବାରୁ ପ୍ରଜାମାନେ ଜଣେ ଜଣେ ରାଜାଙ୍କୁ ନିର୍ବାଚନ କରିବାକୁ ବାଧ ହୋଇଥିଲେ । ସୁତରାଂ ଏହି ସମୟରେ ନାନା କ୍ଷୁଦ୍ର ରାଜ୍ୟ ସୃଷ୍ଟି ହୋଇଥିଲା ଏବଂ ବିଭିନ୍ନ ଅଞ୍ଚଳର ନିର୍ବାଚିତ କ୍ଷେତ୍ରୀୟମାନେ ଆସି ରାଜତ୍ୱ କରୁଥିଲେ । ସେତେବେଳେ କୌଣସି ଏକଛତ୍ର ରାଜା ନଥିଲେ ବୋଲି ଅନୁମାନ କରାଯାଏ ।

ଏହି ସମୟରେ ଉତ୍କଳରେ ଭଂଜ, ସ୍ତମ୍ଭ, ତୁଙ୍ଗ, କର, ଧୀର, ବର୍ମ ଏବଂ ନାଗପ୍ରଭୃତି ବଂଶର ରାଜାମାନେ ରାଜୁତି କରୁଥିବାର ପ୍ରମାଣ ମିଳେ । ଏମାନେ ସମସ୍ତେ ସାମନ୍ତ ରାଜା । ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ କେଶରୀ ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ ମଧ ସେମାନେ ନାମକୁ ମାତ୍ର ରାଜାଥିଲେ । ସେତେବେଳକୁ ସେମାନେ ଏତେ ଦୁର୍ବଳ ହୋଇ

ପଡ଼ିଥିଲେ ଯେ ଉକ୍ତ ସାମନ୍ତ ରଜାମାନେ ସେମାନଙ୍କର ବଶ୍ୟତା ସ୍ୱୀକାର କରୁନଥିଲେ । କୌଣଷି କୌଣଷି ରାଜା ମଧ ସାମନ୍ତ ଭୂପତି ତୁଲ୍ୟ ପରିଗଣିତ ହେଉଥିଲେ ।

ରାଖଲ ବାବୁଙ୍କ ଦ୍ୱାରା ଲିଖିତ ବଙ୍ଗଳା ଇତିହାସର ରାମପାଳ ଚରିତରୁ ଜଣାଯାଏ ଯେ, ଉତ୍କଳର ଦକ୍ଷିଣ ପଶ୍ଚିମରେ କୈବର୍ତ୍ତ ରାଜା 'ଭୀମ' ଅତ୍ୟନ୍ତ ପ୍ରତାପଶାଳୀ ଥିଲେ । ପାଳ ବଂଶୀୟ ଦିଗ୍ ବିଜୟୀ ନରପତି ରାମ ପାଳଙ୍କ ଦ୍ୱାରା କୈବର୍ତ୍ତ ରାଜା ଭୀମ ପରାସ୍ତ ହୋଇଥିଲେ । କୈବର୍ତ୍ତ ସେନା ଯୁଦ୍ଧରେ ପରାସ୍ତହୋଇ ପଳାୟନ କରିଥିଲେ । ଯୁଦ୍ଧରେ ବିଜୟ ଉତ୍ତାରେ ରାଜା ରାମପାଳ ଭୀମଙ୍କର ରାଜଧାନୀ 'ଡ଼ମ ନଗର' ବିଧ୍ୱଂସ କରିଥିଲେ । ଅନୁମାନ କରାଯାଏ ଯେ, ଏହି 'ଡ଼ମନଗର' ଢେଙ୍କାନାଳ ହିନ୍ଦୋଳ ସୀମାବର୍ତ୍ତୀ ଗୋଟିଏ ଦୁର୍ଭେଦ୍ୟ ଗିରିଦୁର୍ଗ ଥିଲା । ବର୍ତ୍ତମାନ ତହିଁର ଭଗ୍ନ ବିଶେଷ ଶୈଳୋପରି ବିଦ୍ୟମାନ । ଏଥିରୁ ଅନୁମାନ କରାଯାଇ ପାରେ ଯେ, ହିନ୍ଦୋଳ ଢେଙ୍କାନାଳ ସୀମାବର୍ତ୍ତୀ ବମ୍ପା ବୋଲି ଗୋଟିଏ ବହୁ ପୁରାତନ ଗ୍ରାମ ଅଛି । ଏହି ଗ୍ରାମର ଅଧିବାସୀ ମାନେ ପ୍ରାୟତଃ ଖଣ୍ଡାୟତ । ଏମାନେ ଖୁବ୍ ସାହସୀ ବୋଲି ଶୁଣାଯାଏ । ହିନ୍ଦୋଳ ଗଡ଼ଜାତକୁ ଢେଙ୍କାନାଳ ରାଜାଙ୍କ ଆକ୍ରମଣରୁ ରକ୍ଷା କରିବାରେ ସେମାନେ ସିଦ୍ଧହସ୍ତ । ଘଞ୍ଚ ବଣ ପାହାଡ଼ଘେରା ଏହି ବମ୍ପା ଗ୍ରାମର ଅନତୀ ଦୂରରେ ଏକ ଲଣ୍ଡା ପାହାଡ଼ ଅବସ୍ଥିତ । ପାହାଡ଼ର ନିମ୍ନ ଦେଶରେ 'ପସାଶିଙ୍ଗ' ନାମରେ ଅଦ୍ୟାବଧି ଗୋଟିଏ ଗ୍ରାମ ଅଛି । ଏହି ଗ୍ରାମବାସୀ ମାନେ ପ୍ରାୟତଃ ଖଣ୍ଡାୟତ ଏବଂ ଓଡ୍ର ଚଷା ଅଟନ୍ତି । ଏମାନେ ମଧ ହିନ୍ଦୋଳ ଗଡ଼ଜାତକୁ ଢେଙ୍କାନାଳ ନିକଟରୁ ରକ୍ଷା କରିବାରେ ବିଶେଷ ଅବଦାନ ରହିଅଛି । ଏହି ଗ୍ରାମ ଦ୍ୱୟର ଅନତୀ ଦୂରରେ ରହିଛି ବୁଢୀ ପାହାଡ଼ ବା ବୁଢୀ ପର୍ବତ । ଏହାର ଉପରି ଭାଗାରେ ଗୋଟିଏ ଭଗ୍ନ ଦୁର୍ଗ ଥିଲା । ଏହାକୁ 'ଡ଼ମନଗରୀ' ବୋଲି ମଧ କୁହାଯାଇ ପାରେ । ଏହି ପାହାଡ଼ର ନିମ୍ନ ଦେଶରେ ଗୋଟିଏ ଦ୍ୱିତଳ ଗୁମ୍ଫା ମଧ ରହିଛି । ଶୁଣାଯାଏ ବାହ୍ୟ ଆକ୍ରମଣରୁ ରାଜ ପରିବାରଙ୍କୁ ରକ୍ଷା କରିବା ପାଇଁ ଏହା ଥିଲା ଗୁପ୍ତ ସ୍ଥାନ । ଗୋଟିଏ ରାଜ ପରିବାର ଏବଂ ତାଙ୍କର ସଦସ୍ୟ ମାନେ ଆତ୍ମଗୋପନ କରିଲାଭଳି (ତିରିଶ ଲୋକ ରହିଲାଭଳି) ଗୁପ୍ତ ସ୍ଥାନଟି ରହିଅଛି । ଏହାହିଁ ସେହି ଡ଼ମନଗରୀ ଦୁର୍ଭେଦ୍ୟ ଗିରିଦୁର୍ଗ ଥିଲାବୋଲି ଅନୁମାନ କରାଯାଏ । ଏହାର ଭଗ୍ନାବିଶେଷ ମାଟି ଗଦା ପରି ଦୃଶ୍ୟମାନ ।

ପ୍ରବଳ ପ୍ରତାପୀ ରଜା ରାମପାଳ ଡ଼ମନଗରୀ ବିଧ୍ୱଂସ କରିଥିଲେ ବୋଲି ରାଖଲ ବାବୁ ତାଙ୍କ ବଙ୍ଗଳା ଇତିହାସରେ ଯାହା ବର୍ଣ୍ଣନା କରିଛନ୍ତି, ସେହି ଦୃଷ୍ଟିରୁ ଅନୁମାନ କରାଯାଏ ଯେ, ଉକ୍ତ ପାହାଡ଼ର ନିକଟବର୍ତ୍ତୀ ବହୁ ପାଳ ସଂଜ୍ଞାଧାରୀ ବ୍ରାହ୍ମଣ ଦେଖାଯାନ୍ତି । ହୁଏତ

ସେମାନେ ରାଜା ରାମପାଳଙ୍କର ସମସାମୟୀକ ହୋଇଥାଇପାରନ୍ତି । ସେହିପରି ଅରଣ୍ୟାନୀ ମଧ୍ୟରେ ଏବେ ମଧ୍ୟ ପାଳ ସଂଜ୍ଞା ସହିତ ଅନେକ ଗୁଡ଼ିଏ ଗ୍ରାମ ଦେଖାଯାଏ ଯଥା :- କଦଳୀ ପାଳ, ଜରିପାଳ, ଈଶ୍ୱରପାଳ, ବ୍ରାହ୍ମଣୀପାଳ, ପାଳଲହଡ଼ା ଇତ୍ୟାଦି ।

ରାଜା ଜୟସିଂହ ପାଳବଂଶୀୟ ନରପତି ରାଜା ରାମପାଳଙ୍କର ଜଣେ ସାମନ୍ତ ରଜା ଥିଲେ । ସେ ଉତ୍କଳର ସାମନ୍ତ ରାଜା ମାନଙ୍କୁ ବଶୀଭୁତ କରିଥିଲେ ବୋଲି ସଂସ୍କୃତ 'ରାମ ଚରିତ' ବର୍ଣ୍ଣନାରୁ ଜଣାଯାଏ । ଏଥିରୁ 'କୋଟାଟବୀ' ରାଜ୍ୟର ପରିଚୟ ସମ୍ବନ୍ଧରେ ନାନା ମତ ଦେଖାଯାଏ । ପ୍ରତ୍ନତତ୍ତ୍ୱବିତ୍ ଶ୍ରୀଯୁକ୍ତ ନଗେନ୍ଦ୍ର ନାଥ ବସୁଙ୍କ ମତରେ ଓଡ଼ିଶାର ଅରଣ୍ୟାନୀ ଗଡ଼ଜାତ ପ୍ରଦେଶ ହିଁ 'କୋଟୀଟବୀ' । ଏହି ରଜାମାନଙ୍କର ଉପାଧିଥିଲା :- 'ନାନାରନ୍ କୁଟକୁଟିମ ବିକଟ କୋଟାଟବୀ କଣ୍ଠିରବୋ ଦକ୍ଷିଣ ସିଂହାସନ ଚକ୍ରବର୍ତ୍ତୀ' ।

ସେହି ସମୟରେ ଭୀମନଗରୀ ଥିଲା କୋଟାଟବୀର ରାଜଧାନୀ । ଏହି ନାମରୁ ସୂଚିତ ହେଉଛିଯେ, ଭୀମନଗର ଦଣ୍ଡପାଟର ଚତୁଃ ପାର୍ଶ୍ୱରେ କୋଟ ଆଖ୍ୟାଧାରୀ ବହୁ ଜନପଦ (ଗଡ଼) ଥିବାର ଦେଖା ଯାଉଅଛି । ଉତ୍ତରରେ ଜମୁନାକୋଟ, ପଶ୍ଚିମରେ ବ୍ରଜକୋଟ (ତାଳଚେର), ଦକ୍ଷିଣରେ ନୂଆକୋଟ, ପୁରୁଣାକୋଟ ଏବଂ ଦୁଦୁରକୋଟ (ହିନ୍ଦୋଳ), ଅଚଳକୋଟ (ତିଗିରିଆ) ପୂର୍ବରେ ପଚିଶକୋଟ ବୋଲି ଗୋଟିଏ କ୍ଷୁଦ୍ରରାଜ୍ୟ ବର୍ତ୍ତମାନ ସୁଦ୍ଧା ରହିଅଛି । ଯାହାହେଉ ଏହି ତଥ୍ୟ ଅନୁସାରେ ଆମେ ହିନ୍ଦୋଳର ଦୁଦୁରକୋଟ ଉପରେ କିଛି ଆଲୋକ ପାତ ପରିବା । ଦୁଦୁରକୋଟ ହିନ୍ଦୋଳର ଗୋଟିଏ ଜଣାଶୁଣା ଗାଁ । ଏହି ଗ୍ରାମଟିକୁ ପ୍ରାୟ ସମସ୍ତେ ଜାଣନ୍ତି । ଏହା ଏପରି ଗୋଟିଏ ଗାଁ ଯେଉଁଠି ଛତିଶ ପାଟକ ବାସ କରନ୍ତି । ଉପରୋକ୍ତ 'କୋଟାଟବୀ' ପ୍ରମାଣରୁ ଜଣା ଯାଉଛି ଯେ, ହିନ୍ଦୋଳର ଦୁଦୁରକୋଟ ଗୋଟିଏ ଜନପଦ (ଗଡ଼) ଥିଲା । ଅଦ୍ୟାବଧି ଏହି ଗଡ଼ର ଭଗ୍ନାବଶେଷ ମଧ୍ୟ ରହିଅଛି ।

୫୫ ନମ୍ବର ଜାତୀୟ ରାଜପଥରୁ ବାହାରି ଥିବା ଗୁଡ଼ିଆ କାଟେଣୀ – ହିନ୍ଦୋଳ ରାସ୍ତାରେ ଅଛି ସାତମାଇଲି ଛକ । ଛକ ଠାରୁ ପଶ୍ଚିମକୁ ୫ କିଲୋ ମିଟର ପରେ ଡାହାଣ ପାଖରେ ଗୋଟିଏ ବଡ଼ ଗାଁ ଅବସ୍ଥିତ । ଏହି ଗାଁ ହେଉଛି ସେହି ଦୁଦୁର କୋଟ । ଗ୍ରାମର ପୂର୍ବ ଦିଗରେ ଗୋଟିଏ ନାଣ୍ଡୀ ପାହାଡ଼ ରହିଅଛି । ଏହାର ନାମ ହେଉଛି 'ଗଡ଼ମୁଣ୍ଡିଆ' । ଏହାର ଉପରି ଭାଗରେ ବର୍ତ୍ତମାନ ସୁଦ୍ଧା ଗୋଟିଏ ଭଗ୍ନ ପଥର ପ୍ରାଚୀର ରହିଅଛି । ଏହାର ନିକଟରେ ଗୋଟିଏ ପରିତ୍ୟକ୍ତ କୂପ ମଧ୍ୟ ରହିଛି । ତାର ଅନତୀ ଦୂରରେ ଗୋଟିଏ ବଡ ପୁଷ୍କରଣୀ

ରହିଅଛି । ବର୍ତ୍ତମାନ ସୁଦ୍ଧା ଏହି ପୁଷ୍କରଣୀକୁ ଗଡ଼ବନ୍ଧ କୁହାଯାଏ । ଏହାର ଦକ୍ଷିଣ ଦିଗରେ ଗୋଟିଏ ବଡ଼ ଦେବୀ ମନ୍ଦିର ରହିଅଛି । ଏହି ଦେବୀଙ୍କ ନାମ ମଧ୍ୟ ଗଡ଼ଚଣ୍ଡୀ । ପୂର୍ବରୁ ଆଲୋଚନା କରାଯାଇଛି ଯେ, ପ୍ରତି ଜନପଦ ମାନଙ୍କରେ ଗୋଟିଏ ଲେଖାଏଁ ପଟଣା ଥାଏ । ଏହାର ମୁଖିଆଙ୍କୁ ପୃଷ୍ଟି କୁହାଯାଏ । ଏବେ ମଧ୍ୟ ଏହି ଗଡ଼ ନିକଟରେ ଗୋଟିଏ ପାଟଣା ରହିଅଛି ଏବଂ ପୃଷ୍ଟି ସଂଜ୍ଞାଧାରୀ ବଂଶ ମଧ୍ୟ ଅଛନ୍ତି । ସେଠାରେ ଓଡ଼ିଆ ଜାତିର ଆରାଧ୍ୟ ଦେବତା ଜଗନ୍ନାଥଙ୍କର ଗୋଟିଏ ମନ୍ଦିର ମଧ୍ୟ ଅଛି ।

ଆଉ ଗୋଟିଏ ବଡ଼କଥା ହେଲା ଗଡ଼ ନିକଟବର୍ତ୍ତୀ ଗୋଟିଏ କରଣ ସାହି ମଧ୍ୟ ଅଛି । ବ୍ରାହ୍ମୀଲିପି ଅବିଷ୍କାର ପରେ ମଗଧରୁ ସେମାନଙ୍କୁ ଗଡ଼ଜାତର ରାଜାମାନେ ଆଣି ବସତି ସ୍ଥାପନ କରାଇଥିଲେ । କରଣୀ ସାହାର୍ଯ୍ୟରେ ତାଳପତ୍ର ଉପରେ ଲିପି ଗୁଡ଼ିକୁ ସଜାଇ ଲେଖିବାର ପ୍ରଣାଳୀ ପ୍ରଥମେ ସେମାନେ ଜାଣିଥିବା ହେତୁ ଓଡ଼ିଶାରେ ସେମାନଙ୍କୁ କରଣ ଆଖ୍ୟା ଦିଆଯାଇଅଛି । ଓଡ଼ିଶାରେ କରଣ ବଂଶପରି ବିହାରରେ ସେମାନଙ୍କୁ କାଏସ୍ଥ ମଧ୍ୟ କୁହାଯାଏ । ଆନ୍ଧ୍ର ପ୍ରଦେଶରେ ଓଡ଼ିଶା ଭଳି ଏମାନଙ୍କୁ ରାଓ ପଟ୍ଟନାୟକ ମଧ୍ୟ କୁହାଯାଏ । ଭାରତରେ ଥିବା ୬୦୦ ଗଡ଼ଜାତ ମଧ୍ୟରେ ଏହି କରଣ ମାନଙ୍କ ସ୍ଥାନ ସ୍ୱତନ୍ତ୍ର । ତାଳପତ୍ର, ତମ୍ବାପତ୍ର (ଯାହାକୁ ଫଳକ କୁହାଯାଏ) ଅନୁଶାସନ ଗୁଡ଼ିକୁ ସେହି ସମୟରେ ଲିପିବଦ୍ଧ କରିବା ଏମାନଙ୍କର ପ୍ରଧାନ କର୍ମ ଥିଲା । ଏମାନେ ଥିଲେ ରାଜା ରାଜୁଡ଼ା ମାନଙ୍କର ପ୍ରିୟ ଲୋକ । ଦୁଦୁର କୋଟ କରଣ ବସ୍ତିକୁ ହିନ୍ଦୋଳର ପ୍ରଥମ କରଣ ବସତି ଭାବେ ଗ୍ରହଣ କରାଯାଇଥାଏ ବୋଲି ଶୁଣାଯାଏ ।

ଏହି ଦୁଦୁର କୋଟ ଗ୍ରାମଟି ସାତଗୋଟି ସାହିରେ ବିଭକ୍ତ । ପ୍ରତି ସାହିର ସ୍ୱତନ୍ତ୍ର ନାମ ରହିଅଛି । ୧-କରଣ ସାହି, ୨-ପାଟଣା ସାହି, ୩-ବାଘୁଆ ସାହି, ୪- ବର ସାହି, ୫-ବେଲ ଗାଡ଼ିଆ,୬-କୁଞ୍ଜବନ ପୁର, ୭-ଶାଳବଣୀ । ଏହା ହିନ୍ଦୋଳର ଗୋଟିଏ ବଡ଼ ଗ୍ରାମ ରୂପେ ପରିଚିତ । ପାଟଣା ଏବଂ କରଣ ସାହିକୁ ଛାଡ଼ିଦେଲେ ଅନ୍ୟମାନେ ପ୍ରାୟ ସମସ୍ତେ କ୍ଷତ୍ରୀୟ, ବ୍ୟବସାୟୀ ଏବଂ କୃଷିଜୀବୀ । ଶିକ୍ଷାଠାରୁ ବ୍ୟବସାୟ ପର୍ଯ୍ୟନ୍ତ ସେମାନଙ୍କର ପାରଦର୍ଶିତା ରହିଅଛି । ପରମାର୍ଥିକ ଗୁଣରେ ସେମାନେ ମଧ୍ୟ କମ୍ ନୁହନ୍ତି । ପୂର୍ବରୁ ଆମେ ଆଲୋଚନା କରିଛେଯେ, ହିନ୍ଦୋଳରେ କନ୍ଧ ମାନଙ୍କର ରାଜୁତି ପରେ ପାତ୍ର (ଓଡ୍ର) ଏବଂ ସାମଲ ଆକ୍ଷାଧାରି ଦଳପତି ମାନେ ହିନ୍ଦୋଳକୁ ଅଧିକାର କରିଥିଲେ । କହିବା ବାହୁଲ୍ୟଯେ, ଅଦ୍ୟାବଧି ଏହି ସଂଜ୍ଞାଧାରୀ ବଂଶଜ ମାନେ ଏଠାରେ ଦେଖାଯାନ୍ତି । ଯାହାହେଉ ଉପରୋକ୍ତ

ଆଲୋଚନାରୁ ଆମେ ଉପଲବ୍ଧି କରି ପାରିବା ଯେ, ଦୁଦୁରକୋଟ ଗୋଟିଏ ସ୍ୱତନ୍ତ୍ର ଜନପଦ ଥିଲା । ଢେଙ୍କାନାଳ ଇତିହାସରୁ ଜଣାଯାଏଯେ , ଢେଙ୍କାନାଳ ରାଜା ଆଠଗଡ଼ ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରି ଢେଙ୍କାନାଳ ନିକଟବର୍ତ୍ତି 'ତାଳବର କୋଟ' ଗଡ଼କୁ ଅଧିକାର କରିଥିଲେ । ଏଥିରୁ ଅନୁମେୟ ହୁଏ ଯେ, 'କୋଟାଟବୀ' ଆକ୍ଷାଧାରୀ ରାଜବଂଶ ଏହି ଅଞ୍ଚଳରେ ରାଜୁତି କରୁଥିଲେ । ଏବେମଧ୍ୟ ଭୀମ ନଗରୀ ଗୋଟିଏ 'କୋଟ' ବୋଲି ପରିଗଣିତ ହୋଇ ଆସୁଅଛି ।

ବର୍ତ୍ତମାନ ଆମେ ପ୍ରାଚୀନ ଜନପଦ ଗୁଡ଼ିକ ଉପରେ ଆଲୋଚନା କରୁଛେ । ଢେଙ୍କାନାଳରେ ଥିବା ଜନପଦ ଗୁଡ଼ିକ ମଧ୍ୟରେ କୋଦାଳୋ ମଣ୍ଡଳ ଶ୍ରେଷ୍ଠ ସ୍ଥାନ ଅଧିକାର କରିଥିଲା । ପୂର୍ବ ଅଧ୍ୟାୟରେ ଆମେ ଆଲୋଚନା କରିଛେଯେ, ଖ୍ରୀଷ୍ଟୀୟ ନବମ ଓ ଦଶମ ଶତାବ୍ଦୀ ବେଳକୁ କେଶରୀ ବଂଶୀୟ ରାଜାମାନେ ଦୁର୍ବଳ ହୋଇ ପଡ଼ିବାରୁ ସେହି ସମୟରେ କେତେ ଗୁଡ଼ିଏ ମଣ୍ଡଳେଶ୍ୱର ପ୍ରତାପଶାଳୀ ହୋଇ ଉଠିଥିଲେ । ଆବିଷ୍କୃତ ତାମ୍ର ଶାସନ ଗୁଡ଼ିକରୁ ଜଣାଯାଏଯେ, ଖଞ୍ଜିଳୀ ମଣ୍ଡଳର ପ୍ରସିଦ୍ଧି ଭଂଜବଂଶ , ଜମଗର୍ତ୍ତ ମଣ୍ଡଳର ତୁଙ୍ଗବଂଶ ଏବଂ କୋଦାଳୋ ମଣ୍ଡଳର ସ୍ତମ୍ଭବଂଶ ହେଉଛନ୍ତି ପ୍ରଧାନ । ସ୍ତମ୍ଭ ବଂଶର ରାଜଧାନୀ ଥିଲା କୋଦାଳୋ । ସ୍ତମ୍ଭବଂଶର ତାମ୍ର ଶାସନ ଆବିଷ୍କୃତ ହେବା ସମୟରେ କୋଦାଳୋ ର ସ୍ଥାନ ନିରୂପଣ କରିବା ଦିଗରେ ପଣ୍ଡିତ ମାନଙ୍କ ମଧ୍ୟରେ ଭିନ୍ନ ମତ ପ୍ରକାଶ ପାଇଥିଲା । କିନ୍ତୁ ବର୍ତ୍ତମାନ ସେହି କୋଦାଳୋ ପ୍ରାଚୀନ ଗୌରବର ଭସ୍ମ ହୃଦୟରେ ଧାରଣ କରି ପୁରାତନ ବେଶରେ ବିଦ୍ୟମାନ ରହିଅଛି । ଏହା ଢେଙ୍କାନାଳ ଜିଲ୍ଲାର ପରଜଙ୍ଗ ନିକଟରେ ଅବସ୍ଥିତ ।

ଏଠାରେ ଅନେକ ଗୁଡ଼ିଏ ପ୍ରାଚୀନ ଶିବ ମନ୍ଦିର ଅବସ୍ଥିତ । ଅନେକେ ଗୁଡ଼ିଏ ମନ୍ଦିରର ଭଗ୍ନାବିଶେଷ ଶୈବ ରାଜାମାନଙ୍କର ରାଜତ୍ୱର ସାକ୍ଷ୍ୟ ପ୍ରଦାନ କରିଥାଏ । ଏହି ମନ୍ଦିର ମାନଙ୍କରେ ଥିବା ବିଗ୍ରହର ପୃଷ୍ଠ ଦେଶରେ ଗୋଟିଏ ସ୍ତମ୍ଭାକାର ଶିଳା ରହିଥିବାର ଦେଖି ଅନୁମାନ କରାଯାଉଛି ଯେ, ଏହି ସ୍ତମ୍ଭ, ସ୍ତମ୍ଭ ରାଜବଂଶର କୁଳଦେବତା ସ୍ତମ୍ଭେଶ୍ୱରୀ ବା ଖମ୍ଭେଶ୍ୱରୀ (ଖମ୍ଭେଇଶୁଣୀ) । ଏହି ଶୁଣୀ ସଂଜ୍ଞାଧାରିଣୀ ଦେବୀ ହିନ୍ଦୋଳରେ ଅନେକ ଗ୍ରାମର ଗ୍ରାମ ଦେବତୀ ରୂପେ ପୂଜା ପାଇ ଆସୁଅଛନ୍ତି । ଧରାଶୁଣୀ (ପଞ୍ଚପଡ଼ା), ଜରଡାଶୁଣୀ (ଜରଡ଼ା) କାନ୍ଦରାଶୁଣୀ (ହିନ୍ଦୋଳ) ଇତ୍ୟାଦି ଗ୍ରାମ ମାନଙ୍କରେ ପୂଜା ପାଇଥାନ୍ତି । ଶ୍ରୀଯୁକ୍ତ ବିଜୟ ଚନ୍ଦ୍ର ମଜୁମଦାର ସୋନପୁର ଇତିହାସରେ ଏହି ବିଷୟରେ ଆଲୋଚନା କରି ପ୍ରତିପାଦନ କରିଅଛନ୍ତି ଯେ, ସମ୍ଭବତଃ ଅନାର୍ଯ୍ୟ ଜାତି ମାନଙ୍କ ଦ୍ୱାରା ଏହି ପୂଜା ଅନୁଷ୍ଠିତ

ହେଉଥିଲା । ଆଦିମ ଜାତିର ସ୍ତମ୍ଭପୂଜାରୁ ଆର୍ଯ୍ୟ ମାନଙ୍କ ସମାଜକୁ ସ୍ତମ୍ଭେଶ୍ୱରୀ ପୂଜା ଆସିଅଛି । ଅଦିମ ଅଧିବାସୀ ମାନଙ୍କ ସଂସ୍ପର୍ଶରେ ଆସି ଆର୍ଯ୍ୟମାନେ ସ୍ତମ୍ଭେଶ୍ୱରୀ ପୂଜା କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଦେବାଦେବୀ ମାନଙ୍କର ପ୍ରତିମାକୁ ପୂଜା କରିଛନ୍ତି ବୋଲି ପୁରା ତତ୍ତ୍ୱବିତ୍ ପଣ୍ଡିତମାନେ ମତ ଦିଅନ୍ତି ।

ଶ୍ରୀଯୁକ୍ତ ବିଜୟ ଚନ୍ଦ୍ର ମଜୁମଦାର ସ୍ତମ୍ଭେଶ୍ୱରୀ ପ୍ରତିଷ୍ଠା ସମ୍ବନ୍ଧରେ ସୁପ୍ରମାଣେ କହିଛନ୍ତି ଯେ, "ସୋନପୁର ରାଜ ବଂଶର ପ୍ରତିଷ୍ଠାତା ଚୌହାନ ବଂଶୀୟ ରାଜା ମଦନ ଗୋପାଳ ସିଂହ ଦେବଙ୍କର ପପୌତ୍ର ରାଜ ରାଜ ସିଂହଦେବ ସ୍ୱରାଜ୍ୟରେ ସର୍ବପ୍ରଥମେ ସ୍ତମ୍ଭେଶ୍ୱରୀ ମନ୍ଦିର ନିର୍ମାଣ କରାଇଥିଲେ । କଥିତ ଅଛି ଯେ, ଉକ୍ତ ରାଜା ଖମିନି ଭଞ୍ଜ ବଂଶୀୟ ଜଣେ ରାଜାଙ୍କର କନ୍ୟାଙ୍କ ପାଣି ଗ୍ରହଣ କରିଥିଲେ । ଭଞ୍ଜ କୁମାରୀ ପିତୃ ଗୃହରୁ ଏହି ସ୍ତମ୍ଭାକାର ବିଗ୍ରହଟି ସୋନପୁର ନେଇଯାଇଥିଲେ ଏବଂ ରାଜ ସିଂହଦେବ ଶଶ୍ୱର କୂଳର ଇଷ୍ଟ ଦେବତା ରୂପେ ସେହି ମୂର୍ତ୍ତି ପ୍ରତିଷ୍ଠା କରାଇ ଗୋଟିଏ ଦେବାଳୟ ନିର୍ମାଣ କରାଇଥିଲେ" । (B.C. Mazumdar and Sonapur Chapter V-II P55)

ପଶ୍ଚିମ ଓଡ଼ିଶାର ଗଡ଼ଜାତ ମାନଙ୍କରେ ଏବେ ମଧ ଖମ୍ଭେଶ୍ୱରୀ ପୂଜା ଦେଖାଯାଏ । କିନ୍ତୁ ଏହି ପୂଜା ବ୍ରାହ୍ମଣ ବା କ୍ଷେତ୍ରୀୟ ମାନଙ୍କ ଦ୍ୱାରା ହୋଇ ନଥାଏ । ଏହା ଶୁଦ୍ର ଜାତିମାନଙ୍କ ଦ୍ୱାରା ପୂଜା କରାଯାଇଥାଏ । ବର୍ତ୍ତମାନ ଢେଙ୍କାନାଳର କୋଦାଳୋ ଅଞ୍ଚଳରେ ସ୍ତମ୍ଭେଶ୍ୱରୀଙ୍କ ଆଦିପୀଠ ଦେଖାଯାଏ । କୋଦାଳ ନିକଟରେ ଓଡ଼ଶିଙ୍ଘା ଗ୍ରାମରେ ସ୍ତମ୍ଭେଶ୍ୱରୀ ଅକ୍ଷତ ଅବସ୍ଥାରେ ପୂଜା ପାଉଅଛନ୍ତି । ଷୋଡ଼ଶ ସପ୍ତାବ୍ଦୀରେ ଭଞ୍ଜ ରାଜ ବଂଶର ଏକ ଶାଖା ଢେଙ୍କାନାଳର ବେଣାଳିଆ ଗଡ଼ରେ ରାଜୁତି କରୁଥିଲେ । ତେଣୁ ଅନୁମାନ କରାଯାଏ ଯେ, ସୋନପୁର ପ୍ରତି ରାଜସିଂହ ଦେବଙ୍କ ମହିଷୀ ଢେଙ୍କାନାଳର କୌଣସି ଭଞ୍ଜ ରାଜାଙ୍କ କନ୍ୟା ହୋଇ ପାରିଥାନ୍ତି । ରାଜସିଂହ ଦେବ ମଧ ଷୋଡ଼ଶ ଶତାବ୍ଦୀ ବେଳକୁ ସୋନପୁରରେ ରାଜୁତି କରୁଥିବାର ପ୍ରମାଣ ମିଳେ ।

ସ୍ତମ୍ଭ ରାଜାମାନେ ପ୍ରଥମରୁ ଶୈବ ଥିଲେ । ଦେବୀ ସ୍ତମ୍ଭେଶ୍ୱରୀ ସେମାନଙ୍କର କୁଳ ଦେବତା । ପୁରାଣ ମାନଙ୍କରୁ ଜଣାଯାଏ ଯେ, ଯେଉଁଠାରେ ଶିବ ସେହିଠାରେ ଶକ୍ତି । ଅର୍ଥାତ ଯେଉଁ ଠାରେ ଶୈବ ପୀଠ ଥାଏ ସେଠାରେ ମଧ ଶକ୍ତି ପୀଠ ଥାଏ । କେତେକ ଶୈବଶକ୍ତି ଉପାସନା ମଧ କରିଥାନ୍ତି । ଇତିହାସରୁ ଜଣାଯାଏ ଯେ ପୂର୍ବେ ଗଣ୍ଡ ବା ଅନାର୍ଯ୍ୟମାନେ ଖଣ୍ଡେ ଖଣ୍ଡେ କ୍ଷୁଦ୍ର ରାଜ୍ୟରେ ଆଧିପତ୍ୟ ବିସ୍ତାର କରିଥିଲେ । ଏହିପରି

କେତେ ଗୁଡ଼ିଏ ଗଣ୍ଡ ସାମନ୍ତଙ୍କ ଉପରେ ପ୍ରସିଦ୍ଧ ସ୍ତମ୍ଭ ରାଜାମାନେ ସାମ୍ରାଜ୍ୟ ବିସ୍ତାର କରିଥିଲେ । ଆବିଷ୍କୃତ ତାମ୍ର ଶାସନ ମାନଙ୍କରେ ସ୍ତମ୍ଭବଂଶୀ ପ୍ରସସ୍ତିରୁ ଦେଖା ଯାଉଅଛି ସେମାନେ "ମହା ରାଜାଧି ରାଜ" ଏବଂ "ବିକ୍ରମାଦିତ୍ୟ" ଉପାଧିରେ ମଣ୍ଡିତ ଥିଲେ । ସେମାନଙ୍କର ଗୋଟିଏ ସ୍ୱତନ୍ତ୍ର ସମ୍ୱତ୍ ପ୍ରଚଳିତ ଥିଲା । ସ୍ତମ୍ଭବଂଶୀୟ କୁଳଗ୍ରନ୍ଥରୁ ଆହରଣ କରି ଶ୍ରୀଯୁକ୍ତ ନଗେନ୍ଦ୍ର ନାଥ ବସୁ ପ୍ରମାଣ କରିଛନ୍ତି ଯେ ସ୍ତମ୍ଭମାନେ ଚାଲୁକ୍ୟ ବା ଶୋଲାଙ୍କୀ ବଂଶୀୟ ଅଟନ୍ତି । ଏମାନେ ଗୋଟିଏ ପ୍ରାଚୀନ ତେଜସ୍ୱୀ କ୍ଷତ୍ରୀୟ ବଂଶ । ଏମାନେ ପ୍ରଥମେ ଓଡ୍ର ଦେଶରେ ଅର୍ଥାତ୍ ଅଧୁନା ଢେଙ୍କାନାଳରେ ପ୍ରାୟ ନବମ ଦଶମ ଶତାବ୍ଦୀରେ ରାଜୁତି କରିବା ସଙ୍ଗେ ସଙ୍ଗେ ଏମାନଙ୍କର ପ୍ରଭାବ ତାଳଚେର, କେନ୍ଦୁଝର ଏବଂ ହିନ୍ଦୋଳ ସୀମା ଲଘି ଅନେକ ଦୂରକୁ ବ୍ୟାପୀ ଯାଇଥିଲା । ଯଦିଓ ସ୍ତମ୍ଭମାନେ ଓଡ଼ିଶାରେ ବହୁକାଳ ରାଜତ୍ୱ କରିନଥିଲେ ତଥାପି ସେମାନେ ତାଙ୍କର ପାଞ୍ଚ ପୁରୁଷ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ବୋଲି ସେମାନଙ୍କର ତାମ୍ର ଶାସନରୁ ଜଣାଯାଏ । ଏମାନଙ୍କର ଶାସନକାଳ ଏକଶତ ବର୍ଷରୁ ଅଧିକ ହୋଇପାରେ । ସ୍ତମ୍ଭମାନଙ୍କର ରାଜତ୍ୱ ସମୟରେ ଅନଙ୍ଗ ଭୀମଦେବ ପ୍ରତାପଶାଳୀ ହୋଇ ଉଠିଥିଲେ । ତାଙ୍କ ଦ୍ୱାରା ସ୍ତମ୍ଭମାନଙ୍କର ପ୍ରତାପ କ୍ଷୟିତ ହୋଇଥିଲା । ମୋଟାମୋଟି ଉପରେ କହିବାକୁ ଗଲେ ଅନଙ୍ଗ ଭୀମଦେବଙ୍କ ଶାସନ ସମୟରେ ସ୍ତମ୍ଭ ବଂଶ ଲୋପ ପାଇ ଯାଇଥିଲା ବୋଲି କୁହାଯାଏ । ବର୍ତ୍ତମାନ କୋଦାଳୋ ଠାରୁ ଉତ୍ତର ପୂର୍ବକୁ ପ୍ରାୟ ୨୦ ମାଇଲ ଦୂରବର୍ତ୍ତି କେନ୍ଦୁଝର ଜିଲ୍ଲା ଅନ୍ତର୍ଗତ କାଳିଆ ହତାରେ ଥମ୍ୱା ଉପାଧିଧାରୀ କ୍ଷତ୍ରିୟ ମାନେ (ସାମାନ୍ୟ ଭୂସ୍ୱାମୀ) ବାଇଶ ଗୋଟି ପଲ୍ଲୀ ଗ୍ରାମର ଜାୟଗୀରଦାର ରୂପେ ରହି ଅଛନ୍ତି । କୋଦାଳର ଆବିସ୍କୃତ ତାମ୍ରଶାସନରୁ ଯେଉଁ ପାଞ୍ଚଜଣ ସ୍ତମ୍ଭନରପାତିଙ୍କର ନାମ ମିଳୁଅଛି ସେମାନେ ହେଲେ :-

୧) କାଞ୍ଚନ ସ୍ତମ୍ଭ, ୨) କୂଳସ୍ତମ୍ଭ (ବିକ୍ରମାଦିତ୍ୟ), ୩) ରଣସ୍ତମ୍ଭ,

୪) ଜୟସ୍ତମ୍ଭ, ୫) ନିଜୟ ସ୍ତମ୍ଭ

ଏହି ପାଞ୍ଚଜଣ ରଜାମାନଙ୍କ ମଧ୍ୟରୁ କୁଳସ୍ତମ୍ଭଙ୍କର ଦୁଇଟି, ରଣ ସ୍ତମ୍ଭଙ୍କର ଗୋଟିଏ, ଜୟ ସ୍ତମ୍ଭଙ୍କର ଗୋଟିଏ ଲେଖାଏଁ ତାମ୍ର ଶାସନ ଆବିସ୍କୃତ ହୋଇଅଛି । ଏହି ତାମ୍ର ଶାସନ ଗୁଡ଼ିକ ଶ୍ରୀଯୁକ୍ତ ହରପ୍ରସାଦ ଶାସ୍ତ୍ରୀ ମହାଶୟଙ୍କ ଦ୍ୱାରା ପଠିତ ହୋଇ ଓଡ଼ିଶା ବିହାର ଅନୁସନ୍ଧାନ ସମିତି ପତ୍ରିକାରେ ୧୯୧୬ ମସିହାରେ ପ୍ରକାଶିତ ହୋଇଥିଲା । ଏହି ତାମ୍ରଶାସନ ଗୁଡ଼ିକରୁ ପଠନ ଉତାରୁ ଜଣାଯାଏ ଯେ, ସିଂହ ଓ ରାଓ ସଂଜ୍ଞା ଧାରୀ ଶୋଲ୍ଲାକୀ ବଂଶୀୟ ରାଜା

ମାନଙ୍କର ରାଜତ୍ୱ କାଳରେ ସମ୍ଭବତଃ ବସାଯାଇଥିବା ହିନ୍ଦୋଳର ଗ୍ରାମ ଗୁଡ଼ିକ ହେଲା କାରିସିଙ୍ଘା, ଜରାସିଂହା, କୁମୁରୁସିଙ୍ଗା ଏବଂ ବାରିସିଙ୍ଘା ଇତ୍ୟାଦି ।

ଏଠାରେ ଆମେ ଗୋଟିଏ ସ୍ତମ୍ଭ ବଂଶୀୟ ତାମ୍ର ଶାସନର ସାଂରାଶ ସଂକ୍ଷେପରେ ଆଲୋଚନା କରିବା । ତାଳଚେର କୁଳସ୍ତମ୍ଭ ତାମ୍ର ଶାସନ ପାଠରୁ ଜଣାଯାଏ ଯେ, "କୋଦଳାଧିବାସୀ ଶ୍ରୀ ସ୍ତମ୍ଭେଶ୍ୱରୀ ଲବଧ ବର ପ୍ରସାଦ ଶ୍ରୀ କୁଳସ୍ତମ୍ଭଦେବ ମାତା ପିତା ଓ ଆପଣାର ପୁଣ୍ୟ ବୃଦ୍ଧି କାମନାରେ ବିଷ୍ଣୁ ଭଟ୍ଟାରକ ଙ୍କ ଉଦ୍ଦେଶ୍ୟରେ ମଧ ଦେଶାଗତ କାଶ୍ୟପଗୋତ୍ର ପିତୃର୍ଦେବ ମଧ୍ୟାନ୍ଦିନ ଶାଖାଧ୍ୟାୟୀ ଭଟ୍ଟ ସିଂହଙ୍କ ପୁତ୍ର ପରମ ବୈଷ୍ଣବ ବୃହସ୍ପତି ଭଟଙ୍କୁ ଗଇଲୋ ଖଣ୍ଡ ଅନ୍ତର୍ଗତ ସଜଳ ସ୍ଥଳ ସପତ୍ରାରଣ୍ୟ ଝାରପଡ଼ା ଗ୍ରାମ (ଅଧୁନିକ ଝାଟିବାହାଳ) ନିଷ୍କର ସ୍ୱରୂପ ମହାବିଷୁବ ସଂକ୍ରାନ୍ତିରେ ପ୍ରଦାନ କଲେ ।"

ଏହି ତାମ୍ର ଶାସନ ପଠନ ଦ୍ୱାରା ଆମେ ଉପଲବ୍ଧି କରି ପାରିଲୁ ଯେ, ସ୍ତମ୍ଭ ବଂଶୀୟ ରାଜାମାନେ ଗୋଟିଏ ଗୋଟିଏ ପ୍ରଗଣା ବସାଇ ସେମାନଙ୍କ ବଂଶର ପୁଣ୍ୟ ବର୍ଦ୍ଧନାର୍ଥେ ବ୍ରହ୍ମ ଦେଶମାନ ପ୍ରତିଷ୍ଠା କରି ନିଷ୍କର ଜମିମାନ ବ୍ରାହ୍ମଣ ମାନଙ୍କୁ ଦାନ ଦେଉଥିଲେ । ସେମାନେ ବସାଇ ଥିବା ପ୍ରଗଣା ଗୁଡ଼ିକରେ ବ୍ରହ୍ମସମାଜ ସହିତ ଗୋପାଳ, କୈବର୍ତ୍ତ, ତନ୍ତୁବାୟ ଏବଂ ଚଷା ଇତ୍ୟାଦି ଜାତି ମାନଙ୍କୁ ପ୍ରତିଷ୍ଠା କରୁଥିଲେ ।

## ଶୋଲାଙ୍କୀ ବଂଶୀୟ ରାଜ୍ୟ ଶାସନ ଏବଂ ହିନ୍ଦୋଳ

ସ୍ତମ୍ଭ ବଂଶୀୟ ସଂକ୍ଷିପ୍ତ ଆଲୋଚନାରୁ ଯଣାଯାଏ ଯେ, ସେମାନଙ୍କର ପ୍ରଭାବ ହିନ୍ଦୋଳ ଖଣ୍ଡକୁ ପ୍ରଭାବିତ କରିଥିଲା । ତାର ଭୁରି ଭୁରି ପ୍ରମାଣ ଏବେ ମଧ ରହିଅଛି । ଆମେ ପୂର୍ବ ଅଧ୍ୟାୟରେ କେନ୍ଦୁଝରର କାଳିଆ ହତା ଉପରେ ସଂକ୍ଷିପ୍ତ ଭାବରେ ଆଲୋଚନା କରିଅଛନ୍ତି । ଏହା ହିନ୍ଦୋଳର ଚିତଲପୁର ସହିତ ସମାନ । ଏହା ଉପରେ ଆମେ ସଂକ୍ଷିପ୍ତ ଭାବରେ ଆଲୋକ ପାତ କରିବା । ଆଶାକରାଯାଏ ସ୍ତମ୍ଭ ରଜାମାନଙ୍କର " ୨ ୨ " ସଂଖ୍ୟାଟି ଶୁଭପ୍ରଦ । ତେଣୁ ସେମାନେ ୨ ୨ ଗୋଟି ବସ୍ତିକୁ ନେଇ ପ୍ରଗଣା ଗଠନ କରିଥାନ୍ତି" । ତାଳଚେରରେ ମଧ କନ୍ଧରା ନିକଟ ବର୍ତ୍ତୀ ୨ ୨ ପଲ୍ଲୀ ବିଶିଷ୍ଟ ଗୋଟିଏ ପ୍ରଗଣା ଥିବାର ଶୁଣାଯାଏ । ଚିତଲପୁର ମଧ ୨ ୨ ଗୋଟି ପଲ୍ଲୀକୁ ନେଇ ଗଠିତ । ସେ ଗୁଡ଼ିକ ହେଲା –

**୨୨ ପଲ୍ଲୀର ନାମ**

୧) କରଡ଼ା ପଡ଼ା, ୨) ଚଢ଼କମରା, ୩) ବୁଢାବୁରି, ୪) ସରଧାବେରେଣୀ,

୫) ଗୁହିରା, ୬) ଧନ୍ଦାରି, ୭) ଗୋବରା, ୮) ବେତାସାଇ, ୯) ନୂଆଭୂଇଁ,

୧୦) ପାଳଚକଡ଼, ୧୧) କଳିଙ୍ଗା, ୧୨) ଜରଡ଼ା, ୧୩) ଆମ୍ବତଳା,

୧୪) ପାରିଖିତା, ୧୫) ହରିପୁର, ୧୬) ବଡ଼ବାହାଳ, ୧୭) ଛୋଟାପଡ଼ା,

୧୮) ଆମ୍ବଲୁଣ୍ଡି, ୧୯) ଗୁଲୁଗୁଣ୍ଡି, ୨୦) ଅଁଳାବେଢ଼ା, ୨୧) ବାଲିସାଇ,

୨୨) ବାଲିକିଆରୀ

ଏହି ୨୨ ପଲ୍ଲୀକୁ ନେଇ ଚିତଲପୁର ଜନପଦ ଗଠିତ । ଅଦ୍ୟାବଧି ସୁଦ୍ଧା ଏହି ୨୨ ପଲ୍ଲୀ ବଳବତ୍ତର ହୋଇ ରହିଅଛି । ଏମାନଙ୍କ ମଧ୍ୟରେ ଅଧିକ ସଂଖ୍ୟକ ବ୍ରାହ୍ମଣ । ଏହି ବାଇଶ ପଲ୍ଲୀ ମଧ୍ୟରେ ଅନେକ ଓଡ଼ଚଷା (ଓଡ୍ରରାଜ୍ୟ ସମୟରୁ) ମଧ୍ୟ ଦେଖାଯାନ୍ତି । ବ୍ରାହ୍ମଣ ଏବଂ ଚଷା ବ୍ୟତୀତ ଆହୁରି ଅନେକ ସମାଜ ସହାୟକ ଜାତି ଯଥା :- ଗୁଡ଼ିଆ, କେଉଟ, ବଣିଆ, ତନ୍ତୀ, ଖଣ୍ଡାୟତ ଏବଂ ପାଟରା ଇତ୍ୟାଦି ଜାତି ମାନେ ମଧ୍ୟ ଦେଖାଯାନ୍ତି । ଏମାନଙ୍କ ମଧ୍ୟରେ ଉତ୍ତମ ବୁଝାମଣା ମଧ୍ୟ ରହିଅଛି । ଉତ୍ସବ ମାନଙ୍କରେ ସମସ୍ତେ ଏକତ୍ରିତ ହେଉ ଅଛନ୍ତି । ନିଜର ଜାତି ମଧ୍ୟରେ ବିବାହ ଆଦି ସମ୍ବନ୍ଧ ମାନ ମଧ୍ୟ ସଂଗଠିତ ହୁଏ । ସ୍ୱାଧୀନତାର ଛ ଦଶନ୍ଧି ଅତିକ୍ରମ କରି ଯାଇଥିଲେ ମଧ୍ୟ ବର୍ତ୍ତମାନ ସୁଦ୍ଧା ଏହି ବାଇଶି ପଲ୍ଲୀର ଏକତା ବଜାଇ ରଖିବା ଦେଶ ଏବଂ ଜାତି ପ୍ରତି ଏକ ମହାନ ଆଦର୍ଶ ।

ସ୍ତମ୍ଭ ବଂଶୀୟ ରାଜା ମାନଙ୍କର କୀର୍ତ୍ତି ଅଦ୍ୟାବଧି ଏଠାରେ ବିଦ୍ୟମାନ ଅଛି । ସେମାନଙ୍କର ଅଧିଷ୍ଠାତ୍ରୀ ଦେବୀ ସ୍ତମ୍ଭେଶ୍ୱରୀ ବୁଢୀ ଠାକୁରାଣୀ ଭାବରେ ଏବଂ ଶିବ ଉତ୍ସେବଶ୍ୱର ଭାବରେ ପୂଜା ପାଉଅଛନ୍ତି । ଏହା ଉପରେ ଆମେ କିଞ୍ଚିତ ଆଲୋକପାତ କରିବା । ଏହା ପୂର୍ବରୁ ଆମେ ଶୁଲ୍‌କୀ ବଂଶୀୟ ସ୍ତମ୍ଭରାଜାଙ୍କ ଉପରେ ସଂକ୍ଷିପ୍ତ ଭାବରେ ଆଲୋଚନା କରିଛେ । ଏବେ ହିନ୍ଦୋଳ ଚିତଲପୁର ଉପରେ ସ୍ତମ୍ଭ ବଂଶୀୟ ରଜାମାନଙ୍କର କି ପ୍ରକାର ପ୍ରଭାବ ପଡ଼ିଥିଲା ତାହା ଆମର ଆଲୋଚ୍ୟ ବିଷୟ ହେଉ ।

୫୫ ନମ୍ବର ଜାତୀୟ ରାଜପଥ ଗୁଡ଼ିଆ କାଟେଣୀ ଠାରୁ ହିନ୍ଦୋଳ ସବଡ଼ିଭିଜନକୁ ସଦରମହକୁମାକୁ ଗୋଟିଏ ପକ୍‌କା ସଡ଼କ ପଡିଅଛି । ଏହି ସଡ଼କ ପଥରେ ଗଲେ ୧୫ କି.ମି. ପରେ ବାମ

ପାଖରେ ପୂର୍ବ ଦିଗକୁ ମଧ ଗୋଟିଏ ପକ୍କା ସଡ଼କ ପଞ୍ଚପଡ଼ା ଗ୍ରାମ ମଧ୍ୟଦେଇ ଚିତଲ ପୁରକୁ ଯାଇଅଛି । ଏହି ସ୍ଥାନଟିରେ ପ୍ରାୟ ପ୍ରଥମ ଶତାବ୍ଦୀର ଜନବସତି ଦେଖାଯାଏ । ପ୍ରାୟ ପଞ୍ଚମ ଷଷ୍ଠ ଶତାବ୍ଦୀର ଶାସନ କାଳର କିମ୍ବଦନ୍ତୀ, ପ୍ରସ୍ତର ମଣ୍ଡପ ରହିଅଛି । ଇତିହାସର ମୂକସାକ୍ଷୀ ରୂପେ ଏହି ଦଶଖମ୍ବ (ଦଶ ଦିଗପାଳ) ପ୍ରସ୍ତର ମଣ୍ଡପଟି ଦଣ୍ଡାୟମାନ । ଅଦ୍ୟାବଧିସୁଦ୍ଧା ବାଇଶ ପଲ୍ଲୀ ଉକ୍ତ ମଣ୍ଡପର ଗୌରବ ବହନକରି ନିଜକୁ ଗୌରବାନିତ୍ୱ ମନେ କରନ୍ତି । ଏହି ମଣ୍ଡପଟିର ଦିର୍ଘ ୪୮ ଫୁଟ ଏବଂ ପ୍ରସ୍ଥ ୩୬ ଫୁଟ । ମଣ୍ଡପଟିର ଚତୁପାର୍ଶ୍ୱରେ ୧୦ ଗୋଟି ଏବଂ ମଧଭାଗରେ ୬ ଗୋଟି ଖମ୍ବ ରହିଅଛି । ତେଣୁ ମଣ୍ଡପଟି ହେଉଛି ୧୬ ଖମ୍ବ ବିଶିଷ୍ଟ । ଶୁଲ୍‌କୀ ବଂଶୀୟ ରାଜା କୁଳସ୍ତମ୍ଭ ଦେବ (ବିକ୍ରମାଦିତ୍ୟ) ଷଷ୍ଠ ଶତାବ୍ଦୀରେ ଚିତଲପୁର ଠାରେ ବ୍ରହ୍ମ ସମାଜ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଏହି ଷୋଳ ଖମ୍ବ ବିଶିଷ୍ଟ ମଣ୍ଡପଟି ନିର୍ମାଣ କରାଇ ଥିଲେ । ଲୋକ ଗାଥାରୁ ଜଣାଯାଏ ବ୍ରାହ୍ମଣମାନେ ୧୬ ସଂସ୍କାର ବିଶିଷ୍ଟ । ରାଜା କୁଳସ୍ତମ୍ଭ ଦେବ ଯେହେତୁ ବ୍ରହ୍ମ ସମାଜ ପ୍ରତିଷ୍ଠା ଉଦ୍ଦେଶ୍ୟରେ ମଣ୍ଡପ ନିର୍ମାଣ କରିଥିଲେ ତେଣୁ ତାହା ଷୋଳଖମ୍ବ ବିଶିଷ୍ଟ ବୋଲି କୁହାଯାଇଥାଏ । ଅନ୍ୟ ଏକ କାରଣ ହେଲା ଗର୍ଭାଧାନ କ୍ରିୟା ଠାରୁ ମୃତ୍ୟୁର ପ୍ରଥମ ଶ୍ରାଦ୍ଧ ବାର୍ଷିକ ପର୍ଯ୍ୟନ୍ତ ବ୍ରାହ୍ମଣ ମାନଙ୍କର ଷୋଳଗୋଟି ସଂସ୍କାର ହୋଇଥାଏ । ଏହି ଷୋଳ ଗୋଟି ସଂସ୍କାର ହେଲା :-

**ଷୋଳ ସଂସ୍କାର**

୧) ପୁଂସବନ୍ଦୁ, ୨) ସୀମାନ୍ତୋନ୍ନୟନ, ୩) ଜାତକର୍ମ, ୪) ନାମକରଣ,

୫) ବହିର୍ନିଷ୍କ୍ରମତା, ୬) ଅନ୍ନପ୍ରାଶନ, ୭) ଚୂଡ଼ାକର୍ମ, ୮) ଉପନୟନ,

୯) ଦେବାରମ୍ଭ, ୧୦) ସମାବର୍ତ୍ତନ, ୧୧) ବାଗଦାନ, ୧୨) କନ୍ୟାଦାନ

୧୩) ହୋମ, ୧୪) ବନ୍ଦାପନା, ୧୫) ଅନ୍ତ୍ୟେଷ୍ଟ, ୧୬) ସାମ୍ବତ୍ସରିକ

ଶୁଲ୍‌କୀ ବଂଶୀୟ ରାଜା କୁଳସ୍ତମ୍ଭଦେବ ଏହି ପ୍ରସ୍ତର ମଣ୍ଡପ ନିର୍ମାଣ କରାଇ ବ୍ରହ୍ମଦେଶ ପ୍ରତିଷ୍ଠା କରାଇ ଥିଲେ ବୋଲି ଏଠାରୁ ପ୍ରାପ୍ତ ହୋଇଥିବା ତାମ୍ର ଶାସନରୁ ଜଣାଯାଏ । ଏହି ମଣ୍ଡପର ଦ୍ୱିତୀୟ ସ୍ତମ୍ଭକୁ (ପୂର୍ବ ଏବଂ ଉତ୍ତର ଦିଗ ମଧ୍ୟରେ ଥିବା ଐଶାନ୍ୟ କୋଣ ଦ୍ୱିତୀୟ ସ୍ତମ୍ଭ) ରାଜା ନିଜର କୁଳଦେବୀ 'ସ୍ତମ୍ଭେଶ୍ୱରୀ' ଭାବରେ ଆଖ୍ୟା କରାଇ ଥିଲେ । ବର୍ତ୍ତମାନ ପର୍ଯ୍ୟନ୍ତ ଏହି ସ୍ତମ୍ଭେଶ୍ୱରୀ ମା' ବୁଢ଼ୀ ଠାକୁରାଣୀ ଭାବରେ ପୂଜିତ ହୋଇ ଆସୁ ଅଛନ୍ତି । ଏହି ସ୍ତମ୍ଭେଶ୍ୱରୀଙ୍କ ଉପରେ ବର୍ତ୍ତମାନ ଗୋଟିଏ ସ୍ୱତନ୍ତ୍ର ମନ୍ଦିର ନିର୍ମାଣ କରାଯାଇ ପୂଜାର

ବ୍ୟବସ୍ଥା କରାଯାଇଅଛି । ସ୍ଥାନୀୟ ବାସିନ୍ଦା ଏହି ଐତିହ୍ୟକୁ ନେଇ ଗର୍ବ କଲେ ମଧ୍ୟ ଏହା ଅସୁରକ୍ଷିତ ଭାବେ ରହିଅଛି । ଏହାର ସୁରକ୍ଷା ନିମନ୍ତେ କୌଣସି ଅନୁଷ୍ଠାନ, ପଞ୍ଚାୟତ କିମ୍ବା ଉପଖଣ୍ଡ ଅଧିକାରୀ ଅଦ୍ୟାବଧି ଆଗ୍ରହ ପ୍ରକାଶ କରି ନାହାନ୍ତି ।

ଏଠାରୁ ଉଦ୍ଧାର କରାଯାଇଥିବା ତାମ୍ର ଫଳକ ବର୍ତ୍ତମାନ ମୟୁରଭଞ୍ଜ ସଂଗ୍ରହାଳୟରେ ସଂରକ୍ଷିତ । ଏହାର ଅକ୍ଷର ଗୁଡ଼ିକ ଦେବନାଗରୀ ଅକ୍ଷର ବୋଲି ଏହାର ପଠନରୁ ଜଣାଯାଏ । ଅଷ୍ଟମ ଶତାବ୍ଦୀର ସ୍ତମ୍ଭ ବଂଶୀୟ ରାଜା (୧୧ ସମ୍ବତ୍) ଚିତଲପୁରଠାରେ ଏହି ପ୍ରସ୍ତର ମଣ୍ଡପ ନିର୍ମାଣ କରି 'ବ୍ରହ୍ମଦେଶ' ସ୍ଥାପନ କରିଥିଲେ । ଅର୍ଥାତ୍ ହିନ୍ଦୋଳରେ ଅଷ୍ଟମ ଶତାବ୍ଦୀରେ ପ୍ରଥମ କରି ବ୍ରାହ୍ମଣ ମାନଙ୍କୁ ବସତି ସ୍ଥାପନ କରାଯାଇଥିଲା । ଏଥିରୁ ଅନୁମାନ କରାଯାଇଛି ଯେ ଚିତଲପୁର ହିନ୍ଦୋଳର ପ୍ରଥମ ବ୍ରାହ୍ମଣ ବସତି । ଏହି ତାମ୍ର ଫଳକରୁ ଆଉ ମଧ୍ୟ ଜଣାଯାଏ ଯେ, ଏଥିରେ ଗଦ୍ୟ ଏବଂ ପଦ୍ୟ ମିଶି ୩୧ ଧାଡ଼ି ଅଛି । ଭାଦ୍ରମାସରେ କୌଷିକ ଗୋତ୍ର ଯଦୁର୍ବେଦୀୟ ଅଗ୍ନିହୋତ୍ର ଉଚ୍ଚ ବିଶ୍ୱରୂପ ସ୍ୱାମୀକୁ ଦାନ ଦେଲେ । ଉକ୍ତ ମହାରାଜାଙ୍କର ପିତା ଥିଲେ ରାଜା ଜୟସ୍ତମ୍ଭ ଓ ପିତାମହ 'ସ୍ତମ୍ଭେଶରୀ ଭଟ୍ଟାରିକା' ଙ୍କର ଅନୁଗୃହୀତ ରାଜା ରଣସ୍ତମ୍ଭ । ଏହି ଶୁଲ୍କୀ ବଂଶ ରଜାଙ୍କର ଇଷ୍ଟଦେବୀ ଥିଲେ ମା' 'ସ୍ତମ୍ଭେଶ୍ୱରୀ' ।

ଏହି ତାମ୍ର ଫଳକ ଉପରେ ଅନ୍ୟ ଏକ ବିବରଣୀ ନିମ୍ନରେ ପ୍ରଦତ୍ତ କରାଗଲା ।

"On the 15th July 1964 Sri R.P. Mahapatra, M.A., Curator, Orissa State Museum, Bhubaneswar, brought a single copper plate inscription to me for decipherment. On enquiry I leant that the copper plate was secured by Sri Bairagi Panigrahi of Chittalapur village in Hindol Sub-Division of the District of Dhenkanal. This copper plate was discovered at Chittalapur by one Sapneswar Pati of the same village who got it from under the earth while digging for foundation at his own residence.

It is interesting to note here that two important temples of the later medieval period stand in the midst of Chittalpur. One temple is dedicated to the God Ugreswar (Siva) and the other to the famous goddes Stambheswari, who was the family deity of the Sulkis, the rulers of this region.

The alphabets are of the 10th or 11th Century A.D., used by some Kings of the Sulki, Tunga, Nandobhava, Ganga etc. dynasties of Orissa.

(Hindol plate of Vira Prachandadeva of Kulikarmasa Dr. S.N. Rajaguru)

ଚିତଲପୁର ପ୍ରାପ୍ତ ଉକ୍ତ ତାମ୍ରଫଳକର ପଠନରୁ ଅନୁମିତ ହୁଏ ଯେ, ଶୁଲ୍‌କୀ ବଂଶ ରାଜାଙ୍କର ଇଷ୍ଟଦେବୀ ଥିଲେ ମା' ସ୍ତମ୍ଭେଶ୍ୱରୀ । ଈଶ୍ୱର (ଶକ୍ତି) ଙ୍କ ନିକଟରେ ଶିବ ରହିବା ନ୍ୟାୟରେ ସେ ତାର ଅନତୀ ଦୂରରେ ଉଗ୍ରେଶ୍ୱର ମନ୍ଦିର ନିର୍ମାଣ କରାଇଥିଲେ । ମନ୍ଦିର ପାର୍ଶ୍ୱରେ ଏକ ପୁଷ୍କରଣୀ ମଧ୍ୟ ଖୋଳାଇ ଥିଲେ । ଏହାଥିଲା ଅଷ୍ଟମ ଶତାବ୍ଦୀ ପୂର୍ବରୁ ହିନ୍ଦୋଳ, ପ୍ରଗଣା ବା ଇଲାକା । ଏହାପରେ ଲହଡ଼ା ଗ୍ରାମରେ ସାମଲ ବଂଶୀୟ ଦଳପତି ମାନେ ଶାସନ କରୁଥିବାର ଐତିହାସିକ ପ୍ରମାଣ ମିଳିଥାଏ । ସାମଲ ବଂଶୀୟ ଦଳପତି ମାନଙ୍କ ମଧ୍ୟରେ ପ୍ରଥମ ଦଳପତି ହେଉଛନ୍ତି ଦୁର୍ଜୟ ସାମଲ (୯୩୭ -୯୬୫) । ଯାହାହେଉ ହିନ୍ଦୋଳ ଗଡ଼ଜାତର ପ୍ରତିଷ୍ଠାତା ଥିଲେ ୧୫୫୪ ଖ୍ରୀଷ୍ଟାବ୍ଦରେ ଉଦ୍ଧବଦେବ ଢେଙ୍କାମଣି ।

## ହିନ୍ଦୋଳ ଗଡ଼ଜାତରେ ସ୍ୱାଧିନତାର ଗୁଞ୍ଜରଣ ଏବଂ ମଣିପାଳ

ରାଜତନ୍ତ୍ର ହେଉଛି ଏକ ରାଜନୈତିକ ବ୍ୟବସ୍ଥା  ଯେଉଁଥିରେ ରାଜ୍ୟର ସମସ୍ତ କ୍ଷମତା ଜଣେ ବ୍ୟକ୍ତି ହାତରେ କେନ୍ଦ୍ରୀଭୂତ ହୋଇଥାଏ । କାଳକ୍ରମେ ଏହା ପାରିବାରିକ ଶାସନ ବ୍ୟବସ୍ଥାରେ ପରିଣତ ହୁଏ । ଏଥିରେ  ପ୍ରତିନିଧି ମୁଳକ ଶାସନ ବ୍ୟବସ୍ଥା ନଥାଏ କିମ୍ୱା ନାଗରିକ ସ୍ୱାଧିନତା ମଧ୍ୟ ନଥାଏ ।  ରାଜ ପରିବାରର ସଦସ୍ୟ ମାନଙ୍କ ହାତରେ ସବୁ ପ୍ରକାର କ୍ଷମତା ଠୁଳହୋଇ ରହିଥାଏ ।  ରାଜପରିବାରର ସଦସ୍ୟମାନେ ଉଚ୍ଚ ପଦବୀମାନ ଅଳଙ୍କୃତ କରୁଥିଲେ । ଯାହାହେଉ ଆମର ଜନ୍ମମାଟି ଓଡ଼ିଶା ଭୂମିରେ କେତେ ସନ୍ଥ, ଶୂର, ସୂରୀ, କବି, ତ୍ୟାଗୀ ଏବଂ କେତେ ରାଜ ପରିବାର ମଧ୍ୟ ଜନ୍ମ ନେଇ ଏହି ମାଟିକୁ ଗୌରବମୟ କରି ଯାଇଛନ୍ତି ତାର ହିସାବ ନାହିଁ । ତା ମଧ୍ୟରେ କତିପୟ ଲୋକଙ୍କୁ ଆଜି ସମାଜ ମନେ ରଖିଛି ତ ଆଉ କେତେଙ୍କୁ ମନେ ରଖିନାହିଁ । ଆଉ କେତେକଙ୍କ ସମଗ୍ର ଜୀବନ ଦେଶ ଜାତି ଏବଂ ସମାଜ ପ୍ରତି ଉତ୍ସର୍ଗୀକୃତ ହୋଇଥିଲେ ମଧ୍ୟ ଆଜି ତାହା ଇତିହାସ ପାଲଟି ଯାଇଛି । ଆଉ କିଛି ମଧ୍ୟ ଜନସାଧାରଣ ମାନଙ୍କର ମାନସ ପଟ୍ଟରୁ ଲିଭିଯାଇଅଛି । ସେମାନଙ୍କ ଜୀବନୀ ଆଜି ସମାଜ ପାଇଁ ଅଲୋଡ଼ା ହୋଇ ପଡ଼ିଛି । ମହାମେଘବାହାନ ଐର

ଖାରବେଳଙ୍କ ଠାରୁ ଆରମ୍ଭ କରି ଅଦ୍ୟାବଧି ଦେଶପ୍ରେମୀ ଏହି ଜନ୍ମମାଟି ପ୍ରତି ସେମାନଙ୍କର ତ୍ୟାଗଥିଲା ଅତୁଳନୀୟ । ସ୍ୱାଧୀନତାର ଘଟଣା ବହୁଳ ଇତିହାସରେ ଓଡ଼ିଶାର ଆଦିମ ଅଧିବାସୀ ମାନଙ୍କଠାରୁ ଆରମ୍ଭ କରି ଦିଲ୍ଲୀ ଦରବାର ପର୍ଯ୍ୟନ୍ତ ଘଟଣା ଗୁଡ଼ିକରେ ଜଡ଼ିତ ହୋଇଥିବା ମହାମାନବ ମାନଙ୍କ ବିଷୟରେ ଅଳ୍ପ ବହୁତ ପରିଚୟ ଦିଆଯାଇଛି. କିନ୍ତୁ ସେମାନଙ୍କର ପ୍ରେରଣା ଏବଂ ତ୍ୟାଗ ଆଜି ଆମ୍ଭେମାନେ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ନୁହନ୍ତି । କିନ୍ତୁ ସେମାନଙ୍କର ଜୟନ୍ତୀରେ ସଭାପତି ହେବାପାଇଁ ଆରମ୍ଭ ହୁଏ ତୁମୂଳ ରାଜନୀତି । କବି ହୁଅନ୍ତୁ, ଲେଖକ ହୁଅନ୍ତୁ, ନେତା ହୁଅନ୍ତୁ କିମ୍ବା ସନ୍ଥ ହୁଅନ୍ତୁ – ଓଡ଼ିଶାରେ ଜନ୍ମ ନେଇଥିବା କୌଣସି ଓଡ଼ିଆ ସେମାନଙ୍କର ବ୍ୟକ୍ତିତ୍ୱକୁ ସର୍ବଭାରତୀୟ ସ୍ତରରେ ପ୍ରତିଷ୍ଠା କରିପାରି ନାହାନ୍ତି । ଓଡ଼ିଶାରେ ଜନ୍ମ ନେଇଥିବା ଅନେକ ବିବେକୀ ଗୁଣବନ୍ତ ପୁରୁଷ ମଧ୍ୟ ଭାରତୀୟ ସମାଜରେ ନିଜକୁ ସାମିଲ କରି ପାରିନାହାନ୍ତି ।

ଆଜିର ବସ୍ତୁବାଦୀ ମଣିଷ ମାୟା ମୃଗ ପଛରେ ଗୋଡ଼ାଇ ଚାଲିଛି । ସେପରି ଗୋଡ଼ାଇବାର ପରିସମାପ୍ତି କେବେ ଘଟିନଥାଏ । ତେଣୁ ଦେଶ, ଜାତି ଏବଂ ସମାଜ ବିଷୟରେ ଚିନ୍ତା କରିବାର ଚେତନା ପାଇବେ କିପରି ? ଅନ୍ୟର ଭାବ ବୁଝିବେ କିପରି ? ଆଜି ଯେଉଁମାନଙ୍କୁ ଆମେ କର୍ମୀବୋଲି କହୁଛେ, ଦେଶର ସେବକ ବୋଲି କହୁଛେ, ସମାଜର ସଂସ୍କାରକ ବୋଲି କହୁଛେ ସେମାନଙ୍କର ଆନ୍ତରିକତା ଅପେକ୍ଷା ବାହ୍ୟ ଚାତୁରୀ ଅଧିକ ଏବଂ ସେମାନେ ହେଉଛନ୍ତି ପ୍ରଚାର ଧର୍ମୀ । ଜଣେ ପ୍ରକୃତ ଦେଶ ସେବକ, ନିସ୍ୱାର୍ଥପର କର୍ମୀ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିବା ଜୀବନ କେବେହେଲେ ସୁପ୍ତ ଅବସ୍ଥାରେ ରହିପାରେନା । ସମୟ ଆସେ ସେହି ସୁପ୍ତ ଅବସ୍ଥାରେ ରହିଥିବା କର୍ମ, ଭାବ ଏବଂ ଉଦ୍ଦେଶ୍ୟ ନିଶ୍ଚିତ ଭାବେ ପରିପ୍ରକାଶ ଘଟିଥାଏ । ପରିପ୍ରକାଶ ଘଟାଇବାରେ ଈଶ୍ୱର ମଧ୍ୟ ସହାୟତା କରିଥାନ୍ତି । ଯେତେବେଳେ ସେମାନେ ଜନମାନସକୁ ଆସିଥାନ୍ତି ସେମାନଙ୍କୁ ଦେବପ୍ରତିମ ସମ୍ମାନ ମିଳିଥାଏ । ଦେଶର ଜଣେ ନାଗରିକ ଭାବରେ ଅତୀତର ସ୍ମୃତି ଉପସ୍ଥାପନା କରିବା ଏକ ପବିତ୍ର କର୍ତ୍ତବ୍ୟ ବୋଲି ମୁଁ ମନେ କରିଥାଏ । ଶିକ୍ଷା ଓ ସଚେତନତା ବ୍ୟତୀତ ଜାତୀୟ ଜୀବନକୁ ସମୃଦ୍ଧି କରିବା କଷ୍ଟକର । ଜାତୀୟ ଜୀବନକୁ ସମୃଦ୍ଧ କରାନଗଲେ ସମୟ ଆସେ, ଦେଶ ବା ସମାଜ ସକଳ ପ୍ରାଚୁର୍ଯ୍ୟରେ ଥାଇ ମଧ୍ୟ କ୍ରମଶଃ ଅବକ୍ଷୟ ମୁଖୀ ହୋଇଥାଏ ।

ଠିକ୍ ଏହିପରି ଏକ ଘଟଣା ଘଟିଥିଲା ହିନ୍ଦୋଳ ଗଡ଼ଜାତରେ । ଗଡ଼ଜାତର ରାଜତନ୍ତ୍ରରେ ବ୍ୟକ୍ତି ବିଶେଷଙ୍କର ସ୍ୱାଧୀନତାର ଅଧିକାର ନଥିଲା । ଜାତୀୟତା ତ ଦୂରର କଥା । ସାମ୍ରାଜ୍ୟବାଦୀ ବ୍ରିଟିଶ ସରକାରଙ୍କର ଗୋଲାମଗିରି କରୁଥିବା ରାଜତନ୍ତ୍ର ନିକଟରେ କୌଣସି ଦାବି ଉପସ୍ଥାପନା କରିବା ନିରର୍ଥକ ବ୍ୟତୀତ ଆଉକିଛି ନୁହେଁ । ତଥାପି ଗଡ଼ଜାତର ଭବିଷ୍ୟତ ଦୃଷ୍ଟିରୁ ଦାବି ଉପସ୍ଥାପନା କରିବାର ଗୁରୁତ୍ୱ ରହିଛି । ଏହି ବିଷୟକୁ ଉପଲବ୍ଧି କରି ଜନସାଧାରଣ ମାନଙ୍କର ହିତ ଦୃଷ୍ଟିରୁ ତତ୍କାଳୀନ ଗଡ଼ଜାତରେ ଥିବା ରାଜାମାନଙ୍କର ଅନୈତିକ ଆଚରଣ କଠୋର ଦଣ୍ଡବିଧାନକୁ ଭୃକ୍ଷେପ ନକରି, ପ୍ରଜାମାନଙ୍କୁ ସୁସଂଗଠିତ କରି ରାଜତନ୍ତ୍ର ବିରୋଧରେ ବିକ୍ଷୋଭ ପ୍ରଦର୍ଶନ କରିଥିଲେ ଜରଡ଼ା ଗ୍ରାମର ମଣିପାଳ । ହିନ୍ଦୋଳର ପ୍ରଥମ ଗଣ ଆନ୍ଦୋଳନକାରୀ ଭାବେ ସେହି 'ମଣି'ଙ୍କ ଉପରେ ଆଲୋକ ପାତ କରିବା ।

## ଜରଡ଼ା ଗ୍ରାମର 'ମଣିପାଳ'

ସମୟ ପ୍ରାୟ ୧୮୯୨ ମସିହା କଥା । ଜାତୀୟ ସଂଗ୍ରାମରେ ଗାନ୍ଧିଜୀଙ୍କର ଆବିର୍ଭାବ ହୋଇନଥାଏ । ଉତ୍କଳ ଜନନୀଙ୍କର ସୁଯୋଗ୍ୟ ସନ୍ତାନ ଭାବେ ମଧୁ ବାବୁଙ୍କ ନାମ ଗଡ଼ଜାତ ମୂଳକରେ ଶୁଣା ଯାଉଥାଏ । ଆଦିବାସୀ ବହୁଳ ଅଞ୍ଚଳ ଗୁଡ଼ିକ ସ୍ଥାନେ ସ୍ଥାନେ ବ୍ରିଟିଶ ସରକାରଙ୍କ ବିରୋଧରେ ଆନ୍ଦୋଳନ ଚଳାଇ ଥାନ୍ତି । ସ୍ୱାଧୀନତା ଆନ୍ଦୋଳନର ପ୍ରଭାବ ଓଡ଼ିଶା ଉପରେ ପ୍ରାୟ ପଡ଼ିନଥାଏ । ଏହି ସମୟରେ ଏକ ଘଟଣା ଘଟିଥିଲା ହିନ୍ଦୋଳ ଗଡ଼ଜାତରେ । ୧୮୭୬ ମସିହା । ହିନ୍ଦୋଳର ତତ୍କାଳୀନ ରାଜା ଫକୀର ସିଂହ ମର୍ଦ୍ଦରାଜ ଜଗଦେବଙ୍କ ଦେହାନ୍ତ ପରେ ଏହି ସୁଯୋଗ ନେଇ ହିନ୍ଦୋଳର ସାମନ୍ତ ପୁତ୍ର ମାନସିଂହ ହିନ୍ଦୋଳ ରାଜ ସିଂହାସନ ଅକ୍ତିଆର କରିବାର ଚକ୍ରାନ୍ତ ଚଳାଇ ଥିଲେ । କାରଣ ପିତା ଫକୀର ସିଂହଙ୍କ ଦେହାନ୍ତ ବେଳକୁ ପୁତ୍ର ଜନାର୍ଦ୍ଦନ ସିଂହ ଥିଲେ ନାବାଳକ । ଏହି ଚକ୍ରାନ୍ତର ବ୍ୟୁହ ଭେଦ କରିନପାରି ରାଜମାତା ନିଜକୁ ଅସହାୟା ମଣିଥିଲେ । ଏହି ରାଜନୈତିକ ଷଡ଼ଯନ୍ତ୍ରକୁ ନିରାପଦ ନମଣି ନାବାଳକ ପୁତ୍ର ଜନାର୍ଦ୍ଦନ ସିଂହକୁ ସାଥିରେ ନେଇ ନରସିଂହପୁର ରାଜ ଭବନରେ ଆଶ୍ରୟ ନେଇଥିଲେ । ସେହି ସମୟରେ ଚିତଲପୁର ବାଇଶ ପଲ୍ଲୀର ମକଦ୍ଦମ ଥିଲେ ଭାବଗ୍ରାଏଗୁରୁ । ତାଙ୍କ ପୁଅ ହେଉଛନ୍ତି ନଟବର ପରମଗୁରୁ । ଏହି ପରିବାର ହିନ୍ଦୋଳ ପ୍ରଜାମାନଙ୍କୁ ଏକତ୍ରିତ କରି ରାଜମାତାଙ୍କୁ ନରସିଂହ ପୁରୁ ରାଜ ପ୍ରାସାଦରୁ ଫେରାଇ ଆଣି ହିନ୍ଦୋଳ ରାଜ ସିଂହାସନରେ ଜନାର୍ଦ୍ଦନ ସିଂହଙ୍କୁ ଅଭିସିକ୍ତ କରାଇ ଥିଲେ ।

ହିନ୍ଦୋଳ ରାଜ ପରିବାରରେ ରାଜନୈତିକ ଝଡ଼, ରାଜ୍ୟରେ ପ୍ରଜାମାନଙ୍କର ବିଶୃଙ୍ଖଳତା ଏବଂ ଦେଶ ଉପରେ କଂଗ୍ରେସର ଚାପକୁ ଆଖି ଆଗରେ ରଖି ବ୍ରିଟିଶ ସରକାର ବଙ୍ଗଳାରୁ ଗୋବର୍ଦ୍ଧନ ଘୋଷାଲ ନାମକ ଏକ ବ୍ୟକ୍ତିଙ୍କୁ ପଲିଟିକାଲ ଏଜେଣ୍ଟ ଭାବେ ନେଇଆସି ହିନ୍ଦୋଳରେ ଅବସ୍ଥାପିତ କଲେ । ହିନ୍ଦୋଳର ବିଶୃଙ୍ଖଳିତ ପ୍ରଜାମାନଙ୍କୁ ଦମନ କରିବା ତାଙ୍କ ଆସିବାର ଉଦ୍ଦେଶ୍ୟ ଥିଲା । ସେ ହିନ୍ଦୋଳର ବିଶୃଙ୍ଖଳିତ ପ୍ରଜାମାନଙ୍କୁ ଦମନ କରିବା ସଙ୍ଗେ ସଙ୍ଗେ ବାଇଶି ପଲ୍ଲୀର ମକଦ୍ଦମ ନଟବର ପରମ ଗୁରୁଙ୍କ ପରିବାର ବର୍ଗଙ୍କୁ ରାଜଦ୍ରୋହୀ ଭାବରେ ଘୋଷଣା କରି ରାଜ୍ୟରୁ ବିତାଡ଼ିତ କରିଥିଲେ । ଫଳରେ ସେମାନଙ୍କୁ ବଡ଼ମ୍ବା ରାଜାଙ୍କ ଆଶ୍ରୟ ନେବାକୁ ପଡ଼ିଥିଲା । ତାଙ୍କର ସମସ୍ତ ସ୍ଥାବର ଅସ୍ଥାବର ସମ୍ପତିକୁ ବାଜ୍ୟାପ୍ତ କରି ରାଜକୋଷରେ ମିଶାଇ ଦିଆଯାଇଥିଲା । ତା ପରେ ଗୋବର୍ଦ୍ଧନ ଘୋଷାଲଙ୍କ ଶାସନର ଛକା ପଂଝା ନୀତିରେ ପ୍ରଜାମାନେ ଅତିଷ୍ଠ ହେବାରୁ ପ୍ରଜା ବତ୍ସଳ ରାଜା ଜନାର୍ଦ୍ଦନ ସିଂହଙ୍କ ଆପତ୍ତିକ୍ରମେ ବ୍ରିଟିଶ ସରକାର ତାଙ୍କୁ ହିନ୍ଦୋଳରୁ ବିତାଡ଼ିତ କରି କଟକରେ ଦେଓ୍ୱାନ କରି ରଖିଥିଲେ ।

ହିନ୍ଦୋଳ ଗଡ଼ଜାତର ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ମସ୍ତକ ଉତ୍ତୋଳନ କରିଥିଲେ ଜରଡ଼ା ଗ୍ରାମର 'ମଣିପାଳ' । ପ୍ରାୟତଃ ସେ ୧୮୫୦ ମସିହାରେ ହିନ୍ଦୋଳ ଗଡ଼ଜାତର ବାଇଶି ପଲ୍ଲୀ ଦେଶ ଭୁକ୍ତ ଜରଡ଼ା ଗ୍ରାମରେ ପିତା ଦାମୋଦର ପାଳ ଏବଂ ମାତା ଲକ୍ଷ୍ମୀ ଦେବୀଙ୍କ କୋଳ ମଣ୍ଡନ କରିଥିଲେ । ପିଲା ଦିନରୁ ସେ ବଡ଼ ତେଜସ୍ୱୀ ଥିଲେ । ତାଙ୍କ ପରିବାର ଥିଲେ ଗାଁ ପଧାନ (ରାଜ୍ୟର ସର୍ବରାକାର) ଗାଁର ରାଜସ୍ୱ ଆଦାୟକରି ରାଜକୋଷରେ ପଇଠ କରନ୍ତି । ରାଜାଙ୍କର ହୁକୁମକୁ ଗ୍ରାମର ସର୍ବ ସାଧାରଣ ମାନଙ୍କୁ ଅବଗତ କରାନ୍ତି । ତେଣୁ ବାପା ଦାମୋଦର ପାଳ ସାଧାରଣ ଭାବରେ ଶିକ୍ଷା ପ୍ରଦାନ କରାଇ ଥିଲେ । ସେତେବେଳେ ଗଡ଼ଜାତରେ ଶିକ୍ଷାଥିଲା ସ୍ୱପ୍ନ । ଗାଁ ଚାଟଶାଳୀରେ ଅବଧାନଙ୍କ ପାଠ ସରିଗଲେ ବସ୍ତାନି ବନ୍ଧାହୋଇ ଯାଉଥିଲା । ଚାଟଶାଳୀ ପାଠ ଶେଷ ହୋଇଗଲେ ପାଠଶେଷ । (ପରବର୍ତ୍ତି ଅଧ୍ୟାୟରେ ହିନ୍ଦୋଳ ଶିକ୍ଷା ଉପରେ ଦୃଷ୍ଟି ପାତ କରାଯାଇଛି) ତାଙ୍କରି ମୁଖ୍ୟ ବେଉସା ଥିଲା ଚାଷ । ପିତାଙ୍କର ରାଜ ଦରବାର କାର୍ଯ୍ୟରେ ସେ ସନ୍ତୁଷ୍ଟ ନଥିଲେ । ତେଣୁ ତାଙ୍କୁ ବାଇଶ ପଲ୍ଲୀ ମକଦ୍ଦମଙ୍କର ଦଶଖମ୍ବ ମଣ୍ଡପକୁ ନ୍ୟାୟ ବିଚାର ପାଇଁ ନିଜ ଗ୍ରାମ ଜରଡ଼ା ତରଫରୁ ମନୋନୀତ ହୋଇଥିଲେ । ତାଙ୍କର ସ୍ପଷ୍ଟ ବାଦିତା ଏବଂ ନ୍ୟାୟୋଚିତ୍ତ ବାକ୍ୟ ପାଇଁ ସେ କିଛି ଲୋକଙ୍କର ପ୍ରିୟତା ହାସଲ କରିବା ସଙ୍ଗେ ସଙ୍ଗେ କିଛି କିଛି ଲୋକଙ୍କର ଚକ୍ଷୁଶୀଳତାର

ଶିକାର ମଧ୍ୟ ହୋଇଥିଲେ । ସେହି ସମୟରେ ସମାଜରେ ବ୍ରାହ୍ମଣ ମାନଙ୍କର ନିଷ୍ଠାପରତା ଏବଂ ଜାତିଆଣ ଭାବ ନକହିବା ଭଲ ।

ପରୋପକାର ଯେପରି ତାଙ୍କ ଜୀବନର ମୂଳ ମନ୍ତ୍ର ଥିଲା । ସ୍ପଷ୍ଟବାଦିତା ଥିଲା ତାଙ୍କର ପୁରୁଷ ପଣିଆ । ନିପଟ ମଫସଲରେ ଜନ୍ମ ନେଇଥିବା ଏପରି ଏକ ବ୍ୟକ୍ତିତ୍ୱ ସାଧାରଣତଃ କ୍ୱଚିତ୍ ଦେଖାଯାନ୍ତି । ତାଙ୍କ ଦୈନନ୍ଦିନ ଜୀବନରେ ତାଙ୍କୁ ଏକ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଲା । ସେତେବେଳେ ତାଙ୍କ ନିକଟରେ ନଥିଲା ଗାନ୍ଧିଜୀଙ୍କର ଆଦର୍ଶ ନା ଥିଲା ସଂଗଠନ । ବିନା ସଂଗଠନରେ ରାଜତନ୍ତ୍ର ବିରୋଧରେ ସ୍ୱର ଉତ୍ତୋଳନ କରି ନିଜର କାର୍ଯ୍ୟ ସଂପାଦନ କରିପାରିଥିଲେ । ଏହାଥିଲା ଓଡ଼ିଶାର ମଧ୍ୟାଞ୍ଚଳରେ ସ୍ୱାଧୀନତାର ପ୍ରଥମ ନମୂନା । ଆସନ୍ତୁ ନଜର ପକାଇବା ମଣି ପାଳଙ୍କର ଏକା ଏକା ଅର୍ଥାତ୍ ବିନା ସଂଗଠନରେ ସଂଗ୍ରାମର ଘଟଣାବଳୀ ଉପରେ । ବାସ୍ତବିକ ତାଙ୍କ ସାହସର ପ୍ରତିଫଳନ ଆଜି ସମାଜରେ ଆମର ଧ୍ୟେୟ ହେଉ ।

ଓଡ଼ିଶାର ଗଡ଼ଜାତ ଗୁଡ଼ିକ ପ୍ରାୟତଃ ବଣ ପାହାଡ଼ ଘେରା । ହିନ୍ଦୋଳ ମଧ୍ୟ ଗୋଟିଏ ବଣ ପାହାଡ଼ ଘେରା ଗଡ଼ଜାତ । ଏହାର ପ୍ରାୟ ୫୦ ଭାଗ ବନାଞ୍ଚଳ ଏବଂ ୪୦ ଭାଗ ଜନବସତି । ଏହି ଘଞ୍ଚ ଅରଣ୍ୟ ମାନଙ୍କରୁ ରାଜା କୌଶଳ କ୍ରମେ ହାତୀ ଧରିଥାନ୍ତି । ଏହି କ୍ରମରେ ହିନ୍ଦୋଳ ଜଙ୍ଗଲରେ ହାତିଖନ୍ଦା ବୋଲି ଏକ ସ୍ଥାନ ମଧ୍ୟ ଅଛି । ଏହାର ଭଗ୍ନାବିଶେଷ ବର୍ତ୍ତମାନ ସୁଦ୍ଧା ଦେଖାଯାଏ । ଏଠାରେ ବଣୁଆ ହାତୀ ମାନଙ୍କୁ ପୋଷା ହାତୀ ଦ୍ୱାରା ଧରା ଯାଇଥାଏ । ବର୍ଷକୁ ଥରୁଟିଏ ହାତୀ ଧରିବାର ଅଭିଯାନ କରାଯାଏ । ଧରା ଯାଇଥିବା ହାତୀ ଗୁଡ଼ିକୁ ପୋଷା ମନାଇ କାର୍ଯ୍ୟରେ ଲଗା ଯାଇଥାଏ । ହାତୀ ଧରିବା ହେଉଛି ଗୋଟିଏ ଅଭିଯାନ । ପ୍ରାୟ ଏକ ହଜାର ବ୍ୟକ୍ତି (ବେଠିଆ) ଏଥିରେ ସାମିଲ ହୁଅନ୍ତି । ଏମାନଙ୍କୁ ହାତୀ ବେଠିଆ କୁହାଯାଏ । ଏମାନେ ବଣୁଆ ହାତୀ ଗୁଡ଼ିକୁ ଜଙ୍ଗଲରୁ ଘଉଡ଼ାଇ ହାତୀଖଦା ନିକଟକୁ ଆଣିଥାନ୍ତି ।

ଘଟଣାଟି ହେଉଛି ଅନୁମାନିକ ୧୮୯୦/୯୨ ମସିହା ଘଟଣା । ବେଠି ବେଗାରି ଖଟିବା ଗଡ଼ଜାତିଆ ପ୍ରଜା ମାନଙ୍କର ଦେହସୁଆ ହୋଇ ଯାଇଥାଏ । ଇଛା ଥାଉ ନଥାଉ ରଜାଦେଶ ପାଳନ କରିବାକୁ ବାଧ୍ୟ । ଏହିପରି ହାତୀଖଦା ବେଠିଆ ଭାବରେ ମଣିପାଳ ଯାଇଥାନ୍ତି ଜଙ୍ଗଲକୁ । ହାତୀ ଘଉଡାଇବା କାମ ଜଙ୍ଗଲରେ ଚାଲିଥାଏ । ଏହି ସମୟରେ ଗୋଟିଏ ବଣୁଆଁ ହାତୀ ମାଡ଼ି ଆସିଲା । ସମସ୍ତେ ପ୍ରାଣ ବିକଳରେ ଦୌଡ଼ି ପଳାଇ ଗଲେ ।

କିନ୍ତୁ ରାଉଳ ନାମକ ଗୋଟିଏ ବେଠିଆ ବୁଦାରେ ଛନ୍ଦି ହୋଇ ତଳେ ଖସି ପଡ଼ିଲା । ତେଣୁ ଦନ୍ତା ହାତୀଟି ତା ପେଟ ଉପରେ ପାଦଦେଇ ଚାଲିଯିବା ଫଳରେ ସେଠାରେ ରାଉଳର ମୃତ୍ୟୁ ଘଟିଥିଲା । ଦନ୍ତାହାତୀ ଭୟରେ ସମସ୍ତେ ଦୌଡ଼ି ପଳାଇ ଗଲେ । ରାଉଳର ଶବଟି ସେମିତି ପଡ଼ିଥାଏ ।

ହାତୀକୁ ଭୟକରି ଗୋଟିଏ ବୃକ୍ଷ ଉହାଡ଼ରେ ଲୁଚି ରହିଥିଲେ ମଣିପାଳ । ସମସ୍ତ ଘଟଣା ସେ ସ୍ୱଚକ୍ଷୁରେ ଦେଖୁଥାନ୍ତି । ଜୀବନ ବିକଳରେ ସମସ୍ତେ ପଳାଇଗଲେ ସତ କିନ୍ତୁ ମଣିପାଳ ସେଇଠି ସେମିତି ରହିଲେ । ସେତେବେଳକୁ ସମୟ ଅପରାହ୍ଣ ହୋଇଯାଇଥାଏ । ଏପରି ମର୍ମନ୍ତୁଦ ଦୁର୍ଘଟଣା ସେ ସହ୍ୟ କରି ପାରିଲେ ନାହିଁ । ତାଙ୍କ ହୃଦୟ ତରଳି ଗଲା । ସେ ଏକାକି କ'ଣ ବା କରିବେ ? ସାଥୀରେ କେହି ନଥାନ୍ତି । ସେହି ରକ୍ତ ଜୁବୁ ଜୁବୁ ଶବଟିକୁ କାନ୍ଧରେ ପକାଇ ପାହାଡ଼ ତଳକୁ ନେଇ ଆସିଲେ । ତଳକୁ ଆସି ଦେଖନ୍ତେ କିଛି ରାଜ କର୍ମଚାରୀ ଏବଂ ବେଠିଆମାନେ ନଶୁଣିଲା ପରି ଚାଲି ଯାଇଥିଲେ । ସେ'ବା ଏକାକି କ'ଣ କରିବେ । ସେତେବେଳକୁ ସୂର୍ଯ୍ୟ ନଇଁ ଆସିଲେଣି । ସନ୍ଧ୍ୟା ହୋଇଗଲେ ପୁଣି ଜଙ୍ଗଲରେ ଜୀବଜନ୍ତୁ ଭୟ । ସେ ପୁଣି ଶବଟିକୁ କାନ୍ଧରେ ପକାଇ ନିକଟସ୍ଥ କନ୍ଧ ବସ୍ତିକୁ ଗଲେ । ସେହି କନ୍ଧ ବସ୍ତିରେ କିଛି ଲୋକଙ୍କୁ ଏକତ୍ରିତ କରାଇଲେ । ସେ ମନସ୍ଥ କଲେ ଯେ, ଶବଟିକୁ ତାଙ୍କ ଗାଁକୁ ନେବା ଅପେକ୍ଷା ସେହି ଜଙ୍ଗଲରେ ଦାହ କରିଦେବା ବରଂ ଭଲହେବ । ସେଠାରେ ଶବ ସତ୍କାର କରିଦେଲେ । ସେତେବେଳକୁ ପ୍ରାୟ ରାତି ହୋଇଯାଇଥାଏ । ସେ ସେହି ରାତିଟି କନ୍ଧ ପଲ୍ଲୀରେ କଟାଇଲେ । ପରଦିନ ସକାଳୁ ଶବଦାହ ଯାଗାରୁ କିଛି ଅସ୍ଥି ଏବଂ ଚିତାଭସ୍ମ ନେଇ ପାଟଣା ଗ୍ରାମକୁ ଯାଇ ତାଙ୍କ ପରିବାର ବର୍ଗଙ୍କୁ ହସ୍ତାନ୍ତର କରି ନିଜ ଘରକୁ ଫେରି ଯାଇଥିଲେ ।

ଏହି ଘଟଣା ପରେ ସେ ଚୁପ୍ ହୋଇ ବସି ରହିନଥିଲେ । ଆଖ ପାଖ ଗାଁ ଗୁଡ଼ିକୁ ଯାଇ ଗାଁ ମୁଖିଆ ମାନଙ୍କୁ ପ୍ରବର୍ତ୍ତାଇ ଥିଲେ ଯେ, ଆଉ ସେମାନେ ହାତୀ ଖଦାକୁ ବେଠି ଖଟିବା ପାଇଁ ଯିବେନାହିଁ । ରଜାଙ୍କର ପ୍ରଜା ମାନଙ୍କ ପ୍ରତି ଏହ ଅନ୍ୟାୟ ବିରୋଧରେ ଆମ୍ଭେମାନେ ଏକତ୍ରିତ ହୋଇ ସ୍ୱର ଉତ୍ତୋଳନ କରିବା । ରାଜାଙ୍କର ବେଠି ବେଗାରି ଉପରେ ଆମେ ପ୍ରତିବାଦ ଜଣାଇବା । ଏହିପରି ଭାବରେ ରାଉଳ ମୃତ୍ୟୁକୁ ନେଇ ଆମ୍ଭେମାନେ ସ୍ୱର ଉତ୍ତୋଳନ କରିବା, ଜନ ସଚେତନତା ସୃଷ୍ଟି କରିବା । ରାଜଦଣ୍ଡ ପ୍ରତି ତାଙ୍କର ତିଳେ ମାତ୍ର ଭ୍ରୁକ୍ଷେପ ନଥାଏ । ମଣିପାଳଙ୍କର ଏହି ପ୍ରଚେଷ୍ଟା ଲୁଚି ରହି ପାରିଲା ନାହିଁ । ଗାଁ

ଚଉକିଆ ଏବଂ ରାଜାଙ୍କ କାନକୁହାମାନେ ଏକଥା ଯାଇ ରାଜାଙ୍କ ନିକଟରେ କହିଲେ । ସମାଜ ମଧ୍ୟରେ କାନକୁହା ଜାତି ସଦା ସର୍ବଦା ରହିଥାନ୍ତି । କୁମାରିକା ଠାରୁ କାଶ୍ମୀର ପର୍ଯ୍ୟନ୍ତ ତାଙ୍କ ଚେର ଲମ୍ବିଥାଏ । ଏମାନେ ସମାଜର ଏକ ପ୍ରକାର କୀଟ । ଯାହାହେଉ ମଣିପାଳଙ୍କର ଏହି ଆନ୍ଦୋଳନାତ୍ମକ କାର୍ଯ୍ୟ କଳାପ ଯାଇ ରାଜାଙ୍କ କାନରେ ପଡ଼ିଲା । ରାଜା ତୁରନ୍ତ ପୋଲିସ ପଠାଇ ମଣିପାଳଙ୍କୁ ଧରିବା ପାଇଁ ବ୍ୟବସ୍ଥା କଲେ । ଆଖ ପାଖ ଗାଁ ଗୁଡ଼ିକରେ ଗୁପ୍ତଚର ମାନଙ୍କୁ ରଖାଗଲା । ଗାଁ ଛାଟିଆ ମାନେ ସଦାସର୍ବଦା ନଜର ରଖିଥାନ୍ତି । ଏହିପରି ଭାବରେ ରାଜ ଦରବାର ପକ୍ଷରୁ ମଣିପାଳଙ୍କ ଉପରେ କଡ଼ା ନଜର ରଖାଗଲା ।

ଏପରି ପରିସ୍ଥିତିରେ ମଣିପାଳଙ୍କୁ ଆତ୍ମଗୋପନ କରିବାକୁ ହେଲା । ଗାଁରେ ଥିବା ଅନ୍ୟମାନଙ୍କର ଧାନ କୋଠି ଭିତରେ ଲୁଚିବାକୁ ପଡ଼ିଲା । କୋଠିତଳେ ଥିବା ବଡ଼ ବଡ଼ ହାଣ୍ଡି ତଳେ ଲୁଚିବାକୁ ପଡୁଥାଏ । ରାତିରେ ଗୋରୁ ଗୁହାଳ ସଙ୍ଗା ଉପରେ ଲୁଚି ରହିବାକୁ ପଡୁଥାଏ । ରାଜ କର୍ମଚାରୀମାନେ ତାଙ୍କର ଖୋଜ୍ ଖବର ପାଇ ନବାରିବାରୁ ଦିନେ ହଠାତ୍ ଜରଡ଼ା ଗ୍ରାମର ପ୍ରତ୍ୟେକ ଘର ଖାନତଲାସ କରାଗଲା । ଏହିପରି ଭାବେ ଜରଡ଼ା ଗ୍ରାମବାସୀ ତିନି ଚାରିମାସ ଧରି ମଣିପାଳଙ୍କୁ ଗ୍ରାମରେ ଲୁଚାଇ ରଖିଥିଲେ । ଜରଡ଼ା ଗାଁ ଖାନ ତଲାସ ପରେ ଜରଡ଼ା ଗାଁ ମଣି ପାଳଙ୍କ ପାଇଁ ନିରାପଦ ନଥିବାରୁ ସେ ଛୋଟାପଡ଼ା ଗ୍ରାମକୁ ଚାଲି ଯାଇଥିଲେ । ସେଠାରେ ମଧ୍ୟ ସେ ଧାନ କୋଠି, କୋଠିତଳ, ଗୋରୁ ଗୁହାଳ ସଙ୍ଗା ଇତ୍ୟାଦି ସ୍ଥାନ ମାନଙ୍କରେ ପ୍ରାୟ ଦୁଇ ମାସ କାଳ ସମୟ ଧରି ଲୁଚି ରହିଥିଲେ । ଛୋଟାପଡ଼ା ଗ୍ରାମବାସୀ ମାନେ ମଧ୍ୟ ତାଙ୍କୁ ଲୁଚାଇବାରେ ସାହାଯ୍ୟ କରୁଥିଲେ । ପରିଶେଷରେ ରାଜା ଗ୍ରାମ ସର୍ବରାକାରଙ୍କୁ ଖବର ପଠାଇ ହୁଲିଆ ଜାରି କରିଲେ ଯେ, ଯଦି ମଣିପାଳ ରାଜ ଦରବାରରେ ଆତ୍ମ ସମର୍ପଣ ନକରନ୍ତି ତାହାହେଲେ ତାଙ୍କୁ 'ରାଜ ଦ୍ରୋହୀ' ଭାବରେ ଘୋଷଣା କରାଯିବ । ଏକଥା ମଧ୍ୟ ସେ ଜାଣିବାକୁ ପାଇଲେ । ତେଣୁ ସେ ଚିନ୍ତାକଲେ, ତାଙ୍କ ଯୋଗୁଁ ଜରଡ଼ା ଏବଂ ଛୋଟାପଡ଼ା ଦୁଇଟି ମୌଜାର ଲୋକମାନେ କାହିଁକି ଦଣ୍ଡିତ ହେବେ । ତେଣୁ ସେ କଟକ ଚାଲି ଯିବାପାଇଁ ମନେ ମନେ ନିଷ୍ପତ୍ତି ନେଲେ । ସେ ଛୋଟାପଡ଼ା ଗ୍ରାମରୁ ସାଥୀରେ କିଛି ଚୁଡ଼ାଧରି କଟକ ଅଭିମୁଖେ ପଦବ୍ରଜରେ ଯାତ୍ରାକଲେ । ସେ ଦିନରେ ଜଙ୍ଗଲ ଅଞ୍ଚଳ ଏବଂ ରାତିରେ ଜନାଞ୍ଚଳ ଗୁଡ଼ିକୁ ପାର ହୁଅନ୍ତି । ଯାହାହେଉ ସେ ଚାଲି ଚାଲି ଯାଇ କଟକରେ ପହଞ୍ଚିଲେ । ଆଜିକାଲି ପରି ସେତେବେଳେ ଗମନାଗମନରେ ସୁବିଧା ନଥିଲା । ଏଥିରୁ ତାଙ୍କର ସାହସ ଏବଂ ଧୈର୍ଯ୍ୟ ଅନୁମେୟ କରାଯାଇପାରେ ।

କଟକରେ ପହଞ୍ଚି ସେ ଯୋବ୍ରା ନିକଟରେ ଗୋଟିଏ ମଠରେ ଆଶ୍ରୟ ନେଲେ । ଛୋଟାପଡ଼ା ଗ୍ରାମବାସୀ ଦେଇଥିବା ଚୁଡ଼ା ଏବଂ କିଛି ଟଙ୍କା ତାଙ୍କୁ ଚଳିବାରେ ସାହାର୍ଯ୍ୟ କରୁଥିଲା । ସେଥିରେ ସେ କୌଣସି ମତେ ଚଳିଯାନ୍ତି । କିଛିଦିନ କଟକରେ ରହିଲା ପରେ ସେ ମଧୁବାବୁଙ୍କ ନାଁ ଶୁଣିଲେ । ମଧୁବାବୁ ସେତେବେଳେ କଟକରେ ବହୁ ଜଣାଶୁଣା । କଲିକତାରେ କଂଗ୍ରେସର ଜାତୀୟ ଆନ୍ଦୋଳନ ଓଡ଼ିଶା ଉପରେ କିଛି କିଛି ପ୍ରଭାବ ପକାଉ ଥାଏ । ଓଡ଼ିଶାର ଭାଷା ଆନ୍ଦୋଳନ ପାଇଁ ମଧୁବାବୁ ଖ୍ୟାତି ଲାଭ କରିଥାନ୍ତି । ଅନ୍ୟ ପକ୍ଷରେ ତାଙ୍କର ଓକିଲାତି । ମଧୁବାବୁଙ୍କର ଏହି ଯଶ କଟକରେ ରହିଲା ପରେ ମଣିପାଳ ଜାଣି ପାରିଲେ । ମନେ ମନେ ଚିନ୍ତା କଲେ ସେ ମଧୁବାବୁଙ୍କ ଦ୍ୱାରସ୍ଥ ହୋଇ ସବୁକଥା ତାଙ୍କୁ ଜଣାଇବେ । ଏହି ଭାବନା ତାଙ୍କୁ ବଶୀଭୂତ କରିଦେଲା । ସେତେବେଳେ ମଧୁବାବୁଙ୍କୁ "କଳା ସାହେବ" ବୋଲି କୁହାଯାଉଥିଲା । ଯାହାହେଉ ସେ ମଧୁବାବୁଙ୍କ ବିଷୟରେ ଅଧିକ ତଥ୍ୟ ସଂଗ୍ରହ କରି ତାଙ୍କ ନିକଟକୁ ଯିବା ପାଇଁ ମନେ ମନେ ନିଷ୍ପତି କଲେ ।

ରାତି ପାହିଲେ ମଣିପାଳ ମଧୁବାବୁଙ୍କ ନିକଟକୁ ଯିବେ । ରାତିସାରା ନିଦ ନାହିଁ । କ'ଣ କହିବେ ? କ'ଣ ପଚାରିବେ ? ଏହି ପରି ମନ ମଧରେ ଅନେକ ପ୍ରଶ୍ନ ! ଯାହା ହେଉ ସକାଳୁ ସକାଳୁ ମଧୁ ବାବୁଙ୍କ ନିକଟରେ ଉପସ୍ଥିତ ହୋଇଗଲେ ମଣିପାଳ । ମଧୁବାବୁ ହଠାତ୍ ତାଙ୍କ ଫାଟକ ନିକଟରେ ଏକ ଅଚିହ୍ନା ଯୁବକଙ୍କୁ ଦେଖି ନିକଟକୁ ଡ଼ାକି ବସାଇଲେ ଏବଂ ପରିଚୟ ମାଗିଲେ । ମଣିପାଳ ମଧୁବାବୁଙ୍କର ଅତିଥି ପରାୟଣତା, ଲୋକ ବତ୍ସଳତା ଏବଂ ଲୋକ ପ୍ରିୟତା  ଦେଖି ସ୍ତମ୍ଭିଭୂତ ହୋଇଗଲେ । କ'ଣ କହିବେ ନକହିବେ ସ୍ଥିରକରି ପାରିଲେ ନାହିଁ । କଣ୍ଠ ତାଙ୍କର ବାଷ୍ପରୁଦ୍ଧ ହୋଇଗଲା । ଚକ୍ଷୁ ଲୋତକ ପୂର୍ଣ୍ଣ ହୋଇଗଲା । କହି ପାରିଲେନି କିଛି । ମଣିପାଳଙ୍କର ଏପରି ଅବସ୍ଥା ଦେଖି ବଧୁବାବୁ ହସି ହସି ତାଙ୍କ ପିଠିରେ ହାତ ମାରି କହିଲେ, କୁହ ମଣି କୁହ, କଣ ତୁମର ଅସୁବିଧା ହେଲା । ତାପରେ ସେ ମଧୁବାବୁଙ୍କୁ ସମସ୍ତ ବୃତ୍ତାନ୍ତ କହିଲେ । ମଣିପାଳଙ୍କ ଠାରୁ ସବୁ ଶୁଣି ମଧୁବାବୁ ଆଶ୍ଚର୍ଯ୍ୟ ହେଲେ ଏବଂ କହିଲେ, ତୁମେ ଏକାକୀ ଗୋଟିଏ ଗଡ଼ଜାତ ବିରୋଧରେ ଲଢିବା ପାଇଁ କିପରି ସାହାସ କରୁଛ । ତୁମ ପଛରେ କେହି ହେଲେବି ନାହାନ୍ତି । ନା' ଅଛି ସଂଗଠନ, ନା' ଅଛି ଲୋକ ସଂପର୍କ, ଯେଉଁମାନେ ତୁମ ସପକ୍ଷରେ ରାଜ ଦରବାରରେ ସାକ୍ଷ୍ୟ ଦେଇ ପାରିବେ,  ବ୍ରିଟିଶ ସରକାର ଜାଣିଲେ ତୁମେ ସମସ୍ତେ ବହୁତ ଅସୁବିଧାର ସମ୍ମୁଖୀନ ହୋଇପାର । ମଣିପାଳ କହିଲେ ମୋ ପଛରେ କେହି ନାଁହାନ୍ତି ? ମଧୁବାବୁ ପଚାରିଲେ କିଏ ଅଛି ? ମଣିପାଳ ଉତ୍ତର ଦେଲେ ମଧୁବାବୁ ! ସେଇଥି ପାଇଁ ମୁଁ ଆପଣଙ୍କ ନିକଟକୁ

ଚାଲି ଆସିଲି । ମଣିପାଳଙ୍କ କଥା ଶୁଣି ମଧୁବାବୁ ବିସ୍ମିତ ହେଲେ । ସେ ଚିନ୍ତା କଲେ, ଜଣେ ଗଡ଼ଜାତିଆ ଗାଁ ଗହଳି ଲୋକ । କେତେ ସାହାସ, ସତ୍ୟ ପ୍ରତି କେତେ ବିଶ୍ୱାସ ଏବଂ ଦେଶ ପାଇଁ କେତେ ମମତା । ତାଙ୍କପ୍ରତି ମଧୁବାବୁଙ୍କ ମନରେ ଅନୁକମ୍ପା ଜାତହେଲା । କେତେ ଆତ୍ମ ବିଶ୍ୱାସ ନେଇ ସେ ଏଠାକୁ ଚାଲି ଆସିଛନ୍ତି; ତାଙ୍କ ନିଜ ପାଇଁ ନୁହେଁ, ଗୋଟିଏ ସଂପୂର୍ଣ୍ଣ ଗଡ଼ଜାତ ପାଇଁ ।

ଦୀର୍ଘ ନିଶ୍ୱାସ ପକାଇ ମଧୁବାବୁ କହିଲେ, ତୁମ ଅଞ୍ଚଳକୁ ଯିବାପାଇଁ ମୋତେ ଗୋଟିଏ ନକ୍ସା କରିଦିଅ । ମୁଁ ଏହିମାସ ଶେଷ ରବିବାର ଦିନ ଯାଇ ସେଠାରେ ପହଞ୍ଚିବି । ତୁମେ କିଛି ଲୋକଙ୍କୁ ସଂଗଠିତ କରି ରଖିବ । ମୁଁ ସେଠାରେ ପହଞ୍ଚିବି । ମୁଁ ସେଠାରେ ପହଞ୍ଚିଲା ପରେ ଆଲୋଚନା କରିବା । ମଣିପାଳ ଚିତଳପୁର ଗଜବାରଣ ନିକଟକୁ ଯିବାର ସମସ୍ତ ନକ୍ସା ଏବଂ ଠିକଣା ପ୍ରଦାନ କଲେ । ମଧୁବାବୁ ମଣିପାଳଙ୍କ ସାହସୀକତା ଏବଂ ନିସହାୟତା ଦେଖି ତାଙ୍କ ହାତରେ କିଛି ଅର୍ଥ ଦେଇ ବିଦାୟ କଲେ । ମଣିପାଳ ମଧୁବାବୁଙ୍କର ମହତ ପଣିଆରେ ଆନନ୍ଦିତ ହୋଇ ମଧୁବାବୁଙ୍କ ନିକଟରୁ ଅର୍ଥଗ୍ରହଣ କରି ଗାଁକୁ ଫେରି ଆସିଲେ ।

ମଣିପାଳ ଘରକୁ ଫେରିଲା ପରେ ସେହି ମାସଟି ଆତ୍ମଗୋପନ କରି ରହିଲେ ସତ, କିନ୍ତୁ ବାଇଶ ପଲ୍ଲୀରେ ସମସ୍ତ ଦଶଖମ୍ବୀ ସଦସ୍ୟ ମାନଙ୍କୁ ଏକତ୍ରିତ କରାଇ ସମସ୍ତ ଘଟଣା ବୁଝାଇ କହିଲେ । ଶୁଣି ସାରିଲା ପରେ ସଦସ୍ୟମାନେ ମଣିପାଳଙ୍କ କଥା ଉପରେ ସମ୍ମତି ପ୍ରଦାନ କଲେ ଏବଂ ମଧୁବାବୁଙ୍କ ଅଗମନକୁ ଅପେକ୍ଷା କରି ରହିଲେ । ଏହି ସବୁକାମ ଗୁପ୍ତରେ କରା ଯାଉଥିଲା ।

ନିର୍ଦ୍ଧାରିତ ସମୟରେ ଚିତଳପୁର ଗଜବାରଣଠାରେ ଘୋଡାଗାଡ଼ିରେ ଆସି ପହଞ୍ଚିଲେ ମଧୁବାବୁ । ସାଙ୍ଗରେ ଥାନ୍ତି ଦୁଇଜଣ କର୍ମୀ । ଗଡ଼ଜାତିଆ ମାନେ ମଧୁବାବୁଙ୍କୁ କଳା ସାହେବ ବୋଲି କହିଥାନ୍ତି । ମଧୁବାବୁଙ୍କୁ ଦେଖି ଦଶଖମ୍ବୀ ସଦସ୍ୟ ମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ସମସ୍ତେ ଆତ୍ମହରା ହୋଇ ପଡ଼ିଲେ । ଗଜବାରଣରେ ଉପସ୍ଥିତ ଥିବା ଜନତା ସସମ୍ମାନ ସହିତ ମଧୁବାବୁଙ୍କର ବସିବା ସକାଶେ ମେଜଟିଏ ଦେଲେ । ଦଶଖମ୍ବରେ ଆଲୋଚନା ଆରମ୍ଭ ହେଲା । ମଧୁବାବୁ କହିଲେ ସେ ମଣିପାଳଙ୍କଠାରୁ ସବୁକିଛି ଶୁଣି ସାରିଛନ୍ତି । ଆମେ ଏପରି ଗୋଟିଏ ବ୍ୟବସ୍ଥା କରିବା ଯେପରି ଆପଣ ମାନଙ୍କୁ ବେଠି ବେଗାରି ଖଟିବାକୁ ପଡ଼ିବ ନାହିଁ । କାରଣ ଏହି ବାଇଶ ପଲ୍ଲୀ ଗୋଟିଏ ବହୁ ପୁରାତନ

ରାଜବଂଶଙ୍କ ଦ୍ୱାରା ପ୍ରତିଷ୍ଠିତ ଗୋଟିଏ ବ୍ରହ୍ମଦେଶ । ଆପଣ ମାନଙ୍କ ପାଇଁ ହିନ୍ଦୋଳ ରାଜା ତାଙ୍କ ଶାସନରେ ଗୋଟିଏ ସୁବ୍ୟବସ୍ଥା କରିବେ । କୌଣଷି ପରିସ୍ଥିତିରେ ଆପଣମାନେ ଅବହେଳିତ ହେବେନାହିଁ। ଏହିପରି ଆଲୋଚନା ମାନ ଚାଲିଥାଏ ଏବଂ ସମସ୍ତେ ମଧୁବାବୁଙ୍କ ମତାମତ ଉପରେ ସମ୍ମତି ପ୍ରଦାନ କଲେ ।

ଠିକ୍ ଏହି ସମୟରେ ତତ୍‌କାଳୀନ ଗୁହିରା (ପଞ୍ଚପଡ଼ା)ର ଜଣେ ଦଶଖମ୍ୱୀ ସଦସ୍ୟ ଧର୍ମେନ୍ଦ୍ର ପତି କହିଲେ ଯେ, ଏହି ବାଇଶ ପଲ୍ଲୀ ବିଶିଷ୍ଟ ଚିତଲପୁରର ଅଧିକାଂଶ ପ୍ରାୟତଃ ବ୍ରାହ୍ମଣ । ଏମାନେ ସଦାସର୍ବଦା ପରଂପରା ମୂଖୀ । ଶାସ୍ତ୍ର ମୋଦିତ କର୍ମ ପ୍ରତି ଏମାନେ ପ୍ରାଧାନ୍ୟ ଦେଇଥାନ୍ତି । ଏଣୁ ଶାସ୍ତ୍ରରେ କୁହାଯାଇଛି "ରାଜ୍ଞଃ ପ୍ରଜାନାଂ ଶାନ୍ତି ର୍ଭବତୁ" ରଜାହେଲେ ରାଜ୍ୟର ବିଷ୍ଣୁ ସ୍ୱରୂପ, ତାଙ୍କ ଆଦେଶକୁ ଅବମାନନା କରିବା ପ୍ରଜାମାନଙ୍କର କର୍ତ୍ତବ୍ୟ ନୁହେଁ। ରାଜ ଆଜ୍ଞା ପାଳନ ନକରିବା ଶାସ୍ତ୍ର ବିରୋଧୀ। ତେଣୁ ରାଜାନୁଗତ ଧର୍ମକୁ ପ୍ରାଧାନ୍ୟ ଦେବାପାଇଁ ସେ ମନ୍ତବ୍ୟକ୍ତ କରିବା ସଙ୍ଗେ ସଙ୍ଗେ ମନୁ ସଂହିତାରୁ କେତେ ଗୋଟି ପଂକ୍ତି ବୁଝାଇ ଥିଲେ । ଯଥା:-

"ଅରାଜକେ ହି ଲୋକେ ଅସ୍ମିନ୍ ସର୍ବତୋ ବିଦ୍ରୁତେ ଭୟାତ୍,

**ରକ୍ଷାର୍ଥମସ୍ୟ ସର୍ବସ୍ୟ ରାଜାନମସୃଜତ୍ ପ୍ରଭୁଃ ।୩।"**

ଅର୍ଥାତ୍ - ଅରାଜକ ହେଲେ ଏହି ଜଗତରେ ସର୍ବତ୍ର ଲୋକେ ଭୟରେ ଆକୁଳ ହୁଅନ୍ତି, ଏ ହେତୁ ଏହି ସମୁଦାୟ ଚରାଚର ରକ୍ଷା ସକାଶେ ପରମେଶ୍ୱର ରାଜା ସୃଷ୍ଟି କରିଅଛନ୍ତି ।

"ବାଳୋଅପି ନାବମନ୍ତବ୍ୟୋ ମନୁଷ୍ୟ ଇତି ଭୂମିପଃ,

ମହତୀ ଦେବତା ହ୍ୟେଷା ନରରୁପେଣ ତିଷ୍ଠତି ।୮।"

ଅର୍ଥାତ୍ - ବାଳକ ହେଲେ ସୁଦ୍ଧା ମନୁଷ୍ୟ ବୋଧରେ ରାଜାକୁ ଅପମାନ କରିବା ଉଚିତ୍ ନୁହେଁ; କାରଣ ମନୁଷ୍ୟ ରୂପରେ ଥିବା ମହତୀ ଦେବତା ବୋଲି ଯାଣିବ ।

**"ତସ୍ମାଦ୍ଧର୍ମଂ ଯମିଷ୍ଟେଷୁ ସବ୍ୟବସ୍ୟେ ନୃରାଧିପଃ,**

**ଅନିଷ୍ଟଂ ଚାପ୍ୟନିଷ୍ଟେଷୁ ତଂ ଧର୍ମଂ ନ ବିଚାଳୟେତ୍।୧୩।**

ଅର୍ଥାତ୍ – ଶିଷ୍ଟ ପାଳନ ଓ ଦୁଷ୍ଟ ଦମନ ସକାସେ ରାଜା ଯାହା ଇଷ୍ଟ ଓ ଯାହା ଅନିଷ୍ଟ ତଦ୍ ବିଷୟରେ ନିୟମ ନିର୍ଦ୍ଧାରଣ କରନ୍ତି, ସେ ନୀୟମ ଲଙ୍ଘନ କରିବ ନାହିଁ ।

(ଏହି ତିନିଗୋଟି ଶ୍ଳୋକ ମନୁସଂହିତାର ସପ୍ତମ ଅଧ୍ୟାୟର ୩, ୮ ଏବଂ ୧୩ ନମ୍ବର ଶ୍ଳୋକ)

ରାଜାଙ୍କ ନିର୍ଦ୍ଦେଶକୁ ପାଳିବା ପ୍ରଜାର ଧର୍ମ ବୋଲି ଏହିପରି ଯୁକ୍ତି ବାଢିବା ପରେ ମଣିପାଳ ଉତ୍ୟକ୍ତ ହୋଇ ଉଠିଲେ । ଉଭୟଙ୍କ ମଧ୍ୟରେ ଯୁକ୍ତି ତର୍କର ମାତ୍ରା ବଢିବାକୁ ଲାଗିଲା । ମଧୁବାବୁ ସମସ୍ତଙ୍କୁ ଚୁପ୍ ରହିବା ପାଇଁ କହିବା ଫଳରେ ପରିସ୍ଥିତି ଶାନ୍ତ ହେଲା ।

ମଧୁବାବୁ ସମସ୍ତଙ୍କ ଉଦ୍ଦେଶ୍ୟରେ କହିଲେ, ଆପଣ ମାନେ ଯଦି ରାଜାନୁଗତ ଧର୍ମ ଦେଖିବେ ମୋର କୌଣଷି ଆପତ୍ତି ନାହିଁ । ଆପଣମାନେ ସମସ୍ତେ ବ୍ରାହ୍ମଣ । ଶାସ୍ତ୍ରାନୁମୋଦିତ କର୍ମ କରନ୍ତୁ । ମୁଁ ଆପଣମାନଙ୍କ ସକାଶେ ଆସିଥିଲି । ବ୍ରାହ୍ମଣ ମାନଙ୍କୁ ବେଠି ବେଗାରିରୁ ମୁକ୍ତ କରିବା ମୋର ଉଦ୍ଦେଶ୍ୟ ଥିଲା । ଆପଣ ମାନଙ୍କର ଯାହା ଇଛା ସେଇଆ କରନ୍ତୁ । କିନ୍ତୁ ମୁଁ ମଣିପାଳନଙ୍କୁ ସାହାଯ୍ୟ କରିବି । ସେ ହେଉଛନ୍ତି ଉତ୍କଳମାତାର ଯୋଗ୍ୟ ସନ୍ତାନ । ମଧୁବାବୁ ଏହା କହି ମଣିପାଳଙ୍କ ଉଦ୍ଦେଶ୍ୟରେ ହିନ୍ଦୋଳର ତତ୍କାଳୀନ ରାଜା ଜନାର୍ଦ୍ଦନସିଂହ ମର୍ଦ୍ଦରାଜ ଜଗଦେବଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖିଲେ । ଏହି ପତ୍ରଟିର ସାଂରାଶ ହେଲା :- "ମଣିପାଳ ଦୋଷୀ ନୁହନ୍ତି କିମ୍ବା ରାଜଦ୍ରୋହୀ ନୁହନ୍ତି । ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ କରିବାର ଅଧିକାର ପ୍ରତ୍ୟେକ ପ୍ରଜାଙ୍କର ରହିଅଛି । ପ୍ରଜାଙ୍କୁ ସନ୍ତୁଷ୍ଟ କରିବା ଜଣେ ରାଜାଙ୍କର କର୍ତ୍ତବ୍ୟ ମଧ । ବିନା ମଜୁରୀରେ ପ୍ରଜାମାନଙ୍କୁ ଖଟାଇବା ଏହା ନୀତି ବିରୋଧ । ତେଣୁ ମଣିପାଳ ଯେଉଁ ବିଷୟରେ ସ୍ୱର ଉତ୍ତୋଳନ କରିଛନ୍ତି ତାହା ଯଥାର୍ଥ । ତେଣୁ ସେ ନିର୍ଦ୍ଦୋଷ । ତାଙ୍କୁ ଦଣ୍ଡ ଦିଆଯାଇ ପାରିବ ନାହିଁ । ଯଦି ତାଙ୍କୁ ଦଣ୍ଡ ଦିଆଯାଏ ତାହାହେଲେ ଅନୁଗୋଳ ରାଜ୍ୟପରି ହିନ୍ଦୋଳ ରାଜ୍ୟକୁ ଇସ୍‌ମାଇଲ କରାଯିବ । ରାଜା ସୋମନାଥ ସିଂହ ମର୍ଦ୍ଦରାଜଙ୍କ ପରି ତୁମର ସେଇ ଦଶାହେବ । ରାଜ୍ୟର ଶାସନଭାର ରାଜାଙ୍କଠାରୁ କାଢି ନିଆଯିବ" ଏହି ପତ୍ର ଖଣ୍ଡିକ ଗୁପ୍ତରେ ଲେଖି ସେ ମଣିପାଳଙ୍କ ହାତକୁ ଦେଲେ ଏବଂ କହିଲେ ତୁମେ ଯାଇ ରାଜାଙ୍କୁ ଦେଖାକରି ଏହି ପତ୍ରଟି ରାଜାଙ୍କୁ ଦେବ । ଏହାକହି ମଧୁବାବୁ ବିଦାୟ ନେଲେ ।

ମଧୁବାବୁଙ୍କ ଯିବା ପରେ ମଣିପାଳ ଉତ୍ତେଜିତ ହେଲେ ଏବଂ ପଞ୍ଚପଡ଼ାର ଧର୍ମେନ୍ଦ୍ର ପତିଙ୍କୁ ଭୀଷଣ ଗାଳି ଗୁଲଜ କଲେ । ଜୀବନରେ ସେ ଆଉ ଚିତ୍ତଳପୁର ଦଣ୍ଡଖମ୍ବକୁ

ଆସିବେ ନାହିଁ ବୋଲି କଥା ଦେଇ ଚାଲିଗଲେ । ବାସ୍ତବିକ ତାଙ୍କ ଜୀବନରେ ସେ ଆଉ କେବେହେଲେ ଦଶଖମ୍ଭ ମଣ୍ଡପକୁ ଫେରି ନଥିଲେ । ସେଇ ଦିନର ଘଟଣା ଯାଇ ରାଜାଙ୍କ ନିକଟରେ ପହଞ୍ଚିଲା । ତା ପରଦିନ ସକାଳୁ ଗାଁ ଚଉକିଆ ଏବଂ ଗଡ଼ ପୋଲିସ ଜରଡ଼ା ଗ୍ରାମକୁ ଆସି ମଣିପାଳଙ୍କୁ ରାଜାଙ୍କ ନିକଟକୁ ନେଇଗଲେ । ତାଙ୍କୁ ଚାରିଦିନ ହାଜତରେ ରଖାଗଲା । ପଞ୍ଚମ ଦିନ ବିଚାର ପାଇଁ ତାଙ୍କୁ ଦରବାରକୁ ନିଆଗଲା । ବିଚାର ଚାଲିଲା । ବିଚାର ସମୟରେ ରାଜ କର୍ମଚାରୀମାନେ ତାଙ୍କୁ ବିଭିନ୍ନ କୁଭାଷାରେ ଭର୍ତ୍ସନା କରିଥିଲେ । ଦଣ୍ଡ ବିଧାନ ଘୋଷଣା ପୂର୍ବରୁ ସେ ମଧୁବାବୁଙ୍କଠାରୁ ନେଇଥିବା ଚିଠି ଖଣ୍ଡିକ ଅଣ୍ଟାରୁ ବାହାର କରି ରାଜାଙ୍କୁ ପ୍ରଦାନ କଲେ । ରାଜା ଚିଠିଖଣ୍ଡିକ ପଢି ସମସ୍ତ ବିଷୟ ଅବଗତ ହେଲେ ଏବଂ ଚିଠି ଖଣ୍ଡିକର ନିମ୍ନ ଦେଶରେ ମଧୁବାରଷ୍ଟରଙ୍କର ନାମ ପଢି ହତବାକ୍ ହୋଇଗଲେ । ଦରବାର ନିସ୍ତବ୍ଧ ହୋଇଗଲା । ରାଜା ମଣିପାଳଙ୍କୁ ଚାହିଁଲେ । ପୁନର୍ବାର ରାଜା ଚିଠି ଖଣ୍ଡିକୁ ପଢି ମଣିପାଳଙ୍କୁ ଚାହିଁଲେ ।

ରାଜା ନିଜ ଆସନ ଛାଡି ଓହ୍ଲାଇ ଆସିଲେ ତଳକୁ ଏବଂ ମଣିପାଳଙ୍କୁ କୁଣ୍ଢାଇ ପକାଇଲେ । ରାଜା ମଣିପାଳଙ୍କୁ ପଚାରିଲେ ତୁମେ କ'ଣ ଚାହଁ ? ତୁମ ପାଇଁ ମଧୁବାରିଷ୍ଟରଙ୍କ ଭଳି ମହାନ୍ ବ୍ୟକ୍ତିଙ୍କ ପାଦ ହିନ୍ଦୋଳରେ ପଡିଲା । ଏହା ଆମ ରାଜ୍ୟ ପକ୍ଷେ ଗୌରବର ବିଷୟ । ମୁଁ ତୁମର ସମସ୍ତ ବିଷୟ ବୁଝି ପାରିଛି । ତୁମେ କ'ଣ ମାଗୁଛ ମାଗ । ମୋର ଆପଣଙ୍କୁ କିଛି ମାଗିବାର ନାହିଁ ଛାମୁ, କି' ଆପଣଙ୍କ ଠାରୁ ମୋର କିଛି ନେବାର ନାହିଁ, ଉତ୍ତର ଦେଲେ ମଣିପାଳ । ରାଜା କହିଲେ ମଣିପାଳ, ତୁମର ରାଜ୍ୟ ପ୍ରୀତି ପାଇଁ ମୁଁ ଖୁସିହୋଇ ତୁମକୁ ପାରିଖିତା ସରହଦ (ଗ୍ରାମ)କୁ ପ୍ରଦାନ କରାଗଲା । ତୁମର ସମସ୍ତ ଆପତ୍ତି କାର୍ଯ୍ୟକାରୀ କରାଯିବ । କିନ୍ତୁ ମଣିପାଳ ରାଜାଙ୍କଠାରୁ କୌଣଷି ପଦାର୍ଥ ଗ୍ରହଣ କରିବାକୁ ରୋକଠୋକ୍ ମନା କରି ଦେବାରୁ ରାଜ ପରିଷଦରେ ଥିବା କର୍ମଚାରୀ ମାନେ ମଣିପାଳଙ୍କୁ ବୁଝାଇ ଥିଲେ । ରାଜଦତ୍ତ ପଦାର୍ଥକୁ ଗ୍ରହଣ ନକେଲ ଏହା ରାଜ୍ୟ ପ୍ରତି ତଥା ରାଜାଙ୍କ ପ୍ରତି ଅପମାନ ବୋଧ ହୁଏ ଇତ୍ୟାଦି ଇତ୍ୟାଦି । ପରେ ସେ ରାଜଦତ୍ତ ପାରିଖିତା ଗ୍ରାମକୁ ଗ୍ରହଣ କଲେ ଏବଂ ରାଜା ସସମ୍ମାନେ ହାତୀ ଉପରେ ବସାଇ ମଣିପାଳଙ୍କୁ ଜରଡ଼ା ଗ୍ରାମରେ ଛାଡ଼ିଦେଲେ । ତାଙ୍କ ଉପରେ ଥିବା ସମସ୍ତ ମାମଲାକୁ ମଧ ପତ୍ୟାହାର କରିନେଲେ । ଧର୍ମେନ୍ଦ୍ର ପତିଙ୍କ ଯୁକ୍ତି ଏବଂ ସଂସ୍କୃତ ଜ୍ଞାନର ପାରିଦର୍ଶୀତା ଉପରେ ମୁଗ୍ଧ ହୋଇ ଧର୍ମେନ୍ଦ୍ର

ପତିଙ୍କୁ ରାଜା "ଖାଡ଼େଙ୍ଗା' ପଦରେ ସମ୍ମାନିତ କରାଇଥିଲେ । ଏବେ ମଧ୍ୟ 'ଧରମୁ ଖାଡ଼େଙ୍ଗା' ନାମ ସେହି ପଞ୍ଚପଡ଼ା ଗ୍ରାମରେ ଶୁଣାଯାଏ ।

ତତ୍‌କାଳୀନ ପାରିଖିତା ଥିଲା ଗୋଟିଏ ଛୋଟ ଗ୍ରାମ । ମଣିପାଳ କୃଷିକର୍ମ କରୁଥିବା କିଛି କୃଷକ ପରିବାର ମାନଙ୍କୁ ଆଣି ମାଗଣାରେ ଭୂସଂପତ୍ତିଦେଇ ବସତି ସ୍ଥାପନ କରାଇଥିଲେ । ବର୍ତ୍ତମାନ ସୁଦ୍ଧା ସେ ଗ୍ରାମର ଅଧିକାଂଶ କୃଷକ । କିନ୍ତୁ ନିଜର ଜନ୍ମମାଟି ଜରଡ଼ା ଗାଁକୁ ଛାଡ଼ି ସେ ସେଠାକୁ ଯାଇ ନଥିଲେ । କିନ୍ତୁ ଜନସଂଖ୍ୟା ଦୃଷ୍ଟିରୁ ତାଙ୍କର ତୃତୀୟ ଚତୁର୍ଥ ପୁରୁଷ ଜରଡ଼ା ଛାଡ଼ି ସେଠାରେ ବସବାସ କରୁଅଛନ୍ତି ।

(ସ୍ୱାଧୀନତା ସଂଗ୍ରାମୀଙ୍କ ବିଷୟରେ ତଥ୍ୟ ସଂଗ୍ରହ କରିବା ପାଇଁ ଜରଡ଼ା ଗ୍ରାମକୁ ଯାଇଥିବା ସମୟରେ ଶ୍ରୀଯୁକ୍ତ ସହଦେବ ପାଳ ଏବଂ ଶ୍ରୀଯୁକ୍ତ ଭାବଗ୍ରାହୀ ପାଳଙ୍କ ଠାରୁ ସଂଗୃହୀତ ଏହି ମଣିପାଳଙ୍କ ବିଷୟଟି ଉପସ୍ଥାପିତ କରାଯାଇଛି ।)

ମଣିପାଳଙ୍କ ବିଷୟରୁ ଆମେ ହୃଦୟଙ୍ଗମ କରି ପାରିବା ଯେ, ତତ୍‌କାଳୀନ ରାଜନୈତିକ ବାତାବରଣ କେତେ କଠୋର ଥିଲା । ଗଡ଼ଜାତର ରଜାମାନେ ରାଜ୍ୟର ହର୍ତ୍ତାକର୍ତ୍ତା ଭାଗ୍ୟ ବିଧାତା ଥିଲେ । ହିନ୍ଦୋଳ ରାଜବଂଶର ଇତିହାସରୁ ଯଣାଯାଏ ଯେ, ସେମାନେ ଅନ୍ୟାନ୍ୟ ଗଡ଼ଜାତର ରାଜାଙ୍କ ପରି ଅତ୍ୟାଚାରୀ ନଥିଲେ । ସେମାନଙ୍କର ପ୍ରଜାବତ୍ସଳତା ଥିଲା । ହିନ୍ଦୋଳ ଗୋଟିଏ ସ୍ୱତନ୍ତ୍ର ଗଡ଼ଜାତ ହେଲେ ମଧ୍ୟ ବାହ୍ୟ ସଭ୍ୟତାର ଆଲୋକ ତତ୍କାଳୀନ୍ ହିନ୍ଦୋଳ ଉପରେ ପ୍ରାୟ ପଡ଼ିନଥାଏ । ଶିକ୍ଷାକଥା ନକହିବା ଭଲ । ପରବର୍ତ୍ତି ଅଧ୍ୟାୟରେ ଆମେ ହିନ୍ଦୋଳର ଶିକ୍ଷା ଉପରେ ଆଲୋକପାତ କରିବା । ମୋଟ ଉପରେ କହିବାକୁ ଗଲେ ହିନ୍ଦୋଳରେ ରାଜା ଏବଂ ପ୍ରଜାଙ୍କ ମଧ୍ୟରେ ଉତ୍ତମ ବୁଝାମଣା ଥିଲା । ଅନ୍ଧାରୀ ମୂଳକ ହିନ୍ଦୋଳରେ ପ୍ରଥମେ ନନ୍ଦପୁର ଗ୍ରାମର ଆଚାର୍ଯ୍ୟ ପରିବାର ଶିକ୍ଷାର ଆଲୋକ ବର୍ତ୍ତିକା ଜଳାଇ ଥିଲେ ।

ବିଂଶ ଶତାବ୍ଦୀରେ ଓଡ଼ିଶାର ରାଜନୈତିକ ପରିପାଟୀର ପରିବର୍ତ୍ତନ ହେବା ସଙ୍ଗେ ସଙ୍ଗେ ହିନ୍ଦୋଳରେ ମଧ୍ୟ ରାଜନୈତିକ ପରିସ୍ଥିତିର ପରିବର୍ତ୍ତନ ଘଟିଥିଲା । ୧୯୦୪ ମସିହାରେ ରାଜା ଜନାର୍ଦ୍ଦନ ସିଂହ ମର୍ଦ୍ଦରାଜ ଜଗଦେବଙ୍କର ମୃତ୍ୟୁ ପରେ ତାଙ୍କ ପୁତ୍ର ନବକିଶୋର ସିଂହ ମର୍ଦ୍ଦରାଜ ଜଗଦେବ ସିଂହାସନ ଆରୋହଣ କରିଥିଲେ । ସେତେବେଳକୁ ସେ ନାବାଳକ ଥିବାରୁ ଶ୍ୟାମ ସୁନ୍ଦର ନନ୍ଦ ନାମକ ଜଣେ ବ୍ୟକ୍ତି କଟକ ଜିଲ୍ଲାରୁ ଆସି ପଲିଟିକାଲ ଏଜେଣ୍ଟ (Political Agent) ଭାବରେ ହିନ୍ଦୋଳରେ ନିଯୁକ୍ତି ପାଇଲେ । ସେ

ହିନ୍ଦୋଳର ଶାସନ କାର୍ଯ୍ୟ ଚଳାଇ ଥିଲେ । ପରବର୍ତ୍ତି ସମୟରେ ଶ୍ୟାମସୁନ୍ଦର ନନ୍ଦଙ୍କର ପ୍ରଜାପୀଡ଼ନ ଏବଂ କ୍ଷମତା ଲୋଭ ପ୍ରଜାମାନଙ୍କୁ ତଥା ରାଜ ପରିବାର ବର୍ଗଙ୍କୁ ଉତ୍‌କ୍ଷିପ୍ତ କରିଥିଲା । ପରିସ୍ଥିତି ଅଣଆୟତ ହେବାରୁ ସେ ରାଜା ନବକିଶୋର ସିଂହଙ୍କୁ କ୍ଷମତା ହସ୍ତାନ୍ତର କରିଥିଲେ । ସେ କ୍ଷମତା ହସ୍ତାନ୍ତର କଲେ ସତ, କିନ୍ତୁ ଇଂରେଜ ସରକାରଙ୍କୁ ଲେଖିଲେ ଯେ, ରାଜା ନବକିଶୋର ସିଂହ ରାଜକାର୍ଯ୍ୟ ପାଇଁ ଯୋଗ୍ୟତା ହାସଲ କରିନାହାନ୍ତି । ତେଣୁ ତାଙ୍କୁ ରାଜକାର୍ଯ୍ୟ ଅର୍ପଣ କରାନଯାଉ । ଏଥିରେ ଇଂରେଜ ସରକାର ସହମତି ପ୍ରଦାନ କରିଥିଲେ ।

ରାଜା ନବକିଶୋର ସିଂହ ଥିଲେ ଜଣେ ଆଦର୍ଶ, ସ୍ୱାଧୀନ ଚେତା ଏବଂ ଉଚ୍ଚ ଶିକ୍ଷିତ ରାଜା । ରାଜ୍ୟରେ ଏପରି ରାଜନୈତିକ ପରିସ୍ଥିତିକୁ ଆଖି ଆଗରେ ରଖି ସେ ଶାନ୍ତିପୂର୍ଣ୍ଣ ଭାବରେ କାର୍ଯ୍ୟ ସମାପନ କରିଥିଲେ । ସେହି ସମୟରେ କଟକରେ ଥାନ୍ତି ବାଲୁଙ୍କେଶ୍ୱର ଆଚାର୍ଯ୍ୟ । ତାଙ୍କ ଘର ହିନ୍ଦୋଳ ରାଜ୍ୟର ନନ୍ଦପୁର ଗ୍ରାମରେ । ତାଙ୍କ ମାଧ୍ୟମରେ ସେ କଟକର ପଲିଟିକାଲ ଏଜେଣ୍ଟଙ୍କୁ ସବୁକଥା କହିଲେ । ଫଳରେ ଶ୍ୟାମ ସୁନ୍ଦର ନନ୍ଦଙ୍କ ଠାରୁ ଶାସନ କ୍ଷମତା କାଢି ନଆଯାଇ ରାଜା ନବ କିଶୋର ସିଂହଙ୍କୁ ଅର୍ପଣ କରାଗଲା । ହିନ୍ଦୋଳରୁ ଶ୍ୟାମ ସୁନ୍ଦର ନନ୍ଦଙ୍କୁ ବିତାଡ଼ିତ କରି କଟକ ନିଆଗଲା । ନବକିଶୋର ସିଂହ ସଂପୂର୍ଣ୍ଣ ଭାବରେ ରାଜ୍ୟର ଅଧିକାର ପାଇ ରାଜ୍ୟ ଶାସନ କଲେ । ଚକ୍ରଧର ଆଚାର୍ଯ୍ୟ ହିନ୍ଦୋଳର ଦିୱାନ ଭାବରେ ରହିଲେ । ରାଜା ନବକିଶୋର ସିଂହଙ୍କ ସମୟରେ ହିନ୍ଦୋଳରେ କୃଷି ଠାରୁ ଶିକ୍ଷା ପର୍ଯ୍ୟନ୍ତ ଉଭୟ ଦିଗରେ ପରିବର୍ତ୍ତନ ଦେଖାଯାଇଥିଲା । ପରବର୍ତ୍ତି ଅଧ୍ୟାୟରେ ଏହା ଅଲୋଚନା କରାଯିବ ।

ସେହି ସମୟରେ ଓଡ଼ିଶାରେ ରାଜନୈତିକ ପରିସ୍ଥିତିର ଅଭୂତପୂର୍ବ ପରିବର୍ତ୍ତନ ଘଟିଥିଲା । ଓଡ଼ିଶାକୁ ଏକ ସ୍ୱତନ୍ତ୍ର ରାଜ୍ୟ ଭାବେ ୧୯୩୬ ମସିହା ଅପ୍ରେଲ ୧ ତାରିଖ ଦିନ ମାନ୍ୟତା ଦିଆଗଲା । ସ୍ୱତନ୍ତ୍ର ଭାବରେ କଂଗ୍ରେସ ଦଳ ଗଠନ କରାଯାଇ ନିର୍ବାଚନ କରାଗଲା । ହରେକୃଷ୍ଣ ମହତାବ କଂଗ୍ରେସର ସଭାପତି ହେଲେ । ନିର୍ବାଚନ ହେଲା । ନିର୍ବାଚିତ ସଦସ୍ୟମାନେ ମନ୍ତ୍ରୀ ହେଲେ । ପାର୍ଲାମେଣ୍ଟରେ ସଦସ୍ୟ ହୋଇ ଓଡ଼ିଶାର ପ୍ରତିନିଧିତ୍ୱ କଲେ । ଏହିପରି ଭାବରେ ଓଡ଼ିଶା ରାଜନୈତିକ ସଚେତନତା ଲାଭ କରିଥିଲା । ତତ୍କାଳୀନ ରାଜନୈତିକ ଭିତ୍ତିଭୂମିକୁ ନେଇ ଓଡ଼ିଶା ଦୁଇଭାଗରେ ବିଭକ୍ତ ହୋଇଗଲା । ଗୋଟିଏ ହେଲା ମୋଗଲ ବନ୍ଦିଆ କଂଗ୍ରେସ ଦଳ ଏବଂ ଅନ୍ୟଟି ହେଲା ଗଡ଼ଜାତିଆ କଂଗ୍ରେସ ଦଳ ।

ଓଡ଼ିଶା କହିଲେ କେବଳ ଉପକୂଳବର୍ତ୍ତୀ ବାଲେଶ୍ୱର, କଟକ ଏବଂ ପୁରୀକୁ ବୁଝାଉ ଥିଲା । ସେତେବେଳେ ଗଡ଼ଜାତ ମାନଙ୍କର ପ୍ରଜାମାନେ ରାଜାଙ୍କର ବେଠି ବେଗାରି ଖଟି ମଜୁରୀନପାଇ ଅତ୍ୟାଚାରୀତ ହେଉଥିଲେ । ତେଣୁ ଗଡ଼ଜାତ ଅଞ୍ଚଳରେ ରାଜାଙ୍କ ଅତ୍ୟାଚାରକୁ ପ୍ରତିରୋଧ କରିବା ପାଇଁ 'ପ୍ରଜାମଣ୍ଡଳ' ଗଠନ କରାଗଲା । ଓଡ଼ିଶାରେ ପ୍ରଥମେ ଢେଙ୍କାନାଳରେ 'ପ୍ରଜାମଣ୍ଡଳ' ବୈଷ୍ଣବ ଚରଣ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠନ କରାଯାଇଥିଲା । କଂଗ୍ରେସ ଦଳ ସେମାନଙ୍କୁ ଲୁଚି ଛପି ସାହାଯ୍ୟ କରୁଥିବାରୁ ଗଡ଼ଜାତର ଗାଁ ଗହଳି ମାନଙ୍କରେ କଂଗ୍ରେସ ପ୍ରସାର ଲାଭ କରିପାରିଥିଲା । ଧୀରେ ଧୀରେ ଗଡ଼ଜାତର ରାଜା ମାନଙ୍କ ଉପରେ କଂଗ୍ରେସର ଚାପ ପଡ଼ିଲା । ଗଡ଼ଜାତର ପ୍ରଜାମାନେ ଲୁଚି ଲୁଚି କଂଗ୍ରେସରେ ଯୋଗ ଦେଉଥିଲେ ଏବଂ ସଭାସମିତି ମାନ ମଧ୍ୟ କରୁଥିଲେ । ଧରା ପଡ଼ିଲେ ଦଣ୍ଡ ମଧ୍ୟ ଭୋଗୁଥିଲେ । ଏହାହିଁ ଗଡ଼ଜାତର ସ୍ୱାଧୀନତା ଆନ୍ଦୋଳନ ।

ସମଗ୍ର ଭାରତ ବର୍ଷରେ ୬୫୪ ଗୋଟି ଗଡ଼ଜାତ ଥିଲା । ପ୍ରତି ଗଡ଼ଜାତରେ ଜଣେ ଲେଖାଏଁ ରାଜା ଶାସନ କରୁଥିଲେ । ସେମାନଙ୍କ ଅତ୍ୟାଚାରରେ ପ୍ରଜାମାନେ ଅତିଷ୍ଠ ହେବାରୁ ଏହାକୁ ମୁକାବିଲା କରିବା ପାଇଁ ଭାରତ ବର୍ଷରେ ଗୋଟିଏ ସଂଗଠନ ଗଢାଗଲା । ଏହାକୁ କୁହାଗଲା 'ଅଖିଳ ଭାରତ ଷ୍ଟେଟସ ପିପୁଲସ କନଫରେନସ' (AISPC) । ସର୍ବ ଭାରତୀୟ ସ୍ତରରେ ଏହି ସଂଗଠନର ସଭାପତି ହେଲେ ବରିଷ୍ଠ କଂଗ୍ରେସ ନେତା ପଟ୍ଟାଭି ସୀତା ରାମାୟା । ସବୁଠାରୁ ବଡ଼କଥା ହେଲା ସେହି ସମୟରେ ବ୍ରିଟିଶ ସରକାର ଭାରତରେ ଦୁଇ ପ୍ରକାର ଶାସନ ଚଳାଇ ଥିଲେ । ଗୋଟିଏ ହେଲା ସିଧା ସଳଖ ଭାରତ ଏବଂ ଅନ୍ୟଟି ହେଲା ଗଡ଼ଜାତ ଇତ୍ୟାଦି କରଦ ରାଜ୍ୟ ସମୂହ । ମହାତ୍ମା ଗାନ୍ଧୀ, ନେହେରୁ ଏବଂ ପଟେଲ ଇତ୍ୟାଦିଙ୍କ ନେତୃତ୍ୱରେ କଂଗ୍ରେସ ଭାରତରେ ବିଦେଶୀ ଶାସନ ବିରୁଦ୍ଧରେ ଆନ୍ଦୋଳନ କରୁଥାନ୍ତି । ଏହିଆନ୍ଦୋଳନରୁ ଗଡ଼ଜାତ କରଦ ରାଜ୍ୟ ଗୁଡ଼ିକ ବାଦ ପଡ଼ିଯାଇ ଥାନ୍ତି ।

ଓଡ଼ିଶାରେ ୧୯୩୦-୩୧ ମସିହା ବେଳକୁ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି ଥାଆନ୍ତି ଡ଼କ୍ଟର ହରେକୃଷ୍ଣ ମହତାବ । ସେ ସେହି ସମୟରେ ଗୋଟିଏ ଯୁକ୍ତି ଉପସ୍ଥାପନ କରିଥିଲେ । ଯୁକ୍ତିଟି ହେଲା ସେ ସମୟରେ ଓଡ଼ିଶା ସହିତ ଛବିଶ ଗୋଟି ଗଡ଼ଜାତକୁ ମିଶ୍ରଣ କରାଯାଉ । ସେହି ଉଦ୍ଦେଶ୍ୟରେ ସେହି ବର୍ଷ କଟକରେ ଗୋଟିଏ କମିଟି ଗଠନ କରାଗଲା । ତାର ନାମ ରଖାଗଲା 'ଓଡ଼ିଶା ଷ୍ଟେଟସ ପିପୁଲସ କନଫରେନସ' (OSPC) । ଏହାର ପ୍ରଥମ ବୈଠକ ୨୦.୬.୧୯୩୧ ରେ କଟକରେ ବସିଥିଲା । ଏହାର

ଆବାହକ ମାନେ ଥିଲେ ବାଲୁଙ୍କେଶ୍ୱର ଆଚାର୍ଯ୍ୟ (ହିନ୍ଦୋଳ), ରାଧାନାଥ ରଥ (ଆଠଗଡ଼), ମଧୁସୁଦନ ପଟ୍ଟନାୟକ (ତିଗିରିଆ) ଏବଂ ଗୋବିନ୍ଦ ଚନ୍ଦ୍ର ମିଶ୍ର (ଦଶପଲ୍ଲା) । ଏହି ବୈଠକରେ ଆଲୋଚନା ପରେ ଏହାକୁ ଗୋଟିଏ କମିଟିରେ ପରିଣତ କରାଗଲା । ଏହି କମିଟିରେ ଗଡ଼ଜାତ ଅଞ୍ଚଳର ଲୋକମାନଙ୍କୁ ମୂଖ୍ୟ ଭୂମିକାରେ ରଖାଗଲା । କାରଣ ଏହାର ଉଦ୍ଦେଶ୍ୟ ଥିଲା ଗଡ଼ଜାତ ଅଞ୍ଚଳରେ ସମସ୍ତ ପ୍ରକାର ଉନ୍ନତି ପାଇଁ ରାଜ୍ୟବାସୀ ଓ ରାଜ୍ୟ ଦରବାର ସହିତ ଉତ୍ତମ ବୁଝାମଣା ଏବଂ ଜନସାଧାରଣ ମାନଙ୍କ ପାଇଁ ରାଜାମାନଙ୍କର ବିଚାର ନ୍ୟାୟପୂର୍ଣ୍ଣ ମାର୍ଗରେ କରାଯିବାରେ ତଦାରଖ କରାଯିବ । ଏହି କମିଟିକୁ ଜନସାଧାରଣ ଏବଂ ଗଡ଼ଜାତ ସ୍ୱାଗତ କରିଥିଲେ । ଏହା ଉତ୍ତମ ବୁଝାମଣାରେ ମଧ ଚାଲିଲା ।

ଏହାଦ୍ୱାରା ଗଡ଼ଜାତ ମାନଙ୍କରେ ଗଢା ଯାଇଥିବା 'ପ୍ରଜାମଣ୍ଡଳ' ଗୁଡ଼ିକ ଦ୍ୱାରାନିତ୍ୱ ହେଲା । ଅନ୍ୟାୟ ବିରୋଧରେ ଲୋକମାନେ ସ୍ୱର ଉତ୍ତୋଳନ କରିବାର ସାହାସ ପାଇଲେ । ବେଠି ବେଗାରି ମାତ୍ରା ଆସ୍ତେ ଆସ୍ତେ କମିବାକୁ ଲାଗିଲା ।ଏହାର ସଫଳ ରୂପାୟନ ସମସ୍ତେ ଉପଲବ୍ଧି କଲେ । ତେଣୁ ପୁନର୍ବାର ୧୯୩୭ ମସିହାୟ ଜୁନ୍ ୨୩ ତାରିଖ ଦିନ ବାଲୁଙ୍କେଶ୍ୱର ଆଚାର୍ଯ୍ୟ ଅଭ୍ୟର୍ଥନା ସମିତିର ଅଧକ୍ଷ ଥାଇ 'ଓଡ଼ିଶା ଷ୍ଟେଟସ ପିପୁଲସ କନଫରେନସ' (ଡଝଚଉ) ର ଦ୍ୱିତୀୟ ଅଧିବେଶନ ଡକାଇଲେ । ଏହା କଟକ ଠାରେ ଅନୁଷ୍ଠିତ ହେଲା । ପୂର୍ବରୁ ଅନାଦୃତ ଏବଂ ଦୁର୍ବଳ ଅଙ୍ଗ ଗୁଡ଼ିକ ପରିହାର କରି ନିଆଗଲା ଏବଂ ଏକ ବଳିଷ୍ଠ ସଂଗଠନ ପାଇଁ କାର୍ଯ୍ୟକାରୀ କମିଟି ଗଠନ କରାଗଲା । ଏହାର ସଦସ୍ୟ ରହିଲେ :

| | |
|---|---|
| ସଭାପତି | ପଟ୍ଟାଭି ସୀତା ରାମାୟା |
| ସଂପାଦକ | ସାରଙ୍ଗଧର ଦାସ – ଢେଙ୍କାନାଳ |
| କୋଷାଧକ୍ଷ | ଡ଼ ବିଶ୍ୱମ୍ବର ରଥ - ନୟାଗଡ଼ |
| ସଦସ୍ୟ | ଲାଲମୋହନ ପତି – ମୟୁରଭଞ୍ଜ |
| | ବାଲୁଙ୍କେଶ୍ୱର ଆଚାର୍ଯ୍ୟ - ହିନ୍ଦୋଳ |
| | ରାଧାନାଥ ରଥ - ଆଠଗଡ଼ |
| | ହରମୋହନ ପଟ୍ଟନାୟକ – ଢେଙ୍କାନାଳ |
| | ଗୋବିନ୍ଦ ଚନ୍ଦ୍ର ମିଶ୍ର - ଦଶପଲ୍ଲା |
| | ମଧୁସୁଦନ ପଟ୍ଟନାୟକ –ତିଗିରିଆ |
| | ଗଙ୍ଗାଧର ମିଶ୍ର - ରଣପୁର |

ପରବର୍ତ୍ତୀ ସମୟରେ ଏହି ଓଡ଼ିଶା OSPC ଏବଂ AISPC ସହିତ ସଂଯୁକ୍ତ ହୋଇ ଏକ ବଳିଷ୍ଠ ଆକାର ଧାରଣ କଲା । କଟକରେ ଏହାର ଗୋଟିଏ ସ୍ଥାୟୀ କାର୍ଯ୍ୟାଳୟ ରଖାଯାଇ କାର୍ଯ୍ୟକାରୀ କରାଗଲା । କିନ୍ତୁ କଂଗ୍ରେସ ଗଡ଼ଜାତର ସମସ୍ୟା ଗୁଡ଼ିକ ଉପରେ ବିଶେଷ ଗୁରୁତ୍ୱ ନଦେବାରୁ ପରବର୍ତ୍ତୀ ସମୟରେ ଜବାହରଲାଲ ନେହୁରୁ ଗଡ଼ଜାତ ରାଜ୍ୟ ପ୍ରଜା ଆନ୍ଦୋଳନର ସଭାପତି ହୋଇଥିଲେ ।

ଓଡ଼ିଶାର ଗଡ଼ଜାତରେ ପ୍ରଜାମାନଙ୍କର ଅକଥନୀୟ ଦୁର୍ଦ୍ଦଶା ରାଜାମାନଙ୍କର ଅନ୍ଧାରୀ ଶାସନ ଉପରେ ଅଙ୍କୁଶ ଲଗାଇବା ଉଦ୍ଦେଶ୍ୟରେ ଡ଼. ହରେକୃଷ୍ଣ ମହତାବଙ୍କ ଉଦ୍ୟମରେ ଗୋଟିଏ 'ଗଡ଼ଜାତ ଅନୁସନ୍ଧାନ' କମିଟି ଗଠନ କରାଗଲା । ଏଥିରେ ବଳବନ୍ତ ରାୟ ମେହେଟା ଓ ଲାଲ ମୋହନ ପଟ୍ଟନାୟକ ସଦସ୍ୟ ରହିଲେ । ଏହି ସଂଗଠନ ବିଭିର୍ଣ୍ଣ ଗଡ଼ଜାତ ଭ୍ରମଣ କରି ଗଡ଼ଜାତ ଗୁଡ଼ିକର ଭଲମନ୍ଦ ବୁଝିବା ସଙ୍ଗେ ସଙ୍ଗେ ଲୋକଙ୍କୁ ଏକତ୍ରିତ କରି ସେମାନଙ୍କର ଅସୁବିଧାକୁ ଦୂର କରିବା ପାଇଁ ସେମାନଙ୍କୁ ଆଶ୍ୱାସନା ଦେଉଥିଲେ । ଏହି ଗଡ଼ଜାତ ଅନୁସନ୍ଧାନ କମିଟି ଯାହାକୁ କୁହା ଯାଉଥିଲା Orissa State Enquiry Committee ଡ଼. ହରେକୃଷ୍ଣ ମହତାବ ଏହାର ଚେୟାରମ୍ୟାନ ଥିଲେ । ହିନ୍ଦୋଳ ଗଡ଼ଜାତ ଉପରେ ସେ ମତପୋଷଣ କରି କହିଥିଲେ 'The life and the property of Hindol is not safe' ସେ ଯାହାହେଉ ହିନ୍ଦୋଳ ରାଜା ନବ କିଶୋର ସିଂହଙ୍କର ପ୍ରଜା ବତ୍ସଳତା ଯୋଗୁଁ ରାଜ୍ୟରେ ସେପରି ଆତଙ୍କ ଦେଖା ଦେଇ ନଥିଲା । ରାଜା ନିଜେ ଉତ୍କଳ ସାହିତ୍ୟ ସମାଜର ସଭାପତି ଥିଲେ । ମାତୃଭାଷାରେ ତାଙ୍କର ଉଚ୍ଛ୍ୱସିତ ଭାଷଣ ଉପସ୍ଥିତ ଜନତାଙ୍କୁ ମନ୍ତ୍ର ମୁଗ୍ଧ କରି ଦେଉଥିଲା । ଯଦିଓ ସେ ଜଣେ କରଦ ରାଜ୍ୟର ରାଜା ଥିଲେ କିନ୍ତୁ ତାଙ୍କ ହୃଦୟରେ ସ୍ୱାଧୀନତାର ଆଶା ପିପାସା ଉଙ୍କି ମାରୁଥିଲା । ଏଥିରୁ ତାଙ୍କର ଦେଶ ପ୍ରେମର ନିଦର୍ଶନ ଦେଖିବାକୁ ମିଳୁଥିଲା ।

ସେହି ସମୟରେ ସମଗ୍ର ଭାରତ ବର୍ଷର ପରିସ୍ଥିତି ବଡ଼ ଜଟିଳ ଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧର ଯୁଦ୍ଧଂ ଦେହୀ ଡ଼ାକରା, ବ୍ରିଟିଶ ସରକାରଙ୍କ ଉପରେ ଭାରତୀୟ ମାନଙ୍କର ଅବିଶ୍ୱାସର ଛାୟା, ସମଗ୍ର ଭାରତ ବର୍ଷରେ ଗାନ୍ଧିଜୀଙ୍କ ନେତୃତ୍ୱରେ ସ୍ୱାଧୀନତା ସଂଗ୍ରାମର ଡ଼ାକରା, ଓଡ଼ିଶାର ଗଡ଼ଜାତ ମାନଙ୍କରେ ପ୍ରଜାମଣ୍ଡଳ ଆନ୍ଦୋଳନ ଏବଂ ଗଡ଼ଜାତ ମାନଙ୍କରେ କଂଗ୍ରେସର ପ୍ରବେଶ ଇତ୍ୟାଦି ସଙ୍କଟକୁ ଲକ୍ଷକଲେ ହିନ୍ଦୋଳ ଗଡ଼ଜାତ ମଧ୍ୟ ସେଥିରୁ ବାଦ ପଡ଼ି ନଥିଲା । ଆସନ୍ତୁ ହିନ୍ଦୋଳର ସ୍ୱାଧୀନତା ସଂଗ୍ରାମ ଉପରେ ଦୃଷ୍ଟିପାତ କରିବା ।

ପୂର୍ବୋକ୍ତ ବର୍ଣ୍ଣନା ଅନୁସାରେ ଚିଣ୍ଡଲପୁର ବାଇଶ ପଲ୍ଲୀର ପଞ୍ଚପଡା ଗୋଟିଏ ଗ୍ରାମ । ପଞ୍ଚପଡ଼ା ହେଉଛି ପାଞ୍ଚଗୋଟି ଚଉଦୀର ସମଷ୍ଟି । ଏହି ଚଉଦୀ ଗୁଡ଼ିକ ହେଲା ୧-ଗୁହିରା, ୨-ଧନ୍ଦାରି, ୩-ନୁଆଭୂଇଁ, ୪-ଗୋବରା, ୫-ବେଡ଼ା । ଏହିପରି ପାଞ୍ଚଗୋଟି ଚଉଦୀ ଥିଲା । ପୂର୍ବରୁ କୁହାଯାଇଛି ଯେ, ରାଜା ଜନାର୍ଦ୍ଦନ ସିଂହଙ୍କ ମୃତ୍ୟୁ ପରେ ନବ କିଶୋର ସିଂହ ନାବାଳକ ଥିବାରୁ ଶ୍ୟାମ ସୁନ୍ଦର ନନ୍ଦ କଟକ ଜିଲ୍ଲାରୁ ପଲିଟିକାଲ ଏଜେଣ୍ଟ ଭାବରେ ହିନ୍ଦୋଳ ଆସିଥିବା ସମୟରେ ଏହି ପାଞ୍ଚ ଚଉଦିକୁ ପଞ୍ଚପଡ଼ାରେ ପରିଣତ କରାଇ ଗୋଟିଏ ରେଭିନ୍ୟୁ ଗ୍ରାମ ଭାବରେ ଲିପିବଦ୍ଧ କରାଇଥିଲେ । କହିବା ବାହୁଲ୍ୟଯେ ଏହି ଗ୍ରାମ ପ୍ରଥମେ ସ୍ୱାଧୀନତା ସଂଗ୍ରାମୀ ମାନଙ୍କୁ ଜନ୍ମ ଦେଇଥିଲା । ଆସନ୍ତୁ ଆଲୋଚନା କରିବା ।

ତତ୍କାଳୀନ ପଞ୍ଚପଡ଼ାରେ ଅନେକ ଶିକ୍ଷିତ ବ୍ୟକ୍ତି ଥିଲେ ମଧ୍ୟ ସପ୍ନେଶ୍ୱର ପତି ଏବଂ ଅରକ୍ଷିତ ପତିଙ୍କର ସ୍ୱଭାବ ଥିଲା ନିଆରା । ସେତେବେଳେ ଅନୁଗୋଳ ରାଜ୍ୟ ବ୍ରିଟିଶ ସରକାରଙ୍କ ଦ୍ୱାରା ଶାସିତ ହେଉଥିଲା । ହିନ୍ଦୋଳ ରାଜାଙ୍କ ଠାରୁ ଅନୁମତି ନେଇ ସ୍ୱପ୍ନେଶ୍ୱର ପତି ଏବଂ ଅରକ୍ଷିତ ପତିଙ୍କୁ ବ୍ରିଟିଶ ସରକାର ଅନୁଗୋଳ ସହରରେ ଶିକ୍ଷକ ଭାବେ ନିଯୁକ୍ତି ଦେଇ ଥିଲେ । ଉଭୟେ ଅନୁଗୋଳ ସହରରେ ଅପର ପ୍ରାଇମେରୀ ବିଦ୍ୟାଳୟରେ ଶିକ୍ଷକତା କରୁଥିଲେ । ସ୍ୱପ୍ନେଶ୍ୱର ପତିଙ୍କ ସହିତ ତାଙ୍କ ଦୁଇଝିଅ ରମା ଏବଂ ଭାମା ରହି ପାଠ ପଢୁଥିଲେ । ଅଦ୍ୟାବଧି ଉମା ଜୀବିତ ଅଛନ୍ତି । କିଛି ବର୍ଷ ପରେ ଅନୁଗୋଳ ରାଜ୍ୟର ପ୍ରଜାମାନେ ପ୍ରତିବାଦ କଲେ ଯେ, ହିନ୍ଦୋଳ ରାଜ୍ୟରୁ ଆସି ଅନୁଗୋଳ ରାଜ୍ୟରେ ଶିକ୍ଷକତା କରୁଥିବା ଶିକ୍ଷକ ମାନଙ୍କୁ ବିତାଡ଼ିତ କରାଯାଇ ସେହି ସ୍ଥାନ ମାନଙ୍କରେ ଅନୁଗୋଳ ରାଜ୍ୟର ଶିକ୍ଷକ ମାନଙ୍କୁ ନିଯୁକ୍ତି ଦିଆଯାଉ । ଏହା ଫଳରେ ଅରକ୍ଷିତ ପତି ଏବଂ ସ୍ୱପ୍ନେଶ୍ୱର ପତି ଶିକ୍ଷକତା ଛାଡ଼ି ଗାଁକୁ ଫେରି ଆସିଲେ । ସେହିଠାରୁ ଆରମ୍ଭ ହେଲା ଉଭୟଙ୍କ ପ୍ରତିକ୍ରିୟା । ବ୍ରିଟିଶ ଶାସନ ବିରୋଧରେ ଖୋଲା ଖୋଲି ମତବ୍ୟକ୍ତ କଲେ । ଅରକ୍ଷିତ ପତିଙ୍କ ବିଷୟରେ ଆମେ ପରବର୍ତ୍ତୀ ଅଧ୍ୟାୟରେ ଆଲୋଚନା କରିବା ।

ସ୍ୱପ୍ନେଶ୍ୱର ପତି ଥିଲେ ଜଣେ ସ୍ପଷ୍ଟବାଦୀ । ଅନୁଗୋଳରୁ ବିତାଡ଼ିତ ହେଲା ପରେ ହିନ୍ଦୋଳ ରାଜା ତାଙ୍କୁ ହିନ୍ଦୋଳରେ ଶିକ୍ଷକତା କରିବା ପାଇଁ ସୁଯୋଗ ଦେଇଥିଲେ, କିନ୍ତୁ ସେହି ସୁଯୋଗକୁ ସେ ପ୍ରତ୍ୟାଖାନ କରିଥିଲେ । ସେହି ସମୟରୁ ସେ ଦେଶମାତୃକାର ସେବାରେ ବ୍ରତୀ ହେଲେ । ସେ କଟକ ଯାଇ କଂଗ୍ରେସ ଦଳରେ ସିଧାସଳଖ ଯୋଗ ଦେଇଥିଲେ । ତାଙ୍କର ଦୁଇ ପୁତ୍ର ଥିଲେ । ଉମେଶ ପତି ଏବଂ ଧନେଶ୍ୱର ପତି । ଧନେଶ୍ୱର

ପତି ଥିଲେ ଜଣେ ଗ୍ରାମୀଣ କବି । ତତ୍କାଳୀନ ତାଙ୍କର କବିତା ଗୁଚ୍ଛ ହିନ୍ଦୋଳ ସାହିତ୍ୟ ସଂପଦକୁ ପରିପୃଷ୍ଟ କରୁଥିଲା । ତାଙ୍କ ଦ୍ୱାରା ରଚିତ ସ୍ମରଣିକ, ପଲ୍ଲବୀ, ରସଧାରା, କାବ୍ୟସତୀ, କୀର୍ତ୍ତିଲତା, ମାଧବୀ ଏବଂ ଉଷା ଉଦ୍‌ବାହ ପୁସ୍ତକ ଗୁଡ଼ିକ ଓଡ଼ିଆ ସାହିତ୍ୟିକ ମାନଙ୍କୁ ରାଜ ରାସ୍ତା ପ୍ରଦର୍ଶନ କରିଥିଲା ଏଥିରେ ସନ୍ଦେହ ନାହିଁ । ସ୍ୱପ୍ନେଶ୍ୱର ପତିଙ୍କର ଦ୍ୱିତୀୟ ପୁତ୍ର ଉମେଶ ପତିଙ୍କୁ ବାପା ଦେଶମାତୃକାର ସେବା ନିମିତ୍ତ ସେନା ବାହିନୀ ରେ ଯୋଗ ଦେବାକୁ ବାଧ କରିଥିଲେ । ଫଳରେ ଉମେଶ ସେନା ବାହିନୀରେ ଯୋଗଦେଇ ଜବଲପୁରରେ ରହିଲେ । ସେ ଥିଲେ ବାୟୁ ସେନାର ଜଣେ ସୈନିକ । ପିତାଙ୍କ ପରି ସେ ମଧ ନିର୍ଭୀକ ଥିଲେ । ୧୯୩୮/୧୯୩୯ ମସିହା ବେଳକୁ ଦ୍ୱିତୀୟ ବିଶ୍ୱଯୁଦ୍ଧର ଡାକରା । ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ ଭାରତ ତରଫରୁ ସେ ବିଲାତ ଯାଇଥିଲେ । ସ୍ୱପ୍ନେଶ୍ୱର ପତି ଗାଁକୁ ଗାଁ ବୁଲି କଂଗ୍ରେସ ପାଇଁ ମୁଠି ଚାଉଳ ସଂଗ୍ରହ କରିବା ସଙ୍ଗେ ସଙ୍ଗେ ଲୋକମାନଙ୍କ ମଧରେ ସ୍ୱାଧୀନତାର ଧାରଣା ଜନ୍ମାଉ ଥିଲେ । ସଂଗୃହୀତ ଚାଉଳକୁ ସେ କଂଗ୍ରେସ ଆଶ୍ରମକୁ ପଠାଉଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଉମେଶ ଜବଲପୁରକୁ ଫେରି ଆସିଥିଲେ । ପରେ ପରେ ସେ ସ୍ୱେଚ୍ଛାକୃତ ଭାବେ ସେନାବାହିନୀରୁ ଅବସର ନେଇ ପଞ୍ଚପଡ଼ାକୁ ଫେରି ଆସିଥିଲେ । ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ ତାଙ୍କର ସାହସୀକତାକୁ ସମ୍ମାନ ଜଣାଇ ହିନ୍ଦୋଳ ରାଜ ନବ କିଶୋର ସିଂହ ମର୍ଦ୍ଦରାଜ ଜଗଦେବ ତାଙ୍କୁ ଚାଷଜମି ପ୍ରଦାନ କରିଥିଲେ । ଅଦ୍ୟାବଧି ସେହି ଚାଷଜମି ତାଙ୍କର ପରବର୍ତ୍ତୀ ବଂଶଧର ମାନେ ଭୋଗ ଦଖଲ କରୁ ଅଛନ୍ତି । ଶୁଣାଯାଏ ଯେ, ସ୍ୱପ୍ନେଶ୍ୱର ପତି କଟକରୁ ବନ୍ଦେମାତରଂ ଶିକ୍ଷାକରି ହିନ୍ଦୋଳର କଂଗ୍ରେସ ଲୋକଙ୍କୁ ଶିଖାଇ ଥିଲେ । ଏହି ଠାରୁ ସ୍ୱାଧୀନତା ଆନ୍ଦୋଳନର ଛାଇ ପଡ଼ିଥିଲା ହିନ୍ଦୋଳ ଉପରେ ।

ଓଡ଼ିଶାରେ ପ୍ରଜା ମଣ୍ଡଳ ଗଠନ ହୋଇ ନଥାଏ । ସେହି ସମୟରେ କଟକରେ କଂଗ୍ରେସର ସଂଗଠନ ଚାଲିଥାଏ । ଦେଶ ପ୍ରେମରେ ଉଦ୍‌ବୋଧ ହୋଇ ପାଠ ଛାଡ଼ି କଂଗ୍ରେସ ସଂଗଠନକୁ ଡେଇଁ ପଡ଼ିଲେ ରାମଚନ୍ଦ୍ର ପତି । ଘର ହେଉଛି ପୂର୍ବ ବର୍ଣ୍ଣିତ ଐତିହାସିକ ଚିତଲପୁର । ଜନ୍ମ ୧୯୧୦ ମସିହା ମାର୍ଚ୍ଚ ୧୫ ତାରିଖ । ପଢୁ ଥାନ୍ତି କଟକରେ । ସହପାଠୀ ଥିଲେ ସପ୍ନେଶ୍ୱର ପାଳ (କଳିଙ୍ଗା) ଗଙ୍ଗାଧର ପତି (ପଞ୍ଚପଡ଼ା) ପରବର୍ତ୍ତୀ ସମୟରେ ସ୍ୱପ୍ନେଶ୍ୱର ପାଳ ହେଲେ ହିନ୍ଦୋଳ ରାଜାଙ୍କର ଦେଓ୍ୱାନ ଏବଂ ଗଙ୍ଗାଧର ପତି ହେଲେ ଦଶପଲ୍ଲା ରାଜାଙ୍କର ସର୍ଜନ (ଡ଼ାକ୍ତର) । ରାମଚନ୍ଦ୍ର ପତି ହେଲେ ଦେଶ ସେବକ କଂଗ୍ରେସ କର୍ମୀ । ତାଳଚେର ପବିତ୍ର ମୋହନ ପ୍ରଧାନଙ୍କ ସେ ଥିଲେ ଜଣେ ବିଶ୍ୱସ୍ତ ସହକର୍ମୀ । ତାଳଚେର ରାଜା ଯେତେବେଳେ ପବିତ୍ର ମୋହନ ପ୍ରଧାନଙ୍କ ଉପରେ ହୁଲିଆ ଜାରିକଲେ, ତାଙ୍କୁ

ଧରାଇ ଦେବାପାଇଁ ପୁରସ୍କାର ଘୋଷଣା କରିଥିଲେ ସେହି ସମୟରେ ରାମଚନ୍ଦ୍ର ପତି ପବିତ୍ର ପ୍ରଧାନଙ୍କୁ ନେଇଆସି ବାଇଶ ପଲ୍ଲୀର (ହିନ୍ଦୋଳ) ହରିପୁର ଗ୍ରାମରେ ଲୁଚାଇ ରଖିଥିଲେ । ଦିନରେ ହରିପୁର ଗାଁର ହରଡ଼ ତଳାରେ ରହନ୍ତି ଏବଂ ରାତି ହେଲେ ହରିପୁର ଗାଁରେ ରହନ୍ତି । କଟକରେ କଂଗ୍ରେସର ସଭା ସମିତି ହେଲେ ଚାଲିଚାଲି କଟକ ଯାନ୍ତି ।

ପ୍ରଜାମଣ୍ଡଳ ଗଠନ ପରେ ହିନ୍ଦୋଳ ପ୍ରଜାମଣ୍ଡଳର ସଭାପତି ହେଲେ ରାମଚନ୍ଦ୍ର ପତି । ଚିତଲପୁର ଠାରେ ପ୍ରଜା ମଣ୍ଡଳର ଏକ ବିରାଟ ସମ୍ମିଳନୀ କରାଇଥିଲେ । ସେଥିରେ ଯୋଗ ଦେଇଥିଲେ ସାରଙ୍ଗଧର ଦାସ, ହର ମୋହନ ପଟ୍ଟନାୟକ, ପବିତ୍ର ମୋହନ ପ୍ରଧାନ, ହରେକୃଷ୍ଣ ମହତାବ ଏବଂ ବୈଷ୍ଣବ ଚରଣ ପଟ୍ଟନାୟକ ଇତ୍ୟାଦି କଂଗ୍ରେସର ତୁଙ୍ଗ ନେତା । ପ୍ରଜାମଣ୍ଡଳର ଆହ୍ୱାନ କ୍ରମେ ଭାଗିରଥୀ ମିଶ୍ର (ଭଗବାନପୁର) ଇତ୍ୟାଦି ନେତା ପ୍ରଜା ମଣ୍ଡଳରେ ଯୋଗ ଦେଇଥିଲେ । ଏହାପରେ ହିନ୍ଦୋଳରେ ପ୍ରଜା ମଣ୍ଡଳର ଏକ ଦୃଢ଼ ସଂଗଠନ କରାଯାଇଥିଲା । ରାମ ପତିଙ୍କର ଚୁମ୍ବକୀୟ ଭାଷଣରେ ସମସ୍ତେ ମୁଗ୍ଧ ହୋଇ ପ୍ରଜାମଣ୍ଡଳରେ ଯୋଗଦାନ କରୁଥିଲେ । ଧନେଶ୍ୱର ପାଳ (ଜରଡ଼ା) ରାଜନଅରରେ ଠାକୁର ପୂଜା କରୁଥିଲେ । ତାଙ୍କ ପାଇଁ ରାଜା ଜରଡା ଗ୍ରାମରେ ଭୂସଂପତ୍ତିର ବ୍ୟବସ୍ଥା କରିଦେଇଥିଲେ । ରାମପତିଙ୍କର ଚୁମ୍ବକୀୟ ଭାଷଣରେ ମୁଗ୍ଧହୋଇ ସେ ରାଜଦରବାର ଛାଡ଼ି କଂଗ୍ରେସରେ ଯୋଗ ଦେଇଥିଲେ । ଏହିପରି ଅନେକ ଇତିହାସ ହିନ୍ଦୋଳରେ ଲୁଚି ରହି ଅଛି । ରାମପତି ହିନ୍ଦୋଳ, ତାଳଚେର ଏବଂ ଅନୁଗୋଳ ପ୍ରଜାମଣ୍ଡଳ ତଥା କଂଗ୍ରେସର ସଂଗଠନ ତଥା ପ୍ରଚାରରେ ନିଜକୁ ସାମିଲ କରି ଆର୍ଥୀକ ଅନାଟନର ସମ୍ମୁଖୀନ ହୋଇ ନିଜର ଭୂସମ୍ପତ୍ତି ବିକ୍ରୟ କରିଥିଲେ । ଫଳରେ ରାଜା ନବକିଶୋର ସିଂହ କୋପ ଦୃଷ୍ଟି ରାମ ପତିଙ୍କ ଉପରେ ପଡ଼ିଥିଲା । ପ୍ରଜାମଣ୍ଡଳକ ଭାଙ୍ଗିବା ପାଇଁ ସେ ବହୁ ଚେଷ୍ଟା କରିଥିଲେ । ଖବର ସଂଗ୍ରହ ପାଇଁ ଗୁଣନିଧି ଦାରୋଗା (ଗୁଳେହି)ଙ୍କୁ ସଂପୂର୍ଣ୍ଣ ଭାବରେ ନିଯୁକ୍ତି ଦେଇଥିଲେ । ଆସନ୍ତୁ ନଜର ପକାଇବା ବିପ୍ଳବୀ ରାମ ପତିଙ୍କ ଉପରେ ।

ଚିତଲପୁର ଗ୍ରାମ । ସମୟ ସକାଳ ପାଞ୍ଚଟା । ଗୁଣନିଧି ଦାରୋଗା ଦୁଇଜଣ ସିପାହୀଙ୍କ ସହ ପହଞ୍ଚି ଗଲେ ରାମପତିଙ୍କ ଘରେ । ଘର ତଲାସ ହେଲା । ରାମପତି ଘରେ ନାହାନ୍ତି । ଘର ସାମ୍ନାରେ ବସି ଦାନ୍ତ ଘସୁଥିଲେ ଗଙ୍ଗାଧର ପାଣିଗ୍ରାହୀ । ସେ ଥିଲେ ରାମପତିଙ୍କ ଗୁରୁ । ତାଙ୍କୁ ରାମପତିଙ୍କ ବିଷୟରେ ପଚାରିବାରୁ ଗଙ୍ଗାଧର ଉତ୍ତର ଦେଲେ ରାମପତି

ଗାଁରେ ନାହାନ୍ତି, ସେ କଟକରେ ଅଛନ୍ତି । ଯେହେତୁ ଖବର ପାଇ ଦାରୋଗା ଚିତ୍ତଳପୁର ଆସିଛନ୍ତି ତେଣୁ ସେ ଆଖ ପାଖ ଘର ଗୁଡ଼ିକ ତଲାସୀ କରିବାରେ ଲାଗିଲେ । ସେତେବେଳକୁ ରାମପତି ତାଙ୍କ ମଇଁଷି ଗୁହାଳେ କ୍ଷୀର ଦୋହନ କରୁଥିଲେ । ଏହି ଖବର ତାଙ୍କର କର୍ଣ୍ଣ ଗୋଚର ହେଲା । ସେ ସଙ୍ଗେ ସଙ୍ଗେ ତାଙ୍କ ଗୁହାଳ ସଙ୍ଗାରେ ଲୁଚି ରହିଲେ । ରାମପତିଙ୍କୁ ଧରିବା ପାଇଁ ଚତଲପୁରରେ ତଲାସୀ ଜାରି ରହିଥାଏ । କିଛି ସମୟ ଅତିବାହିତ ପରେ ସେ ମଇଁଷି ଗୁହାଳେ ନିଜକୁ ଗୋଟିଏ ମଇଁଷିଆଳ ବେଶକରି ଗୋଠରୁ ମଇଁଷ ମାନଙ୍କୁ ଧରି ମଇଁଷି ଚରାଇବା ଉଦ୍ଦେଶ୍ୟରେ ବାହାରି ପଡ଼ିଲେ । ସେ ମଇଁଷି ଚରାଉଥାନ୍ତି । ଏହି ଖବର ପାଇ ଜଣେ ସିପାହି ସେଠାରେ ପହଞ୍ଚି ରାମପତିଙ୍କୁ ପଚାରିବାରୁ ସେ କହିଲେ, ମୁଁ ତାଙ୍କୁ ଦେଖିନାହିଁ, ମୁଁ ତାଙ୍କ ମଇଁଷିଆଳ । ଏସବୁ ତାଙ୍କ ମଇଁଷି । ସପାହୀ ନିରାସ ହୋଇ ଚାଲିଗଲା ପରେ ସେ ସେହି ବେଶରେ ହିନ୍ଦୋଳ ରୋଡ଼ ରେଲଷ୍ଟେସନକୁ କଟକ ଯିବା ଉଦ୍ଦେଶ୍ୟରେ ଚାଲିଗଲେ । ତା ପରିଦିନ ସକାଳେ ରେଳ ଯୋଗେ କଟକରେ ପହଞ୍ଚିଲେ । ତୁଳସୀ ପୁର ନିକଟରେ ଥାଏ ନେତାମାନଙ୍କର ବସାଘର । ସେଠି ଥାନ୍ତି ପବିତ୍ର ପ୍ରଧାନ, ସାରଙ୍ଗ ଧର ଦାସ, ହର ମୋହନ ପଟ୍ଟନାୟକ ଏବଂ ଅନ୍ୟାନ୍ୟ ନେତାମାନେ । ରାମପତି ସେଠାରେ ପହଞ୍ଚି ଅନ୍ୟମାନଙ୍କୁ ସବୁକଥା କହିଲେ ।

ଏହି ଘଟଣାର ଦୁଇଦିନ ପରେ ହିନ୍ଦୋଳ ରାଜା ନବ କିଶୋର ସିଂହ କଟକର ତାଙ୍କ ତୁଳସୀପୁର କୋଠିକୁ ଯାଇଥାନ୍ତି । ତାର ଅନତୀ ଦୂରରେ ଥାଏ ନେତା ମାନଙ୍କର ବସାଘର । ରାଜା ନବ କିଶୋର ସିଂହ ଚାଲି ଚାଲି ଯାଇ ସେଠାରେ ପହଞ୍ଚିଲେ । ରାଜାଙ୍କୁ ଦେଖି ସମସ୍ତେ ହତବାକ୍ ହୋଇ ଗଲେ ଏବଂ ଘର ବାହାରକୁ ଚାଲି ଆସିଲେ । ରାଜାଙ୍କୁ ଦେଖି ରାମପତି ଖଟତଳେ ଲୁଚି ରହିଥାନ୍ତି । ଅନ୍ୟମାନେ ସସମ୍ମାନେ ରାଜାଙ୍କୁ ପଚାରିଲେ, ଆଜ୍ଞା ଆପଣ ଏଠି ? ମୁଁ ରାମକୁ ଖୋଜୁଛି – ରାଜା ଉତ୍ତରଦେଲେ । ଅନ୍ୟମାନେ ଉତ୍ତର ଦେଲେ – ରାମ ଏଠାକୁ ଆସିନାହିଁ । ଯଦି ସେ ଆସେ ତାହାହେଲେ ଆମେ ତାକୁ ନେଇ ଆପଣଙ୍କ ନିକଟରେ ପହଞ୍ଚାଇ ଦେବୁ । ଏହି ପ୍ରତିଶ୍ରୁତି ପାଇବା ପରେ ରାଜା ନିଜ ତଳସୀପୁର କୋଠିକୁ ଫେରି ଆସିଲେ ।

ରାଜା ନବକିଶୋର ସିଂହ ଯିବା ପରେ ଅନ୍ୟ ନେତା ମାନେ ରାଜାଙ୍କୁ ସାକ୍ଷାତ କରିବା ପାଇଁ ରାମ ପତିଙ୍କୁ ବୁଝାଇ ଥିଲେ । କିନ୍ତୁ ରାମ ନିଜ ଜିଦ୍‌ରେ ଅଟଳ ରହିଥିଲେ । ସେ ରାଜାଙ୍କୁ ଭର୍ତ୍ସନା କରି କହିବାରୁ ଅନ୍ୟମାନେ ତାଙ୍କୁ ବିରୋଧ କରିଥିଲେ । ପବିତ୍ର

ପ୍ରଧାନ ଏବଂ ହରମୋହନ ପଟ୍ଟନାୟକ ତାଙ୍କୁ ବୁଝାଇ କହିଲେ, ଦେଖ ରାମ - ନବକିଶୋର ସିଂହ ଢରେ ଆଦର୍ଶ ରାଜା । ତାଙ୍କ ହାତରେ ସବୁ ପ୍ରକାର କ୍ଷମତା ରହିଛି । ସେ ରାଜା ହୋଇ ତୁମ ନିକଟକୁ ଆସିଲେ । ଯାହାହେଉନା କାହିଁକି ତୁମେ ତାଙ୍କୁ ସାକ୍ଷାତ କରିବା ଆମେ ଉଚିତ ମନେକରୁ । ଯଦି ଢେଙ୍କାନାଳ କିମ୍ୱା ତାଳଚେର ରାଜା ହୋଇ ଥାନ୍ତେ ତାହାହେଲେ ......... । ପରିଶେଷରେ ସେ ଅନ୍ୟ ମାନଙ୍କ ଉପଦେଶକୁ ଗ୍ରହଣ କରି ଗାଁକୁ ଫେରି ଆସିଲେ ।

କିଛିଦିନ ପରେ ରାଜାଙ୍କୁ ସାକ୍ଷାତ କରିବା ଉଦ୍ଦେଶ୍ୟରେ ହିନ୍ଦୋଳ ରାଜ ଦରବାରରେ ପହଞ୍ଚିଲେ ରାମପତି । ତାଙ୍କର ଆଗମନ ବାର୍ତ୍ତା ଶୁଣି ରାଜା ନଅରର ବୈଠକ ଖାନାକୁ ଡକାଇଲେ । ଉଭୟେ ସ୍ୱଭାବ ସୁଲଭ ଢଙ୍ଗରେ ବିଭିନ୍ନ ବିଷୟ ଆଲୋଚନା କଲେ । ରାଜା ରାମ ପତିଙ୍କୁ ଅନ୍ୟାନ୍ୟ ଗଡ଼ଜାତର ତୁଳନା ଦେଇ ବୁଝାଇଲେ । ନିରୀହ ପ୍ରଜାମାନଙ୍କୁ ବିପ୍ଳବ ନାମରେ ବିପଥ ଗାମୀ କରାଇବା ଠିକ୍ ନୁହେଁ ବୋଲି ରାଜା ନିଜର ସ୍ୱଭାବ – ସୁଲଭ ଭଙ୍ଗୀରେ ରାମ ପତିଙ୍କୁ ବୁଝାଇ ଦେଇଥିଲେ । ଯାହାହେଉ ରାମ ପତିଙ୍କର ସ୍ୱାଧୀନ ଚେତନାରେ ରାଜା ଖୁସି ହେବା ସଙ୍ଗେ ସଙ୍ଗେ ରାଜ୍ୟରେ ଶାନ୍ତି ଶୃଙ୍ଖଳା ରଖିବା ନିମନ୍ତେ ଉପଦେଶ ଦେଲେ ।

ରଜାଙ୍କର ତାଡନା ସତ୍ୱେ ରାମ ପତି ପଛକୁ ହଟି ନଥିଲେ । ପରିବାରର ବୋଝ ଏବଂ ଆର୍ଥିକ ଅନାଟନରେ ରହିସୁଦ୍ଧା ସେ ବ୍ରିଟିଶ ବିରୁଦ୍ଧରେ ଆନ୍ଦୋଳନ ଜାରି ରଖିଥିଲେ । ହିନ୍ଦୋଳ ପ୍ରଜାମଣ୍ଡଳର ସଭାପତି ଭାବରେ ରହିଥିଲେ ମଧ; ଦୀନବନ୍ଧୁ ଆଚାର୍ଯ୍ୟ ହିନ୍ଦୋଳ ପ୍ରଜାମଣ୍ଡଳର ସଭାପତି ପଦ ଅଳଙ୍କୃତ କରିବା ପରେ ରାମ ପତି ସମସ୍ତ ଦାୟୀତ୍ୱ ତାଙ୍କୁ ଅର୍ପଣ କରିଥିଲେ । ତଥାପି ସେ ସମସ୍ତ କଥା ବୁଝୁଥିଲେ । ବିଧିର ବିଧାନ ବଡ଼ ବିଚିତ୍ର । ଦେଶ ସ୍ୱାଧୀନ ହେଲା । କିନ୍ତୁ ଏତେ ବଡ଼ ଦେଶ ପ୍ରେମୀ ଦେଶର ସ୍ୱାଧୀନତା ପର୍ଯ୍ୟନ୍ତ ରହିପାରି ନଥିଲେ । ସ୍ୱାଧୀନତାର ସ୍ୱାଦ ଚାଖି ପାରିନଥିଲେ । ଏହି ମହାନ ଦେଶ ସେବକ ୧୯୪୨ ମସିହାରେ ଇହଲୀଳା ସମ୍ୱରଣ କରିଥିଲେ । ଦେଶ ସ୍ୱାଧୀନ ହେବା ପରେ ପବିତ୍ର ମୋହନ ପ୍ରଧାନଙ୍କ ଉଦ୍ୟମ କ୍ରମେ ରାମଚନ୍ଦ୍ର ପତିଙ୍କ ପତ୍ନୀଙ୍କୁ ଜଣେ ସ୍ୱାଧୀନତା ସଂଗ୍ରାମୀର ପତ୍ନୀ ଭାବରେ କିଛି ଭତ୍ତା ମିଳିବାର ସୁବନ୍ଦୋବସ୍ତ କରାଇ ଥିଲେ । ମାତ୍ର ତିନିମାସ ଭତ୍ତା ପାଇବା ପରେ ସେହି ମହୀୟସୀ ମହିଳା ରଙ୍ଗେଇ ପତିଙ୍କର ଦେହାନ୍ତ ହୋଇଥିଲା ।

ଶିଷ୍ୟ ରାମପତି ଚାଲିଗଲା ପରେ ରହିଲେ ଗୁରୁ ଗଙ୍ଗାଧର ପାଣିଗ୍ରାହୀ । ଯଦିଓ ରାଜା ତାଙ୍କୁ କୌଣସି ଦଣ୍ଡବିଧାନ କରିନଥିଲେ ତଥାପି ସେ ଥିଲେ ଜଣେ ନିର୍ଭୀକ ସଂଗ୍ରାମୀ । ବାରମ୍ବାର ରାଜାଙ୍କ ଦ୍ୱାରା ଡ଼ିକରା ହୋଇ ରାଜ ଦରବାରରୁ ସତର୍କ ବାଣୀ ଶୁଣୁଥିଲେ ମଧ୍ୟ ପୁଣି କଂଗ୍ରେସ ସଙ୍ଗଠନରେ ସାମିଲି ହେବା, କଂଗ୍ରେସ କର୍ମୀଙ୍କ ପାଇଁ ମୁଠି ଚାଉଳ ସଂଗ୍ରହ କରିବା, ସ୍ୱରାଜ ବିଷୟରେ ଗାଁ ଗାଁ ବୁଲି ଲୋକମାନଙ୍କୁ ବୁଝାଇବା, ତୁଙ୍ଗ ନେତାମାନଙ୍କ ସହ ସମ୍ବନ୍ଧ ରଖିବା ଯେପରି ତାଙ୍କର କର୍ମଥିଲା । ରାମ ପତିଙ୍କ ଦେହାନ୍ତ ପରେ ତାଙ୍କ ମନୋବଳ ଭାଙ୍ଗି ଯାଇଥିଲେ ସୁଦ୍ଧା ତାଙ୍କ ନିର୍ଭିକତା ଭାଙ୍ଗି ପଡ଼ିନଥିଲା । ଥରେ ରାଜା ନବ କିଶୋର ସିଂହ ଏକ ସଭାରେ ଗଙ୍ଗାଧର ପାଣିଗ୍ରାହୀଙ୍କୁ ପଚାରି ଥିଲେ ଭାରତ ସ୍ୱାଧୀନତା ପରେ ଆମ ରାଜ୍ୟ ବି ସ୍ୱାଧୀନ ହେବ । ଏତେ ନିରୀହ ଲୋକଙ୍କୁ ନେଇ ଆନ୍ଦୋଳନ କରିବାର ଯଥାର୍ଥତା ଅଛି କି ? ରାଜାଙ୍କ ପ୍ରଶ୍ନର ଉତ୍ତର ଦେଇ ସେ କହିଥିଲେ ଭାରତର ସ୍ୱାଧୀନତା ପରେ ସ୍ୱାଧୀନ ଦେଶର ନାଗରିକ ଭାବେ ଆପଣ କ'ଣ ଗର୍ବ କରିବେ ନାହିଁ କି ? ଜଣେ ରାଜ୍ୟର ରାଜ ଭାବେ ଆମ୍ଭେମାନେ ଆପଣଙ୍କୁ ସମ୍ମାନ ଦେଇପାରୁ, କିନ୍ତୁ ସ୍ୱରାଜ ହାସଲ ନିମନ୍ତେ ଗାନ୍ଧିଜୀଙ୍କ ଡ଼ାକରାରେ ଆମ୍ଭମାନେ ନିଶ୍ଚିନ୍ତ ସାମିଲ ହେବୁ । କିନ୍ତୁ ରାଜ୍ୟର କିଛି କ୍ଷତି କରିବୁ ନାହିଁ, କିମ୍ବା ରାଜତନ୍ତ୍ର ବିରୋଧରେ କ୍ଷତି ଘଟାଇବୁ ନାହିଁ । ସମସ୍ତଙ୍କୁ ସ୍ୱାଧୀନତାର ଚେତନା ଦେବୁ । ଗାନ୍ଧିଜୀଙ୍କ ସ୍ୱପ୍ନକୁ ସାକାର କରିବୁ । ସେଥି ପାଇଁତ ପୂଣ୍ୟାତ୍ମା ଗୋପବନ୍ଧୁ କାରା କବିତାରେ ଲେଖିଥିଲେ :-

"କେହି ରଜା ଜଣେ ବିଚାରେ କି କ୍ଷଣେ

ପରଜାଏ ମୋର ପୁଅ ସମାନ,

ପରଜାଙ୍କ ହିତ ମୋ' ଜୀବନ ବ୍ରତ

ପରଜା-ସୁଖେ ମୋ ସୁଖ-ସମ୍ମାନ ।"

ଏହିପରି ତାଙ୍କର ସ୍ପଷ୍ଟବାଦୀତା ଯୋଗୁଁ ପବିତ୍ର ମୋହନ ପ୍ରଧାନ ତାଙ୍କୁ ପ୍ରସଂଶା କରନ୍ତି ।

ତତ୍କାଳୀନ ହିନ୍ଦୋଳ ରାଜନୈତିକ ଆକାଶରେ ଅବିର୍ଭାବ ହେଲେ ଅନ୍ୟ ଏକ ଉଜ୍ଜଳ ନକ୍ଷେତ୍ର । ସେ ଏକ ଧାରାରେ ଥିଲେ ଜଣେ ବାଗ୍ମୀ, ପଣ୍ଡିତ, କବି ଏବଂ ଲେଖକ ମଧ୍ୟ । ଓଡ଼ିଆ, ଇଂରାଜୀ ଏବଂ ସଂସ୍କୃତରେ ତାଙ୍କର ଥିଲା ଅଗାଧ ପାଣ୍ଡିତ୍ୟ । ପଶ୍ଚିମ ଏବଂ ଉତ୍ତର

ହିନ୍ଦୋଳରେ ସେ ଥିଲେ ମହାନ ସଂଗଠକ । ତାଙ୍କର ଶାଣିତ ବକ୍ତୃତାରେ ଶିକ୍ଷିତ ଅଶିକ୍ଷିତ ସବୁଶ୍ରେଣୀର ଲୋକ ମାନଙ୍କୁ ସଂଘଠିତ କରି ପାରୁଥିଲେ । ସେହି ସତ୍ୟବାଦୀ, ସ୍ପଷ୍ଟବାଦୀ, ମିଷ୍ଟଭାଷୀ, ପରମ ପୁରୁଷ ହେଲେ ସ୍ୱର୍ଗୀୟ ଦୀନବନ୍ଧୁ ଆଚାର୍ଯ୍ୟ । ସେହି ହିନ୍ଦୋଳର ସୁଯୋଗ୍ୟ ସନ୍ତାନଙ୍କୁ ଜନ୍ମ ଦେଇଥିଲେ କୃଷ୍ଣ ଚନ୍ଦ୍ରପୁର ଶାସନ ।

ଦୀନବନ୍ଧୁ ଆଚାର୍ଯ୍ୟ ଅନୁଗୋଳ ସମବାୟ ବ୍ୟାଙ୍କରେ ଚାକରୀ କରୁଥିଲେ । ଓଡ଼ିଶାର ସର୍ବ ପ୍ରଥମେ ଯେ OSPC ଯେ ଆବାହକ ଥିଲେ ବାଲୁଙ୍କେଶ୍ୱର ଆଚାର୍ଯ୍ୟ (ହିନ୍ଦୋଳ ନନ୍ଦପୁର) ସେ ତାଙ୍କର ସଂମ୍ପର୍କୀୟ ଥିଲେ । ସେ ବାଲୁଙ୍କେଶ୍ୱର ଆଚାର୍ଯ୍ୟଙ୍କ ଠାରୁ ପ୍ରେରଣା ପାଇ ରାଜନୀତି କ୍ଷେତ୍ରକୁ ଡ଼େଇଁ ପଡ଼ିଲେ । ତେଣୁ ଅନୁଗୋଳ ସମବାୟ ବ୍ୟାଙ୍କରୁ ଚାକିରୀ ଛାଡ଼ି ହିନ୍ଦୋଳ ପ୍ରଜାମଣ୍ଡଳରେ ଯୋଗଦେଲେ । ସେତେବେଳେ ପ୍ରଜାମଣ୍ଡଳର ସଭାପତି ଥାନ୍ତି ଚିତଲପୁରର ରାମପତି । ଦୀନବନ୍ଧୁ ଆଚାର୍ଯ୍ୟଙ୍କର ଯୋଗଦାନ ପରେ ସେ ସଭାପତି ପଦ ତ୍ୟାଗକରିଥିଲେ ଏବଂ ଦୀନବନ୍ଧୁ ଆଚାର୍ଯ୍ୟ ହିନ୍ଦୋଳ ପ୍ରଜାମଣ୍ଡଳର ସଭାପତି ହେଲେ । ଦେଶର ସ୍ୱାଧୀନତା ପର୍ଯ୍ୟନ୍ତ ସେ ସଭାପତି ମଧ୍ୟ ରହିଥିଲେ । ହିନ୍ଦୋଳର ପ୍ରଜାମଣ୍ଡଳକୁ ଆଗେଇ ନେବାରେ ତାଙ୍କର ଗୁରୁତ୍ୱ ପୂର୍ଣ୍ଣ ଭୂମିକା ଥିଲା । ହିନ୍ଦୋଳ ରାଜନୀତିର ସେ ଥିଲେ ପ୍ରକୃତ ମଙ୍ଗୁଆଳ । ସେ ପ୍ରଥମେ ଆଜିର ଖଜୁରିଆ କଟାଠାରେ ଥିବା ଆମ୍ବ ତୋଟାରେ ପ୍ରଜାମଣ୍ଡଳର ସଭା ଡ଼ାକିଥିଲେ । ଆଚଣ୍ଡାଳ ବ୍ରାହ୍ମଣ ପର୍ଯ୍ୟନ୍ତ ସେଠାରେ ହଜାର ହଜାର ଲୋକ ଯୋଗ ଦେଇଥିଲେ । ସେତେବେଳେ ଖଜୁରିଆ କଟାରେ କିଛି ଆମ୍ବ ତୋଟା ବ୍ୟତୀତ ଆଉ କିଛି ନଥିଲା । କେବଳ ନିକଟରେ ଗୋଟିଏ ଗାଡ଼ିଆ ଥିଲା । ଆଚାର୍ଯ୍ୟ ମହାଶୟଙ୍କ ଉଦ୍ୟମ କ୍ରମେ ପ୍ରଜାମଣ୍ଡଳ ଅଫିସ ଖୋଲିବା ପାଇଁ କିଛି ଜମି ନିଆଯାଇଥିଲା ।

ହିନ୍ଦୋଳ ରାଜାଙ୍କର ରାଜ ପୁରୋଧା ଥାନ୍ତି ଦୀନବନ୍ଧୁ ଆଚାର୍ଯ୍ୟଙ୍କ ବାପା । ବାଲୁଙ୍କେଶ୍ୱର ଆଚାର୍ଯ୍ୟଙ୍କ ସାନଭାଇ ଚକ୍ରଧର ଆଚାର୍ଯ୍ୟ ଥିଲେ ହିନ୍ଦୋଳ ରାଜ୍ୟର ଦେୱାନ । ଉଭୟେ ଥିଲେ ନନ୍ଦପୁର ଏବଂ କୃଷ୍ଣଚନ୍ଦ୍ରପୁର ଶାସନର ଲୋକ । ଉଭୟ ଶାସନ ଥିଲା ହିନ୍ଦୋଳ ରାଜାଙ୍କର ଲାଖରାଜି ମୌଜା । ଏମାନେ ଯେତେବେଳେ ପ୍ରଜାମଣ୍ଡଳର ମଙ୍ଗୁଆଳ ସାଜିଲେ ହିନ୍ଦୋଳର ଅନ୍ୟାନ୍ୟ ଲୋକମାନେ ଆନ୍ଦୋଳନ ପାଇଁ ସାହାସ ପାଇଲେ । ରାଜା ନବକିଶୋର ସିଂହ ଯେତେ ଚେଷ୍ଟା କଲେ ମଧ୍ୟ ଦୀନବନ୍ଧୁ ଆଚାର୍ଯ୍ୟଙ୍କୁ ଗିରଫ କରିପାରି ନଥିଲେ । କାରଣ ଚକ୍ରଧର ଆଚାର୍ଯ୍ୟ ତାଙ୍କୁ ଆଢୁଆଳ କରି ରଖିଥିଲେ । ଦୀନବନ୍ଧୁ ଆଚାର୍ଯ୍ୟଙ୍କ ବାଗ୍ମୀତା ହରେ କୃଷ୍ଣ ମହତାବଙ୍କୁ ଆକୃଷ୍ଟ କରୁଥିବାରୁ ସେ ସଦାସର୍ବଦା ତାଙ୍କୁ ନିଜ ପାଖରେ

ରଖୁଥିଲେ । ଫଳରେ ଆଚାର୍ଯ୍ୟ ମହୋଦୟଙ୍କ ଉପରେ ରାଜା କୌଣସି ମତେ ଅଙ୍କୁଶ ଲଗାଇ ପାରୁନଥିଲେ । ଚକ୍ରଧର ଆଚାର୍ଯ୍ୟ ଦେୱାନ ଥିବା ହେତୁ ରାଜାଙ୍କର ସବୁପ୍ରକାର ଗୁପ୍ତ ମନ୍ତ୍ରଣା ପଦାରେ ପଡୁଥାଏ । କୌଣସି ଉପାୟ ନଦେଖି ରାଜା ନିରୁପାୟ ହୋଇ ଚକ୍ରଧର ଆଚାର୍ଯ୍ୟଙ୍କୁ ଦେୱାନ ପଦରୁ ବହିଷ୍କୃତ କଲେ । ତେଣୁ ସେ ଯାଇ କଟକରେ ରହିଲେ । ହିନ୍ଦୋଳ ନନ୍ଦପୁରର ଆଚାର୍ଯ୍ୟ ପରିବାର କଟକରେ ହରେକୃଷ୍ଣ ମହତାବଙ୍କ ସହିତ ଉତ୍ତମ ବୁଝାମଣା ହେତୁ ରାଜା କୌଣସି ସଂଗ୍ରାମୀକୁ ରାଜ ଦଣ୍ଡ ଦେଇ ପାରୁ ନଥିଲେ । କିନ୍ତୁ ଦୀନବନ୍ଧୁ ଆଚାର୍ଯ୍ୟଙ୍କ ଦ୍ୱାରା ଯେତେବେଳେ ପ୍ରଜାମଣ୍ଡଳଙ୍କ ଆନ୍ଦୋଳନ ଉଦ୍‌ବେଗ ଜନକ ହେଲା ରାଜା ତାଙ୍କର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତି କରିଦେଇଥିଲେ । ଦେଶ ସ୍ୱାଧୀନତା ନ ପାଇବା ପର୍ଯ୍ୟନ୍ତ ସେ କେଶ ଛେଦନ କରିବେ ନାହିଁ ବୋଲି ସପଥ ନେଇଥିଲେ । ଦେଶ ସ୍ୱାଧିନତା ପାଇବା ପରେ ମଧ ଗଣତନ୍ତ୍ର ମଧରେ ଅଗଣ ତାନ୍ତ୍ରିକର ରୂପ ଉପଲଦ୍ଧି କରି ଆଜୀବନ ନିଶଦାଢି ଛାଡ଼ି ଦେଇଥିଲେ । ଡ଼. ହରେକୃଷ୍ଣ ମହତାବ ବମ୍ବେରେ (ମହାରାଷ୍ଟ୍ରର) ରାଜ୍ୟପାଳ ଥିବା ସମୟରେ ସେ ଦୀନବନ୍ଧୁ ଆଚାର୍ଯ୍ୟଙ୍କୁ ଓଡ଼ିଶାରେ ମନ୍ତୀପଦ ଏବଂ ରାଜ୍ୟ ସଭାକୁ ସଂାସଦ ରୁପେ ପଠାଇବା ପାଇଁ ମଧ ଅନୁରୋଧ କରିଥିଲେ । ଆଚାର୍ଯ୍ୟ ମହୋଦୟ ତାଙ୍କ ଉତ୍ତରରେ କହିଥିଲେ ଯେ, ଯେଉଁ ରାଜନୀତିରେ ସତ୍ୟ ଏବଂ ସ୍ୱଚ୍ଛଳତା ନାହିଁ ସେ ସେଥିରେ ଅଂଶ ଗ୍ରହଣ କରିବେ ନାହିଁ । ପରେ ପରେ ସେ ରାଜନୀତିରୁ ଅବସର ଗ୍ରହଣ କରିଥିଲେ । ହିନ୍ଦୋଳ ବାସୀଙ୍କର ଅନୁରୋଧ କ୍ରମେ ସେ ବହୁ ଦିନ ଧରି ହିନ୍ଦୋଳ ପଞ୍ଚାୟତ ସମିତିର ଚେୟାରମ୍ୟାନ ଭାବରେ ରହି ହିନ୍ଦୋଳ ଉପଖଣ୍ଡର ଉନ୍ନତି ସାଧନ କରିଥିଲେ । ତାଙ୍କର କାର୍ଯ୍ୟକାଳ ମଧ୍ୟରେ ହିନ୍ଦୋଳରେ ଶିକ୍ଷାର ପ୍ରଭୂତ ଉନ୍ନତି ସାଧନ ହୋଇପାରିଥିଲା । ଦୁଦୁରକୋଟ ମଧ ଇଂରାଜୀ ବିଦ୍ୟାଳୟ ଏବଂ ଜନତାରାଜ ହାଇସ୍କୁଲ ପ୍ରତିଷ୍ଠା ତାଙ୍କର ଅନବଦ୍ୟ କୃତୀ । ହରିହର ପୁର ଶାସନର ହରିହର ମିଶ୍ର ଥିଲେ ତାଙ୍କର ଜଣେ ବିଶ୍ୱସ୍ତ ସହକର୍ମୀ । ଜୀବନର ଅନ୍ତିମ ପର୍ଯ୍ୟାୟ ପର୍ଯ୍ୟନ୍ତ ସେ ଭାରତୀୟ ସଂସ୍କୃତି ଠାରୁ ନିଜକୁ ବିଚ୍ୟୁତ କରିନଥିଲେ ।

ହିନ୍ଦୋଳ ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ଯୋଦ୍ଧା ଥିଲେ ପାଳଚକଡ଼ାର ରବିନାରାୟଣ ମିଶ୍ର । ପିତା ଜଗମୋହନ ମିଶ୍ର ତତ୍କାଳୀନ ହିନ୍ଦୋଳର ବିଶିଷ୍ଟ ଶିକ୍ଷାବିତ୍ ତଥା ଡାକ୍ତର । କଟକର ରେଭେନ୍‌ସା କଲେଜିଏଟ ସ୍କୁଲରୁ ପାଠ ଶେଷକରି କଲିକତା ମେଡ଼ିକାଲ କଲେଜରେ ଡାକ୍ତରି ପାଠ ଶେଷକରି ହିନ୍ଦୋଳ ରାଜାଙ୍କର ଡାକ୍ତର ଭାବେ ନିଯୁକ୍ତି ପାଇଥିଲେ । ମାତା କନକ ଲତା ଦେବୀ ଓଡ଼ିଆ ସଂସ୍କୃତିର ଜଣେ ପରିପୃଷ୍ଟ କାରିଣୀ

ଭାବେ ପରିଚିତା ଥିଲେ । ବ୍ରାହ୍ମଣ ସମାଜର ନୈଷ୍ଠିକତା ଥିଲା ତାଙ୍କର ପରମ ବ୍ରତ । ରବିନାରାୟଣ ମିଶ୍ର ରେଭେନ୍‌ସା କଲେଜିଏଟ ସ୍କୁଲର ପାଠ ଶେଷକରି ରେଭେନ୍‌ସା ମହାବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ସମ୍ମାନର ସହ ଉନ୍ନୀତ ହୋଇଥିଲେ । ରେଭେନ୍‌ସାରେ ପଢିବା ସମୟରେ ଇକ୍ଷକ୍ଷ ଙକ୍ସସକ୍ଷକ୍ଷବ ଝକ୍ଷଙ୍କଯରଭକ୍ଷକ୍ଷ ଉକ୍ଟଭଶକ୍ଷରକ୍ଷକ୍ଷ ର ଉପସଭାପତି ଥିଲେ । ଛାତ୍ର ଜୀବନରୁ ରାଜନୀତିରେ ପ୍ରବେଶ କରି ସମସ୍ତଙ୍କୁ ଆପଣାର କରିପାରିଥିଲେ । ଛାତ୍ର କଂଗ୍ରେସର ଉପସଭାପତି ଭାବେ ତାଙ୍କର ଖ୍ୟାତି ମଧ୍ୟ ଥିଲା । ସ୍ନାତକ ପରେ ଗୋଟିଏ ବର୍ଷ ଗାଁରେ ରହି ପାଦରେ ଗାଁକୁଗାଁ ଚାଲି ଚାଲି ଲୋକମାନଙ୍କ ମଧ୍ୟରେ ସ୍ୱାଧୀନତାର ଅର୍ଥ ବୁଝାଉଥିଲେ । ମହାତ୍ମାଗାନ୍ଧୀଙ୍କର ଆଦର୍ଶରେ ଅନୁପ୍ରାଣୀତ ହୋଇ ଗ୍ରାମ ଲୋକମାନଙ୍କୁ ସଂଗଠିତ କରାଇ ଗ୍ରାମ ସଫେଇ କରିବା, ଗ୍ରାମର ବିବାଦ ଗ୍ରାମରେ ନିଷ୍ପତି କରିବ ଇତ୍ୟାଦି ପଲ୍ଲୀ ସଂଗଠନ ଗୁଡ଼ିକୁ ସୁଦୃଢ଼ କରିଥିଲେ । ତାଙ୍କ ସହିତ ପୂର୍ଣ୍ଣପ୍ରାଣରେ ସହଯୋଗ କରୁଥିଲେ ଦନେଇ ପତି (ପାଳଚକଡା) ଏବଂ କୁବେର ସାହୁ (କଳିଙ୍ଗା ବଣିଆ ସାଇ)।

ପରେ ପରେ ସେ ଉଚ୍ଚଶିକ୍ଷା ପାଇଁ ବନାରସ ଯାଇଥିଲେ ଏବଂ ବନାରସ ହିନ୍ଦୁ ବିଶ୍ୱ ବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ସ୍ନାତକୋତ୍ତର ଡ଼ିଗ୍ରୀ ହାସଲ କରି ପୁଣି ରାଜନୀତିକୁ ଫେରି ଆସିଥିଲେ । ଛାତ୍ର ଜୀବନରେ ଲୋକମାନଙ୍କୁ ସଂଗଠିତ କରିବା ପାଇଁ ରାସୋଳ ଗ୍ରାମରେ ଏକ ସଭାର ଆୟୋଜନ କରିଥିଲେ । ଏହି ସଭାରେ ଯୋଗ ଦେବାପାଇଁ କଟକରୁ ଆସିଥିଲେ ନୃସିଂହ ପ୍ରସାଦ ନନ୍ଦ, ଦିଗମ୍ବର ମିଶ୍ର, ସୁଧାକର ଆଚାର୍ଯ୍ୟ ଏବଂ କାଶିନାଥ ମିଶ୍ର । ତା'ପରେ ମଧ୍ୟ ଏହି ସଭା ହିନ୍ଦୋଳ ରାଜବାଟି ସାମ୍ନାରେ ଥିବା ପଡ଼ିଆରେ ହୋଇଥିଲା । ଏଥିରେ ଗୋଟିଏ ବିଶେଷ ଘଟଣା ହେଲା ବାପା ଜଗନ୍‌ମୋହନ ମିଶ୍ର ଥିଲେ ରାଜାଙ୍କର ଡାକ୍ତର ଏବଂ ପୁଅ ରବିନାରାୟଣ ମିଶ୍ର ହେଲେ ଛାତ୍ର ଜୀବନରୁ ସ୍ୱାଧୀନତା ସଂଗ୍ରାମୀ ଭାବେ ରାଜାଙ୍କ ବିରୋଧୀ ।

ସର୍ବୋଦୟ ଏକ ସମାଜ ଦର୍ଶନ । ସର୍ବୋଦୟ ସମାଜର ଭାବନାକୁ ଭାରତରେ କାର୍ଯ୍ୟକାରୀ କରିବାର ପ୍ରଥମ ବିନ୍ଧାଣୀ ହେଉଛନ୍ତି ବିନୋବା । ତାଙ୍କରି ମହାମନ୍ତ୍ରରେ ଦିକ୍ଷୀତ ହୋଇ ଓଡ଼ିଶାର ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ ଏବଂ ରମାଦେବୀଙ୍କ ସହିତ ଯୋଗ ଦେଇଥିଲେ ରବିନାରାୟଣ ମିଶ୍ର । ତା ପୂର୍ବରୁ ଶୈଳବାଳା ମିଶ୍ର ମାଳତୀ ଚୌଧୁରୀଙ୍କର ପଟ୍ଟ ଶିଷ୍ୟା ଥିଲେ । ଉଭୟେ ଭୂଦାନ ଆନ୍ଦୋଳନରେ ପଦଯାତ୍ରା କରିବା ସମୟରେ ଉଭୟେ ରବିନାରାୟଣ ମିଶ୍ର ଏବଂ ଶୈଳବାଳା ମିଶ୍ର ସାମାଜିକ ବିବାହ ବନ୍ଧନରେ ଆବଦ୍ଧ ହୋଇ

ଥିଲେ । ସେ ସ୍ୱାଧୀନତାର ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଓଡ଼ିଶା ସଂଗ୍ରାମୀ ଇତିହାସର ଏକ ମର୍ଯ୍ୟାଦା ପୁରୁଷ । ଦେଶ ଜାତି ପାଇଁ ତାଙ୍କର ଆଦର୍ଶ ଏବଂ ତ୍ୟାଗ ଥିଲା ଅତୁଳନୀୟ । କଟକ ମହାନଗରୀରେ ବିଦ୍ୟା ଅର୍ଜନ କରି କଟକ ଆଦବ କାଇଦାରେ ବଢ଼ି ରବିନାରାୟଣ ମିଶ୍ର ଜନ୍ମମାଟି ପାଳଚକଡାକୁ ନିଜ ହୃଦୟରେ ଉତ୍ତମ ଭାବରେ ସ୍ଥାନଦେଇ ପାରିଛନ୍ତି ଏବଂ ନିଜ ଗାଁ ମାଟି ପାଇଁ ସେ ଆଜି ଗର୍ବ ଅନୁଭବ କରନ୍ତି ଏହା ହିଁ ତାଙ୍କର ମାତୃଭୂମି ପ୍ରୀତିର ନିଛକ ଉଦାହରଣ ।

ସ୍ୱାଧୀନତା ସଂଗ୍ରାମୀ ଏବଂ କଂଗ୍ରେସର ଅନ୍ୟ ଏକ ସଂଗଠକ ଥିଲେ ଜରଡ଼ା ଗ୍ରାମର ଧନେଶ୍ୱର ପାଳ । ପ୍ରାୟ ପିଲାଦିନରୁ ସେ ହିନ୍ଦୋଳ ରାଜପରିବାର ପୂଜକ ଥିଲେ । ରାଜା ନବକିଶୋର ସିଂହ ଥିଲେ ଜଗନ୍ନାଥ ସଂସ୍କୃତିର ପୃଷ୍ଠପୋଷକ । ପ୍ରତିଦିନ ମହାପ୍ରଭୁ ଜଗନ୍ନାଥଙ୍କର ତୁଳସୀ ପାଦୁକ ପାଇଲା ପରେ ସେ ଦୈନନ୍ଦିନ କାର୍ଯ୍ୟ ଆରମ୍ଭ କରନ୍ତି । ଜଗନ୍ନାଥ ମନ୍ଦିରର ପୂଜକ ଥାନ୍ତି ଧନେଶ୍ୱର ପାଳ । ଜଗନ୍ନାଥ ମନ୍ଦିର ପୂଜା କରିବା ସଙ୍ଗେ ସଙ୍ଗେ ରାଜନଅର ଭିତରେ ଥିବା ଅନ୍ୟ ଦେବାଦେବୀ ଙ୍କର ପୂଜା ଅର୍ଚ୍ଚନା ମଧ କରିଥାନ୍ତି । ଫଳରେ ରାଜ ପରିବାର ସହିତ ଧନେଶ୍ୱର ପାଳଙ୍କର ଉତ୍ତମ ବୁଝାମଣା ଥାଏ । ତାଙ୍କ ପାଇଁ ରାଜା ଜରଡ଼ାରେ କିଛି ଜମି ମଧ ଖଞ୍ଜାକରି ଦେଇଥିଲେ । ହିନ୍ଦୋଳରେ ଯେତେବେଳେ ସ୍ୱାଧୀନତାର ବିଗୁଲୁ ବାଜିଲା, ଧନେଶ୍ୱର ପାଳ ରାଜ ପରିବାରରେ ଆଉ ରହି ପାରି ନଥିଲେ । ତେଣୁ ସେ ରାଜ ଦରବାର ପରିତ୍ୟାଗ କରି ଗାଁକୁ ଆସିଥିଲେ । ଗାଁ କୁ ଗାଁ ବୁଲି କଂଗ୍ରେସ ପୋଷାକ ପରିଧାନ କରି ସଭା ସମିତିରେ ଏବଂ କଂଗ୍ରେସ ପାଇଁ ମୁଠି ଚାଉଳ ମାଗିଲେ । ପରିଶେଷରେ ରାଜା ତାଙ୍କୁ ଡ଼ାକି ସତର୍କ ବାଣୀ ଶୁଣାଇ ଥିଲେ ମଧ ତାହାକୁ ସେ ଭୃକ୍ଷେପ କରି ନଥିଲେ ।

କଳିଙ୍ଗା ଗ୍ରାମର ଧନେଶ୍ୱର ପାଳ ଥିଲେ ଜଣେ ଅପ୍ରତିଦ୍ୱନ୍ଦୀ ସ୍ୱାଧୀନତା ସଂଗ୍ରାମୀ । ସେ ପଞ୍ଚପଡ଼ାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ସ୍ୱପ୍ନେଶ୍ୱର ପତିଙ୍କର କନ୍ୟା ଭାମାଙ୍କୁ ବିବାହ କରିଥିଲେ । ଫଳରେ ସେ ସ୍ୱାଧୀନତାର ଅଧିକ ପ୍ରେରଣା ତାଙ୍କ ଶ୍ୱଶୁରଙ୍କ ଠାରୁ ପାଇଥିଲେ । ସେ ପୁରୁଣା କଟକ ସମ୍ବଲପୁର ରାସ୍ତାରେ ଆଠଗଡ଼ ଦେଇ ଚାଲି ଚାଲି କଟକ ଯାଉଥିଲେ । ସେ ସେଠାରେ କଟକିଆ କଂଗ୍ରେସ ନେତାମାନଙ୍କ ସହ ଆଲୋଚନା କରି ଫେରି ଆସୁଥିଲେ । ରାଜ ଦରବାରକୁ ତାଙ୍କର ଭୟ ନଥିଲା । ଗାଁ ଚଉକିଆ ଏବଂ ପୋଲିସକୁ ଦେଖିଲେ ସେ ଲୁଚି ରହୁ ନଥିଲେ । ଗାଁ ଚଉକିଆ ଠାରୁ ରାଜ ଆଜ୍ଞା ପାଇଲେ ସେ ନିଜେ

ଯାଇ ରାଜାଙ୍କ ନିକଟରେ ହାଜର ହେଉଥିଲେ । ସେ ନିର୍ଭୟରେ ରାଜାଙ୍କୁ କହୁଥିଲେ ଆପଣ ଯାହା ଦଣ୍ଡ ବିଧାନ କରିବେ ମୁଁ ସାଦରେ ଗ୍ରହଣ କରିବି । କିନ୍ତୁ ଗାନ୍ଧିଜୀଙ୍କର ସ୍ୱାଧୀନତାର ବାର୍ତ୍ତା ପ୍ରତି ଘରେ ଘରେ ପହଞ୍ଚାଇବି । 'ବନ୍ଦେ ମାତରଂ' ଗାନ କରିବାରେ ସେ ପାରଙ୍ଗମ ଥିଲେ । ହିନ୍ଦୋଳର ସ୍ୱାଧୀନତା ସଂଗ୍ରାମୀ ମାନଙ୍କୁ ସେ 'ବନ୍ଦେ ମାତରଂ' ଗାଇବାର ଶିକ୍ଷା ପ୍ରଦାନ କରିଥିଲେ । ତାଙ୍କ ସାହସିକତାର ପରିଚୟ ଦେଇ ତାଳଚେରର ସଂଗ୍ରାମୀ ପବିତ୍ର ମୋହନ ପ୍ରଧାନ ତାଙ୍କ ଭାଷଣରେ କହିଥାନ୍ତି ଯେ, କୋଟିଏ ଭିତରେ ଗୋଟିଏ ହେଉଛନ୍ତି କଳିଙ୍ଗା ଗ୍ରାମର ଧନେଶ୍ୱର ପାଳ, ଯେ କି ନିଜ ଜନ୍ମମାଟିର ସେବା ପ୍ରତି ବଦଳରେ ସ୍ୱାଧୀନତା ସଂଗ୍ରାମୀ ଭତ୍ତାକୁ ପ୍ରତ୍ୟାଖାନ କରିଥିଲେ । ଜନ୍ମ ମାଟିର ସେବା ବଦଳରେ ଭତ୍ତା ଗ୍ରହଣ କରି ପରିବାର ପୋଷଣ କରିବା ଜଣେ ସଂଗ୍ରାମୀର କର୍ତ୍ତବ୍ୟ ନୁହେଁ । ଏହି ଉକ୍ତି ଥିଲା ତାଙ୍କର । ହିନ୍ଦୋଳ ରାଜା ନବକିଶୋର ସିଂହଙ୍କ ସହିତ ଧନେଶ୍ୱର ପାଳଙ୍କର କଟକରେ ଦେଖାହେଲା । ରାଜା ତାଙ୍କୁ ନିଜ ନିକଟକୁ ଡାକିଲେ ଏବଂ ଧନେଶ୍ୱର ପାଳଙ୍କର ପିଠି ଥାପୁଡ଼ାଇ କହିଲେ ବାଃ, ବାଃ ମୋ ରାଜ୍ୟର ଜଣେ ସାହାସୀ କହି ତାଙ୍କ ହାତରେ କିଛି ଟଙ୍କା ଧରାଇ ଦେଲେ ଏବଂ କହିଲେ 'ବନ୍ଦେ ମାତରଂ' କ'ଣ କଟକରୁ ଶିଖିଲ ? ତେଣୁ ହିନ୍ଦୋଳର 'ବନ୍ଦେ ମାତରଂ' କହିଲେ ଧନେଶ୍ୱର ପାଳଙ୍କୁ ବୁଝାଏ । ଏଠାରେ କହି ରଖିବା ଉଚିତ୍ ମନେ କରଛି ଯେ, ରାଜା ନବକିଶୋର ସିଂହ କଟକରେ କୌଣସି ହିନ୍ଦୋଳ ପ୍ରଜାଙ୍କୁ ଦେଖିଲେ ତାଙ୍କୁ ଭଲମନ୍ଦ ପଚାରି କଟକରେ ଖର୍ଚ୍ଚ ପାଇଁ ହାତରେ କିଛି ଅର୍ଥ ଧରାଇ ଦିଅନ୍ତି । ଏହି ପ୍ରଜାବତ୍ସଳତା ତାଙ୍କର ଥିଲା ।

ଅବିଭକ୍ତ ଢେଙ୍କାନାଳ ଜିଲ୍ଲା ସାତଗୋଟି ଉପଖଣ୍ଡକୁ ନେଇ ଗଠିତ ହୋଇଥିଲା । ଏହି ଉପଖଣ୍ଡ ଗୁଡ଼ିକରେ ଛ ଗୋଟି ଗଡ଼ଜାତ ଥିଲା । ଏହି ଗଡ଼ଜାତ ମାନଙ୍କ ମଧ୍ୟରେ ତାଳଚେର ଏବଂ ଢେଙ୍କାନାଳ ରାଜାଙ୍କ ପରି ହିନ୍ଦୋଳ ରାଜା ଅତ୍ୟାଚାରୀ କିମ୍ବା ପ୍ରଜା ପିଡ଼କ ନଥିଲେ । ତଥାପି ଅନ୍ୟ ଗଡ଼ଜାତର ଆନ୍ଦୋଳନର ଛାଇ ହିନ୍ଦୋଳ ଉପରେ ପଡ଼ିଥିଲା ଏବଂ ହିନ୍ଦୋଳ ବାସୀଙ୍କର ସଚେତନତା ମଧ୍ୟ ଥିଲା । ୧୯୩୮ ମସିହା ଅକ୍ଟୋବର ୨୯ ତାରିଖ ସମଗ୍ର ଓଡ଼ିଶାରେ ଗଡ଼ଜାତ ଦିବସ ରୂପେ ପାଳିତ ହୋଇଥିଲା । ରାଜତନ୍ତ୍ର ବିରୋଧରେ ସ୍ୱର ଉତ୍ତୋଳନ କରି ହିନ୍ଦୋଳ ପ୍ରଜାମଣ୍ଡଳର ଆନ୍ଦୋଳନ ତ୍ରୀବ୍ରତର ଥିଲେ ମଧ୍ୟ କୌଣସି ଅପ୍ରୀତିକର ପରିସ୍ଥିତି ଘଟିନଥିଲା । ତଥାପି ବହୁ ଜନ ନେତା ନିଜ ନିଜର ଚାକିରୀକୁ ଜଳାଞ୍ଜଳି ଦେଇ ଏହି ସଂଗ୍ରାମରେ ଯୋଗ ଦେଇଥିଲେ । ଏଥିରେ ହିନ୍ଦୋଳର ତତ୍କାଳୀନ ଦେୱାନ ପଣ୍ଡିତ ଚକ୍ରଧର ଆଚାର୍ଯ୍ୟଙ୍କୁ ଦଶହଜାର ଟଙ୍କା ଜୋରିମନା ପଇଠ କରି

ବିତାଡ଼ିତ ହେବାକୁ ପଡ଼ିଥିଲା । ରାଜବଲ୍ଲଭ ମିଶ୍ର (ହିନ୍ଦୋଳ) ଚାକିରୀ ଛାଡ଼ି ପ୍ରଜାମଣ୍ଡଳରେ ଯୋଗ ଦେଇଥିଲେ । କପିଳ ଚନ୍ଦ୍ର ପ୍ରଧାନ (ଠେଙ୍ଗା) ପ୍ରଜାମଣ୍ଡଳର କୋଷାଧ୍ୟକ୍ଷ ଥିଲେ । ଶ୍ୟାମସୁନ୍ଦର ମିଶ୍ର (ହିନ୍ଦୋଳ) ସଂପାଦକ ଥିଲେ । ଭାଗୀରଥୀ ମିଶ୍ର (ଭଗବାନପୁର)ଙ୍କୁ ମିଥ୍ୟା ମକଦ୍ଦମାରେ ତିନିମାସ ସଜା ଭୋଗିବାକୁ ପଡ଼ିଥିଲା । ରାଜ ବଲ୍ଲଭ ମିଶ୍ରଙ୍କୁ ଘରପୋଡ଼ି ମାମଲାରେ ଦଣ୍ଡିତ କରାଯାଇ ଅନ୍ୟମାନଙ୍କୁ ଭୟଭିତ କରାଯାଇ ଥିଲା ।

ହିନ୍ଦୋଳ ଗଡ଼ଜାତରେ ଏହିପରି ଅନେକ ଦେଶପ୍ରେମୀ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇଥିଲେ । ଅନେକ ସ୍ୱାଧୀନତା ସଂଗ୍ରାମୀଙ୍କର ବିବରଣୀ ହସ୍ତଗତ ହୋଇଥିଲେ ମଧ୍ୟ ସେ ଗୁଡ଼ିକୁ ଏଠାରେ ସ୍ଥାନ ଦେବା ପୁସ୍ତକର କଳେବର ଦୃଷ୍ଟିରୁ ସମ୍ଭବ ନୁହେଁ । ତେଣୁ କିଛି ମୁଖ୍ୟ ସ୍ୱାଧୀନତା ସଂଗ୍ରାମୀ ମାନଙ୍କର  ନାମ ଏଠାରେ ଦିଆଗଲା । ସେମାନେ ହେଲେ ଶ୍ୟାମସୁନ୍ଦର ମିଶ୍ର (ହିନ୍ଦୋଳ) ରାଜବଲ୍ଲଭ ମିଶ୍ର (ହିନ୍ଦୋଳ), କପିଳ ଚନ୍ଦ୍ର ପ୍ରଧାନ (ଠେଙ୍ଗା), କୃତିବାସ ପ୍ରଧାନ (କାରନ୍ଦା), ସୁଲଭା ନନ୍ଦ ନାଥ, ଗୌର ଚନ୍ଦ୍ର ରଥ, ଭାଗୀରଥୀ ମିଶ୍ର (ଭଗବାନପୁର), ବାଞ୍ଛାନିଧି ପତି (ପଞ୍ଚପଡ଼ା), ମୋଚିଆ ରାଉତ, ଶ୍ରୀନାଥ ରାଉତ, ମଧୁସୁଦନ ବିଶ୍ୱାଳ, ସୁବଳ ସଂଗ୍ରାମ ସିଂହ, ପ୍ରାଣବନ୍ଧୁ ସାହୁ (ରାସୋଳ), ଦୟାନିଧି ପ୍ରଧାନ, ଝଲକା ସାହୁ, ମଦନ ମୋହନ ପ୍ରଧାନ (ସାନହିନ୍ଦୋଳ) ବସ୍ତାନ ଖାଁ, ହରିହର ମିଶ୍ର (ହରିହର ପୁର) କୈଳାସ ଚନ୍ଦ୍ର ଆଚାର୍ଯ୍ୟ ଇତ୍ୟାଦି ଏହିପରି ଅନେକ ।

ହିନ୍ଦୋଳ ପ୍ରଜାମଣ୍ଡଳ ୧୧  ଦଫା ସମ୍ବଳିତ ଏକ ଦାବୀପତ୍ର ରାଜା ନବକିଶୋର ସିଂହଙ୍କୁ  ପ୍ରଦାନ  କରିଥିଲେ । ରାଜା ମଧ୍ୟ ସେମାନଙ୍କ ଦାବି ଉପସ୍ଥାପନା ନିମନ୍ତେ ସୁଯୋଗ ଦେଇଥିଲେ । ହିନ୍ଦୋଳ ପ୍ରଜାମାନେ ଏକତ୍ରିତ ହୋଇ ୧୯୩୮ ମସିହା ଅଗଷ୍ଟ ୧୫ ତାରିଖ ଦିନ ଏକ ବିଶାଳ ଗଣସମାବେଶ ରାଜ ପ୍ରସାଦ ସମ୍ମୁଖରେ ଥିବା ଗଡ଼ ପଡ଼ିଆରେ କରିଥିଲେ । ଏହି ଗଣ ସମାବେଶରେ ରାଜା ମଧ୍ୟ ନଅରରୁ ଆସି ଯୋଗ ଦେଇଥିଲେ । ଦାବି ଉପରେ ଆଲୋଚନା ମଧ୍ୟ ହୋଇଥିଲା । ପ୍ରଜା ମଣ୍ଡଳର ମଧ୍ୟ କିଛି ପ୍ରତିନିଧି ବନ୍ଦୀ ଯାଇଥିଲା ଏବଂ ବେଠି ବେଗାରିକୁ ଉଚ୍ଛେଦ କରା ଯାଇଥିଲା  । ଏହା ବ୍ୟତୀତ ୧୯୩୯ ମସିହା ଜାନୁୟାରୀ ୧ ତାରିଖରେ ରାଜା ମଧ୍ୟ ନାଗରିକ ମାନଙ୍କର ସ୍ୱାଧୀନତା (ଉସଙ୍ଗସକ୍ଷ ଖସଭରଙ୍କଷସରଷ) ଉପରେ ସୂଚନା ଦେଇଥିଲେ ।

"The subjects of the State henceforth shall enjoy full civil liberties i.e. they shall have freedom of speech, association and writing  and shall be of liberty to discuss the administration."

ଏହା ସହିତ ପ୍ରଜା ମାନଙ୍କୁ ପୂର୍ଣ୍ଣ ମାତ୍ରାରେ ରାଜନୈତିକ ଅଧିକାର ମଧ୍ୟ ଦିଆଗଲା । ତେଣୁ "The Praja Parishad of Hindol State" (PPHS) ଗଠନ କରାଗଲା । ଫଳରେ ଜମିଜମା ଓ ଜଙ୍ଗଲ ବ୍ୟବହାର ଉପରେ ଆଇନ୍ କୋହଳ କରାଗଲା । ୧ ୯ ୪ ୭ ମସିହାରେ ସ୍ୱାଧୀନତା ପରେ ଅର୍ଥାତ ଗଡ଼ଜାତ ମିଶ୍ରଣର ଏକ ବର୍ଷ ପୂର୍ବରୁ ସେ ପ୍ରଜାମଣ୍ଡଳକୁ ଶାସନ କ୍ଷମତା ହସ୍ତାନ୍ତର କରିବାକୁ ଘୋଷଣା କରିଥିଲେ । ଏହି ଘଟଣା ସମୁହରୁ ସ୍ପଷ୍ଟ ଅନୁମେୟ ହୁଏ ଯେ, ରାଜା ନବ କିଶୋର ସିଂହ ଦେଶର କେତେଟା ସ୍ୱାଧୀନ ଚେତା ରାଜା ଥିଲେ । ଗଡ଼ଜାତର ମିଶ୍ରଣ ପୂର୍ବରୁ ସେ ଶାସନ କ୍ଷମତା ହସ୍ତାନ୍ତର କରିବାକୁ ଘୋଷଣା କରିଥିଲେ । ସେ ଖୁବ୍ ଭଲଭାବରେ ଯାଣିଥିଲେ ଯେ ଦେଶ ସ୍ୱାଧୀନ ହେବ, ବ୍ରିଟିଶ ଶାସନ ଏ ଦେଶରେ ରହିବ ନାହିଁ । ତେଣୁ ସେ ପ୍ରଜାମାନଙ୍କର ସ୍ୱାଧୀନତା ଆନ୍ଦୋଳନକୁ ଆନ୍ତରିକତା ସହକାରେ ଗ୍ରହଣ କରୁଥିଲେ ମ୍ନ କରଦ ରାଜ୍ୟ ଭାବରେ ବ୍ରିଟିଶ ଶାସନର ବଶ୍ୟତାକୁ ସ୍ୱୀକାର କରିବାକୁ ପଡୁଥିଲା । ୧ ୯ ୪ ୭ ଖ୍ରୀଷ୍ଟାବ୍ଦରେ ଭାରତ ବର୍ଷ ସ୍ୱାଧୀନତା ଲାଭ ପରେ ଆରମ୍ଭ ହୋଇଥିଲା ଓଡ଼ିଶା ସହିତ ଗଡ଼ଜାତ ରାଜ୍ୟର ମିଶ୍ରଣ ପର୍ବ । ଏହି ଗଡ଼ଜାତ ମିଶ୍ରଣ ପାଇଁ ହରେକୃଷ୍ଣ ମହତାବ ଗାନ୍ଧିଜୀଙ୍କୁ ଅନୁରୋଧ କରିଥିଲେ । ଉତ୍ତରରେ ଗାନ୍ଧିଜୀ କହିଥିଲେ ଯଦି ତୁମେ ଅନ୍ତତଃ ଦୁଇଜଣ ରାଜାଙ୍କର ସ୍ୱୀକୃତି ସଂଗ୍ରହ କରି ମୋତେ ଆଣିଦେବ ତା'ପରେ ମୁଁ ସର୍ଦ୍ଦାର ପଟେଲଙ୍କୁ କହିବି"। ସେତେବେଳେ ମହତାବ ହିନ୍ଦୋଳର ରଜାଙ୍କ ଠାରୁ ପ୍ରଥମେ ସ୍ୱୀକୃତି ସଂଗ୍ରହ କରି ଗାନ୍ଧିଜୀଙ୍କୁ ଦେଇଥିଲେ । ଏଥିରୁ ହିନ୍ଦୋଳ ରାଜାଙ୍କର ସ୍ୱାଧୀନତା ପ୍ରତି ଆନ୍ତରିକତା ଏବଂ ଜାତୀୟବୋଧତା ବେଶ୍ ଅନୁମେୟ କରାଯାଇ ପାରେ । ସେ ଯାହାହେଉ ସ୍ୱାଧୀନତାର ପରବର୍ତ୍ତୀ ପର୍ଯ୍ୟାୟରେ ମଧ୍ୟ ହିନ୍ଦୋଳ ପ୍ରତି ତାଙ୍କର ଅବଦାନ ଥିଲା ଅତୁଳନୀୟ ।

ମାତୃଭୂମି ମାତୃଭାଷା ପାଇଁ ଯେଉଁମାନେ ଜୀବନ ଉତ୍ସର୍ଗ କରିଥାନ୍ତି ସେମାନଙ୍କର ଜୀବନ କେବେହେଲେ ମୂଲ୍ୟହୀନ ହୋଇ ରହି ଯାଏନି । ସମୟ ଆସେ କେହି ନା କେହି ଦେଶର ସୁଯୋଗ୍ୟ ସନ୍ତାନ ଇତିହାସର ସମାଧି ତଳୁ ସେମାନଙ୍କୁ ଉଦ୍ଧାର କରିଥାନ୍ତି । ସେମାନଙ୍କର ବ୍ରୋଞ୍ଜର ପ୍ରତିମୂର୍ତ୍ତି ନଥାଇ ପାରେ । ତାଙ୍କ ନାମରେ ବିଶାଳ ଭବନ ନାମିତ ହୋଇ ନଥାଇ ପାରେ । ତାଙ୍କ ପ୍ରତି ଛବିରେ ତାଙ୍କ ପରବର୍ତ୍ତୀ ବଂଶଧରମାନେ ଫୁଲ ଚନ୍ଦନ ନଦେଇ ପାରନ୍ତି । ତଥାପି ସମୟ ଆସେ ସେମାନଙ୍କ ଜୀବନର ବଳିଦାନ ସତ୍ୟର କେଉଁ ଅତଳ ଗର୍ଭରୁ ପୁନର୍ବାର ଜନ୍ମ ନେଇଥାଏ । ପୂର୍ବ ଅ୍ଧାୟରେ ଆମେ 'ମଣିପାଳ'ଙ୍କ ବିଷୟରେ ଜାଣିଲେ ଏବଂ ପରବର୍ତ୍ତୀ ଅଧ୍ୟାୟରେ ସେହିପରି ଜଣେ ମହାନ୍ ତ୍ୟାଗୀ ହିନ୍ଦୋଳର ବରପୁତ୍ରଙ୍କ ବିଷୟରେ ଜାଣି ପାରିବା । କିନ୍ତୁ ଏଥି ପାଇଁ ଆଞ୍ଚଳିକ ଜନସମୁହର ସହଯୋଗର ଆବଶ୍ୟକତା

ରହିଛି । ଆମେ ଢେଙ୍କାନାଳ ଇତିହାସ ପଢିଲେ, ଯଦି ସ୍ୱାଧୀନତା ସଂଗ୍ରାମୀ ବୈଷ୍ଣବ ପଟ୍ଟନାୟକ ବାଜିରାଉତ ଇତ୍ୟାଦିଙ୍କ ମର ଶରୀର ଗୁଡ଼ିକୁ ବାଉଁଶ ଭେଳା ସାହାର୍ଯ୍ୟରେ କଟକ ନେଇ ନଥାନ୍ତେ କିମ୍ୱା ଶବ ଧାରରେ କବି ସଚ୍ଚିଦାନନ୍ଦ ରାଉତରାୟ ସାମିଲି ହୋଇ ନଥାନ୍ତେ, ହୁଏତ ଭାରତ ବର୍ଷର ପ୍ରଥମ ଶହୀଦ ବାଜିରାଉତ ଆଜି ଲୋକ ଲୋଚନକୁ ଆସିପାରି ନଥାନ୍ତେ । ଆଜି ଆମ ସହିତ ନାହାନ୍ତି ଢେଙ୍କାନାଳର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ବୈଷ୍ଣବ ପଟ୍ଟନାୟକ । ତାଙ୍କ ସମଗ୍ର ଜୀବନର ପ୍ରତି ମୂହୁର୍ତ୍ତ ସେ ଦେଶ ପାଇଁ ତ୍ୟାଗ କରି ଚାଲିଥିଲେ । କିନ୍ତୁ ଆଜି ? ତାଙ୍କ ଜୀବନୀ ଉପରେ ଖଣ୍ଡେ ପୁସ୍ତକ କି ପ୍ରକାଶିତ ହୋଇ ପାରିଲା ନାହିଁ । ଯାହାକି ଭବିଷ୍ୟତ ନାଗରିକ ମନାଙ୍କ ପାଇଁ ଏକ ଆଦର୍ଶର ଚଲାପଥ ହୋଇ ପାରିଥାନ୍ତା । ତେଣୁ ଗୋପବନ୍ଧୁ ତାଙ୍କ ଦରଦୀ ହୃଦୟରେ ଗାଇଥିଲେ :-

"ମହାତ୍ମା ଭାଷଣ ମହାତ୍ମା କଷଣ
ଏ ଜଗତେ କେବେ ନୁହେଁ ଅକାରଣ" ।

ସେମାନେ କେବେହେଲେ ପରିଚୟହୀନ ହୋଇ ରହିବେ ନାହିଁ ।

## ସ୍ୱାଧୀନତାର ପରବର୍ତ୍ତୀ ପର୍ଯ୍ୟାୟ ଏବଂ ହିନ୍ଦୋଳ

ଇତିହାସ ସ୍ଥିତିଶୀଳ ନୁହେଁ । ଏହା ଗତିଶୀଳ । ଇତିହାସ ଯେତେବେଳେ ଗତିଶୀଳ ହୋଇ ବହୁ ଦୂରକୁ ଚାଲିଯାଇ ଥାଏ ତାକୁ ପୁଣି ଉଦ୍ଧାର କରିବା ପାଇଁ ପ୍ରଜ୍ଞାବାନ୍ ପୁରୁଷ ମାନଙ୍କର ଆବଶ୍ୟକତା ପଡ଼ିଥାଏ । ସେମାନେ ସେମାନଙ୍କର ଜ୍ଞାନ ପ୍ରଦୀପକୁ ପ୍ରଜ୍ୱଳିତ କରାଇ ସେହି ଆଲୋକରେ କେଉଁ ଅତଳ ଗର୍ଭରୁ ସେହି ଲୁପ୍ତ ଇତିହାସକୁ ଉଦ୍ଧାର କରନ୍ତି ତାହା ଜାଣିଲେ ବିସ୍ମୟ ହେବାକୁ ପଡିଥାଏ । ସେହି ଇତିହାସର ବିଷୟ ବସ୍ତୁ ପରବର୍ତ୍ତୀ ଐତିହାସିକ ମାନଙ୍କୁ ଇତିହାସ ଲେଖିବାରେ ଖୋରାକ ଯୋଗାଇ ଥାଏ । ଇତିହାସକୁ ଉଦ୍ଧାର କରିବା, ଖୋରାକ ପାଇଁ ଇତିହାସ ଲେଖିବା ତା ଅପେକ୍ଷା ସେମାନେ ଅନେକ ମହାନ୍ ଯେଉଁମାନେ ଇତିହାସ ସୃଷ୍ଟି କରିଥାନ୍ତି । କ୍ଷଣ ଭଙ୍ଗୁର ଦୁନିଆଁରେ ଦିନେ କାଳର କରାଳ ଗର୍ଭରେ ସବୁକିଛି ଲୀନ ହୋଇଯିବ । କିନ୍ତୁ ଯାହା ରହିଯିବ ସେହି ହିଁ ହେବ ଇତିହାସ । ଯେଉଁ ଇତିହାସ ପରବର୍ତ୍ତୀ ପିଢିଙ୍କୁ ପ୍ରେରଣା ଯୋଗାଇବ । ସେମାନଙ୍କ ହୃଦୟରେ ଜାତୀୟତା ଭାବର ଉଦ୍ରେକ କରାଇବ । ଇତିହାସ ମଣିଷ ମନଭିତରେ ଥିବା ବିଭିନ୍ନ ଭାବଧାରା ଇତ୍ୟାଦିର ପରିବର୍ତ୍ତନ ଆଣିପାରିବ । ଦିନ ଥିଲା ଯେତେବେଳେ ଓଡ଼ିଶା କହିଲେ କେବଳ ଉପକୂଳବର୍ତ୍ତୀ

ଅଞ୍ଚଳକୁ ବୁଝାଉ ଥିଲା । ଆମେ ଓଡ଼ିଆ, ଅନ୍ଧାରୀ ମୂଲକ ଗଡ଼ଜାତ ଗୁଡ଼ିକରେ ଏହା ପ୍ରଶ୍ନବାଚୀ ସୃଷ୍ଟି କରୁଥିଲା । କିନ୍ତୁ ଆଜି ? ଆଜି ଗଡ଼ଜାତର ଅନ୍ଧାରୀ ମୂଲକର ଇତିହାସରେ ପରିବର୍ତ୍ତନ ଘଟିଛି । ଘଟିଛି ସମୟର ପରିବର୍ତ୍ତନ । ସ୍ୱାଧୀନତାର ୬୫ ବର୍ଷ ବିତିଗଲାଣି, ତଥାପି ଲେଖିବା ବାହୁଲ୍ୟ ଯେ, ପୂର୍ବଗଡ଼ଜାତ ଗୁଡ଼ିକୁ ଲକ୍ଷ କଲେ ଏହାର ବିଚାରଧାରା, ଅର୍ଥନୀତି, ସଂସ୍କୃତି ଏବଂ ଗମନା ଗମନର ଖାସ୍ ପରିବର୍ତ୍ତନ ଦେଖିବାକୁ ମିଳେନାହିଁ । ସ୍ୱାଧୀନତାର ପୂର୍ବବର୍ତ୍ତୀ ଏବଂ ପରବର୍ତ୍ତୀ ବିଚାର ଧାରାର ଦୂରତା ଅନେକ । ଯାହାକିଛି ପରିବର୍ତ୍ତନ ହୋଇଛି ଏହି ପରିବର୍ତ୍ତନର ଅନ୍ତଃସ୍ୱର ମଧ୍ୟରେ ରହିଛି କେଉଁ ମହାନ ପୁରୁଷମାନଙ୍କର ଆତ୍ମତ୍ୟାଗ । ସେହି ଆତ୍ମତ୍ୟାଗୀ ପୁରୁଷମାନେ ଆଜି ଆଉ ନାହାନ୍ତି । କେବଳ ଅଛନ୍ତି କିଛି ମୂକସାକ୍ଷୀ କର୍ମୀ ମାନେ । ସେମାନେ ମଧ୍ୟ ଆଜି ବାକ୍ ହୀନତା ଏବଂ ଶଯ୍ୟା ଶାୟୀ । ଏହାପରେ ସବୁ କିଛି ପାଲଟି ଯିବ ଇତିହାସ । ଆମେ ସବୁକିଛି ଭୂଲିଯିବା । କୋଣାର୍କ କଥା ବିଚାର କରାଯାଉ । ତାର ଭଗ୍ନାବିଶେଷ, ତାର କିମ୍ବଦନ୍ତୀ ଏବଂ ଧର୍ମପଦର ଆତ୍ମତ୍ୟାଗ ଆଜିତ ଆମକୁ ପ୍ରେରଣା ଯୋଗାଇ ଥାଏ ।

ସ୍ୱାଧୀନତାର ପୂର୍ବବର୍ତ୍ତୀ ଏବଂ ପରବର୍ତ୍ତୀ ସମୟରେ ଯେଉଁ କିମ୍ବଦନ୍ତୀ ଜନ ନାୟକ ମାନେ ହିନ୍ଦୋଳର ସମାଜସେବା, ଅର୍ଥନୀତି, ରାଜନୀତି ଏବଂ ଶିକ୍ଷା ନୀତି କ୍ଷେତ୍ରରେ ପରାକାଷ୍ଠା ପ୍ରଦର୍ଶନ କରି ସମଗ୍ର ହିନ୍ଦୋଳକୁ ଦିଗ୍ ଦର୍ଶନ ଦେଇଥିଲେ ସେମାନଙ୍କ ମଧ୍ୟରେ ଥିଲେ ଜଣେ ଯୁଗାନ୍ତକାରୀ ପୁରୁଷ ସ୍ୱର୍ଗତ ଅରକ୍ଷିତ ପତି । ନେତା ହେବାକୁ ସେ କେବେ ଆଗ୍ରହୀ ନଥିଲେ ତେଣୁ ସେ ନେତା ନହୋଇ ସେବକଟିଏ ହେବାର ସୁଦୂର ପ୍ରାସାରୀ କଳ୍ପନାରେ ସେ ନିଜର ଜୀବନ ବିତାଇ ଦେଇଥିଲେ । ଆସନ୍ତୁ ତାଙ୍କର ବ୍ୟକ୍ତିତ୍ୱ, କର୍ମମୟ ଜୀବନ ଏବଂ ତ୍ୟାଗ ପୂତ ସମାଜ ସେବା ଉପରେ ଆଲୋକପାତ କରିବା । ତା ପୂର୍ବରୁ ତାଙ୍କର ଜୀବନୀ ଉପରେ ଟିକିଏ ନଜର ପକାଇବା ବିଧେୟ ମନେକରେ ।

ଅରକ୍ଷିତ ପତିଙ୍କ ଜନ୍ମ ୧୯୧୦ ମସିହା ହିନ୍ଦୋଳ ପଞ୍ଚପଡ଼ା ଗ୍ରାମରେ । ତାଙ୍କ ପିତାଙ୍କ ନାମ ଥିଲା ପୁରନ୍ଦର ପତି ଏବଂ ମାତାଙ୍କ ନାମ ଥିଲା ପାଲୁଣୀ । ପିଲା ବୟସରୁ ସେ ପିତାମାତାଙ୍କୁ ହରାଇ ବସିଥିଲେ । ତେଣୁ ପରିବାରର ଲୋକମାନେ ତାଙ୍କୁ ଅରକ୍ଷିତିଆ ବୋଲି ଡାକନ୍ତି । ତେଣୁ ତାଙ୍କ ନାମ ଥିଲା ଅରକ୍ଷିତ ପତି । 'ଅରକ୍ଷିତକୁ ଦଇବ ସାହା' ନ୍ୟାୟରେ ଗାଁ ଚାଟଶାଳୀ ପାଠ ଶେଷ କରି ତଳମୂଳ ଗ୍ରାମରେ ମଧ୍ୟ ଇଂରାଜୀ ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲେ । ସେତେବେଳେ ହିନ୍ଦୋଳ ଗଡ଼ଜାତରେ ବିଶେଷ ଶିକ୍ଷାକ୍ଷେତ୍ର ନଥିବା

ହେତୁ ସେ ବ୍ରିଟିଶ ଶାସନାଧୀନ ଅନୁଗୋଳ ରାଜ୍ୟରେ ଶିକ୍ଷକତା କଲେ । ଗଡ଼ଜାତ ହିସାବରେ ହିନ୍ଦୋଳ ଏବଂ ଅନୁଗୋଳ ରାଜ୍ୟରେ ସମ୍ବନ୍ଧ କୌଣସି କାରଣ ବସତଃ ଭଲ ନଥିଲା । ତେଣୁ ଅନୁଗୋଳର ରାଜ୍ୟରେ ଶିକ୍ଷକତା କରୁଥିବା ହିନ୍ଦୋଳର ଲୋକମାନଙ୍କୁ ବାହାର କରି ଦିଆଗଲା । ତେଣୁ ଅରକ୍ଷିତ ପତି ଅନୁଗୋଳ ରାଜ୍ୟରୁ ଶିକ୍ଷକତା ଛାଡ଼ି ଗାଁକୁ ଚାଲିଆସିଲେ । ଅରକ୍ଷିତ ପତିଙ୍କ ମାମୁଁଘର ରାସୋଳ । ତାଙ୍କ ମାମୁଁ ଥିଲେ ସାର୍ତ୍ତୁକ ବ୍ରହ୍ମା । ସାର୍ତ୍ତୁକ ବ୍ରହ୍ମା ହିନ୍ଦୋଳ ରାଜାଙ୍କ ସୁଆର ଥିଲେ । ତେଣୁ ସେ ରାଜାଙ୍କୁ ଭଣଜା ଅରକ୍ଷିତ ପତିଙ୍କ ବିଷୟରେ ସବୁକଥା କହିଲେ । ତେଣୁ ରାଜ ଅନୁଗ୍ରହରୁ ଅରକ୍ଷିତ ପତି ହିନ୍ଦୋଳରେ ପୁନର୍ବାର ଶିକ୍ଷକ ଭାବରେ ନିଯୁକ୍ତି ପାଇଲେ । ତାଙ୍କର ସମୟାନୁ ବର୍ତ୍ତିତା, ଶିକ୍ଷା ପ୍ରଣାଳୀ ତଥା ଉତ୍ତମ ବ୍ୟବହାରରେ ରାଜା ନବ କିଶୋର ସିଂହଙ୍କ ଅପଣାର ହୋଇ ଗଲେ ।

ହିନ୍ଦୋଳରେ ଶିକ୍ଷକତା କଲେ ମଧ୍ୟ ଗାଁରେ ସେ ସର୍ବ ସାଧାରଣଙ୍କ ସହ ମେଳାପୀ ଥିଲେ । ପିଲା ବେଳରୁ ତାଙ୍କର ଏକ ଅସାଧାରଣ ପ୍ରତିଭା ଥିଲା । ଗାଁ ଠାକୁର ଭଗବତ ଜୀଉଙ୍କର ସ୍ଥାନ ପ୍ରତି ରବିବାର ଦିନ ନିଜ ହାତରେ ଖଡ଼ିକା ଧରି ସଫା କରିବା ତାଙ୍କର ଅଭ୍ୟାସ ଥିଲା । ଆଜି କାଲି ପରି ଗାଁ ଦାଣ୍ଡ ସିମେଣ୍ଟ ଚଟାଣ ନଥିଲା କିମ୍ବା ପିଚୁ ରାସ୍ତା ନଥିଲା । ବର୍ଷା ଋତୁ ପରେ ପରେ ଅର୍ଥାତ୍ ମାର୍ଗଶିର ମାସରେ ଗାଁ ଦାଣ୍ଡ ଶୁଖି ଯାଇଥାଏ । ତେଣୁ ଗାଁ ଭଗବତ ଜୀଉଙ୍କ ଠାରୁ ପଶ୍ଚିମକୁ ପ୍ରାୟ ଦୁଇ କିଲୋମିଟର ପର୍ଯ୍ୟନ୍ତ ପ୍ରତି ରବିବାର ଦିନ ଝାଡୁକରି ଗାଁ ଦାଣ୍ଡ ପରିଷ୍କାର କରନ୍ତି । ପଞ୍ଚପଡ଼ାର ବିଭିନ୍ନ ପର୍ବ ପର୍ବାଣି ମାନଙ୍କ ମଧ୍ୟରେ ପ୍ରଧାନ ପର୍ବଥାଏ ଦୋଳ ଯାତ୍ରା । ସେଦିନ ସମସ୍ତେ ନୂଆ ପୋଷାକ ପିନ୍ଧି ବାହାରିଲା ବେଳକୁ ଅରକ୍ଷିତ ମାଷ୍ଟ୍ରେ ଗୋଟିଏ ଗାଣ୍ଡୁଆ ଏବଂ ହାତରେ ଝାଡୁ ଧରି ବାହାରନ୍ତି । ସତେ ଯେପରି ଗାଁ ଦାଣ୍ଡ ଝାଡୁ କରିବା ତାଙ୍କର ଜୀବିକା । ତାଙ୍କୁ କେହି ପରିହାସ କଲେ ସେ କହନ୍ତି, ପୁରୀ ବଡ଼ଦାଣ୍ଡ ହେଉଛି ସବୁଠାରୁ ପବିତ୍ର । ଦାଣ୍ଡକୁ ଦାଣ୍ଡ ଲାଗି ପୁରୀ ବଡ଼ଦାଣ୍ଡ ସହିତ ସବୁ ଦାଣ୍ଡ ଗୁଡ଼ିକ ସଲଗ୍ନିତ ହୋଇଥିବା ହେତୁ ଗାଁ ଦାଣ୍ଡବି ପବିତ୍ର । ତେଣୁ ଗାଁ ଦାଣ୍ଡ ଝାଡୁ କରିବା ଯାହା ପୁରୀ ବଡ଼ଦାଣ୍ଡ ଝାଡୁ କରିବା ତାହା । ଏହିପରି ସେ ଲୋକମାନଙ୍କୁ ଉପଦେଶ ଦିଅନ୍ତି । ଗ୍ରାମ ପରିଚାଳନା ପରିଷଦରେ ନଥିଲେ ମଧ୍ୟ ଗ୍ରାମର ସମଷ୍ଟି ଗତ କାର୍ଯ୍ୟରେ ଯୋଗ ଦିଅନ୍ତି ।

କଥାରେ କହନ୍ତି 'ସ୍ୱର୍ଗକୁ ନେଶୁଣି ନାହିଁ କି' ବଡ଼ ଲୋକଙ୍କୁ ଉତ୍ତର ନାହିଁ । ଏହି ନ୍ୟାୟରେ ପଞ୍ଚପଡ଼ାରେ ଗୋଟିଏ, ବଡ଼ ସମସ୍ୟା ସୃଷ୍ଟି ହୋଇଥାଏ । ଗାଁ ଲୋକେ କେହି

ମୁହଁ ଖୋଲି କହିବା ପାଇଁ ସାହାସ ବାନ୍ଧି ପାରୁନଥିଲେ । ଦିନକୁ ଦିନ ସମସ୍ୟା ଜଟିଳ ହେବାକୁ ଲାଗଥାଏ । କିଏ ମୁହଁ ଖୋଲିବ ? ରଜା ରାଜୁଡ଼ା କଥା । ସମସ୍ୟାଟି ହେଲା ଏହିପରି :

ହିନ୍ଦୋଳ ରାଜା ନବକିଶୋର ସିଂହଙ୍କ ପିତା ଜନାର୍ଦ୍ଦନ ସିଂହଙ୍କ ପରଲୋକ ବେଳକୁ ପୁତ୍ର ନବ କିଶୋର ସିଂହ ନାବାଳକ ଥିବାରୁ କଟକରୁ ଶ୍ୟାମ ସୁନ୍ଦର ନନ୍ଦ ପଲିଟିକାଲ ଏଜେଣ୍ଟ ଭାବେ ଆସି ରାଜକାର୍ଯ୍ୟ ଚଳାଉ ଥିଲେ । ସେତେବେଳକୁ ପଞ୍ଚପଡ଼ା ପାଞ୍ଚଗୋଟି ଚଉଦୀ ଥିଲା । ଏହି ଚଉଦୀ ଗୁଡ଼ିକ ହେଲା ୧-ଗୁହିରା, ୨-ଧନ୍ଦାରି, ୩- ନୁଆଁଭୁଇଁ, ୪-ବେଡା, ୫-ଗୋବରା । ଏଠାରେ ପାଞ୍ଚଜଣ ସର୍ବରାକାର ଥିଲେ । ଭଗବତ ଗାଦିକୁ ନେଇ ପରସ୍ପର ମନୋମାଳିନ୍ୟ ହେବାରୁ ପ୍ରଜା ଆନ୍ଦୋଳନକୁ ଆଖି ଆଗରେ ରଖି ଚତୁର ଶ୍ୟାମସୁନ୍ଦର ନନ୍ଦ ପାଞ୍ଚଗୋଟି ଚଉଦୀକୁ ଏକତ୍ରିତ କରାଇ ପଞ୍ଚପଡ଼ା ନାମରେ ବିହିତ କରାଇଲେ । ପଞ୍ଚପଡାରେ ନୂତନ ଭଗବତ ଜୀଉ ପ୍ରତିଷ୍ଠା କରାଇଲେ ଏବଂ ତାଙ୍କ ନାମରେ ପାଞ୍ଚ ଏକର ତୈଳା ଜମି ଖଞ୍ଜା କରାଇ ଦେଲେ । ଉକ୍ତ ଜମି ଜମାକୁ ଦେବୋତ୍ତର ଅଧିନରେ ନଦେଇ ଭଗବତ ଜୀଉଙ୍କ ନାମରେ କରିଦେଲେ । ପଞ୍ଚପଡ଼ା ଗୋଟିଏ ରାଜସ୍ୱ (ରେଭିନ୍ୟୁ) ଗ୍ରାମ ଭାବରେ ପରିଗଣିତ ହେଲା ଏବଂ ହୃଷିକେଶ ପତି ହେଲେ ପଞ୍ଚପଡ଼ାର ସର୍ବରାକାର । ତେଣୁ ଭଗବତ ଜୀଉଙ୍କର ସଂପତ୍ତି ଭଗବତ ଜୀଉଙ୍କ ନାମରେ ରହିଲା ଏବଂ ଓଗେର ରହିଲେ ହୃଷୀକେଶ ପତି । (ଭଗବତ ଜୀଉ ଓଗେର ହୃଷୀକେଶ ପତି) ଯାହାହେଉ ହୃଷୀକେଶ ପତି ଏହି ଜମିଗୁଡ଼ିକୁ ଚାଷୋପଯୋଗୀ କରାଇବା ସଙ୍ଗେ ସଙ୍ଗେ ଭଗବତ ଜୀଉଙ୍କ ପାଇଁ ଗୋଟିଏ ମନ୍ଦିର ମଧ୍ୟ ତୋଲାଇଲେ । ଏହାର ସମସ୍ତ ଖର୍ଚ୍ଚ ସେ ବହନ କରିଥିବା ହେତୁ ଜମିର ଉପାର୍ଜିତ ଅର୍ଥରୁ ମନ୍ଦିର ଚଳାଇବା ସଙ୍ଗେ ସଙ୍ଗେ ଅବଶିଷ୍ଟ ଅର୍ଥ ନିଜେ ରଖୁଥିଲେ । ଏହିପରି ଅନେକ ବର୍ଷ ଚାଲିବା ଫଳରେ ଜନ ଅସନ୍ତୋଷ ଦେଖା ଦେଇଥିଲା । କିନ୍ତୁ ସମ୍ମାନ ଦୃଷ୍ଟିରୁ କେହିହେଲେ ସ୍ୱର ଉତ୍ତୋଳନ କରୁନଥିଲେ । ଗ୍ରାମବାସୀଙ୍କ ତରଫରୁ ଅରକ୍ଷିତ ପତି ପ୍ରଥମେ ହୃଷିକେଶ ପତିଙ୍କୁ ପଚାରି ଥିଲେ ଭଗବତ ଜୀଉ ମନ୍ଦିର ଏବଂ ଜମି ବାବଦରେ ଆପଣଙ୍କୁ ଆଉ କେତେ ଅର୍ଥ ପାଇବାକୁ ବାକି ଅଛି ? ସେ ଦେୟ ଆମ୍ଭେ ଆପଣଙ୍କୁ ପରିଶୋଧ କରିଦେବୁ ଆପଣ ଭଗବତ ଜୀଉଙ୍କ ଜମି ଛାଡି ଗ୍ରାମବାସୀଙ୍କୁ ହସ୍ତାନ୍ତର କରିଦିଅନ୍ତୁ । ହୃଷୀକେଶ ପତିଙ୍କର କହିବା ଅନୁସାରେ ଅରକ୍ଷିତ ପତି ନିଜ ଅମାରରୁ (ଧାନ କୁଠିରୁ) ସମସ୍ତ ଧାନ ବିକ୍ରୟ କରି ଜୀଉଙ୍କର ସମସ୍ତ ଜମା ଜମିକୁ ଉଦ୍ଧାର କରିଥିଲେ ।

କହି ରଖିବା ଉଚିତ୍ ଯେ ହୃଷିକେଶ ପତିଙ୍କ କୌଣଷି ମନ୍ଦ ଉଦ୍ଦେଶ୍ୟ ନଥିଲା ଏବଂ ପୁରଷାନୁକ୍ରମେ ଅଦ୍ୟାବଦ୍ଧି ସୁଦ୍ଧା ସେହି ପରିବାର ଜମା ଜମିର ଓଗେର ଅଛନ୍ତି ।

ଏହାକୁ ଲେଖିବାର ଅଭିପ୍ରାୟ ଏହିକି ଯେ, ଏହିଠାରୁ ଅରକ୍ଷିତ ପତିଙ୍କର ଦେଶ ସେବାରେ ପ୍ରବେଶ କରିବା ଆରମ୍ଭ ହୋଇଥିଲା । ପରେ ପରେ ସେ ଭଗବତ ଜୀଉଙ୍କର ସେବାରେ ନିଜକୁ ସମର୍ପିତ କରିଦେଇ ଥିଲେ । ଭଗବତ ଜୀଉଙ୍କର ବିଭିନ୍ନ ସମୟରେ ମେଳା ମହୋତ୍ସବ ପାଇଁ ପଞ୍ଚପଡାରେ ଦୁଇଗୋଟି ଲୀଳା ନାଚଦଳ ଗଠନ କରିଥିଲେ । ସେମାନଙ୍କ ଠାରୁ ଅନୁକରଣ କରି ସୁଦୂର କଲିକତାରେ ଚାକିରୀ କରୁଥିବା ବ୍ରାହ୍ମଣ ମାନେ ଲୀଳା ନାଚରୁ ଅପେରା ପର୍ଯ୍ୟନ୍ତ ପ୍ରଦର୍ଶନ କଲେ । ଫଳରେ ସୁଦୂର କଲିକତାର କଳାର ପ୍ରଭାବ ପଞ୍ଚପଡ଼ା ଉପରେ ପଡ଼ିଥିଲା । ଗାଁରେ ଥିବା ତଅଁଳା ସଂପ୍ରଦାୟର ଲୋକମାନେ ଦଣ୍ଡନାଚ ଆରମ୍ଭ କରି ପଞ୍ଚପଡ଼ାରେ କଳାର ବିକାଶ ଘଟାଇ ଥିଲେ । ଏହିପରି ଗାଁରେ ଗୋଟିଏ ସାଂସ୍କୃତିକ ପରିବେଶ ସୃଷ୍ଟି କରାଯାଇ ପାରିଥିଲା । କହିବା ବାହୁଲ୍ୟ ଯେ, ଏହା ମୂଳରେ ଥିଲେ ଅରକ୍ଷିତ ପତି ।

ତତ୍କାଳୀନ ହିନ୍ଦୋଳର କୃଷି, କାରିଗରୀ, ଅର୍ଥ ଏବଂ ଶିକ୍ଷାର ବିକାଶରେ ସେ ଥିଲେ ପଥ ପ୍ରଦର୍ଶକ । କୃଷି ଏବଂ କାରିଗରୀ ବିଦ୍ୟାର ଉନ୍ନତି ପାଇଁ ହିନ୍ଦୋଳ ପଞ୍ଚାୟତ ସମିତି ଜରିଆରେ ପଞ୍ଚପଡାରୁ ବିଜୟ କୁମାର ପତିଙ୍କୁ କୃଷି ଏବଂ ବିଶ୍ୱମ୍ବର ମାହାଳିକଙ୍କୁ ରାଜମିସ୍ତ୍ରୀ ଭାବରେ ଅଧିକ ଶିକ୍ଷା ପାଇଁ ଜିଲ୍ଲା ସ୍ତରକୁ ପଠାଇ ଥିଲେ । ଫଳରେ ବିଜୟ କୁମାର ପତି ଉନ୍ନତ ଧରଣର ଚାଷ କରିବା ସଙ୍ଗେ ସଙ୍ଗେ ଉନ୍ନତ କୃଷି ଯନ୍ତ୍ର ପାତିର ବ୍ୟବହାର ଅନ୍ୟମାନଙ୍କୁ ଶିକ୍ଷା ଦେଇ ପାରିଥିଲେ । ସେ ହିନ୍ଦୋଳରେ ଜଣେ ଉଚ୍ଚକୁଟୀର ଚାଷୀଭାବେ ପରିଗଣିତ ହୋଇ ପାରିଥିଲେ । ବିଶ୍ୱମ୍ବର ମାହାଳିକ ରାଜମିସ୍ତ୍ରୀ ଭାବରେ ହିନ୍ଦୋଳର ଗୁରୁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହା ଅରକ୍ଷିତ ପତିଙ୍କର ଉଦ୍ୟମ କ୍ରମେ ସଫଳ ହୋଇ ପାରିଥିଲା ।

ସେ ନିଜେ ଜଣେ ନିମ୍ନ ପ୍ରାଇମେରୀ ସ୍କୁଲ ଶିକ୍ଷକ ଥାଇ ପଞ୍ଚପଡ଼ାରେ ୧୯୦୮ ମସିହାରେ ଗଢାଯାଇଥିବା ନିମ୍ନ ପ୍ରାଇମେରୀ ସ୍କୁଲକୁ ଅପର ପ୍ରାଇମେରୀ ସ୍କୁଲରେ ପରିଣତ କରାଇ ଏହାକୁ ଟାଇଲି ଛପର କରିବାରେ ସେ ସଫଳ ହୋଇ ପାରିଥିଲେ । ଆଜି ଯେଉଁମାନେ ସରକାରଙ୍କର ଉଚ୍ଚ ପଦବୀରେ ଥିଲେ ଏବଂ ଅଛନ୍ତି, ବିଦେଶ ଯାଇ ବୈଦେଶିକ ଅଧିକାରୀ ହୋଇ ପାରିଛନ୍ତି, ବିଦେଶରେ ମଧ ପ୍ରତିଭା ସଂପନ୍ନ ହୋଇ ପାରିଛନ୍ତି, ଦିନେ ସେମାନେ

ଏହି ବିଦ୍ୟାଳୟର ଛାତ୍ର ଥିଲେ । ଗ୍ରାମର କଳା, ସଂସ୍କୃତି, ଦେବାଳୟ ଏବଂ ବିଦ୍ୟାଳୟ ଇତ୍ୟାଦିର ଇଂଙ୍କାଳ ସତେ ଯେପରି ଅରକ୍ଷିତ ପତିଙ୍କୁ ଛାଡ଼ି ପାରେନି ।

## ଅରକ୍ଷିତ ପତିଙ୍କ ମାନସ ସନ୍ତାନ: 'ଖଜୁରିଆକଟା'



ଖଜୁରିଆକଟା ହେଉଛି ହିନ୍ଦୋଳ ଉପଖଣ୍ଡର ପ୍ରାୟତଃ ମଧ୍ୟାଞ୍ଚଳ । ୫୫ ନମ୍ବର ଜାତୀୟ ରାଜ ପଥର ଗୁଡ଼ିଆ କାଟେଣୀଠାରୁ ହିନ୍ଦୋଳ ବ୍ଲକ ପର୍ଯ୍ୟନ୍ତ ଯାଇଥିବା ପକ୍କା ସଡ଼କ ହେଉଛି ହିନ୍ଦୋଳର ମୁଖ୍ୟ ସଡ଼କ । ଗୁଡ଼ିଆ କାଟେଣୀ ଠାରୁ ହିନ୍ଦୋଳ ଗଡ଼ ହେଉଛି ୧୫ କିଲୋମିଟର । ଗୁଡ଼ିଆ କାଟେଣୀ ଠାରୁ ଖଜୁରିଆ କଟା ହେଉଛି ୧୫ କିଲୋମିଟର । ଖଜୁରିଆଠାରୁ ହିନ୍ଦୋଳ ଗଡ଼ ହେଉଛି ୧୦ କିଲୋମିଟର । ଏହାର ପୂର୍ବାଞ୍ଚଳ ହେଉଛି ଢେଙ୍କାନାଳ ସୀମା ସହିତ, ପଶ୍ଚିମାଞ୍ଚଳ ହେଉଛି ଅନୁଗୋଳ ସୀମା ସହିତ, ଉତ୍ତରାଞ୍ଚଳ ହେଉଛି ଢେଙ୍କାନାଳ ସୀମା ସହିତ ଏବଂ ଦକ୍ଷିଣାଞ୍ଚଳ ହେଉଛି କଟକ-ନରସିଂହ ପୁର ସୀମା ସହିତ ସଲଗ୍ନିତ । ଖଜୁରିଆ କଟା ଥିଲା ଜନାକୀର୍ଣ୍ଣ ଅଞ୍ଚଳ । ଏଠାରେ ଜଙ୍ଗଲ କିମ୍ବା ପାହାଡ଼ ନଥିଲେ ବି ସୁଦ୍ଧା ଏହା ବଣୁଆ ମହୁଲ ଇତ୍ୟାଦି ବୃକ୍ଷ ଦ୍ୱାରା ଆଛାଦିତ ! ଏଠାକାର ଆମ୍ର କାନନ, ବିଭିନ୍ନ ପକ୍ଷୀଙ୍କର କଳରବ, ଆମ୍ରକାନନରେ କୋଇଲିର କୁହୁଡାକ ପରିବେଶର ନିର୍ଜନତାକୁ ମୁଖରିତ କରିବା ସଙ୍ଗେ ସଙ୍ଗେ ପଥାଚାରୀ ମାନଙ୍କର ବିଶ୍ରାମ ସ୍ଥଳୀ ଭାବେ ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟକୁ ପରିବୃଦ୍ଧି କରାଇଥାଏ । ନା' ଅଛି ଏଠାରେ ନଦନଦୀ ନା'ଅଛି ଝରଣା । ଦିନେ ହିନ୍ଦୋଳର ବାଗ୍‌ଦେବୀ ଏହି ସ୍ଥାନରୁ ଉଦ୍ଭାସିତ ହୋଇ ହିନ୍ଦୋଳ ଉପରେ ତାଙ୍କର କରୁଣା ବର୍ଷଣ କରିବେ ଏହା ଭାବିଲେ ବିସ୍ମିତ ହେବାକୁ ପଡ଼େ । ଆସନ୍ତୁ ଟିକିଏ ନଜର ପକାଇବା ସେଇ ଖଜୁରିଆ କଟା ଉପରେ ।

ଖଜୁରିଆ କଟା ଏହା ଦୁଇଟି ଶବ୍ଦ । ଖଜୁରିଆ ହେଉଛି ୧୦/୧୫ ଗୋଟି ପରିବାର ବିଶିଷ୍ଟ ଗୋଟିଏ ସାଇ । ଏଠି ସମସ୍ତେ କୃଷିଜୀବୀ । ଏହା ହେଉଛି ରଞ୍ଜାଗୋଳ ଗ୍ରାମର ଅଂଶ ବିଶେଷ । ରଞ୍ଜାଗୋଳ ହେଉଛି ଗୋଟିଏ ବହୁ ପୁରାତନ ରାଜସ୍ୱ ଗ୍ରାମ । ପୂର୍ବେ ଖଜୁରିଆ ସାଇର ଲୋକମାନେ ନିଜ ବ୍ୟବହାର ଉଦ୍ଦେଶ୍ୟରେ ନିକଟରେ ଗୋଟିଏ ଛୋଟ ପୋଖରୀ ନିର୍ମାଣ କରିଥିଲେ । ଏହାକୁ 'କଟା' କୁହାଯାଏ । କଟା କହିଲେ ପୋଖରୀ, ଗାଡ଼ିଆ ଏବଂ

ଚୁଆ ଇତ୍ୟାଦିକୁ ବୁଝାଇ ଥାଏ । (ମାଟି କଟା ହୋଇ ଗାଡ଼ିଆ ତିଆରି ହୋଇଥିବା ହେତୁ 'କଟା' କୁହାଯାଇଥାଏ) । ଖଜୁରିଆ କଟା କହିଲେ ବୁଝିବାକୁ ହେବଯେ ଖଜୁରିଆ ସହିତ ନିକଟସ୍ଥ ପୋଖରୀ । ଯାହାହେଉ ଏହି ସ୍ଥାନକୁ ଖଜୁରିଆ କଟା କୁହା ଯାଇଥାଏ ।

ପୋଖରୀର ପୂର୍ବାଞ୍ଚଳ ପଥୁରିଆ ଥିବାହେତୁ ଏହା ଚାଷପଯୋଗୀ ନଥିଲା । ତେଣୁ ରଂଞ୍ଜାଗୋଳ ଗ୍ରାମବାସୀ ସେହି ଅଞ୍ଚଳରେ ଆମ୍ବଗଛ ଲଗାଇ ଥିଲେ । ତେଣୁ ଦଶ ବର୍ଗ ମାଇଲ ବିଶିଷ୍ଟ ଅଞ୍ଚଳ କେବଳ ଆମ୍ବ ଗଛରେ ପରିପୂର୍ଣ୍ଣ ଥିଲା । ଏହା ହିନ୍ଦୋଳର ମୁଖ୍ୟ ସଡ଼କ ପାଶ୍ୱରେ ଥିବା ହେତୁ ପଥିକ, ବଳଦଗାଡ଼ି ତଥା ଯାନ ବାହନର ଚାଳକମାନେ ନିର୍ଦ୍ଦ୍ୱନ୍ଦରେ ବିଶ୍ରାମ ନେଇଥାନ୍ତି । ରାଜ ପରିବାର ତାଙ୍କର କଟକ ତୁଳସୀପୁର କୋଠିରୁ ନଅରକୁ ଆସିବା ସମୟରେ ଏବଂ ବିବାହ ଆଦି ଉତ୍ସବ ସମୟରେ ଖଜୁରିଆକଟା ଆମ୍ର କାନନରେ ବସି ବିଶ୍ରାମ ନେଇ କିଛି ସମୟ କଟାଇ ଥାନ୍ତି । ସନ୍ଧ୍ୟା ଉପଗତ ହେଲେ ରାଜବାଟୀ ଅଭିମୂଖେ ଯାତ୍ରା କରିଥାନ୍ତି । ମୋଟା ମୋଟି ଭାବରେ ଏହା ଗୋଟିଏ ଆଶ୍ରୟ ସ୍ଥଳୀ ଥିଲା । ଏହାର ମୁଖ୍ୟ କାରଣ ହେଲା ଏଠାରେ କୌଣସି ବଣ୍ୟ ହିଂସ୍ର ଜନ୍ତୁଙ୍କର ଭୟ ନଥିଲା ।

ଏଠାରେ ଜନ ସମାଗମର ଅନ୍ୟ ଏକ କାରଣ ହେଲା ବାଉଁଶ ବାହୀ ଯାନ ଗୁଡ଼ିକର ବିଶ୍ରାମ ସ୍ଥଳୀ । ସେତେବେଳେ କଲିକତାରେ ଥାଏ ଟିଟାଗଡ଼ କାଗଜ କଳ । ସେଠାରୁ ବାହାରୁ ଥିବା ହାତୀମାର୍କା, କାଗଜ ଓଡ଼ିଶାରେ ବିଖ୍ୟାତ ଥିଲା । ଏହି କାଗଜ ତିଆରି ସ୍ଥଳ ଥିଲା କଲିକତା । ଏହି କାଗଜ ତିଆରି ପାଇଁ ପ୍ରଚୁର କଞ୍ଚାମାଲ (ବାଉଁଶ) ଯାଇଥାଏ ହିନ୍ଦୋଳ ଜଙ୍ଗଲରୁ । ଏହାର ପରିବହନ ଦାୟିତ୍ୱରେ ଥିଲେ "ହିଲ୍‌ଜରସ୍" କମ୍ପାନୀ । ଏହି କମ୍ପାନୀ ହିନ୍ଦୋଳ ଜଙ୍ଗଲରୁ ଯାନ ସାହାର୍ଯ୍ୟରେ ବାଉଁଶ ନେଇ ହିନ୍ଦୋଳ ରୋଡ଼ ଷ୍ଟେସନ ଠାରେ ଜମାକରି ମାଲବାହୀ ରେଳ ଯୋଗେ କଲିକତା ନେଉଥିଲେ । ହିନ୍ଦୋଳ ଜଙ୍ଗଲରୁ ହିନ୍ଦୋଳ ରୋଡ଼ ଅଭିମୂଖେ ବାଉଁଶ ଧରି ଯାଉଥିବା ଯାନଗୁଡ଼ିକର ଚାଳକ ମାନେ ଏହି ଖଜୁରିଆ କଟାରେ ବିଶ୍ରାମ ନିଅନ୍ତି । କେହି କେହି ରାତ୍ରି ଯାପନ ମଧ୍ୟ କରିଥାନ୍ତି । ତେଣୁ ଦିବା ସମୟରେ ଏଠାରେ ଜନ କୋଳାହଳ ଦେଖାଯାଇଥାଏ ।

୧୯୩୮ ମସିହାରେ ଯେତେବେଳେ ଗଡ଼ଜାତ ମାନଙ୍କରେ ପ୍ରଜାମଣ୍ଡଳ ଗଠନ କରାଗଲା, ସେତେବେଳେ ପ୍ରଜାମଣ୍ଡଳ ପାଇଁ କିଛି ଜମି ଖଜୁରିଆକଟା ଠାରେ

ରଖାଯାଇଥିଲା । ପ୍ରଜାମଣ୍ଡଳର ସଭାପତି ଦିନବନ୍ଧୁ ଆଚାର୍ଯ୍ୟ ନିଜପାଇଁ ମଧ୍ୟ କିଛି ଜମି ରଖିଥିଲେ । ତାଙ୍କ ସହିତ ଅରକ୍ଷିତ ପତି ମଧ୍ୟ ସେଠାରେ କିଛି ଜମି ନିଜ ନାମରେ ରଖିଥିଲେ । ଏହି ଜମି ଗୁଡ଼ିକୁ ରାଜା ନବ କିଶୋର ସିଂହ ନୟାବାଦୀ ଭାବରେ ପ୍ରଦାନ କରିଥିଲେ ।

ଖଜୁରିଆ କଟାର ପ୍ରାକୃତିକ ପରିବେଶ ଉପରେ ଲକ୍ଷରଖି ଦୂରଦର୍ଶୀ ରାଜା ନବକିଶୋର ସିଂହ ବିରାଟ ପରିକଳ୍ପନା କରିଥିଲେ । ତାଙ୍କର ଥିଲେ ତିନି ପୁଅ । ସାନ ଦୁଇ ପୁଅ ପାଇଁ ରାଜା ବାଲିମି ଠାରେ ଗୋଟିଏ ନଅର କରିଦେବେ । ଏହାହିଁ ଥିଲା ଦୂରଦର୍ଶୀ ରଜାଙ୍କର ପରିକଳ୍ପନା । ବାଲିମି ଗାଁ ହେଉଛି ଖଜୁରିଆ କଟାଠାରୁ ପ୍ରାୟ ଏକ ମାଇଲ ଦୂରହେବ । ଏହା ମୁଖ୍ୟ ସଡ଼କର ପାଶ୍ୱରେ ଅବସ୍ଥିତ । ସେହି ଦୃଷ୍ଟିରୁ ରାଜାଙ୍କର କିଛି ଜମି ମଧ୍ୟ ଥିଲା । ତେଣୁ ଦୂରଦର୍ଶୀ ରାଜା ଗୁଲେହିରୁ ଥାନାକୁ ଉଠାଇନେଇ ବାଲିମିରେ ପ୍ରତିଷ୍ଠା କରିଥିଲେ । ସେଠାରେ ମଧ୍ୟ ଗୋଟିଏ ଡାକଘର ପ୍ରତିଷ୍ଠା କରାଇ ଥିଲେ ।

ସେ ସେଠାରୁ ପଶ୍ଚିମକୁ ଏକ କିଲୋମିଟର ଗଲେ ପଡ଼ିବ ରଞ୍ଜାଗୋଳ ଗ୍ରାମ । ହିନ୍ଦୋଳ ମଧ୍ୟରେ ଥିବା ଗ୍ରାମ ଗୁଡ଼ିକ ମଧ୍ୟରୁ ରଞ୍ଜାଗୋଳ ଥିଲା ରାଜ ବଂଶର ସବୁଠାରୁ ବିଶ୍ୱାସୀ ଏବଂ ପ୍ରିୟ ଗ୍ରାମ । ରଞ୍ଜାଗୋଳ ପଦ୍ମ ପୋଖରୀରୁ ପ୍ରତିଦିନ ଏକ ଭାର ପଦ୍ମ ରାଜବାଟୀକୁ ପୂଜା ଉଦ୍ଦେଶ୍ୟରେ ଯାଉଥିଲା । ରାଜାଙ୍କର ସେଠି ଅନେକ ଗୁଡ଼ିଏ ଜମି ଥିଲା । ରଞ୍ଜାଗୋଳ ମଠ ପାଇଁ ମଧ୍ୟ ରାଜା କିଛି ଜମି ଖଞ୍ଜା ରଖିଦେଇ ଥିଲେ । ଶୁଣିବାକୁ ମିଳେ ଯେ, ପ୍ରାୟ ୧୬୫୦ ମସିହା କଥା । ହିନ୍ଦୋଳ ଯୁବ ରାଜ ମାମୁଁ ଘରଥିଲା ଅନୁଗୋଳ ରାଜ ପରିବାର । କୌଣଷି ଅସ୍ୱାଭାବିକ ପରିସ୍ଥିତି ଲକ୍ଷ କରି ସେ ରାତିରେ ଚାଲି ଆସିଲେ ସନ୍ତିରି ଗଡ଼କୁ । ସେଠାରୁ ଏହି ରଞ୍ଜାଗୋଳ ପ୍ରଧାନ ବଂଶ କେହି ରାଜକୁମାରଙ୍କୁ ଡୋଲିରେ ବୋହି ଆଣି ବମ୍ପା ଗ୍ରାମରେ ଛାଡିଦେଇଥିଲେ । ତେଣୁ ରାଜା ଖୁସି ହୋଇ ପ୍ରଧାନ ବଂଶକୁ ରଞ୍ଜାଗୋଳ ଗ୍ରାମରେ ଜମିଦେଇ ଅବସ୍ଥାପିତ କରାଇଥିଲେ । ତେଣୁ ସେମାନେ ଗଡ଼ ସନ୍ତିରିରୁ ଆସି ରାଜ ପରିବାର ଏବଂ ରଞ୍ଜାଗୋଳ ଗ୍ରାମ ମଧ୍ୟରେ ଉତ୍ତମ ବୁଝାମଣା ରଖି ଏହି ସ୍ଥାନ ଗୁଡ଼ିକର ଉନ୍ନତି କଳ୍ପେ ଆଗୁସାର ଥିଲେ । ଏହି ସମୟରେ ପ୍ରାୟତଃ ୧୯୪୬ ମସିହା ବେଳକୁ ରାଜା ନବ କିଶୋର ସିଂହ ରଞ୍ଜାଗୋଳରେ ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରାଇଥିଲେ ।

ସ୍ୱାଧୀନତା ପୂର୍ବରୁ ଯଦି ହିନ୍ଦୋଳର ଶିକ୍ଷା ଉପରେ ଦୃଷ୍ଟିପାତ କରାଯାଏ ହିନ୍ଦୋଳରେ ଶିକ୍ଷାର ପ୍ରସାର ସେତେ ଉନ୍ନତ ନଥିଲା । ସ୍ୱାଧୀନତା ବେଳକୁ ହିନ୍ଦୋଳରେ ଗୋଟିଏ ମଧ୍ୟ

ଇଂରାଜୀ ବିଦ୍ୟାଳୟ ଏବଂ ଗୋଟିଏ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଥିଲା । ପୁଣି ତାହାଥିଲା ହିନ୍ଦୋଳ ଗଡ଼ରେ । ହିନ୍ଦୋଳ ଗଡ଼ ଥିଲା ଗୋଟିଏ ମେଲେରିଆ ପ୍ରବଣ ସ୍ଥାନ । ଅସ୍ୱାସ୍ଥ୍ୟକର ଜଳବାୟୁ ମଧ୍ୟ । ତେଣୁ ସେଠାରେ କୌଣସି ପିଲା ପାଠ ପଢି ଯିବା ପାଇଁ ଆଗ୍ରହ ପ୍ରକାଶ କରୁନଥିଲେ । ଯେଉଁ ପିଲାମାନେ ସେଠାରେ ରହି ପାଠ ପଢୁଥିଲେ ସେମାନେ ଯଦି ମେଲେରିଆ ଜ୍ୱରରେ ଆକ୍ରାନ୍ତ ହେଲେ , ତାହାହେଲେ ସେମାନେ ପୁନର୍ବାର ସେଠାକୁ ଯାଉ ନଥିଲେ । ଫଳରେ ହିନ୍ଦୋଳରେ ଥିବା ମଧ୍ୟ ଇଂରାଜୀ ବିଦ୍ୟାଳୟ ଏବଂ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଆଶାନୁରୂପକ ଛାତ୍ର ଛାତ୍ରୀ ହେଉ ନଥିଲେ ।

ତଳମୂଳ ଅନୁଗୋଳ ଜିଲ୍ଲାର ଗୋଟିଏ ବଡ଼ ଗ୍ରାମ । ରାଜତନ୍ତ୍ରର ଲୋପ ପରେ ଇଂରେଜ ମାନଙ୍କ ଦ୍ୱାରା ଏହା ଶାସିତ ହେଉଥିଲା । ତେଣୁ ସେହି ସମୟରେ ହିନ୍ଦୋଳ ଅପେକ୍ଷା ଅନୁଗୋଳରେ ଶିକ୍ଷାନୁଷ୍ଠାନ ଗଢି ଉଠିଥିଲା । ସେଠାରେ ପ୍ରାଥମିକ ବିଦ୍ୟାଳୟ ସ୍ଥାପିତ ହୋଇଥିଲା ୧୮୮୫ ମସିହାରେ । ତଳମୂଳ ଗ୍ରାମଟି ଅନୁଗୋଳ ଏବଂ ହିନ୍ଦୋଳର ସୀମାବର୍ତ୍ତି ହୋଇ ଥିବାରୁ ହିନ୍ଦୋଳ ଗଡ଼ଜାତର ଛାତ୍ରମାନେ ହିନ୍ଦୋଳର ଅସ୍ୱାସ୍ଥ୍ୟକର ଜଳବାୟୁକୁ ନଯାଇ ପ୍ରାୟ ଛାତ୍ର ତଳମୂଳ ସ୍କୁଲକୁ ପଢିବା ପାଇଁ ଯାଉଥିଲେ । ତେଣୁ ହିନ୍ଦୋଳ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପାଇଁ ଛାତ୍ର ସଂଖ୍ୟା କମ୍ ହୋଇ ଯାଉଥିଲା । ପୁଣି ହିନ୍ଦୋଳରେ ଆଉ Feeding M.E. School ନଥିଲା । ସବୁ ପରିସ୍ଥିତିକୁ ଦୃଷ୍ଟିରେ ରଖି ରାଜା ନବ କିଶୋର ସିଂହ ସ୍ୱାଧୀନତା ପୂର୍ବରୁ ରଂଜାଗୋଳ ଠାରେ ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟ ସ୍ଥାପନ କଲେ । କାରଣ ରଂଜାଗୋଳ ଥିଲା ତାଙ୍କର ପ୍ରିୟ ଗ୍ରାମ ।

ରଂଜାଗୋଳରେ ସ୍କୁଲ ହେଲେ ମଧ୍ୟ ସେହିପରି ଆଶାନୁରୂପକ ଛାତ୍ର ହେଲେ ନାହିଁ । ତା ପରେ ଦେଶ ସ୍ୱାଧୀନ ହେଲା । ଗଡ଼ଜାତ ଗୁଡ଼ିକର ମିଶ୍ରଣ ହେଲା । ରାଜାଙ୍କ ହାତରେ ଶାସନ ରହିଲା ନାହିଁ । ରଂଜାଗୋଳ ଏବଂ ବାଲିମି ପ୍ରତି ତାଙ୍କର ଯେଉଁ ଆନ୍ତରିକତା ଥିଲା ତାହା ଆସ୍ତେ ଆସ୍ତେ ମଉଳି ଗଲା । ସେ ଯାହା କରିଥିଲେ ଅର୍ଥାତ୍ ବାଲିମ ଥାନା, ବାଲିମି ଡ଼ାକଘର ଏବଂ ରଂଜାଗୋଳ ମ୍ନ ଇଂରାଜୀ ବିଦ୍ୟାଳୟ ତାର ସ୍ଥିତାବସ୍ଥା ବଜାୟ ରହିଥିଲା । କିନ୍ତୁ ରଂଜାଗୋଳ ମଧ୍ୟ ଇଂରାଜୀ ବିଦ୍ୟାଳୟ ହିନ୍ଦୋଳ ଉଚ୍ଚ ଇଂରାଜୀ ବିଦ୍ୟାଳୟର ଛାତ୍ର ଯୋଗାଣ ସ୍କୁଲ ଭାବରେ ରହିପାରିଲା ନାହିଁ । କାରଣ ସେଠାରେ ଛାତ୍ର ସଂଖ୍ୟା ଖୁବ୍ କମ୍ । ଯେଉଁ କେତେଜଣ ଛାତ୍ର ସପ୍ତମ ଶ୍ରେଣୀ ଉତ୍ତୀର୍ଣ୍ଣ ହେଲେ ସେମାନେ ହିନ୍ଦୋଳ ଯାଇ ସେଠାରେ ଛାତ୍ରାବାସରେ ରହି ପାଠ ପଢିବା ପାଇଁ ସେମାନଙ୍କର ଆର୍ଥିକ ପରିସ୍ଥିତି ମଧ୍ୟ

ନଥିଲା । କାରଣ ସେ ଅଞ୍ଚଳର ପ୍ରାୟ ସମସ୍ତେ ଥିଲେ କୃଷିଜୀବୀ । ମରୁଡି ଥିଲା ହିନ୍ଦୋଳର ଚିରସାଥୀ । ସ୍ୱାଧୀନତା ପାଇଲା ବେଳକୁ ହିନ୍ଦୋଳର ବଡ଼ ବଡ଼ ଗ୍ରାମ ଗୁଡ଼ିକରେ ନିମ୍ନ ପ୍ରାଇମେରୀ ଏବଂ ଅପର ପ୍ରାଇମେରୀ ପର୍ଯ୍ୟନ୍ତ ସ୍କୁଲ ରହିଥିଲା । ବହୁ ମେଧାବୀ ଛାତ୍ର ଛାତ୍ରୀମାନେ ଗ୍ରାମ ବିଦ୍ୟାଳୟରୁ ପାଠ ଶେଷକରି ଆର୍ଥିକଭାବରୁ ନିଜ ବସ୍ତାନି ବାନ୍ଧି ରହିଯାଉଥିଲେ । ଦେଶର ସ୍ୱାଧୀନତା ବେଳକୁ ଏହାଥିଲା ହିନ୍ଦୋଳ ଗଡ଼ଜାତରେ ଶିକ୍ଷାର ପରିବେଶ । ଆସନ୍ତୁ ନଜର ପକାଇବା ପରବର୍ତ୍ତୀ ହିନ୍ଦୋଳର ଶିକ୍ଷା ବ୍ୟବସ୍ଥା ଉପରେ ।

ସ୍ୱାଧୀନତା ପ୍ରାପ୍ତିର ୭୫ ବର୍ଷପରେ ହିନ୍ଦୋଳର ଶିକ୍ଷା ଏବଂ ୭୫ ବର୍ଷ ପୂର୍ବେ ହିନ୍ଦୋଳର ଶିକ୍ଷାକୁ ତୁଳନା କଲେ ଆମେ ଖଜୁରିଆ କଟାର ଗୁରୁତ୍ୱ ବେଶ୍ ଉପଲବ୍ଧି କରିପାରିବା । ଏହି ତୁଳନାହିଁ ଆମକୁ ହିନ୍ଦୋଳ ଉପରେ ସବୁକିଛିର ପ୍ରେରଣା ଯୋଗାଇ ପାରିବ ।

କୌଣସି ରାଜ୍ୟର ସାମଗ୍ରୀକ ଉନ୍ନତି କିମ୍ବା ବିକାଶ ତାର ଶିକ୍ଷା ଉପରେ ନିର୍ଭର କରିଥାଏ । ଗୋଟିଏ ସଭ୍ୟ ସମାଜ ପ୍ରତିଷ୍ଠା କରିବାକୁ ହେଲେ ତା ମୂଳରେ ଶିକ୍ଷାର ଗରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଯେଉଁ ରାଜ୍ୟର ଜନସାଧାରଣ ଯେତେ ଶିକ୍ଷିତ ସେମାନେ ସେତିକି ସଚେତନ । ଭବିଷ୍ୟତ ପିଢ଼ିଙ୍କୁ ଦେଶର ସୁନାଗରିକ ଭାବେ ଗଢ଼ିତୋଳିବା ପାଇଁ ଶିକ୍ଷା, ଶିକ୍ଷକ ଏବଂ ଶିକ୍ଷାୟତନର ବେଶ୍ ଭୂମିକା ରହିଛି । ତେଣୁ କୁହାଯାଏ ଯେଉଁ ଦେଶର ନାଗରିକ ଯେତେ ଶିକ୍ଷିତ ସେ ଦେଶ ସେତେ ଉନ୍ନତ । ସାଂପ୍ରତିକ ଶିକ୍ଷା ଶିକ୍ଷକ ଏବଂ ଶିକ୍ଷାୟତନ ପରି ସେତେବେଳେ ତାହା ନଥିଲା । ଶିକ୍ଷାର ଗୁଣାତ୍ମକ ପରିବେଶ ଖଜୁରିଆ କଟାରୁ ସମଗ୍ର ହିନ୍ଦୋଳକୁ କିପରି ବିକଶିତ ହୋଇଛି ତାହା ଜାଣିଲେ ବିସ୍ମିତ ହେବାକୁ ପଡ଼େ । ହିନ୍ଦୋଳରେ ଶିକ୍ଷାର ପ୍ରସାର ମୂଳରେ କ'ଣ ଥିଲା, ଶିକ୍ଷାର ପ୍ରାରମ୍ଭିକ ସ୍ତରରୁ ମହାବିଦ୍ୟାଳୟ ପର୍ଯ୍ୟନ୍ତ କିପରି ଶିକ୍ଷାର ପ୍ରସାର ଲାଭ କରିଥିଲା । ଆସନ୍ତୁ ତା ଉପରେ ଆଲୋକ ପାତ କରିବା ।

ସମାଜିକ ନେତୃତ୍ୱ ନେଇ ସମାଜ ସେବା କରିବା ଆଜି ସମାଜରେ ବିରଳ । ଯାହାକିଛି ଅଛନ୍ତି ତାହା କେବଳ ଏକ ବ୍ୟବସାୟ ଭିତ୍ତିକ ସମାଜ ସେବା । ସାମାଜିକ ନେତୃତ୍ୱ ଆଜି ସମାଜରେ ବିରଳ । ସ୍ୱାଧୀନତାର ପରବର୍ତ୍ତୀ କାଳରେ ଗଡ଼ଜାତ ମୂଳକରେ ଯେଉଁ ଶିକ୍ଷାର ଅନ୍ଧକାର ତା'ରି ମଧ୍ୟରେ ଖଦ୍ୟୋତର କ୍ଷୀଣ ଆଲୋକ କେତେଟା ପ୍ରଭାବଶାଳୀ ଥିଲା ଏବଂ ଏହାର ସାମାଜିକ ନେତୃତ୍ୱ କେତେ ବଳିଷ୍ଠ, ଦୃଢ଼ମନା, ସତ୍ୟତା, ନିଷ୍କପଟ ଏବଂ ସମାଜ

ଉଦ୍ଦିଷ୍ଟ ଥିଲା ତାହା ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ । ଆମେ ପଢ଼ିବା ସମୟରେ ପଢ଼ିଥିଲୁ, ଓଡ଼ିଶା ଯେତେବେଳେ ବଙ୍ଗାଳୀ ମାନଙ୍କ କୋପଦୃଷ୍ଟିରେ ତାର ନିଜସ୍ୱ ହରାଇ ଅନ୍ଧକାରର ଗହ୍ୱରକୁ ଚାଲିଯିବା ପାଇଁ ଉଦ୍ୟତ ହେଉଥିଲା, ଉତ୍କଳ ଜନନୀର ସୌଭାଗ୍ୟ କ୍ରମେ ଠିକ୍ ସେହି ମୂହୁର୍ତ୍ତରେ ଆବିର୍ଭାବ ହେଲେ ଯୋଗଜନ୍ମା ଏବଂ ଦୂରଦ୍ରଷ୍ଟା ଉତ୍କଳ ଗୌରବ ମଧୁସୂଦନ ଦାସ । ଯେ କି ମଧୁବାବୁ ନାମରେ ସମଗ୍ର ଓଡ଼ିଶାରେ ସୁପରିଚିତ । ସେ ଓଡ଼ିଶାର ପୁନର୍ଗଠନ ପାଇଁ ପ୍ରଥମେ ଉତ୍କଳ ସମ୍ମିଳନୀ ଗଠନର ଆହ୍ୱାନ ଦେଇଥିଲେ । ସେ ନିଜ ଓକିଲାତିରୁ ଅର୍ଜନ କରିଥିବା ସମସ୍ତ ସମ୍ପତ୍ତି ଓଡ଼ିଶାର ପୁନର୍ଗଠନ ଦିଗରେ ଖର୍ଚ୍ଚ କରିଥିଲେ । ସେହିପରି ଆସନ୍ତୁ ଦେଖିବା ହିନ୍ଦୋଳରେ ଶିକ୍ଷାର ଅନ୍ଧକାର ଭିତରେ ଯେଉଁ ଖଦ୍ୟୋତ ତାଙ୍କର କ୍ଷିଣ ଆଲୋକ ରେ ଶିକ୍ଷାର୍ଥୀ ଏବଂ ଶିକ୍ଷା ପ୍ରେମୀ ମାନଙ୍କୁ ଶିକ୍ଷାର ପଥ ପ୍ରଦର୍ଶନ କରାଇ ଥିଲେ ତାଙ୍କ ବିଷୟରେ ପୁସ୍ତକର ପାଠକ ମାନଙ୍କୁ ଅବଗତ କରାଇବା । ହିନ୍ଦୋଳର ସେହି ମହାନ୍ କିମ୍ବଦନ୍ତୀ ପୁରୁଷ ହେଲେ ସ୍ୱର୍ଗତ ଅରକ୍ଷିତ ପତି । ମାଷ୍ଟ୍ରେ ମହୋଦୟ ନାମରେ ପରିଚିତ । ସେ ନିଜେ ଖଦ୍ୟୋତନ ହୋଇ ସମାଜ ଆଗରେ ନିଜକୁ ଖଦ୍ୟୋତର ପରିଚୟ ଦେଇଥିଲେ ।

"କେହି ରାଜା ଜଣେ ବିଚାରେକି କ୍ଷଣେ
ପରଜାଏ ମୋର ପୁଅସମାନ ।
ପରଜାଙ୍କ ହିତ ମୋ' ଜୀବନ ବ୍ରତ
ପରଜା-ସୁଖେ ମୋ ସୁଖ-ସମ୍ମାନ ।"

(କାରା କବିତା – ଗୋପବନ୍ଧୁ)

ଏହି ପଦଟିକୁ ଅନୁଧ୍ୟାନ କଲେ, 'ଗଡ଼ଜାତରେ ଶିକ୍ଷା'ର ଢାଞ୍ଚାକୁ ପାଠକ ମାନେ ବେଶ୍ ଉପଲବ୍ଧି କରି ପାରିବେ । ଶିକ୍ଷା ହେଉଛି ସମାଜର ମାନଦଣ୍ଡ । ଶିକ୍ଷା ସଭ୍ୟତାର ମାପକାଠି । ଭାରତ ବର୍ଷରେ ଉନବିଂଶ ଶତାବ୍ଦୀରେ ଶିକ୍ଷାର ଆବଶ୍ୟକତା ଉପଲବ୍ଧି କରିଥିଲେ ବଙ୍ଗବାସୀ । ତେଣୁ ଶିକ୍ଷାର ମୂଳଦୁଆ ସ୍ଥାପନ କରା ଯାଇଥିଲା ବଙ୍ଗ ରାଜ୍ୟରେ । ତା ପରେ ପରେ ଏହା ବିସ୍ତୃତ ଲାଭ କରିଥିଲା ଅନ୍ୟ ରାଜ୍ୟକୁ । ତତ୍କାଳୀନ ଖଣ୍ଡ ବିଖଣ୍ଡିତ ଓଡ଼ିଶାକୁ ଶିକ୍ଷା ଆସିଥିଲା ବହୁତ ଡ଼େରିରେ । ଉନବିଂଶ ଶତାବ୍ଦୀର ଶେଷ ଦଶକରେ ସମ୍ବଲପୁରର ଓଡ଼ିଆ ଭାଷା ଆନ୍ଦୋଳନ ଓଡ଼ିଶା ଶିକ୍ଷା ଜଙ୍ଗରେ ଥିଲା ଆହୁତି ସଦୃଶ । ଉନବିଂଶ ଶତାବ୍ଦୀର ଶେଷ ଦଶକ ଏବଂ ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଓଡ଼ିଶାରେ ଶିକ୍ଷାର ପ୍ରସାର ଘଟିଥିଲା ।

୧୯୦୯ ମସିହା ଅଗଷ୍ଟ ୧୨ ତାରିଖ କୁମାର ପୂର୍ଣ୍ଣିମା ଦିନ ପୂଣ୍ୟାତ୍ମା ଉତ୍କଳ ମଣି ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ପ୍ରତିଷ୍ଠିତ ହେଲା ସତ୍ୟବାଦୀ ବନ ବିଦ୍ୟାଳୟ । ତାଙ୍କୁ ପୁନାର ଫରଗୁସନ୍ କଲେଜ ବହୁଭାବରେ ଉତ୍ସାହିତ କରିଥିଲା ।

ଏହି ଅବସରରେ ହିନ୍ଦୋଳ ରାଜା ନବ କିଶୋର ସିଂହଙ୍କ ଉଦ୍ୟମରେ ହିନ୍ଦୋଳ ଗଡ଼ଠାରେ ୧୯୧୭ ମସିହାରେ ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟ ଏବଂ ୧୯୩୭ ମସିହାରେ ଗୋଟିଏ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇ ଥିଲା । ଯେତେବେଳେ ଜନ ସମାଜ ପ୍ରତି ଇଶ୍ୱରଙ୍କର କରୁଣା ବର୍ଷଣ ହୁଏ ସେତେବେଳେ ସେ କାହା ମାଧ୍ୟମରେ ତାହା ପରିପ୍ରକାଶ କରାଇଥାନ୍ତି । ଏହି ପରି ଏକ ପୂଣ୍ୟମୟ ଘଟଣା ଘଟିଥିଲା ଅରକ୍ଷିତ ପତିଙ୍କ ଜୀବନରେ । ବିଧିର ବିଧାନ ବଡ଼ ବିଚିତ୍ର । ଜଗତର ନିୟନ୍ତା ଜଗତ ବାସୀଙ୍କ ନିମନ୍ତେ କା ହୃଦୟରେ କେତେବେଳେ କେଉଁ ପ୍ରକାର ପ୍ରେରଣା ଯୋଗାଇ ଦେଇଥାନ୍ତି ତାହା କେବଳ ତାଙ୍କୁହିଁ ଜଣାଥାଏ ।

୧୯୪୮ ମସିହା । ଗଡ଼ଜାତ ମିଶ୍ରଣ ସରି ଯାଇଥାଏ । ଜଣେ ସମାଜ ସେବୀର ଅନ୍ତର ସବୁ ସମୟରେ ସମାଜ ପାଇଁ ବ୍ୟସ୍ତ ଥାଏ । ରାଜା ନବକିଶୋର ସିଂହ ଅରକ୍ଷିତ ପତିଙ୍କୁ ନିଜ ନଅରକୁ ଡ଼କାଇଲେ । ପରଦିନ ସକାଳେ ଅରକ୍ଷିତ ପତି ରାଜନଅରରେ ପହଞ୍ଚି ରାଜାଙ୍କୁ ସାକ୍ଷାତ କଲେ । ଆଲୋଚନା ମାଧ୍ୟମରେ ରାଜା ଅରକ୍ଷିତ ପତିଙ୍କୁ କହିଲେ ମୋର ଗୋଟିଏ କଥା ତୁମେ ରଖିବ ? ନିଶ୍ଚୟ ଆଜ୍ଞା, ଆପଣଙ୍କର କ'ଣ ବିଶ୍ୱାସ ହେଉନି ? ମାଷ୍ଟ୍ରେ ଉତ୍ତର ଦେଲେ । ରାଜା କହିଲେ ତୁମେ ବର୍ତ୍ତମାନ ମାଧପୁର ଗାଁରେ ଅଛ, ମାଧପୁରରୁ ତୁମକୁ ଗଡ଼କୁ ଆଣିବା, ପ୍ରତିଦିନ ସନ୍ଧ୍ୟାରେ ରାହାସ ବାବୁ ଏବଂ ଅନ୍ୟମାନଙ୍କୁ ନେଇ ବସିବା ହିନ୍ଦୋଳର ବିକାଶ ଦିଗରେ ଆଲୋଚନା କରିବା । ମାଷ୍ଟ୍ରେ ମହୋଦୟ ସେଥିରେ ସମ୍ମତି ଜଣାଇଲେ ଏବଂ କହିଲେ ଛାମୁଙ୍କର ଅନୁମତି ହେଲେ ଗୋଟିଏ ବିଷୟରେ ଆପତ୍ତି ଜଣାନ୍ତି । ରାଜା କହିବା ପାଇଁ ଅନୁମତି ଦେଲେ ।

ମାଷ୍ଟ୍ରେ ମହୋଦୟ ଶଙ୍କା ମନରେ କହିଲେ, ଆପଣତ ମୋତେ ଏକ ମହତ ଉଦ୍ଦେଶ୍ୟରେ ଡାକି ସବୁକଥା କହିଲେ । ସେହି ବିଷୟରେ ମୁଁ ପଦୁଟିଏ କହୁଛି । ଆପଣ ରଂଜାଗୋଳ ଗ୍ରାମରେ ପ୍ରତିଷ୍ଠିତ କରାଇଥିବା ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଅଳ୍ପ ସଂଖ୍ୟକ ଛାତ୍ର ଛାତ୍ରୀ ହେଉଥିବାରୁ ଯଦି ଏହାକୁ ଖଜୁରିଆ କଟାକୁ ସ୍ଥାନାନ୍ତରିତ କରାଯାଏ ତାହାହେଲେ ଅନ୍ୟୁନ ୨୦/୩୦ ଗୋଟି ଗ୍ରାମର ପିଲାମାନେ ପାଠ ପଢ଼ିବାରେ ଉପକୃତ ହୋଇ ପାରନ୍ତେ ।

ହିନ୍ଦୋଳରେ ଶିକ୍ଷାର ବିକାଶ ମଧ୍ୟ ଘଟି ପାରିବ । ଛାମୁଙ୍କ ଠାରୁ ଅନୁମତି ପାଇଲେ ଆମେ ଆଗେଇ ଚାଲନ୍ତୁ । ଯଦି ଭୁଲଥାଏ ତାହାହେଲେ କ୍ଷମା ଦେବେ । ମାଷ୍ଟଙ୍କର କଣ୍ଠ ଥରି ଉଠିଲା । ଓଠ ଶୁଖିଗଲା । କେଉଁଠି ଥିଲା କେଜାଣି ! ଅଜଣା ଅଶ୍ରୁ ଦିଧାର ଅରକ୍ଷିତ ମାଷ୍ଟଙ୍କର ଆଖିରୁ ବାହାରି ଆସିଲା । ରାଜାଙ୍କର ନିରବତା ଦେଖି ମାଷ୍ଟେ ଶଙ୍କାକୂଳ ଚିତ୍ତରେ ବସି ରହିଲେ ।

କିଛି କ୍ଷଣ ନିରବତା ପରେ ରାଜା ପଚାରିଲେ ମାଷ୍ଟେ ! ଏକଥା ତୁମକୁ କିଏ କହିଲା ? ନାହିଁ ଆଜ୍ଞା, ମୋତେ ଏକଥା କେହି କେବେହେଲେ କହି ନାହାନ୍ତି । ଏହି ବିଚାରଧାରା ଅନେକ ଦିନରୁ ମୋ ମନରେ ଉଙ୍କି ମାରୁଥିଲା । କିନ୍ତୁ ମୁଁ ଆପଣଙ୍କୁ କହିବାର ସାହସ ମୋର ନଥିଲା । ଆଜି ହିନ୍ଦୋଳର ବିକାଶ ନିମନ୍ତେ ଆପଣ ଯେଉଁ ଅଭିନବ ପଦକ୍ଷେପ ନେଇଛନ୍ତି, ସେହି ମହତ ପଦକ୍ଷେପର ଆଲୋଚନାରେ ସୁଯୋଗ ପାଇ ଅପାଣଙ୍କୁ ପଚାରି ଦେଲେ । ପୁଣି ଗୋଟିଏ ନୂଆ ସ୍କୁଲ କରିବା ଅପେକ୍ଷା । ରଂଞ୍ଜାଗୋଳ ମ:ଇ ସ୍କୁଲକୁ ଖଜୁରିଆ କଟାକୁ ସ୍ଥାନାନ୍ତରିକ କରାଗଲେ ଭଲ ହୁଅନ୍ତା ବୋଲି ଭାବୁଛି । ସବୁ ମୂଳରେ ଆପଣଙ୍କର ଆଦେଶ । ଆପଣ ଅନୁମତି ଦେଲେ ମୁଁ ସବୁ ଦାୟୀତ୍ୱ ନେବି । ଏକଥା ମାଷ୍ଟେ ମହୋଦୟ ରାଜାଙ୍କୁ କହିଲେ ।

କିଛି ସମୟ ନିରବତା ପରେ ରାଜା ନବକିଶୋର ସିଂହ ଆଶ୍ଚର୍ଯ୍ୟ ହୋଇ କହିଲେ, ମାଷ୍ଟେ, ମୁଁ ତୁମକୁ ଏଠାକୁ ଡାକିବା ଏବଂ ତୁମେ ମୋତେ ଏକଥା କହିବା ଭିତରେ କେବଳ ଈଶ୍ୱର ପ୍ରେରଣା ରହିଛି ବୋଲି ଭାବୁଛି । ଈଶ୍ୱର ପ୍ରେରଣା ନଥିଲେ ମୁଁ ତୁମକୁ ଡାକି ଥାନ୍ତି କାହିଁକି ? କିମ୍ୱା ତୁମେ ମୋତେ ଏ ପ୍ରସ୍ତାବ ଦେଇଥାନ୍ତ କାହିଁକି ? ଏହା ନିଶ୍ଚିନ୍ତ ଭାବେ ଈଶ୍ୱରଙ୍କ ପ୍ରେରଣା । ତୁମେ ସ୍କୁଲ ସ୍ଥାନାନ୍ତରିତ ପାଇଁ ଚେଷ୍ଟାକର । ଈଶ୍ୱର ତୁମର ସହାୟକ ହୁଅନ୍ତ । ଅସୁବିଧା ହେଲେ କହିବ । ଏହାକହି ରାଜା ଉଆସ ଭିତରକୁ ଚାଲିଗଲେ । ରଙ୍ଗବାଟୀ ବାହାରକୁ ଆସିଲେ ମାଷ୍ଟେ ମହୋଦୟ । ଖୁସିହେବେ କିମ୍ୱା ଦୁଃଖ କରିବେ କିଛି ଭାବି ପାରିଲେ ନାହିଁ । କ'ଣ ହୋଇଗଲା । ଈଶ୍ୱରଙ୍କର ଏ କି ଲୀଳା । ହେ ପ୍ରଭୁ, ତୁମରି ଇଚ୍ଛା ମୋ ହୃଦୟରେ ପୂର୍ଣ୍ଣ ହେଉ । ଏହିପରି ଭାବି ଭାବି ଚାଲି ଚାଲି ଆସୁଥାନ୍ତି । ପୁଣି ବେଳେ ବେଳେ ମନରେ ପ୍ରଶ୍ନ ଉଠୁଥାଏ ଯଦି ରଂଜାଗୋଳ ଗ୍ରାମବାସୀ ମାନେ ସ୍କୁଲ ସ୍ଥାନାନ୍ତରିତକୁ ବିରୋଧ କରନ୍ତି ? ସେମାନଙ୍କୁ କିପରି ଭାବେ ରାଜି କରାଇବାକୁ ପଡ଼ିବ ?

ଏହିପରି ମନରେ ଅସୁମାରୀ ଭାବନା ଉଙ୍କି ମାରୁଥାଏ । ଏହା ଭାବି ଭାବି ମାଷ୍ଟେ ମହୋଦୟ ପହଞ୍ଚି ଗଲେ ପଥର କଟା ଠାରେ । ଗାଁକୁ ଯିବେ କି ରଂଜାଗୋଳ ଯିବେ କିଛି ଭାବି ପାରୁ ନଥାନ୍ତି । ଶେଷରେ ଗାଁ କୁ ନଯାଇ ରଂଞ୍ଜାଗୋଳ ଅଭିମୁଖେ ଯାତ୍ରା ଆରମ୍ଭ କଲେ ।

ରଂଞ୍ଜାଗୋଳ ରାସ୍ତାରେ ପଡିବ ଗୋଟିଏ ଛୋଟ ଗାଁ 'ସାନ ହିନ୍ଦୋଳ' । ବୋଧ ହୁଏ ହିନ୍ଦୋଳର ସବୁଠାରେ ଏହା ଛୋଟ ଗାଁ । ଏହି ଗାଁର ପ୍ରାୟ ସମସ୍ତେ କୃଷିଜୀବୀ । ସେହି ଗାଁରେ ଜଣେ ବଡ଼ ଚାଷୀ ଥାଆନ୍ତି ମଦନ ମୋହନ ପ୍ରଧାନ । ହିନ୍ଦୋଳର ସ୍ୱାଧୀନତା ସଂଗ୍ରାମୀ ମାନଙ୍କ ମ୍ନରେ ସେ ଜଣେ । ସେଥିଲେ ଜଣେ ସମାଜ ସେବକ । ତାଙ୍କ ଶ୍ୱଶୁର ଘର ହେଉଛି ରଂଞ୍ଜାଗୋଳ । ତେଣୁ ମାଷ୍ଟେ ମହୋଦୟ ଚାଲି ଚାଲି ରଞ୍ଜାଗୋଳ ନଯାଇ ସାନହିନ୍ଦୋଳ ଗ୍ରାମରେ ମଦନ ମୋହନ ପ୍ରଧାନଙ୍କ ଘରେ ପହଞ୍ଚିଲେ । ହଠାତ୍ ମାଷ୍ଟେ ମହୋଦୟଙ୍କୁ ଦେଖି ମଦନ ପ୍ରଧାନ ଆଶ୍ଚର୍ଯ୍ୟ ହୋଇଗଲେ । କିଛି ଆଳାପ ଆଲୋଚନା ହେଲା । ସ୍ୱାଧୀନତା ଆନ୍ଦୋଳନର ପୂର୍ବ ଅନୁଭୂତି ଉପରେ ମ୍ନ ଆଲୋଚନା ହେଲା । ମାଷ୍ଟେ ମହୋଦୟ ତାଙ୍କ ନିକଟକୁ ଯାଇଥିବାର ସମସ୍ତ ଉଦ୍ଦେଶ୍ୟ କହିଲେ । ସମସ୍ତ ବିଷୟ ଅବଗତ ହେଲା ପରେ ମଦନ ପ୍ରଧାନେ କହିଲେ, ସ୍ୱାଧୀନତା ସଂଗ୍ରାମ ପରେ ଶିକ୍ଷା ସଂଗ୍ରାମର ଅଭିଯାନ ଆରମ୍ଭ ହେବ । ବର୍ତ୍ତମାନ ସନ୍ଧ୍ୟା ଉପଗତ । ଆସନ୍ତା କାଲି ଆପଣ ଏଠାକୁ ଆସନ୍ତୁ ସାଥୀହୋଇ ରଞ୍ଜାଗୋଳ ଯିବା । ସେଠାରେ ସମସ୍ତ ବିଷୟ ଆଲୋଚନା କରିବା । ମାଷ୍ଟେ ମହୋଦୟ ଘରକୁ ଫେରି ଆସିଲେ ।

ରାତିରେ ନିଦ ନାହିଁ । ରାତି ପାହୁନାହିଁ । ରାତି ପାହିଲେ ସେ ମଦନ ପ୍ରଧାନଙ୍କୁ ନେଇ ରଞ୍ଜାଗୋଳ ଯିବେ । ସେଠି କ'ଣ ବିଚାର ହେବ ! ମାଷ୍ଟେ ମହୋଦୟଙ୍କ ମନରେ କେବଳ ପ୍ରଶ୍ନବାଚୀ, ଅସୁମାରୀ ଭାବନା । ରାତି ପାହିଲା । ନିତ୍ୟକର୍ମ ସାରି ଗାଁ ଠାକୁର ଭଗବତ ଜୀଉଙ୍କୁ ପ୍ରଣମିତ ହୋଇ ପହଞ୍ଚି ଗଲେ ସାନ ହିନ୍ଦୋଳ ଗ୍ରାମରେ । ସେଠାରୁ ଉଭୟେ ଯାଇ ପହଞ୍ଚି ଗଲେ ରଞ୍ଜାଗୋଳ ଗ୍ରାମରେ । ଆଜି ସୋମବାର ସ୍କୁଲ ଯିବା ମାଷ୍ଟେ ସଂପୂର୍ଣ୍ଣ ଭାବରେ ଭୂଲି ଯାଇଛନ୍ତି ।

ରଞ୍ଜାଗୋଳ ପ୍ରଧାନ ସାଇ । ସମଗ୍ର ଗାଁରେ ଏଇ ସାଇର ପତିଆରା ନିଆରା ଥିଲା । ଗାଁ ମୁଖିଆ ଥିଲେ ଟଙ୍କଧର ପ୍ରଧାନ । ଗାଁର ସର୍ବରାକାର । ଉଚ୍ଛବାନନ୍ଦ ପ୍ରଧାନ, ପରମାନନ୍ଦ ପ୍ରଧାନ, ପଠାଣୀ ପ୍ରଧାନ, ଚକ୍ରଧର ପ୍ରଧାନ ଏବଂ ଜଗନ୍ନାଥ ପ୍ରଧାନ । ସାନ ହିନ୍ଦୋଳ ମଦନ ପ୍ରଧାନଙ୍କ ଶ୍ୱଶୁର ହେଉଛନ୍ତି ଉଚ୍ଛବା ନନ୍ଦ ପ୍ରଧାନ । ତେଣୁ ମଦନ ମୋହନ ମାଷ୍ଟେ ମହୋଦୟଙ୍କୁ

ଧରି ଶ୍ୱଶୁର ଉଚ୍ଛବା ନନ୍ଦ ପ୍ରଧାନଙ୍କ ଘରେ ପହଞ୍ଚିଲେ । ସକାଳୁ ସକାଳୁ ଝୁଅାଁଇ ପୁଅକୁ ଦେଖି ଶ୍ୱଶୁରଙ୍କ ଘରେ ଜ୍ୱାଇଁଙ୍କର ଅତିଥି ଚର୍ଚ୍ଚା ଭଲଭାବରେ ହେବାତ ସ୍ୱାଭାବିକ । ଅତିଥି ଚର୍ଚ୍ଚା ଚାଲୁଥିବା ସମୟରେ ଶ୍ୱଶୁର ଉଚ୍ଛବାନନ୍ଦ ପ୍ରଧାନ ସଂଶୟିତ ମନକୁ ଦୂର କରିବା ନିର୍ମିତ ପଚାରିଲେ, ଏତେ ସକାଳୁ ଅରକ୍ଷିତ ମାଷ୍ଟଙ୍କର ପାଦ ମୋର ଘରେ ପଡ଼ି ଥିବାରୁ ମୁଁ ନିଜକୁ କୃତାର୍ଥ ମନେ କରୁଛି । ଜ୍ୱାଇଁ ମଦନ ପ୍ରଧାନ ଆମୂଳଚୂଳ ସବୁକଥା ଶ୍ୱଶୁର ଉଚ୍ଛବା ନନ୍ଦ ପ୍ରଦାନଙ୍କୁ କହିଲେ । ଉଚ୍ଛବା ନନ୍ଦ ସମସ୍ତ ଘଟଣା ଶୁଣି ମାଷ୍ଟ୍ର ମହୋଦୟଙ୍କୁ ନିଗୁଢ଼ ଭାବରେ ଲକ୍ଷକଲେ ଏବଂ କହିଲେ, ଆପଣ ବସିଥାନ୍ତୁ, ମୁଁ ଆସୁଛି ।

ଉଚ୍ଛବା ନନ୍ଦ ଯାଇ ଟଙ୍କଧର ପ୍ରଧାନଙ୍କୁ ସବୁ କଥା କହିଲେ । ଦୁଇଜଣଙ୍କ ମଧ୍ୟରେ ବିଚାର ବିମର୍ଷ ହେଲା । ସେମାନେ ପରମାନନ୍ଦ ପ୍ରଧାନ, ପଠାଣୀ ପ୍ରଧାନ ଏବଂ ଚକ୍ରଧର ପ୍ରଧାନଙ୍କୁ ଡାକି ଟଙ୍କଧର ପ୍ରଧାନଙ୍କ ଘରେ ଗାଟିଏ ବୈଠକ ବସିଲା । ବିଷୟଟି ପୁଙ୍ଖାନୁପୁଙ୍ଖ ଭାବରେ ଆଲୋଚନା ହେଲା । ଟଙ୍କଧର ପ୍ରଧାନ ବୈଠକରେ ସ୍ପଷ୍ଟ ଭାବରେ ନିଷତି ନେଇ କହିଲେ ଯେ, ଯେ କୌଣଷି ଶିକ୍ଷା ଅନୁଷ୍ଠାନର ପରିଚାଳନା ଏବଂ ରକ୍ଷଣା ବେକ୍ଷଣ ଗାଁର ଲୋକମାନେ ବୁଝୁଥାନ୍ତି । ଅନୁଷ୍ଠାନ ତ ସମସ୍ତଙ୍କର, ଆମ ଗାଁରେ ସ୍କୁଲ ଅଛି, ପ୍ରତି ଶ୍ରେଣୀରେ ୧୦/୧୫ ଜଣ ପିଲା ପାଠ ପଢୁଛନ୍ତି । ଯଦି ଏହା ଖଜୁରିଆ କଟାକୁ ଉଠାଇ ନିଆଯାଏ ତାହାହେଲେ ୧୦/୧୫ ଗୋଟି ଗାଁ ପିଲାମାନେ ଆସି ପାଠ ପଢିବେ । ସ୍କୁଲ ଗାଁରେ ଯେଉଁ ନାମରେ ଅଛି ଖଜୁରିଆ କଟାକୁ ସ୍ଥାନାନ୍ତରିତ ହେଲେ ମଧ୍ୟ ସେହି ରଞ୍ଜାଗୋଳ ଗ୍ରାମର ସୀମା ମଧ୍ୟରେ ରହିବ । ବରଂ ସେଠାରେ ବିଭିନ୍ନ ଗ୍ରାମରୁ ପିଲାମାନେ ପାଠ ପଢିବା ପାଇଁ ଆସିବେ, ପିଲା ସଂଖ୍ୟା ବୃଦ୍ଧି ପାଇବ । ଟଙ୍କଧର ପ୍ରଧାନଙ୍କ କଥାରେ ସମସ୍ତେ ଏକମତ ହେଲେ । ସମୁହ ଗାଁକୁ ମଧ୍ୟ ଅବଗତ କରାଗଲା । ସେଥିରେ ସମସ୍ତେ ସମ୍ମତି ଯଣାଇବା ପରେ ମଦନ ପ୍ରଧାନ ଏବଂ ଅରକ୍ଷିତ ପତିଙ୍କୁ ସଭା ସ୍ଥଳୀକୁ ଡକାଗଲା । ବିଦ୍ୟାଳୟ ସ୍ଥାନାନ୍ତରିତ ପାଇଁ ସମସ୍ତେ ଅରକ୍ଷିତ ପତିଙ୍କୁ ସମ୍ମତି ଦେବା ସଙ୍ଗେ ସଙ୍ଗେ ସହଯୋଗ କରବା ପାଇଁ ପ୍ରତିଶୃତି ବଦ୍ଧ ହେଲେ । ଉପସ୍ଥିତ ଜନତାଙ୍କ ମଧ୍ୟରେ ଆନନ୍ଦର ଲହରୀ ଖେଳିଗଲା । ସରକାରୀ ସ୍ତରରେ ସମସ୍ତ ନୀୟମାବଳୀ ଏବଂ କାଗଜ ପତ୍ର କାମ ପାଇଁ ଅରକ୍ଷିତ ପତିଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରାଗଲା । ମାଷ୍ଟେ ମହୋଦୟ ମଦନ ପ୍ରଧାନଙ୍କ ସହିତ ଆନନ୍ଦ ମନରେ ଘରକୁ ଫେରିଲେ ।

ତା'ପର ଦିନି ସକାଳୁ ମାଷ୍ଟ୍ରେ ମହୋଦୟ ପହଞ୍ଚିଗଲେ ରଞ୍ଜାଗୋଳ ଗ୍ରାମରେ । ସ୍କୁଲ ସ୍ଥାନାନ୍ତରିତ ହେବା ନେଇ ସ୍କୁଲ ଶିକ୍ଷା ଅଧିକାରୀଙ୍କ ନିକଟକୁ ଗୋଟିଏ ଦରଖାସ୍ତ ଲେଖାଗଲା । ରଞ୍ଜାଗୋଳ ଗ୍ରାମବାସୀ ସମସ୍ତେ ଦସ୍ତଖତ କରିଲେ । ତା'ପର ଦିନ ରଞ୍ଜାଗୋଳ ଗ୍ରାମର କିଛି ଲୋକ ଏବଂ ଅରକ୍ଷିତ ପତି ଢେଙ୍କାନାଳ ସଦର ମହକୁମାକୁ ଗଲେ । ସେହି ସମୟରେ ଢେଙ୍କାନାଳ ଏବଂ କେନ୍ଦୁଝର ଜିଲ୍ଲାକୁ ନେଇ ଗୋଟିଏ ଶିକ୍ଷାଜିଲ୍ଲା ଥିଲା । ମୂଖ୍ୟ କାର୍ଯ୍ୟାଳୟ ଥିଲା, ଢେଙ୍କାନାଳ ଗଡ଼ରେ । ଦରଖାସ୍ତ ନେଇ ଏମାନେ ପହଞ୍ଚି ଗଲେ । ଭାବିଥିଲେ ଗୋଟିଏ ଦିନରେ ସବୁକିଛି ହୋଇଯିବ । ସେ ଦିନ ଶିକ୍ଷା ନିରିକ୍ଷକ ଅନୁପସ୍ଥିତ ଥିବାରୁ ତା ପରିଦିନ ପୁଣି ଢେଙ୍କାନାଳ ଗଲେ । ଶିକ୍ଷା ନିରିକ୍ଷକଙ୍କୁ ସବୁକଥା ବୁଝାଇ କହିଲେ । ଶିକ୍ଷା ନିରିକ୍ଷକ ଏହା ସଂପୂର୍ଣ୍ଣ ଅସମ୍ଭବ ବୋଲି କହି ରୋକ ଠୋକ୍ ମନା କରିଦେଲେ । ଏହାର କାରଣ ପଚାରିବାରୁ ନିରିକ୍ଷକ ମହାଶୟ କହିଲେ ଯେ, ବର୍ତ୍ତମାନ ଭାପୁରୁ ମଇ ସ୍କୁଲକୁ ନେଇ ଅନ୍ୟ ସ୍ଥାନରେ ସ୍ଥାପନ କରିବାର ନିଷ୍ପତି ନେବାରୁ ସେଠାରେ ଜନ ଆନ୍ଦୋଳନ ଦେଖା ଦେଇ ଅଛି । ପୁଣି ଆଉ ଗୋଟିଏ ସ୍କୁଲକୁ ସ୍ଥାନାନ୍ତର ପାଇଁ ଅନୁମତି ଦିଆଯାଇ ପାରିବ ନାହିଁ । ଏମାନଙ୍କର କୌଣଷି କଥାକୁ ସେ ଗ୍ରହଣ କଲେ ନାହିଁ ।

ପୁଣି ମାଷ୍ଟ୍ରେ ମହୋଦୟଙ୍କ ସହ ରଞ୍ଜାଗୋଳରେ ବିଚାର ପଡିଲା । ନିଷ୍ପତି ହେଲା ଶିକ୍ଷା ମନ୍ତ୍ରୀଙ୍କ ନିକଟକୁ ଯିବା ପାଇଁ । ମାଷ୍ଟ୍ରେ ମହୋଦୟ ଦରଖାସ୍ତ ନେଇ ଶିକ୍ଷା ମନ୍ତ୍ରୀଙ୍କ ନିକଟକୁ ଗଲେ । ସେହି ସମୟରେ ରାଜଧାନୀ ଥିଲା କଟକରେ ଏବଂ ଶିକ୍ଷା ମନ୍ତ୍ରୀ ଥାନ୍ତି ତାଳଚେରରୁ ପବିତ୍ର ମୋହନ ପ୍ରଧାନ । ମାଷ୍ଟ୍ରେ ମହୋଦୟ ଯାଇ ପହଞ୍ଚିଗଲେ ପବିତ୍ର ବାବୁଙ୍କ ନିକଟରେ । ଦୀର୍ଘ ସମୟ ଧରି ଆଲୋଚନା ହେଲା । ହିନ୍ଦୋଳରେ ପୂର୍ବ ଅନୁଭୂତି କଥା ମଧ୍ୟ କହିଲେ । ପବିତ୍ର ବାବୁ ସମସ୍ତ ବିଷୟ ଜାଣିବା ପରେ ବହୁତ ଖୁସି ହେଲେ ଏବଂ ଖଜୁରିଆ କଟାରେ ମାଇଁନର ସ୍କୁଲ ସ୍ଥାପନର ଉଦ୍ୟମକୁ ପ୍ରସଂସା କରିବା ସଙ୍ଗେ ସଙ୍ଗେ ସ୍ୱାଗତ ମଧ୍ୟ କରିଥିଲେ ।

ଶିକ୍ଷା ମନ୍ତ୍ରୀ ପବିତ୍ର ମୋହନ ହିନ୍ଦୋଳ ବାସୀଙ୍କର ପରିଚିତ ଥିଲେ । ସେ ହିନ୍ଦୋଳ ଲୋକ ମାନଙ୍କୁ ଅଧିକ ମାତ୍ରାରେ ବିଶ୍ୱାସ କରୁଥିଲେ । ସ୍ୱାଧୀନତା ଆନ୍ଦୋଳନ ସମୟରେ ଅତ୍ୟାଚାରୀ ତାଳଚେର ରାଜାଙ୍କ ବିରୋଧରେ ସେ ସ୍ୱର ଉତ୍ତୋଳନ କରି ଥିବାରୁ ତାଙ୍କୁ ରାଜଦ୍ରୋହୀ ଭାବରେ ଘୋଷଣା କରାଯାଇଥିଲା । ତାଙ୍କୁ ତାଳଚେର ରାଜା କଠୋର ଦଣ୍ଡରେ

ଦଣ୍ଡିତ କରିବା ପାଇଁ ଘୋଷଣା କରିଥିଲେ । ତେଣୁ ସେ ପଳାତକ ଭାବରେ ହିନ୍ଦୋଳର ହରିପୁର ଗ୍ରାମରେ ରାତିରେ ଲୁଚି ରହୁଥିଲେ ଏବଂ ଦିନରେ ଚାଷୀଭାବେ ଜମି ମାଳରେ ଏବଂ ହରଡ଼ ତଳାରେ ଲୁଚି ରହୁଥିଲେ । ହିନ୍ଦୋଳ ବାସୀ ତାଙ୍କୁ ବହୁତ ସାହାଯ୍ୟ କରିଥିବାରୁ ଖଜୁରିଆକଟା ବିଷୟ ଯେତେବେଳେ ତାଙ୍କ ନିକଟରେ ଉପସ୍ଥାପନା କରାଗଲା ସେ ଦରଖାସ୍ତ ଖଣ୍ଡିକ ପଢି କିଛି ନକିହି କାନ୍ଦି ପକାଇଲେ । ପୂର୍ବ ଘଟଣାବଳୀ ତାଙ୍କ ମାନସ ପଟ୍ଟରେ ପ୍ରତି ଛବିର ରୂପ ନେଲା । ସେ କୋହ ସମ୍ଭାଳି ନପାରି ଭୋ ଭୋ କାନ୍ଦି ପକାଇଲେ । କହିଲେ ମୁଁ ହିନ୍ଦୋଳର ଋଣ ଶୁଝିପାରିବି ନାହିଁ । ହିନ୍ଦୋଳ ପାଇଁ ମୋ ଦ୍ୱାର ସବୁବେଳେ ଉନ୍ମୁକ୍ତ ଏବଂ ମୁଁ ହିନ୍ଦୋଳର ସର୍ବାଙ୍ଗୀନ ଉନ୍ନତି ପାଇଁ ସଦା ସର୍ବଦା ଉନ୍ମୁଖ ।

ଆପଣମାନେ ଯାଆନ୍ତୁ, ଖଜୁରିଆକଟାକୁ ରଞ୍ଜାଗୋଳ ମଧ୍ୟ ଇଂରାଜୀ ବିଦ୍ୟାଳୟ ସ୍ଥାନାନ୍ତରିତ ହେବ । ଆପଣ ମାନେ ସ୍ଥାନ ନିରୂପଣ କରନ୍ତୁ । ଘରର ବ୍ୟବସ୍ଥା କରନ୍ତୁ । ଏହି ଶିକ୍ଷା ବର୍ଷରୁ ଯେପରି ସେଠାରେ ପିଲା ପାଠ ପଢିବେ । ଜିଲ୍ଲା ଶିକ୍ଷା ନିରୀକ୍ଷକଙ୍କ ନିକଟକୁ ବାରମ୍ବାର ଆସିବାର ଆବଶ୍ୟକତା ନାହିଁ । ଏକ ସପ୍ତାହ ମଧ୍ୟରେ ସେ ନିଜେ ଯାଇ ସମସ୍ତ ବ୍ୟବସ୍ଥା କରି ଆସିବେ । କିଛି ଅସୁବିଧା ହେଲେ ମୋତେ କହିବେ ।

ତା'ପରେ ଖଜୁରିଆକଟାରେ ଗୋଟିଏ ସଭା ବସିଲା । ସଭାରେ ରଞ୍ଜାଗୋଳ, ଖଜୁରିଆ, ସାନହିନ୍ଦୋଳ, ନନ୍ଦପୁର, ଗୁରିଲୋ, କୁକୁଟା, ବାଲିମୀ, କାରନ୍ଦା, ଅସରଡ଼ା ଏବଂ ବାରିସିଙ୍ଗା ଇତ୍ୟାଦି ଗାଁର ମୁଖିଆମାନେ ଯୋଗ ଦେଇଥିଲେ । ସ୍କୁଲ ବିଷୟରେ ଆଲୋଚନା ହେଲା । କିଛି ଲୋକ ଏହା ଅସମ୍ଭବ ବୋଲି ମ୍ନ ମତବ୍ୟକ୍ତ କଲେ । ଯାହାହେଉ ସ୍ଥାନ ନିରୂପଣ କଥା ଯେତେବେଳେ ଆଲୋଚନା ହେଲା ଅରକ୍ଷିତ ପତି (ମାଷ୍ଟେ ମହୋଦୟ) ସେଠାରେ ତାଙ୍କର ଥିବା ପ୍ରାୟ ତିନି ଏକର ଜମିକୁ ବିନା ଦ୍ୱିଧାରେ ମ:ଇ ସ୍କୁଲ ପାଇଁ ରଞ୍ଜାଗୋଳ ଗ୍ରାମବାସୀଙ୍କୁ ଉତ୍ସର୍ଗ କରିଦେଲେ, ଫଳରେ ଉପସ୍ଥିତ ସଭାର ସଦସ୍ୟ ମାନେ ମତଦେଲେ ଯେ, ମାଷ୍ଟେ ମହୋଦୟଙ୍କ ଜାଗାରେ ପ୍ରଥମେ ସ୍କୁଲ ପ୍ରତିଷ୍ଠାହେଉ । କରତାଳିରେ ସଭା ସ୍ଥଳ ପୁରି ଉଠିଲା । ସ୍କୁଲ ପାଇଁ ସମସ୍ତେ ସକାରାତ୍ମକ ମନୋଭାବ ପୋଷଣା କଲେ । ଆଖପାଖ ସମସ୍ତ ଗାଁ ଲୋକ ଯେଝା ମତେ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଲେ । ଆଉ ରହିଲା ଖାଦ୍ୟ ପାନୀୟ କଥା । ଏକଥା କାହାକୁ ଜଣା ନଥିଲା । କେବଳ ଜାଣିଥିଲେ ମଦନ ପ୍ରଧାନ । ମାଷ୍ଟେ ମହୋଦୟ ଘରୁ ଯିବା ସମୟରେ ପାଞ୍ଚ/ଛ ମାଣ ଚାଉଳ, ଦୁଇ ମାଣ କଞ୍ଚା ଚଣା ଡାଲି ଏବଂ ଦୁଇଖଣ୍ଡ ଓଲୁଅ ସାଙ୍ଗରେ ଧରି ଯାଇଥିଲେ । ସଙ୍ଗରେ

ନେଇଥିଲେ ଗାଁର ପୂଜାରୀ ଧନେଶ୍ୱର ପତିଙ୍କୁ । ମଦନ ପ୍ରଧାନଙ୍କୁ କହିଲେ ତୁମେ ଗାଁରୁ ତିନିଟା ହାଣ୍ଡି ଏବଂ ଆନୁସଙ୍ଗିକ ଜିନିଷ ପତ୍ର ନେଇଆସ । ସଭା ପରେ ଖାଇବାର ବ୍ୟବସ୍ଥା କରିବା । ମଦନ ପ୍ରଧାନଙ୍କର ଖୁସିର ସୀମା ରହିଲା ନାହିଁ । ସେ ନିଜେ ରୋଷେଇ ବ୍ୟବସ୍ଥାରେ ରହିଲେ । ସଭା ସମାପ୍ତ ପରେ ସମସ୍ତେ ପ୍ରୀତି ଭୋଜନ ପାଇଁ ବସିଲେ । ଢେଙ୍କି କୁଟା ଚାଉଳ, କଞ୍ଚା ଚଣା ଡାଲିରେ କଞ୍ଚା ଆମ୍ବ ଏବଂ ଓଲୁଅରେ ତିଆରି ଆମ୍ବିଳ ମନଭରି ସଦସ୍ୟମାନେ ଭୋଜନ କଲେ । ଭୋଜନରେ ଅନନ୍ଦର ସୀମା ରହିଲା ନାହିଁ । ଓଲୁଅ ଆମ୍ବିଳକୁ ସମସ୍ତେ ପ୍ରସଂଶା କରିଥିଲେ ।

ରବିବାର  ଦିନ ଶିକ୍ଷା ଜିଲ୍ଲା ନିରିକ୍ଷକ ଆସିବେ ବୋଲି ସମସ୍ତେ ଅବଗତ ଥିଲେ । ନିରିକ୍ଷକ ଆସିବା ସମୟରେ ରଞ୍ଜାଗୋଳ ଗ୍ରାମରେ ସମସ୍ତେ ସମବେତ ହୋଇଥିଲେ । ନିର୍ଦ୍ଧାରିତ ସମୟରେ ନିରିକ୍ଷକ ଆସି ପହଞ୍ଚିଲେ । ସ୍କୁଲ ପରିଦର୍ଶନ କରି ରଞ୍ଜାଗୋଳ ଲୋକ ମାନଙ୍କ ସହିତ ଆଲୋଚନା କରିଥିଲେ । ପରେ ପରେ ସ୍କୁଲ ସ୍ଥାନାନ୍ତରିତ ହେବା ଯାଗାକୁ ଅର୍ଥାତ୍ ଖଜୁରିଆକଟା ଯାଇଥିଲେ । ସେଠାରେ ମାଷ୍ଟେ ମହୋଦୟଙ୍କ ସହିତ ପ୍ରାୟ ଏକଶତ ଲୋକ ଅପେକ୍ଷାରେ ରହିଥିଲେ । ମାଷ୍ଟେ ମହୋଦୟ ଶିକ୍ଷା ନିରିକ୍ଷକଙ୍କୁ ସମସ୍ତ କଥା ଅବଗତ କରାଇ ଥିଲେ । ନିରିକ୍ଷକ ମହାଶୟ, ଜନସାଧାରଣ ମାନଙ୍କର ଆଗ୍ରହ, ପରିବେଶ ଏବଂ ଏହି ସ୍ଥାନ ହିନ୍ଦୋଳର ମଧ୍ୟାଞ୍ଚଳ ମନେକରି ସ୍କୁଲ ସ୍ଥାନାନ୍ତରିତ ହେବା ଉଚିତ ବୋଲି ହୃଦୟଙ୍ଗମ କରିଥିଲେ । ମୌଖିକ ଭାବରେ  ସେ ଅନୁମତି ଦେବା ସଙ୍ଗେ ସଙ୍ଗେ ପ୍ରଥମେ ଘର ତିଆରି କରିବା ପାଇଁ ଉପଦେଶ ଦେଇଥିଲେ । ଏହା ମଧ୍ୟ କହିଗଲେ ଯେ ଅନୁମତି ପତ୍ର ଠିକ୍ ସମୟରେ  ଆସି ପହଞ୍ଚିବ । ନିରିକ୍ଷକ ଚାଲିଯିବା ପରେ 'ପବିତ୍ର ପ୍ରଧାନ କି ଜୟ' ଧ୍ୱନିରେ ଖଜୁରିଆ କଟା ମୁଖରିତ ହେଲା ।

ସ୍କୁଲ ପରିଦର୍ଶକଙ୍କ କହିବା ଅନୁସାରେ ଠିକ୍ ସମୟରେ ଅନୁମତି ପତ୍ର ଆସି ପହଞ୍ଚିଗଲା  । ମାଷ୍ଟେ ମହୋଦୟ ଆତ୍ମହରା ହୋଇ ପଡିଲେ । କିପରି ଘର ତିଆରି ହେବ, ପୁଣି ଜୁନ୍ ମାସରେ ପିଲାମାନେ ନାମ ଲେଖାଇବେ, ଏହିପରି ଭାବି ତାଙ୍କର ଚିନ୍ତା ବଢିଗଲା  । ରଞ୍ଜାଗୋଳ ଗାଁ ଲୋକମାନେ ଶୁଭଦିନ ଦେଖି ଘର ଆରମ୍ଭ କରିଦେଲେ । ଏକ ମାସ ମଧ୍ୟରେ ତିନି ବଖରା ଚାଳଘର ଛପର ଇତ୍ୟାଦି ସମାପ୍ତ ହୋଇଗଲା । ଚାଷକାମ ଆରମ୍ଭ ହୋଇ ଯିବାରୁ ରଞ୍ଜାଗୋଳ ଗ୍ରାମବାସୀ ଆଉ ସହଯୋଗ କରି ପାରିଲେ ନାହିଁ  । ମଦନ ପ୍ରଧାନ ଏବଂ ମାଷ୍ଟେ ମହୋଦୟ ନିଜର ହଳ ଏବଂ ହଳିଆ ଲଗାଇ ଝାଟି ପୋତି ମାଟି

ମାରି ଗୋଟିଏ ବଖରା ସଂପୂର୍ଣ୍ଣ କଲେ । ଫଳରେ ମାଷ୍ଟେ ମହୋଦୟଙ୍କର ଚାଷ ଜମି ଗୁଡ଼ିକ ଚାଷ ନହୋଇ ସେହି ବର୍ଷ ପଡ଼ିଆ ରହିଗଲା । ମାଷ୍ଟେ ନିଜ ସ୍କୁଲ କଥା ଭୁଲିଗଲେ ।

ରଜ ସଂକ୍ରାନ୍ତି ହେଉଛି ରଞ୍ଜାଗୋଳ ଗ୍ରାମର ବାର୍ଷିକ ଉତ୍ସବ । ଗ୍ରାମ ନିକଟସ୍ଥ ପଦ୍ମପୋଖରୀ କୂଳରେ ରହିଛି ଏକ ବିରାଟ ମଠ । ଏହାକୁ ଧୁନୀ ମଠ କୁହାଯାଏ । ଏହା କେଉଁ ଧର୍ମାବଲମ୍ବୀଙ୍କର ପୀଠ କହିବା ସହଜ ନୁହେଁ । ଏହି ମଠପ୍ରତି ରାଜ ଦତ୍ତ ଜମି, ଗ୍ରାମବାସୀ ମାନଙ୍କର ଉଦ୍ୟମ ଫଳରେ ମଠର ଦୈନନ୍ଦିନ କାର୍ଯ୍ୟ ସୁଚାରୁ ରୂପେ ଚାଲି ଅଛି । ମଠଟିର ନକ୍ସା ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ପଡେ । ଯାହାହେଉ ରଜସଂକ୍ରାନ୍ତି ତିନିଦିନ ବ୍ୟାପି ଏକ ବିରାଟ ମେଳାର ଆୟୋଜନ କରାଯାଇଥାଏ । ଅନ୍ୟୁନ କୋଡ଼ିଏ ପଚିଶି ହଜାର ଲୋକଙ୍କର ଏହି ସମାବେଶ ହୋଇଥାଏ । ଜନସମାଗମ ବ୍ୟବସାୟ ଏବଂ ଅଧ୍ୟାତ୍ମିକ ଦୃଷ୍ଟି କୋଣରୁ ଏହି ସ୍ଥାନଟିକୁ ସମସ୍ତେ ଆଦରି ନେଇଥାନ୍ତି । ସେହି ପବିତ୍ର ଦିନଟିକୁ ସମସ୍ତେ ଅପେକ୍ଷା କରିଥାନ୍ତି ସ୍କୁଲଟିକୁ ରଞ୍ଜାଗୋଳ ଗ୍ରାମରୁ ସ୍ଥାନାନ୍ତରିତ କରିବା ପାଇଁ । ସେହି ଶୁଭ ସମୟ ଆସିଲା, ମଠରେ ବାଜି ଉଠିଲା ଶୁଭ ଶଙ୍ଖ । ରଞ୍ଜାଗୋଳ ଗାଁ ସ୍କୁଲରେ ମୃଦଙ୍ଗ, ଝାଞ୍ଜ, ଶଙ୍ଖ ଏବଂ କାହାଳି ବାଜି ଉଠିଲା । ନାହାକ ସାହିର ଗଣନା ଅନୁସାରେ ମ:ଇ ସ୍କୁଲର ନଥିପତ୍ର ଧରି ମାଷ୍ଟେ ମହୋଦୟଙ୍କ ସହିତ ଆଖପାଖ ଅଗଣିତ ଗ୍ରାମବାସୀ ଚାଲିଲେ ଖଜୁରିଆ କଟାର ନୂତନ ମ:ଇ ସ୍କୁଲର ଅଭିମୁଖେ । ପଟୁଆର ଯାଇ ପହଞ୍ଚିଲା ଖଜୁରିଆ କଟାରେ । ନନ୍ଦପୁରର ଆଚାର୍ଯ୍ୟଙ୍କ ମହାଶୟଙ୍କ ଦ୍ୱାରା ପୂଜାର୍ଚ୍ଚନା ହୋଇ ନୂତନ ଗୃହ ଉଦ୍‌ଘାଟିତ ହେଲା । ନୂତନ ଗୃହରେ ଲାଗିଥାଏ ବାଉଁଶ ଫାଳ ଦ୍ୱରା ବନ୍ଧା ଯାଇଥିବା କବାଟ । ଭଲ ଦେଖା ନଯିବାରୁ ପରଦିନ ମାଷ୍ଟେ ନିଜ ଘର ର ଦ୍ୱାରବଂଧ ଏବଂ କବାଟ ଖୋଲିନେଇ ମ:ଇ ସ୍କୁଲରେ ପରିବାର ର ବିରୋଧ ସତ୍ୱେ ଲଗାଇଲେ । ଗାଁ ଲୋକମାନେ କହିଲେ ଅରକ୍ଷିତ ବାୟା ହୋଇଗଲା । କିଛି ଶିକ୍ଷିତ ଲୋକମାନେ ମଧ ଉପହାସ କଲେ, ଅରକ୍ଷିତ ଗୋପବନ୍ଧୁ ସାଜି ଖଜୁରିଆ କଟାରେ ବନ ବିଦ୍ୟାଳୟ କରୁଛି । ଶେଷରେ କେହି ରାତିରେ ପୋଡ଼ିଦେବେ ।

ଅନେକ ଉପହାସ । ସତେ ଯେପରି ଅନ୍ୟର ଉପହାସ ଗୁଡ଼ିକ ତାଙ୍କୁ ପ୍ରେରଣା ଯୋଗାଉ ଥିଲା । ଏକନିଷ୍ଠ ସାଧନା ଲକ୍ଷ୍ୟ ହାସଲରେ ସହାୟକ ହୋଇଥାଏ । ମାଷ୍ଟେ ମହୋଦୟ ତାଙ୍କର ସେହି ଏକନିଷ୍ଠ ସାଧନା ପଥରେ ଚାଲି ଥାନ୍ତି । ଜୁଲାଇ ୧ ତିରିଖ ଶିକ୍ଷା ବର୍ଷର ଆରମ୍ଭରେ ଷଷ୍ଠ ଶ୍ରେଣୀରେ ପିଲାମାନଙ୍କର ନାମଲେଖା ଆରମ୍ଭ ହୋଇଗଲା । ଗୋଟିଏ

ସପ୍ତାହ ମଧ୍ୟରେ ନାମ ଲେଖାଇଲେ ୫୨ ଜଣ ଛାତ୍ର ଏବଂ ୪ ଜଣ ଛାତ୍ରୀ । ପ୍ରଥମେ ପ୍ରଧାନ ଶିକ୍ଷକ ଭାବରେ ନିଯୁକ୍ତି ପାଇଲେ ବେଣୁଧର ସାହୁ (କୁକୁଟା) । ଏତେ ସଂଖ୍ୟକ ଛାତ୍ର ଛାତ୍ରୀଙ୍କୁ ନେଇ ଶିକ୍ଷାଦାନ କରିବା ମାଷ୍ଟେ ମହୋଦୟଙ୍କ ପାଇଁ ଚିନ୍ତାର ବିଷୟ ହେଇ ପଡ଼ିଲା । ପ୍ରଧାନ ଶିକ୍ଷକ କହିଲେ, ଷଷ୍ଠ ଶ୍ରେଣୀକୁ ବିଭକ୍ତି କରଣ କରାଯିବ (ଝରମଷ୍ପସକ୍ଟଭ) ଆଉ ଗୋଟିଏ ଶ୍ରେଣୀ ଗୃହର ଆବଶ୍ୟକତା ରହିଛି । ସପ୍ତମ ଶ୍ରେଣୀ ପାଇଁ ଚିନ୍ତା କରିବା ।

୫୨ ଜଣ ଛାତ୍ର ୪ ଜଣ ଛାତ୍ରୀ ଖଜୁରିଆ କଟା ମ:ଇ ସ୍କୁଲରେ ନାମ ଲେଖାଇ ଛନ୍ତି । ମାଷ୍ଟେ ମହୋଦୟଙ୍କ ଆନନ୍ଦର ସୀମା ନାହିଁ । ସବୁ ଯାଗାରେ ଏହିକଥା କହି ଚାଲିଲେ । ପୁଣି ସକାଲୁ ସକାଳୁ ଯାଇ ପହଞ୍ଚିଲେ ସାନ ହିନ୍ଦୋଳର ମଦନ ପ୍ରଧାନଙ୍କ ନିକଟରେ । ତାଙ୍କୁ ଘରେ ନପାଇ ପୁଣି ଚାଲିଲେ ରଂଜାଗୋଳ । ସେଠାରେ ମ୍ନ କାହାର ଭେଟ ହେଲା ନାହିଁ । ସେମାନେ ସମସ୍ତେ କୃଷକ । ବେଉଷଣ କାର୍ଯ୍ୟ ଆରମ୍ଭ ହୋଇ ଯାଇଥାଏ । ସେମାନଙ୍କୁ ଗାଁରେ ପାଇବେ କିପରି ? ମାଷ୍ଟେ ମନକୁ ମନ ବିଚାର କଲେ, ସେମାନେ ସମସ୍ତେ କୃଷିଜୀବୀ । ଆଜି କୃଷି କର୍ମ ନକଲେ କାଲି ଖାଇବେ କ'ଣ । ପରିବାର ପୋଷଣ କରିବାତ ଅସମ୍ଭବ ହୋଇ ପଡ଼ିବ । ସ୍କୁଲରେ ମୂଲିଆ ଲଗାଇବା ପାଇଁ ଅର୍ଥର ମଧ ଆବଶ୍ୟକତା ରହିଛି । ତେଣୁ ସେ ନିଜର ହଳ ହଳିଆ ନେଇ ଅନ୍ୟ ଗୋଟିଏ ଶ୍ରେଣୀ ଗୃହକୁ ମରାମତି କଲେ । ସେ ସ୍କୁଲ ନାମରେ ବ୍ୟସ୍ତ ରହିବାରୁ ସେ ବର୍ଷ ଜମି ଚାଷ ହୋଇ ପାରିଲା ନାହିଁ । ସେଥିପ୍ରତି ତାଙ୍କର ନିଘା ନଥାଏ । ଷଷ୍ଠ ଶ୍ରେଣୀ ବିଭକ୍ତ ହୋଇ ଦୁଇଟି ଗୃହରେ ଶିକ୍ଷାଦାନ ଚାଲିଲା । ସପ୍ତମ ଶ୍ରେଣୀ ଚାଲିଲା ଖୋଲା ଘରେ ।

ମାଷ୍ଟେ ନିଜ ହଳିଆକୁ ଉପଦେଶ ଦେଇ କହିଲେ ଏହି ବର୍ଷ ଆମରତ ଚାଷନାହିଁ, ଏଇଆ ଆମ ପାଇଁ ଗୋଟେ ସୁଯୋଗ, ତୃତୀୟ ବଖରାଟି ଝାଟି ମାଟିରେ ଆବଦ୍ଧ କରିଦେବା । ତାହା ହିଁ ହେଲା । ତୃତୀୟ ବଖରାଟି ଶେଷ ହୋଇଗଲା । ମାଷ୍ଟେ ନିଜର ଶିକ୍ଷକତା କଥା ଭୁଲି ଯାଇଛନ୍ତି । ବହୁ ଦିନ ହେଲା ସ୍କୁଲକୁ ଯାଇ ନାହାନ୍ତି । ଆଉ ଶିକ୍ଷକତା କରିବାର ଇଛା ମଧ ନାହିଁ । ଶିକ୍ଷକ ଭାବରେ ସ୍କୁଲକୁ ନଜିବା ମଧ ଉଚିତ୍ ନୁହେଁ ମନେକରି ଶିକ୍ଷକତା ଛାଡ଼ିଦେଲେ । ରୋଜଗାର ନାହିଁ, ଚାଷନାହିଁ, ଯାହା କିଛି ପାଇଲେ ସ୍କୁଲ ପାଇଁ ଖର୍ଚ୍ଚ କଲେ । ସତେ ଯେପରି ସେ ଖଜୁରିଆ କଟା ପାଇଁ ସବୁ ତ୍ୟାଗ କରି ଦେଇଛନ୍ତି ।

ଠିକ୍ ଏହି ସମୟରେ ଶିକ୍ଷା ମନ୍ତ୍ରୀ ପବିତ୍ର ମୋହନ ପ୍ରଧାନ ସ୍କୁଲ ପାଇଁ ଟ.୨୦୦୦.୦୦ ଟଙ୍କା ମଞ୍ଜୁରୀ କଲେ । ମାଷ୍ଟେ ମହୋଦୟଙ୍କ ଆନନ୍ଦ କହିଲେ ନସରେ ।

ସେ ଆନନ୍ଦରେ ବିଭୋର ହୋଇ ଗାଁକୁ ଗାଁ ବୁଲି ବୁଲି ଗାଇ ଚାଲିଲେ । ଟଙ୍କା କିପରି ଖର୍ଚ୍ଚ ହେବ । ସେଥି ପାଇଁ ପରିଚାଳନା କମିଟି ଗଠନ କରାଗଲା । ସେହି ଟଙ୍କା ସ୍କୁଲର ଆବଶ୍ୟକତା ଉପକରଣ ପାଇଁ ଖର୍ଚ୍ଚ କରାଗଲା । ମାଷ୍ଟେ ସେହି ପରିଚାଳନା କମିଟିର ସଭ୍ୟ ରହିଲେ ନାହିଁ । ବାହାରେ ରହି ସେବା କରବା ପାଇଁ ପ୍ରତିଶ୍ରୁତି ବଦ୍ଧ ହେଲେ । ତାଙ୍କ ପୁଅ ବିରଞ୍ଚି ମାଟ୍ରିକ ପାଶ କଲେ ସେହି ସ୍କୁଲରେ ବିନା ବେତନରେ ଶିକ୍ଷକତା କରିବ ବୋଲି କହିଲେ, ଏହାଶୁଣି ସମସ୍ତେ ଖୁସିହେଲେ ଏବଂ ଖଜୁରିଆ କଟାକୁ 'ଅରକ୍ଷିତ ନଗର' ରେ ନାମିତ କରିବା ପାଇଁ ଅନୁରୋଧ ଜଣାଇଲେ । ମାଷ୍ଟେ ମହୋଦୟ କାନ୍ଦି ପକାଇଲେ । କହିଲେ ମୁଁ ପିଲାରୁ ମୋ ବାପ ମାଆଙ୍କୁ ହରାଇ ବସିଛି । ସେଥିପାଇଁ ମୋତେ ଘର ଲୋକ ଅରକ୍ଷିତିଆ ଡାକନ୍ତି । ଯଦି ମୋ ନାମରେ କିଛି କରାଯାଏ ସେ ମଧ୍ୟ ଅରକ୍ଷିତିଆ ହୋଇଯିବ । ସେଥିପାଇଁ ମୁଁ ପରିଚାଳନା କମିଟିରେ ରହିଲି ନାହିଁ । ମାଷ୍ଟେ ମହୋଦୟଙ୍କ ଚକ୍ଷୁ ଲୋତକ ପୂର୍ଣ୍ଣ ହୋଇଗଲା । ନିଜର କୋହ ହୃଦୟରେ ଚାପି ରଖିପାରିଲେ ନାହିଁ । କାନ୍ଦି ପକାଇଲେ । ଯାହାହେଉ କୌଣସି ମତେ ଶିକ୍ଷାବର୍ଷ ସରିଗଲା ।

ତା ପରବର୍ଷ ହିନ୍ଦୋଳରେ ଶିକ୍ଷାର ପ୍ରସାର ଘଟିଲା । ହିନ୍ଦୋଳରେ ଏକ ସଙ୍ଗରେ ଚାରି ଗୋଟି ମ:ଇ ସ୍କୁଲ ଖୋଲିଲା । ଛୋଟାପଡ଼ା ମ:ଇ ସ୍କୁଲ, ରାସୋଳ ମ:ଇ ସ୍କୁଲ, ଦୁଦୁର କୋଟ ମ:ଇ ସ୍କୁଲ ଏବଂ ପରୁଣା କୋଟ ମ:ଇ ସ୍କୁଲ । ସ୍କୁଲ ଖୋଲିଯିବା ପରେ ଶିକ୍ଷକ ମିଳିବା କଷ୍ଟକର ହୋଇ ପଡ଼ିଲା । ହିନ୍ଦୋଳରେ ମାଟ୍ରିକ ପାଶ କରିଥିବା ପିଲାଟିଏ ପାଇବା ସମ୍ଭବ ନଥିଲା । ଶିକ୍ଷକ ଖୋଜିବା ବାକୁ ପଡ଼ିଲା । ମାଟ୍ରିକ ପଢା ପିଲାଟିଏ ମିଳିଲାତ ଭାଗ୍ୟର କଥା ।

ତା ପରେ ପରେ ରଙ୍ଗାଗୋଳ ଗ୍ରାମର ଟଙ୍କଧର ପ୍ରଧାନଙ୍କ ପୁଅ ଦିବାକର ପ୍ରଧାନ କଟକରୁ ସି.ଟି ପାଶ କରି ଶିକ୍ଷକ ଭାବରେ ସେଠାରେ ଯୋଗଦେଲେ । ନିଜର ଗାଁ ସ୍କୁଲ ଭାବରେ ସ୍କୁଲର ସର୍ବାଙ୍ଗୀନ ଉନ୍ନତି ପ୍ରତି ଦୃଷ୍ଟି ଦେବାକୁ ଶିକ୍ଷା ନିରିକ୍ଷକ ତାଙ୍କୁ କହିଥାନ୍ତି । ପଡ଼ା ଗ୍ରାମର ଅନ୍ତର୍ଯ୍ୟାମୀ ନାଥ ଅନୁଗୋଳ ହାଇସ୍କୁଲରୁ ମାଟ୍ରିକ ପାଶକରି ଆସି ଖଜୁରିଆ କଟା ମି:ଇ ସ୍କୁଲରେ ଶିକ୍ଷକ ଭାବେ ଯୋଗ ଦେଲେ । ପଞ୍ଚପଡାରୁ ଦେବରାଜପତି ମାଟ୍ରିକ ସି.ଟି ପଢି ଖଜୁରିଆକଟା ରେ ଯୋଗଦେଲେ । ଏମାନେ ସମସ୍ତେ ସରକାରଙ୍କ ତରଫରୁ ଯୋଗ ଦେଇଥାନ୍ତି । ଏହି ସମୟରେ ଯୋଗ ଦେଲେ ଜଣେ ଆଦର୍ଶ ଶିକ୍ଷକ ବାଞ୍ଛାନିଧି ସାହୁ । ତାଙ୍କ ଘର ଥିଲା ହିନ୍ଦୋଳ ଏବଂ ଅନୁଗୋଳର ସୀମାନ୍ତ ଅଞ୍ଚଳ ବନ୍ତଳା । ସେ ଥିଲେ

ଜଣେ ଉତ୍ତମ ଶିକ୍ଷକ । ସେ ସ୍କୁଲଟିକୁ ଗୋଟିଏ ଆଶ୍ରମ ସ୍କୁଲରେ ପରିଣତ କରି ଦେଲେ । ଶିକ୍ଷକ ମାନେ ଶିକ୍ଷା ଦାନରେ ମନଯୋଗ ଦେଲେ । ଭଲ ଭଲ ଛାତ୍ର ଉତୀର୍ଣ୍ଣ ହୋଇ ବିଭିନ୍ନ ଉଚ୍ଚ ବିଦ୍ୟାଳୟ ମାନଙ୍କରେ ନାମ ଲେଖାଇଲେ । ହିନ୍ଦୋଳ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଆଶାନୁରୂପକ ଛାତ୍ରମାନେ ଯୋଗ ଦେବାରୁ ଅନ୍ୟାନ୍ୟ ଉଚ୍ଚ ବିଦ୍ୟାଳୟ ସହିତ ସମକକ୍ଷ ହୋଇ ପାରିଲା । ସେହି ସମୟରେ ଖ୍ୟାତି ଲାଭ କରିଥିବା ଢେଙ୍କାନାଳର ବ୍ରଜନାଥ ବଡ଼ଜେନା ଉଚ୍ଚ ଇଂରାଜୀ ବିଦ୍ୟାଳୟ ଆଗ୍ରହ ସହକାରେ ରଞ୍ଜାଗୋଳ ମ:ଇ ସ୍କୁଲର ଛାତ୍ରମାନଙ୍କୁ ଗ୍ରହଣ କଲେ । ସ୍କୁଲରେ ପିଲା ସଂଖ୍ୟା ବୃଦ୍ଧି ଘଟିବାରୁ ଆବଶ୍ୟକ ପଡ଼ିଲା ଗୋଟିଏ 'ଛାତ୍ରାବାସ' । ପୁଣି ମାଷ୍ଟେ ମହୋଦୟ ଜମି ପଡ଼ିଆ ରଖି ହଳ ହଳିଆ ନେଇ ଝାଟିମାଟି ଘର ତିଆରି କରି ଛାତ୍ରାବାସ ନିର୍ମାଣ କଲେ । ଯାହାହେଉ ମ:ଇ ସ୍କୁଲଟି ସୁନ୍ଦର ଭାବରେ ପରିଚାଳିତ ହେଉଥାଏ । ସେହି ସମୟରେ ମ:ଇ ସ୍କୁଲ ମାନଙ୍କ ମଧ୍ୟରେ ଶିକ୍ଷାର ପ୍ରତିଯୋଗିତା ମଧ୍ୟ ଦେଖା ଦେଇଥିଲା ।

ଛାତ୍ରାବାସ ତିଆରି ହୋଇଗଲା । ଅନ୍ତେବାସୀ ମାନଙ୍କ ମଧ୍ୟରେ ରହିଲେ ମେଧାବୀ ଛାତ୍ର । କିନ୍ତୁ ସେମାନେ ଥିଲେ ନିତ୍ୟାନ୍ତ ଗରିବ । ସେମାନଙ୍କୁ ଛାତ୍ରାବାସରେ ମାଗଣାରେ ରହିବାକୁ ଦିଆଗଲା । ଫଳରେ ଅନେକ ଛାତ୍ର ଏହାର ସୁଯୋଗ ପାଇଲେ । ଏଥିପାଇଁ ଚାଉଳ ସଂଗ୍ରହ କରାଗଲା । ରଞ୍ଜାଗୋଳ, ସାନ ହିନ୍ଦୋଳ, କୁକୁଟା, କାରନ୍ଦା ଏବଂ ବାରିସିଙ୍ଗା ଇତ୍ୟାଦି ଗ୍ରାମ ଗୁଡ଼ିକରୁ ଚାଉଳ ସଂଗ୍ରହ କରାଯାଇଥାଏ । ଲୋକମାନେ ଆଗ୍ରହ ସହକାରେ ଦିଅନ୍ତି । ତେଣୁ ଗରିବ ମେଧାବି ଛାତ୍ର ମାନଙ୍କୁ ଛାତ୍ରାବାସ ତରଫରୁ ସମସ୍ତ ସୁବିଧା ଯୋଗାଇ ଦିଆଯାଇଥାଏ । ଲେଖିବା ବାହୁଲ୍ୟଯେ, ମାଷ୍ଟେ ମୋହଦୟ ତାଙ୍କ ଘରୁ ସୋରିଷ, ହଳଦୀ, ଜିରା ଏବଂ ଲଙ୍କା ମରିଚ ଇତ୍ୟାଦି ଆଣିବା ସଙ୍ଗେ ଘରୁ ଜାଳେଣି କାଠ ମଧ୍ୟ ଧରି ଛାତ୍ରା ବାସକୁ ଯାଆନ୍ତି । ଛାତ୍ରା ବାସରେ ପିଲାମାନେ ବଗିଚା କାମ କରିବେ ତେଣୁ ତାଙ୍କ ଘରୁ ସେ କାଙ୍କ, କୋଦାଳ, ସାବଳ ଏବଂ କୋଡି ଇତ୍ୟାଦି ସବୁ ନେଇ ଯାଆନ୍ତି । ଘରୁ ସାରୁ, ଖମ୍ବ ଆଳୁ, ଶିମ୍ବ ଇତ୍ୟାଦି ପରିବା ମଧ୍ୟ ନେଇ ଛାତ୍ରାବାସରେ ପିଲାମାନଙ୍କୁ ଅପ୍ୟାହିତ କରାନ୍ତି । ଯେପରି ପିଲା ମାନଙ୍କ ଠାରୁ ଶିକ୍ଷକ ପର୍ଯ୍ୟନ୍ତ ସମସ୍ତେ ତାଙ୍କ ନିଜର ।

ନୈତିକତା ଦୃଷ୍ଟିରୁ ମାଷ୍ଟେ ମହୋଦୟ ସ୍ୱେଚ୍ଛାକୃତ ଭାବରେ ଚାକିରୀରୁ ଅବସର ନେଇ ସାରିଥିଲେ । ଖଜୁରିଆ କଟା ପାଇଁ ସମୟ ଦେବା ଫଳରେ ତାଙ୍କୁ ଅନେକ ସମୟ

ଅନୁପସ୍ଥିତ ହେବାକୁ ପଡ଼ିଲା । କେହି ତାଙ୍କୁ କିଛି ନକହିଲେ ବି ସୁଦ୍ଧା ନିଜ କର୍ତ୍ତବ୍ୟରେ ଅବହେଳା କରିବା ଅପେକ୍ଷା ଚାକିରୀରୁ ଅବ୍ୟାହତି ନେବା ଉଚିତ୍ ମନେ କରି ଶିକ୍ଷକତା ଛାଡ଼ି ଦେଇଥିଲେ । ୧୯୫୦/୫୧ ମସିହା ବେଳକୁ ହିନ୍ଦୋଳ ଗୋଟିଏ ସ୍ୱତନ୍ତ୍ର ଉପଖଣ୍ଡ (ବ୍ଲକ) ଭାବରେ ଘୋଷିତ ହେଲା । ପଞ୍ଚାୟତ ସମିତିର ଚେୟାରମ୍ୟାନ୍ ହେଲେ ପୂର୍ବତନ ସ୍ୱାଧୀନତା ସଂଗ୍ରାମୀ ଦିନବନ୍ଧୁ ଆଚାର୍ଯ୍ୟ । ସେ ପ୍ରଜାମଣ୍ଡଳ ପାଇଁ ଖଜୁରିଆ କଟାରେ ଯେଉଁ ଜମି ରଖିଥିଲେ ସେହି ଜମିକୁ ମ:ଇ ସ୍କୁଲକୁ ଦାନ ସୂତ୍ରରେ ପ୍ରଦାନ କଲେ । ବ୍ଲକ ମାଧ୍ୟମରେ କିଛି କିଛି ଅର୍ଥ ମଧ୍ୟ ପ୍ରଦାନ କଲେ । ଫଳରେ ସ୍କୁଲର ଆଉ କିଛି ବିଶେଷ ଅସୁବିଧା ରହିଲା ନାହିଁ ।

ପଞ୍ଚପଡ଼ାର ଭଗବାନ ପତି ଖଜୁରିଆ କଟା ସ୍କୁଲର ପ୍ରଥମ ବର୍ଷର ଛାତ୍ର ଥିଲେ । ସେଠାରୁ ସେ ମାଇନର ସ୍କୁଲର ପାଠପଢା ଶେଷକରି ହିନ୍ଦୋଳ P.W.D ରେ ୱାର୍କ ସରକାର ଭାବେ ରହିଲେ । ତେଣୁ ସେ ବି.ଡି.ଓ ଙ୍କୁ ସବୁକଥା ଅବଗତ କରାଇ P.W.D ମାଧ୍ୟମରେ ଗୋଟିଏ ବଡ଼ ଟିଣ ଛପର ଘର କରାଇ ଦେଲେ । ଗାଁରେ ମାଷ୍ଟେ ମହୋଦୟଙ୍କୁ କହିଲେ, ସ୍କୁଲ ହୋଇଗଲା । ସ୍କୁଲରେ ଆଉ ବିଶେଷ ଅସୁବିଧା ନାହିଁ । ଏଣିକି ଘରକଥା ଟିକିଏ ବୁଝନ୍ତୁ । ପିଲାମାନେ ବଡ଼ ହୋଇଗଲେ । ଚାକିରୀ ନାହିଁ, ଖଜୁରିଆ କଟା ପାଇଁ ଚାଷ ଭାଙ୍ଗିଲେ, ଏଣିକି ଘର ପ୍ରତି ନଜର ଦିଅନ୍ତୁ । ମାଷ୍ଟେ ଉତ୍ତର ଦେଲେ ସବୁ ଭଗବତ ଜୀଉଙ୍କ ଇଛା ।

ଝିଅ କୁନେଇର ବାହାଘର, ପୁଅ ବିରଞ୍ଚି ଆଉ ଗୋଟିଏ ବର୍ଷ ପରେ କଲେଜ ଯିବ । ସେ ହିନ୍ଦୋଳ ଉଚ୍ଚ ଇଂରାଜୀ ବିଦ୍ୟାଳୟର ଜଣେ ମେଧାବୀ ଛାତ୍ର । ଘରେ ଚାଷ ବାସ ନାହିଁ । ଏ ସବୁକୁ ଲକ୍ଷକଲେ ମାଷ୍ଟେ ମହୋଦୟ ଯେପରି ଚିନ୍ତାରେ ଭାଙ୍ଗି ପଡ଼ିଛନ୍ତି । ପୁଣି ଖଜୁରିଆ କଟା ମନେ ପଡ଼ିଲେ ସବୁ ଭୁଲି ଯାନ୍ତି । ସତେ ଯେପରି ଖଜୁରିଆ କଟା ଥିଲା ତାଙ୍କର ଆତ୍ମା । ଯାହାହେଉ ସବୁଦିନ ସମାନ ଯାଏ ନାହିଁ । ମାଷ୍ଟେ ମହୋଦୟଙ୍କୁ ଆର୍ଥୀକ ଅନାଟନର ସମ୍ମୁଖୀନ ହେବାକୁ ପଡ଼ିଲା । ନିଷ୍ପତି ନେଲେ ପୁଣି ଥରେ ଶିକ୍ଷକତା କରିବେ । ସେହି ସମୟରେ D.I. ଥାନ୍ତି ହରିହର ମିଶ୍ର । ତାଙ୍କ କାର୍ଯ୍ୟାଳୟକୁ ଯାଇ ଖଣ୍ଡିଏ ଦରଖାସ୍ତ ଦେଲେ । D.I. କହିଲେ ପୁନଃ ନିଯୁକ୍ତି ନିମନ୍ତେ ସରକାରୀ ସ୍ତରରେ ସେମିତି ନିୟମ ନାହିଁ । ନିରାଶ ହୋଇ ମାଷ୍ଟେ ମହୋଦୟ ଫେରି ଆସିଲେ । ଠିକ୍ ସେହି ସମୟରେ ହିନ୍ଦୋଳରେ ନୂଆକରି ଜଣେ S.I. ନିଯୁକ୍ତି ହେଲେ । ତାଙ୍କ ନାମ ଥିଲା ଗତିକୃଷ୍ଣ ମିଶ୍ର । ଗତି ବାବୁ

ନାମରେ ବେଶ୍ ପରିଚିତ ଥିଲେ । ହିନ୍ଦୋଳରେ ସମସ୍ତ ଶିକ୍ଷକ ମାନଙ୍କର ଗୋଟିଏ ସଭା ଚାଲିଥାଏ । ସେଠାରେ ଉପସ୍ଥିତ ଥାନ୍ତି D.I. ହରିହର ମିଶ୍ର, S.I. ଗତିକୃଷ୍ଣ ମିଶ୍ର ଏବଂ ବ୍ଲକ ଚେୟାରମ୍ୟାନ୍ ଦିନବନ୍ଧୁ ଆଚାର୍ଯ୍ୟ । ଏହି ବରିଷ୍ଠ ଅଧିକାରୀଙ୍କ ମଧ୍ୟରେ ଆଲୋଚନା ହେଲା ମାଷ୍ଟେ ମହୋଦୟଙ୍କ ବିଷୟରେ । ଗୋଟିଏ ପକ୍ଷରେ ମାଷ୍ଟେ ମହୋଦୟଙ୍କ ପ୍ରତି ଉଦାରତା ଅନ୍ୟ ପକ୍ଷରେ ସରକାରୀ ନିୟମ । ଯାହାହେଉ ତାଙ୍କର ଆଦର୍ଶ କର୍ମକୁ ନେଇ ମାଷ୍ଟେ ମହୋଦୟଙ୍କୁ ପୁନଃ ନିଯୁକ୍ତି ଦିଆ ଗଲା । କିନ୍ତୁ ସାଧାରଣ (untrend) ଶିକ୍ଷକ ଭାବେ ବେତନ ପାଇବେ । ମାଷ୍ଟେ ଆଶ୍ୱସ୍ତି ବୋଧ କଲେ ।

'ଯାହାକୁ ଯାହା ଗଢ଼ିଛି ଦଇବ' ନ୍ୟାୟରେ ପୁଣି ଚାକିରୀ ଜୀବନ ଭିତରେ ପ୍ରବେଶ କରୁକରୁ ମାଷ୍ଟେ ମହୋଦୟ ଉଚ୍ଚ ଇଂରାଜୀ ବିଦ୍ୟାଳୟ (High School) ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ ଜାରି ରଖିଲେ । ପୁଣି ଗାଁ ଗାଁ ବୁଲି ଭିକ୍ଷାକରି ପାଣ୍ଠି ସଂଗ୍ରହ କଲେ । ରଞ୍ଜାଗୋଳ ଏବଂ ଖଜୁରିଆ ଅଧିବାସୀ ମାନେ ବିନା ମୂଲ୍ୟରେ ହାଇସ୍କୁଲ ପାଇଁ ଜମି ଦେଇଦେଲେ । ୧୯୫୮ ମସିହାରେ ଖଜୁରିଆ କଟା ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରାଗଲା । ପ୍ରଥମ ବର୍ଷ ମ:ଇ ସ୍କୁଲର ଗୋଟିଏ ଘର ନେଇ ଅଷ୍ଟମ ଶ୍ରେଣୀ ଖୋଲିଲା । ରାମଚନ୍ଦ୍ରଙ୍କ ପଛରେ ହନୁମାନପରି ରଞ୍ଜାଗୋଳର ଜଗନ୍ନାଥ ପ୍ରଧାନ (ବୁଟା ପ୍ରଧାନ) ମାଷ୍ଟେ ମହୋଦୟଙ୍କ ପଛେ ପଛେ ଲାଗି ରହିଲେ । ଯେଉଁ ଅଞ୍ଚଳକୁ ଗଲେ ଦୁଇ ଜଣ ଯାଉଥାନ୍ତି । ତେଣୁ ଲୋକମାନେ ଥଟ୍ଟା କରନ୍ତି 'ଅରକ୍ଷିତକୁ ଖଣ୍ଡିଆ ଜଗନ୍ନାଥ ସାହା' । ଯାହାହେଉ ଜଗନ୍ନାଥ ପ୍ରଧାନ ମାଷ୍ଟେ ମହୋଦୟଙ୍କୁ ପ୍ରତିଶ୍ରୁତି ଦେଲେ ଯେ, ହାଇସ୍କୁଲ ପାଇଁ ଚାଳ ଘର ଆଦୌ କରାଯିବ ନାହିଁ । ପାଞ୍ଚଖଣ୍ଡ ଗାଁ ବୁଲିବା ଏବଂ ପ୍ରତି ଗାଁକୁ ଗୋଟିଏ ଦାୟିତ୍ୱ ଦିଆଯିବ । ସେମାନେ ସେ କାମ ତୁଲାଇବେ । ତେଣୁ ପାଞ୍ଚଖଣ୍ଡ ଗାଁକୁ ଯିବା ପାଇଁ ଦୁଇଜଣ ବାହାରିଲେ । ତେଣୁ ଉଭୟେ ଚାଲି ଚାଲି ଗାଁ କୁ ଗାଁ ଗଲେ । ପ୍ରଥମେ ଗଲେ କୁକୁଟା, କୁକୁଟା ଗାଁ ପ୍ରତିଶ୍ରୁତି ଦେଲା ଯେତେ ଘର ହେବ ସେମାନେ ଘରର ନିଅାଁ ଖୋଳିବେ । ଦ୍ୱିତୀୟରେ ଗଲେ ଚିତଲପୁର । ସେମାନେ ପ୍ରତିଶ୍ରୁତି ଦେଲେ ଯେତେ ବାଲି ଘରେ ଲାଗିବ ସେମାନେ ଦେବେ । ତୃତୀୟରେ ଗଲେ ପଞ୍ଚପଡ଼ା । ସେମାନେ ଯାହା ପଥର ଲାଗିବ ସେମାନେ ଦେବେ । ଚତୁର୍ଥରେ ଗଲେ ରଞ୍ଜାଗୋଳ । ସେମାନେ କହିଲେ ଘରର ଛାତ ପାଇଁ ଯାହା ଆଜବେଷ୍ଟସ ଲାଗିବ ସେମାନେ ଦେବେ । ପଞ୍ଚମରେ ଗଲେ କାରନ୍ଦା । ସେମାନେ କହିଲେ ଯାହା ଶ୍ରମ ଲାଗିବ ଆମେ ଶ୍ରମ କରିବୁ । ସିମେଣ୍ଟ ପାଇଁ ନନ୍ଦପୁର ଏବଂ ସାନ ହିନ୍ଦୋଳ ରାଜି

ହେଲେ । ଯାହା ହେଉ ଗୋଟିଏ ବର୍ଷରେ ତିନି ବଖରା ପକ୍କା ଘର ହୋଇଗଲା । ପ୍ରଥମ ବର୍ଷରୁ ଅଷ୍ଟମ ଶ୍ରେଣୀ  ଝରମଝସକୁଭ ହୋଇଗଲା । ବର୍ଷକୁ ବର୍ଷ ଶ୍ରେଣୀ ବଢ଼ି ଚାଲିଲା । ଛାତ୍ର ଛାତ୍ରୀ ସଂଖ୍ୟା ବଢ଼ି ଚାଲିଲା । କିନ୍ତୁ ଶିକ୍ଷକ ? ଶିକ୍ଷକ ପାଇବା କଷ୍ଟକର ହୋଇପଡ଼ିଲା । କଟକ ରାଣୀହାଟ ହାଇସ୍କୁଲରୁ ଶିକ୍ଷକ ଆସି ପାଠ ପଢ଼ାନ୍ତି । ବି.ଏ. ପଢ଼ିଥିବା ଶିକ୍ଷକଟିଏ ମିଳିବା ବଡ଼ କଷ୍ଟ । ହାଇସ୍କୁଲର ପରିଚାଳନା କମିଟିର ସଭାପତି ରହିଲେ ଡାକ୍ତର ସୁଧାକର ଆଚାର୍ଯ୍ୟ (ନନ୍ଦପୁର), ସମ୍ପାଦକ ରହିଲେ ଡାକ୍ତର ଗଙ୍ଗାଧର ପତି (ପଞ୍ଚପଡ଼ା), ସହ ସମ୍ପାଦକ ହେଲେ ଦଇତାରି ସାହୁ (ବାବନ୍ଧ), ଖଜୁରିଆ କଟାରେ ହାଇସ୍କୁଲ ପ୍ରତିଷ୍ଠା ହେଲା । ନୂତନ ଗୃହ ଉଦ୍‌ଘାଟନ କଲେ ତତ୍‌କାଳୀନ ମାନ୍ୟବର ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ । ଆଜି ନା ଅଛନ୍ତି  ମାଷ୍ଟେ ମହୋଦୟ ନା ଅଛନ୍ତି ହରେ କୃଷ୍ଣ ମହତାବ କିନ୍ତୁ ଅଦ୍ୟାବଧି ରହିଛି ସେହି ଆଜବେଷ୍ଟସ ଘର ଏବଂ ହେରେକୃଷ୍ଣ ମହତାବଙ୍କ ଦ୍ୱାରା ଉଦ୍‌ଘାଟିତ ନାମ ଫଳକ । ଉଡ଼ି ଯାଇଛି କର୍ପୁର, ପଡ଼ି ରହିଛି କନା । ତଥାପି ସେ କନାର ବାସ୍ନା ଅନେକ ।

ଖଜୁରିଆ କଟା ହାଇସ୍କୁଲ ପରେ ପରେ ଜନ୍ମନେଲା ରାସୋଳ ହାଇସ୍କୁଲ (ରାସୋଳ) ଜନତା ରାଜ ହାଇସ୍କୁଲ (ଦୁଦୁରକୋଟ) ପଲ୍ଲୀବିକାଶ ହାଇସ୍କୁଲ (କୁରୁମିଠା) ପୁରୁଣାକୋଟ ହାଇସ୍କୁଲ (ପୁରୁଣାକୋଟ), ନବପଲ୍ଲୀ ହାଇସ୍କୁଲ (ଛୋଟାପଡ଼ା) । ସମୟକ୍ରମେ ଏହିପରି ଅନେକ ଉଚ୍ଚ ଇଂରାଜୀ ବିଦ୍ୟାଳୟ ହିନ୍ଦୋଳରେ ଖୋଲି ଯାଇ ଶିକ୍ଷାକ୍ଷେତ୍ରରେ  ଏକ ଅଭୂତ ପୂର୍ବ ପରିବର୍ତ୍ତନ ଦେଖା ଦେଇଥିଲା । ଯେତେ ସଂଖ୍ୟକ ସ୍କୁଲ ଖୋଲେ ମାଷ୍ଟେ ମହୋଦୟ ସେତିକି ଆନନ୍ଦ ଅନୁଭବ କରନ୍ତି ।

ଖଜୁରିଆ କଟାରେ ହାଇସ୍କୁଲ ହେଲା ସତ କିନ୍ତୁ ଶିକ୍ଷକ ଏବଂ ଆର୍ଥିକ ସମସ୍ୟା ଲାଗି ରହିଲା । ମାଷ୍ଟେ ମହୋଦୟ ପ୍ରତି ରବିବାର ନିକଟସ୍ଥ ଗାଁ ଗୁଡିକୁ ଯାଇ ଭିକ୍ଷା କରନ୍ତି । ମୁଠି ଚାଉଳ ଠାରୁ ଆରମ୍ଭ କରି ରବି ଫସଲ ପର୍ଯ୍ୟନ୍ତ ଯେ ଯାହା ଦେଲେ ତାକୁ ସାଦରେ ଗ୍ରହଣ କରନ୍ତି । ଏହିପରି ଭାବରେ ଭିକ୍ଷା କରି ଶିକ୍ଷକ ମାନଙ୍କର ଦରମା  ଦେବାକୁ ପଡ଼େ । ହାଇସ୍କୁଲ ସହସମ୍ପାଦକ ଦୈତାରୀ ସାହୁ (ବାନ୍ଧବ)ଙ୍କ  ପୁତୁରା ହେଉଛନ୍ତି ଗିରିଶ ଚନ୍ଦ୍ର ବିଶ୍ୱାଳ । ଘର କାମାକ୍ଷାନଗର ଉପଖଣ୍ଡରେ । ସେ ରେଭେନ୍‌ସା କଲେଜରୁ ଅର୍ଥନୀତିରେ ସମ୍ମାନ ସହିତ ବି.ଏ ପାଶ୍ କରିଥିଲେ । ଦୈତାରି ସାହୁ ତାଙ୍କୁ ନେଇ ସେଠାରେ ଶିକ୍ଷକ ଭାବରେ ନିଯୁକ୍ତି ଦେଲେ । ରେଭେନ୍‌ସା କଲେଜରୁ ବି.ଏ. ପଢ଼ି ଆସି ଶିକ୍ଷକତା କରିବା ଫଳରେ ସ୍କୁଲରେ ଶିକ୍ଷାଦାନର ମାନରେ ଅନେକ ପରିବର୍ତ୍ତନ ଦେଖା ଦେଇଥିଲା । ତାର

ପରବର୍ଷ ସେ ଅନୁଗୋଳରେ B.Ed. କରିବାକୁ ଗଲେ ଏବଂ B.Ed. ପରେ ପୁଣି ଆସି ଖଜୁରିଆ କଟାରେ ଶିକ୍ଷକତା କଲେ । ସେ ହେଉଛନ୍ତି ଖଜୁରିଆ କଟା ହାଇସ୍କୁଲର ପ୍ରଥମ B.Ed. ଶିକ୍ଷକ । ପରେ ପରେ ସେ ରଞ୍ଜାଗୋଳ ଗ୍ରାମର ଜଗନ୍ନାଥ ପ୍ରଧାନଙ୍କ ଝିଅ ଝୁମୁରବାଳା ପ୍ରଧାନଙ୍କୁ ବିବାହ କରି ଥିଲେ । ଫଳରେ ସ୍କୁଲ ପ୍ରତି ତାଙ୍କର ମମତା ଏବଂ ଦାୟିତ୍ୱ ବଢ଼ିଯାଇଥିଲା । ମେଧାବୀ ଛାତ୍ରମାନେ ଉନ୍ନୀତ ହେଉଥିଲେ । ତେଣୁ ତାଙ୍କୁ ଅନ୍ୟାନ୍ୟ ଶିକ୍ଷକ ମାନଙ୍କର ଶିକାର ହେବାକୁ ପଡ଼ିଥିଲା ।

ଗିରୀଶ ଚନ୍ଦ୍ର ବିଶ୍ୱାଳଙ୍କୁ ସାକ୍ଷାତ କରିବା ପାଇଁ ମୁଁ (ଲେଖକ) କାମାକ୍ଷା ନଗର ଯାଇଥିଲି । ତାଙ୍କ ନିକଟକୁ ଯିବାର ଉଦ୍ଦେଶ୍ୟ ସେ ବୁଝିଲା ପରେ କାନ୍ଦିବାକୁ ଲାଗିଲେ । କାନ୍ଦିବା ସଙ୍ଗେ ସଙ୍ଗେ ଅରକ୍ଷିତ ପତିଙ୍କୁ ହାତଯୋଡି ଲକ୍ଷେ ନମସ୍କାର କରୁଥାନ୍ତି । ତାଙ୍କର ଶାରୀରିକ ଏବଂ ମାନସିକ ଅବସ୍ଥା ଯାହା ଦେଖିଲି ତାଙ୍କୁ କିଛି ପଚାରିବା ପାଇଁ ମୋର ବିବେକ ବାଧାଦେଲା । ତଥାପି ମୋର ଯିବାର ଉଦ୍ଦେଶ୍ୟକୁ ସାକାର କରିବା ପାଇଁ ବହୁତ କିଛି କହିଲେ । ମୁଁ ଲେଖକ ଭାବରେ ସେଠାରେ ଅଙ୍ଗେ ଲିଭାଇ ଥିବା ଏକ ଅନୁଭୂତିକୁ ସଂକ୍ଷେପରେ ବ୍ୟାକ୍ଷା କରୁଅଛି । ଜଣଙ୍କର ଅନୁଭୂତି  ଅନ୍ୟମାନଙ୍କୁ ଦିଗ୍ ଦର୍ଶନ ଦେଖାଇ ଥାଏ ।

ହାଇସ୍କୁଲରେ ଜଣେ ଶିକ୍ଷକଙ୍କର ଟଙ୍କାର ଆବଶ୍ୟକତା ପଡ଼ିଲା । ଏପରି ଆବଶ୍ୟକତା ପଡ଼ିଲାଯେ ଶିକ୍ଷକ ଜଣକ କହିଲେ ଆସନ୍ତା ସୋମବାରଦିନ ମୋତେ ଦରମା ନଦେଲେ ଶିକ୍ଷକତା ଛାଡ଼ି ଦେବି । ଗିରୀଶ ବାବୁ ଯେହେତୁ ପ୍ରଧାନ ଶିକ୍ଷକ ତେଣୁ ମାଷ୍ଟେ ମହୋଦୟଙ୍କୁ ଖବର ଦେଲେ । ସେ ଖବର ପାଇ ସେ କହିଲେ ଯେ, ରବିବାର ଦିନ ତାଙ୍କୁ ଦରମା ଦିଆଯିବ । ବ୍ୟସ୍ତ ନହେବା ପାଇଁ ଖବର ପଠାଇଲେ । ରବିବାର ହେଲା । ମାଷ୍ଟେ ନିତ୍ୟକର୍ମ ସାରି ସାଥୀରେ ଗଣ୍ଡେ ଚୁଡ଼ା ଧରି ବାହାରି ପଡ଼ିଲେ । ହରିପୁର, ଗିରିଧର ପ୍ରସାଦ, କାରନ୍ଧା ଦେଇ କୁକୁଟା ଗ୍ରାମରେ ପହଞ୍ଚିଲେ । ସଂଗୃହିତ ଜିନିଷ ଗୁଡ଼ିକୁ କୁକୁଟାରେ ବିକିଲେ । ସନ୍ଧ୍ୟାରେ ଆସି ହାଇସ୍କୁଲରେ ପହଞ୍ଚିଲେ ଏବଂ ଗିରୀଶ ବାବୁଙ୍କୁ ଡ଼କାଇଲେ । କହିଲେ ଗିରୀଶ ବାବୁ, ମୁଠି ଚାଉଳରୁ ୧୫ ଟଙ୍କା ହେଲା । ଏହି ଟଙ୍କା ସେହି ଶିକ୍ଷକଙ୍କୁ ଦେଇ ଦେବେ, ଆସନ୍ତା କାଲି ସକାଳେ ମୁଁ ଆଉକିଛି ଆଣିଦେବି । ଉକ୍ତ ଟଙ୍କା ଆପଣ ରଖି ଥାନ୍ତୁ । ତାପର ଦିନ ସକାଳୁ ନିଜ ଘରୁ  ଅଣ୍ଡାଳି ଆଠଣି ଚାରଣି କରି ପାଞ୍ଚଟଙ୍କା ନିଜ କାନିରେ ବାନ୍ଧି ହାଇସ୍କୁଲ ଅଭିମୁଖେ ଚାଲିଲେ । ଅଭାବି ଥିବା ଶିକ୍ଷକଙ୍କୁ ନିକଟକୁ ଡାକି

କହିଲେ, ଆସନ୍ତା କାଲି ତୁମର ସମସ୍ତ ଦରବା ଦେଇଦେବି । ଏଇ ପାଞ୍ଚଟଙ୍କା ରଖ, କହି ନିଜ ଦେହ ଉପରେ ପକାଇ ଥିବା ଚଦର କାନିରୁ ଟଙ୍କା ଖୋଲିଲେ । ଠିକ୍ ଏହି ସମୟରେ ଶିକ୍ଷକ ଜଣଙ୍କ ମାଷ୍ଟେ ମହୋଦୟଙ୍କ ପାଦତଳେ ସଷ୍ଟାଙ୍ଗେ ପ୍ରଣିପାତ ହୋଇ କହିଲେ, ଆଜ୍ଞା ମୋର ଟଙ୍କାର ଆବଶ୍ୟକତା ନାହିଁ । ମୁଁ ଯେଉଁ ଉଦ୍ଦେଶ୍ୟରେ ଟଙ୍କା ଆବଶ୍ୟକ କରୁଥିଲି ତାହା ଭଗବାନ ପୂରଣ କରି ଦେଇଛନ୍ତି । ମୁଁ ମୋର ଦୁଇ ମାସର ଦରମା  ସ୍କୁଲ ପାଣ୍ଠିକୁ ଉତ୍ସର୍ଗ କଲି । ଗୋଟିଏ ଶିକ୍ଷା ଅନୁଷ୍ଠାନ ପାଇଁ ଆପଣଙ୍କର କର୍ମ, ନିଷ୍ଠା, ତ୍ୟାଗ ଏବଂ ନିସ୍ୱାର୍ଥ ପରତା ଦେଖି ମୁଁ ଅଭିଭୂତ ହୋଇ ଯାଇଛି । ଉତ୍କଳମଣି ଗୋପ ବନ୍ଧୁଙ୍କ ବିଷୟରେ ଆମେ ପଢୁଥିଲୁ ଏବଂ ପିଲାମାନଙ୍କୁ ପଢାଉଛୁ ମଧ । ହେଲେ ତାଙ୍କୁ ଦେଖି ନଥିଲୁ । ଆଜି ସ୍ୱଚକ୍ଷୁରେ ମୁଁ ତାଙ୍କୁ ଦେଖୁଛି . . . . . . । ଶିକ୍ଷକ ଜଣଙ୍କ ସରକାରୀ କ୍ଷେତ୍ରରେ ଉଚ୍ଚ ପଦବୀ ପାଇ ଚାଲିଗଲେ । ଏକଥା କହିଲା ବେଳକୁ ଗିରୀଶ ବାବୁ ଏତେ ଯୋରରେ କାନ୍ଦି ଉଠିଲେ ଯେ, ମୋ ସାଥୀରେ ଥିବା ମୋ ସ୍ତ୍ରୀ ମୋତେ ଆଉକିଛି ନ ପଚାରିବା ପାଇଁ ବାଧ କଲେ । ତାଙ୍କ ସଙ୍ଗେ ମଧ କାନ୍ଦୁଥାନ୍ତି . . . ତାଙ୍କ ସ୍ତ୍ରୀ ଝୁମୁରୁ ବାଳା ।

ସେହି ସମୟରେ ଏକ ଅବିସ୍ମୃତ ଅନୁଭୂତି ଯାହାକୁ ମୁଁ ଅଙ୍ଗେ ଲିଭାଇଛି । ତାହା ସଂକ୍ଷେପରେ ବ୍ୟକ୍ତ କରୁଅଛି । ସେହି ସମୟରେ ମୁଁ ପଢୁଥାଏ ଦ୍ୱିତୀୟ ଶ୍ରେଣୀରେ । ମାଷ୍ଟେ ମହୋଦୟ ଗାଁ ସ୍କୁଲରେ ମୋର ଶ୍ରେଣୀ ଶିକ୍ଷକ ଥାନ୍ତି । ବେଳେ ବେଳେ ଶ୍ରେଣୀରେ କହନ୍ତି, ପିଲା ମାନେ ମନ ଦେଇ ପାଠ ପଢ, ବଡ଼ ହେଲେ ଖଜୁରିଆ କଟାରେ ଘରୁ ପଖାଳ ଖାଇ ପାଠ ପଢିବ । ସେହି ସମୟରେ ମାଷ୍ଟେ ମହୋଦୟ ଶ୍ରେଣୀରେ ବଡ଼ଚାଟ ମାନଙ୍କୁ ନେଇ ଗୋଟିଏ ଦଳ ଗଠନ କରିଥିଲେ । ପ୍ରତି ରବିବାର ଦିନ ଆମ୍ଭେ ମାନେ ନିକଟସ୍ଥ ଗ୍ରାମ ଗୁଡ଼ିକୁ ଯାଇ ଖଜୁରିଆ କଟା ପାଇଁ ମୁଠି ଚାଉଳ ସଂଗ୍ରହ କରୁ । ମାଷ୍ଟେ ଆମ ପାଇଁ ଗୋଟିଏ ଗୀତ ଲେଖି ଦେଇଥିଲେ । ଆମ୍ଭେମାନେ ଯେତେବେଳେ ଉଚ୍ଚସ୍ୱରରେ ଗୀତଟି ପଢୁ ସମସ୍ତେ ଖୁସି ହୋଇ ଆମକୁ ମୁଠି ଚାଉଳ ଦିଅନ୍ତି । ଗୀତଟିର ଗୋଟିଏ ପଦ ମନେଅଛି । ତାହା ହେଲା :-

"ଆସିଛୁ ଧର୍ମ ଭିକାରୀ
ଧନଦେଇ ଧର୍ମ କିଣ
ମଙ୍ଗଳ କରିବେ ହରି
ଆସିଛୁ ଧର୍ମ . . . . .

ଖଜୁରିଆ କଟାଠାରେ

ମଧ ଇଂରାଜୀ ବିଦ୍ୟାଳୟରେ

ପଢ଼ିବେ ପିଲା ତୁମରି

ଆସିଛୁ ଧର୍ମ ଭିକାରୀ. . . .

××××××

ଏହି କବିତାଟି ଦୁଇ ଜଣ ପଢନ୍ତି ଅନ୍ୟମାନେ ପାଳି ଧରନ୍ତି । ପରେ ପରେ ଉପର ଶ୍ରେଣୀର ପିଲାମାନେ ଆମ ସହିତ ଯୋଗ ଦେଲେ । ଆମେ ଯେଉଁ ଗ୍ରାମକୁ ଯାଉ ସେହି ଗ୍ରାମବାସୀମାନେ ପିଲା ମାନଙ୍କୁ ଖୁସିରେ ବିଭିନ୍ନ ଜିନିଷ ଖାଇବାକୁ ଦିଅନ୍ତି । ଆମ ପିଲାମାନଙ୍କୁ ମଧ ମଜ୍ଜା ଲାଗେ । ମୁଠି ଚାଉଳ ସଂଗ୍ରହ ପରେ ମାଷ୍ଟେ ମହୋଦୟଙ୍କ ଘରେ ତାହା ଦିଆ ଯାଇଥାଏ । କିନ୍ତୁ ପରିତାପର ବିଷୟ ଯେ, କିଛି ଖଳ ପ୍ରକୃତିର ଲୋକ ପ୍ରତିବାଦ କଲେ ଯେ, ଅରକ୍ଷିତ ମାଷ୍ଟେ ଛୋଟ ପିଲା ଗୁଡ଼ାକୁ ଭିକ ମଗେଇବା ଶିଖାଇଲେଣି । ପିଲାଗୁଡ଼ାକ ଏଣିକି ପାଠ ନପଢି ଭିକ୍ଷା ବୃତ୍ତି କରିବେ । ଫଳରେ ନିଜ ଅଭିବାବକ ମାନେ ମୁଠି ଚାଉଳ କାର୍ଯ୍ୟ କ୍ରମକୁ ବନ୍ଦ କରିଦେଲେ ।

ହାଇସ୍କୁଲ ପରିଚାଳନା କରିବା ବଡ଼ କଠିନ ହୋଇ ପଡ଼ିଲା । ପରିଚାଳନା କମିଟିକୁ ଭାଙ୍ଗି ନୂତନ ପରିଚାଳନା କମିଟି ଗଠନ କରାଗଲା । ରାଜନୀତି କରୁଥିବା ଶିକ୍ଷକ ମାନଙ୍କୁ ବିଦା କରି ଦିଆଗଲା । ମାଷ୍ଟେ ମହୋଦୟଙ୍କ ଅନେକ ଦିନର ସ୍ୱପ୍ନ ସାର୍ଥକ ହେଲା । ପୁଅ ବିରଞ୍ଚି ରେଭେନ୍‌ସା କଲେଜରୁ ବି.ଏ ପାଶ୍ କରି ବାପା ଅରକ୍ଷିତ ପତିଙ୍କର ସ୍ୱପ୍ନକୁ ସାର୍ଥକ କରିବା ପାଇଁ ବିନା ଦରମାରେ ହାଇସ୍କୁଲ ରେ ଶିକ୍ଷକତା କଲେ । ତାଙ୍କ ସଙ୍ଗେ ପଞ୍ଚପଡାରୁ ବିଜ୍ଞାନ ଶିକ୍ଷକ ଭାବେ ବ୍ରହ୍ମାନନ୍ଦ ପଣ୍ଡା ଏବଂ ହିନ୍ଦି ଶିକ୍ଷକ ଭାବେ ନାକଫୁଡ଼ି ପତି ଯୋଗଦେଲେ । କ୍ଷାତି ନାମା ଶିକ୍ଷକ ବିଦ୍ୟାଧର ମହାପାତ୍ର (ନନ୍ଦପୁର), ସର୍ବେଶ୍ୱର ମିଶ୍ର (ତାଳଚେର), ଶ୍ରୀନିବାସ ବିଶ୍ୱାଳ (ହରିପୁର), ବିଦ୍ୟାଧର ପ୍ରଧାନ (ରଞ୍ଜାଗୋଳ), ଭାସ୍କର ଚନ୍ଦ୍ର ସାହୁ (ବାରିସିଙ୍ଗା) ଇତ୍ୟାଦି ଶିକ୍ଷକ ମାନେ ନିଯୁକ୍ତି ପାଇଲା ପରେ ଶିକ୍ଷାନୁଷ୍ଠାନଟିକୁ ନିଜର କରିନେଲେ । ସେତେବେଳକୁ ହିନ୍ଦୋଳ ଉପଖଣ୍ଡରେ ଶିକ୍ଷାୟତନ ଗୁଡ଼ିକ ମଧ୍ୟରେ ଶିକ୍ଷାଦାନ ପ୍ରାୟତଃ ପ୍ରତିଯୋଗିତା ମୂଳକ ଥିଲା । ସେଥିପାଇଁ ହିନ୍ଦୋଳ ଉପଖଣ୍ଡରୁ ବହୁ ମେଧାବୀ ଛାତ୍ର ଛାତ୍ରୀ ମାନେ ଉନ୍ନୀତ ହୋଇ ଉଚ୍ଚଶିକ୍ଷା ନିମନ୍ତେ ଯାଇଥିଲେ । ଯାହାହେଉ

ଅଦ୍ୟାବଧି ସୁଦ୍ଧା ଖଜୁରିଆ କଟା ହାଇସ୍କୁଲରୁ ଉନ୍ନୀତ ହୋଇ ବିଶ୍ୱର ପ୍ରତି କୋଣେ କୋଣେ ଉଚ୍ଚ ପଦବୀରେ ରହି ଅଛନ୍ତି । କିନ୍ତୁ ବିଦ୍ୟାଳୟଟି ଯେଉଁ ପରି ଭାବରେ ଥିଲା ଏବେ ବି ମଧ୍ୟ ସେହିପରି ଅବସ୍ଥାରେ ରହିଅଛି । ଏଥିରୁ ଆମର ଜାତୀୟତା ଆମେ ନିଜେ ଉପଲବ୍ଧି କରି ପାରିବା ।

୧୯୯୮ ମସିହା ଘଟଣା । ଖଜୁରିଆ କଟା ହାଇସ୍କୁଲର ପ୍ରଧାନ ଶିକ୍ଷକ ଥାନ୍ତି ଶ୍ରୀନିବାସ ବିଶ୍ୱାଳ । ତାଙ୍କର ଦୃଷ୍ଟି ପଡ଼ିଲା ଗୋଟିଏ ମେଧାବୀ ଛାତ୍ରଙ୍କ ଉପରେ । ଛାତ୍ରଟିକୁ ନିଜ ନିକଟକୁ ଡାକି ତାର ସମସ୍ତ ବିବରଣୀ ନେଇଗଲେ । ପରେ ଛାତ୍ରଟିର ବାପାଙ୍କୁ ଡାକି ପିଲାଟିର ଭବିଷ୍ୟତ ଉପରେ ନଜର ଦେବା ପାଇଁ ଉପଦେଶ ଦେଲେ । ଛାତ୍ରଟିର ଦଶମ ଶ୍ରେଣୀ ହେଲା । ସମସ୍ତ ଶିକ୍ଷକଙ୍କୁ ପ୍ରଧାନ ଶିକ୍ଷକ କହିଲେ ଛାତ୍ରଟି ଉପରେ ସ୍ୱତନ୍ତ୍ର ନଜର ଦେବାପାଇଁ । ପ୍ରଧାନ ଶିକ୍ଷକ ସବୁ ସମୟରେ ଛାତ୍ରଟି ଉପରେ ତିକ୍ଷ୍ଣ ଦୃଷ୍ଟି ଦେବା ସଙ୍ଗେ ସଙ୍ଗେ ଈଶ୍ୱରଙ୍କୁ ମଧ୍ୟ ପ୍ରାର୍ଥନା କରନ୍ତି । H.S.C ପରୀକ୍ଷା ସରିଗଲା । ପରୀକ୍ଷା ଫଳ ଘୋଷିତ ହେଲା । କିନ୍ତୁ ପ୍ରଧାନ ଶିକ୍ଷକ ହାଇସ୍କୁଲ ପରୀକ୍ଷା ଫଳ କଥା ସଂପୂର୍ଣ୍ଣ ଭାବରେ ଭୂଲି ଯାଇଥାନ୍ତି ଝିଅ ବିଭାଘରର କାର୍ଯ୍ୟ ବ୍ୟସ୍ତତା ହେତୁ । ସେ ଦିନ ଥାଏ ଝିଅ ବିଭାଘର, ସମ୍ବନ୍ଧୀ ହେବାକୁ ଯାଉଥିବା ମନର ଉତ୍ଫୁଲତା ଉପରେ ଆଉକେହି ହଠାତ୍ ଆନନ୍ଦାହୁତି ଢାଳି ଦେଲେ । ସେମାନେ ଥିଲେ କଟକ ଦୂରଦର୍ଶନର ସାମ୍ବାଦିକଦଳ । ଘଟଣା କ'ଣ ?

୪୦ବର୍ଷର ପୁରାତନ ଖଜୁରିଆ କଟା ହାଇସ୍କୁଲ । ଛାତ୍ର ଶ୍ରୀମାନ୍ ଦୀପକ କୁମାର କର ଏଚ.ଏସ.ସି ୧୯୯୮ ପରୀକ୍ଷାରେ ସମଗ୍ର ରାଜ୍ୟରେ ସପ୍ତମ ସ୍ଥାନ ହାସଲ କରି ତାଙ୍କ ଶିକ୍ଷାନୁଷ୍ଠାନ ପାଇଁ କେବଳ ଗୌରବ ଆଣି ନାହାନ୍ତି ଏ କ୍ଷେତ୍ରରେ ଇତିହାସ ସୃଷ୍ଟି କରିଛନ୍ତି । ଅତୀତରେ ସ୍କୁଲର କୌଣସି ଛାତ୍ର ଏଭଳି ଅପୂର୍ବ କୃତିତ୍ୱ କେବେ ହାସଲ କରି ନଥିଲେ । ଏହି ସଫଳତା ପାଇଁ ସ୍କୁଲର ପ୍ରଧାନ ଶିକ୍ଷକ ଭାବେ ଆପଣ ଗର୍ବ ଅନୁଭବ କରୁ ଅଛନ୍ତିତ ? ପଚାରିଲେ କଟକରୁ ଆସିଥିବା ସାମ୍ବାଦିକମାନେ । ପ୍ରଧାନ ଶିକ୍ଷକ ଶ୍ରୀନିବାସ ବାବୁ ହତବାକ୍ ହୋଇଗଲେ । ଝିଅ ବିଭାଘର, ଘରେ ମିଠାର ଅଭାବ ନଥିଲା । ସାମ୍ବାଦିକ ମାନଙ୍କୁ ଉତ୍ତମ ଚର୍ଚ୍ଚାରେ ଆପ୍ୟାହିତ କରି ମାଷ୍ଟେ ମୋହଦୟଙ୍କୁ (ଅରକ୍ଷିତ ପତିଙ୍କ ଉଦ୍ଦେଶ୍ୟରେ) ସ୍ମରଣ କରି ହାତ ଯୋଡ଼ି କହିଲେ ପରଲୋକରେ ରହି ଆପଣ ହିଁ ଖୁସି ହୁଅନ୍ତୁ ।

ହାଇସ୍କୁଲ ଗଠନ ପରେ ମାଷ୍ଟେ ମହୋଦୟଙ୍କ ମନ ଥୟ ଧରି ପାରିନଥିଲା । ପୁଣି ପବିତ୍ର ମୋହନ ପ୍ରଧାନଙ୍କୁ ଧରି ଖଜୁରିଆ କଟାରେ ଗୋଟିଏ ଇ.ଟି.ସ୍କୁଲ ସ୍ଥାପନ କଲେ ।

ଇ.ଟି ସ୍କୁଲ ପାଇଁ ସରକାରଙ୍କ ତରଫରୁ ଅନେକ ଗୁଡିଏ ପକ୍କା ଘର ତିଆରି ହେଲା । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଶିକ୍ଷକ ମାନେ ଆସି ଏହି ଶିକ୍ଷକ ତାଲିମି ପ୍ରତିଷ୍ଠାନରେ ପ୍ରଶିକ୍ଷଣ ନେଲେ । କିଛି ବର୍ଷପରେ ଏହି ଇ.ଟି ସ୍କୁଲଟି ସି.ଟି ସ୍କୁଲରେ ପରଣତ ହୋଇଗଲା । ସି.ଟି. ସ୍କୁଲ ହେଲା ପରେ ଶିକ୍ଷା କ୍ଷେତ୍ରରେ ଖଜୁରିଆ କଟାର ଏକ ଅଭୂତ ପୂର୍ବ ପରିବର୍ତ୍ତନ ଆସିଗଲା । ବାହାରୁ ଭଲଭଲ ଶିକ୍ଷକ ମାନେ ଆସି ପ୍ରଶିକ୍ଷଣ ନେଲେ । ମ.ଇ ସ୍କୁଲ, ହାଇସ୍କୁଲ ଏବଂ ସି.ଟି ସ୍କୁଲ ଏକ ସମୟରେ ଦକ୍ଷ ଶିକ୍ଷକ ମାନଙ୍କ ନେତୃତ୍ୱରେ ପରିଚାଳିତ ହେଉଥାଏ । ସନ୍ଧ୍ୟା ସମୟରେ ତିନିଗୋଟି ଶିକ୍ଷାନୁଷ୍ଠାନର ପ୍ରଧାନ ଶିକ୍ଷକ ମାନେ ଏକତ୍ରିତ ହୋଇ ଶିକ୍ଷା ସଙ୍ଗେ ଖଜୁରିଆ କଟାର ଭବିଷ୍ୟତ ପ୍ରକଳ୍ପ ଉପରେ ଆଲୋଚନା ମଧ୍ୟ କରୁଥାନ୍ତି । ଶିକ୍ଷାନୁଷ୍ଠାନ ଗୁଡ଼ିକର ଅଭ୍ୟନ୍ତରିଣ ସମ୍ପର୍କ ଏତେ ଉଚ୍ଚ କୁଟୀର ଥିଲା ଯେ ଖଜୁରିଆ କଟାକୁ ବିଦ୍ୟାନଗରୀ କୁହାଯାଉଥିଲା ।

କଥା ହେଉଛି ହିନ୍ଦୋଳ ରାଜ ପରିବାର ଏବଂ ଆଠଗଡ଼ ରାଜ ପରିବାରଙ୍କ ମଧ୍ୟରେ ଉତ୍ତମ ସମ୍ପର୍କ ରହିଥାଏ । ଡ଼ଃ ରାଧାନାଥ ରଥଙ୍କର (ସମାଜ ସଂପାଦକ) ଆଠଗଡ଼ ରାଜ ପରିବାର ସହିତ ମଧ୍ୟ ଉତ୍ତମ ସମ୍ପର୍କ ରହିଥାଏ । ସେତେବେଳେ ରାଧାନାଥ ରଥ ମନ୍ତ୍ରୀ ଥାନ୍ତି । ଅରକ୍ଷିତ ପତିଙ୍କୁ ମନ୍ତ୍ରୀ ମହୋଦୟ ଜଣେ ସମାଜ ସେବୀ ଭାବରେ ବେଶ୍ ଜାଣିଥିଲେ । ତେଣୁ ମନ୍ତ୍ରୀଙ୍କର ଶୁଭଦୃଷ୍ଟି ଖଜୁରିଆ କଟା ଉପରେ ପଡ଼ିଥିଲା । ତେଣୁ ଶିକ୍ଷାନୁଷ୍ଠାନ ସଙ୍ଗେ ସଙ୍ଗେ ସେଠାରେ ଗଢି ଉଠିଥିଲା ଗୋଟିଏ ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ର, ପଶୁ ଡାକ୍ତର ଖାନା, ସରକାରୀ ମତ୍ସ୍ୟ ଉନ୍ନୟନ କେନ୍ଦ୍ର ଏବଂ ରଞ୍ଜାଗୋଳ ପଞ୍ଚାୟତ ଅଫିସ ଇତ୍ୟାଦି ଅନେକ ଗୁଡ଼ିଏ ସରକାରୀ କାର୍ଯ୍ୟାଳୟ । ଏହିପରି ଖଜୁରିଆ କଟା ହିନ୍ଦୋଳ ଉପଖଣ୍ଡର ଏକ ସମୃଦ୍ଧ ଅଞ୍ଚଳ ଭାବରେ ପରିଗଣିତ ହୋଇ ପାରିଥିଲା ।

କିଛି ବର୍ଷ ପରେ ପୁଣି ଏକ ଶିକ୍ଷାର ବିକଳ୍ପ ଦେଖା ଦେଇଥିଲା ଖଜୁରିଆ କଟାରେ । ଯାହା ପୁଣି ବ୍ୟାପୀ ଯାଇଥିଲା ସମଗ୍ର ହିନ୍ଦୋଳକୁ । ୧୯୭୫ ମସିହା ବେଳକୁ ଖଜୁରିଆ କଟାରେ ପଦାର୍ପଣ କଲେ ଯୁବ ଡାକ୍ତର ରାଧୁ ପ୍ରଧାନ (ଠେଙ୍ଗା) । ସେଠାରେ ଏକ ଡାକ୍ତରୀ ଚିକିତ୍ସା କେନ୍ଦ୍ର ଖୋଲି ଜନ ସାଧାରଣଙ୍କର ସେବା କରିବା ସଙ୍ଗେ ସଙ୍ଗେ ଖଜୁରିଆ କଟାର ସର୍ବାଙ୍ଗୀନ ଉନ୍ନତି ପାଇଁ ଲାଗି ପଡ଼ିଲେ । ସେତେବେଳକୁ ଡାକ୍ତର ଚୈତନ୍ୟ ସାହୁ ସେଠାରେ ନିଜର ଗୋଟିଏ ସେବା କେନ୍ଦ୍ର ଖୋଲି ଜନସାଧାରଣ ମାନଙ୍କର ସେବା କରି ଆସୁଥିଲେ ।

ଉଭୟ ଡାକ୍ତରଙ୍କର ମିଳନ ଫଳରେ ସ୍ୱାସ୍ଥ୍ୟ ସେବାରେ ବିକାଶ ଘଟିବା ସଙ୍ଗେ ସଙ୍ଗେ ଖଜୁରିଆ କଟାର ଅନ୍ୟାନ୍ୟ ଉନ୍ନତି କଣେ ମନୋନିବେଶ କଲେ । ସେତେବେଳେ ଡାକଘର ବିଭାଗର ନିୟମ ଥିଲା ଯେ, ଯେଉଁଠରେ ଦଶଗୋଟି ଟେଲିଫୋନ ରହିବ ସେଠାରେ ଟେଲିଫୋନ୍ ଦେବାର ବ୍ୟବସ୍ଥା କରାଯିବା ସଙ୍ଗେ ସଙ୍ଗେ ଗୋଟିଏ ଟେଲିଫୋନ ଏକ୍ସଚେଞ୍ଜ ଖୋଲିବା ପାଇଁ ବ୍ୟବସ୍ଥା କରାଯିବ । ଏହି ସୁଯୋଗ ନେଇ ରାଧୁବାବୁ ଖଜୁରିଆ କଟାକୁ ଟେଲିଫୋନ ଆଣିବା ସଙ୍ଗେ ସଙ୍ଗେ ନିଜ ଗାଁ ଠେଙ୍ଗାକୁ ନେଇଥିଲେ ।

ଏହାପରେ ବିଚାର କରାଗଲା ହିନ୍ଦୋଳରେ ଗୋଟିଏ କଲେଜ କରିବା ପାଇଁ । ଦୁଇ ଡାକ୍ତର ବନ୍ଧୁଙ୍କ ମଧ୍ୟରେ ବାର୍ତ୍ତାଳାପ ହେଲା, କରି ପାରିବା ତ ? ଦୁଇ ଡାକ୍ତର ମାଷ୍ଟେ ମହୋଦୟଙ୍କ ନିକଟକୁ ଗଲେ ଏବଂ କଲେଜ ବିଷୟରେ କଥା ବାର୍ତ୍ତା ହୋଇ ଉପଦେଶ ନେଇ ଫେରିଲେ । ମାଷ୍ଟେ ମହୋଦୟ ଉପଦେଶ ଦେଲେ ଯେ, କଲେଜ ପାଇଁ ନୂତନ ଘରର ଆବଶ୍ୟକତା ନାହିଁ । ସେତେବେଳକୁ ଖଜୁରିଆ କଟା ସିଟି ସ୍କୁଲଟି ଆଠମଲ୍ଲିକର କିଶୋର ନଗରକୁ ସ୍ଥାନାନ୍ତରିତ ହୋଇ ଯାଇଥାଏ । ସ୍କୁଲ ଘର ଏବଂ ଅବାସପତ୍ର ଗୁଡ଼ିକ ଯଥା ବିଧି ରହିଥାଏ । ତେଣୁ ମାଷ୍ଟେ ମହୋଦୟ ଉପଦେଶ ଦେଲେ ଯେ କଲେଜ ସେହିଠାରେ ଆରମ୍ଭ କରାଯାଉ ଏବଂ ଶିଘ୍ର କରାଯାଉ । ମାଷ୍ଟଙ୍କ ଠାରୁ ଉପଦେଶ ପାଇ ଡାକ୍ତର ରାଧୁ ପ୍ରଧାନ ତାଙ୍କର ସମସ୍ତ ସମୟ କଲେଜ ପାଇଁ ବିନିଯୋଗ କଲେ । କଲେଜ ପରିଷଦ ଗଠନ କରାଗଲା ।

ଦୁଇ ଡାକ୍ତର ବନ୍ଧୁଙ୍କ ସହ ବହୁମାନ୍ୟ ଗଣ୍ୟ ବ୍ୟକ୍ତି କଲେଜ ପରିଷଦରେ ରହିଲେ । କଟକ ଭୁବନେଶ୍ୱରରେ ଚାକିରୀ କରୁଥିବା ଅନେକ ବ୍ୟକ୍ତି ମଧ୍ୟ ରହି ସହଯୋଗର ହାତ ବଢାଇ ଥିଲେ । ପରିଷଦର ସଭାପତି ଭାବେ ତତ୍‌କାଳୀନ ଲୋକ ପ୍ରତିନିଧି (M.L.A) ସ୍ୱର୍ଗତ ତ୍ରିନାଥ ନାୟକଙ୍କୁ ନିର୍ବାଚିତ କରାଗଲା । ବିଶ୍ୱ ବିଦ୍ୟାଳୟର ସମସ୍ତ କାର୍ଯ୍ୟ ବୁଝିବା ପାଇଁ ରହିଲେ ଦିବ୍ୟ ନାରାୟଣ ସିଂହ । ସେ ଥିଲେ ଉତ୍କଳ ବିଶ୍ୱ ବିଦ୍ୟାଳୟ ଭୂଗୋଳ ବିଭାଗର ମୂଖ୍ୟ । ସେତେବେଳକୁ ମାଷ୍ଟେ ମହୋଦୟ ଟିକିଏ ବୟସ ଦୃଷ୍ଟିରୁ ଅବସ ହୋଇ ପଡ଼ିଥାନ୍ତି । କଲେଜ ସଭାକୁ ଯିବା ସମୟରେ ନିଜ ବଳଦ ଗାଡ଼ିରେ ବସି ଛତା ଖଣ୍ଡିଏ ଧରି ଯାଆନ୍ତି । ସେତେବେଳେ ମଟର ଗାଡ଼ିର ସୁବିଧା ନଥାଏ । ବହୁ ଆନନ୍ଦ ଉଦ୍ଦୀପନା ସହ କଲେଜ ଆରମ୍ଭ ହୋଇଗଲା । ଯେ ଯେଉଁ ପଦବୀରେ ରୁହନ୍ତୁ ନା କାହିଁକି ଡାକ୍ତର ରାଧୁ ପ୍ରଧାନ କଲେଜର ସମସ୍ତ ଦାୟୀତ୍ୱ ନେଇ ଚଳାଉ ଥାନ୍ତି । ଅରକ୍ଷିତ ପତିଙ୍କ ନାମରେ

କଲେଜର ନାମ କରଣ କରିବା ପାଇଁ ତାଙ୍କୁ ଅନୁରୋଧ କରାଗଲା । ତଥାପି ସେ କହିଲେ ମୁଁ ପରା ଅରକ୍ଷିତ . . . . . . । କଲେଜ ନାମ 'ହିନ୍ଦୋଳ ମହା ବିଦ୍ୟାଳୟ' ରଖାଯାଉ । ଏ କଲେଜ ସମସ୍ତ ହିନ୍ଦୋଳ ବାସୀଙ୍କର । ଯାହାହେଉ ନକଟସ୍ଥ ଗ୍ରାମ ଗୁଡ଼ିକ କଲେଜକୁ ସାହାଯ୍ୟ ସହାନୁଭୂତି ଯୋଗଉ ଥାନ୍ତି ।

ଦିନ ପରେ ଦିନ ଗଡ଼ି ଚାଲିଲା । ଏହିପରି କିଛି ଦିନ ଗଡ଼ି ଗଲା ପରେ ଆରମ୍ଭ ହେଲା ରାଜନୀତି । ଶିକ୍ଷା କ୍ଷେତ୍ରରେ ସତେ ଯେପରି ଓଡ଼ିଆ ଭାଇମାନେ ଖଡ଼ି ଛୁଇଁଲା ବେଳେ ତାହା ସପଥ ନେଇଥାନ୍ତି । କଲେଜ ବିଷୟରେ କିଛି ମତାନ୍ତର ହେଲା ପରେ ଲୋକ ପ୍ରତିନିଧି (M.L.A) ସ୍ୱର୍ଗତ ତ୍ରିନାଥ ନାୟକ ଖଜୁରିଆ କଟା ଠାରୁ ଅନତୀ ଦୂରରେ ସାତ ମାଇଲ ଠାରେ ଏକ ନୂତନ ମହାବିଦ୍ୟାଳୟ ଆରମ୍ଭ କଲେ । ମହାବିଦ୍ୟାଳୟ ନାମ ରଖିଲେ 'ଜନତା ମହାବିଦ୍ୟାଳୟ' । ସାତ ମାଇଲି ଏକ ଜନଶୂନ୍ୟ ଅଞ୍ଚଳ । ଆଖ ପାଖରେ ଗାଁ ଟିଏ ବି ନଥିଲା । ତ୍ରିନାଥ ବାବୁ କଲେଜ ସ୍ଥାପନ କରିବା ପୂର୍ବରୁ ମାଷ୍ଟେ ମହୋଦୟଙ୍କ ନିକଟକୁ ଯାଇ ଆଶୀର୍ବାଦ ଭିକ୍ଷା କରିଥିଲେ । ସେତେବେଳକୁ ମାଷ୍ଟେ ବୟସ ଦୃଷ୍ଟିରୁ ଅବସ ହୋଇ ପଡ଼ିଥାନ୍ତି । ତଥାପି ଉତ୍ତରରେ କହିଲେ, ତ୍ରିନାଥ, ହିନ୍ଦୋଳରେ ଯେତେ କଲେଜ ହେବ ହିନ୍ଦୋଳର ସେତିକି ଶିକ୍ଷିତ ପିଲା ବାହାରିବେ । ହିନ୍ଦୋଳ ସେତିକି ଶିକ୍ଷା କ୍ଷେତ୍ରରେ ଅଗ୍ରଗତି କରି ପାରିବ । ତେଣୁ ହିନ୍ଦୋଳରେ କଲେଜ ସଂଖ୍ୟା ବଢିଲେ କିଛି ଅସୁବିଧା ନାହିଁ । କିନ୍ତୁ ଶିକ୍ଷାନୁଷ୍ଠାନ ଗୁଡ଼ିକ ଶୃଙ୍ଖଳିତ ରହିବା ସଙ୍ଗେ ସଙ୍ଗେ ଶିକ୍ଷାର ମାନ ମଧ୍ୟ ରହିବା ଉଚିତ୍ । ସାତ ମାଇଲିରେ କଲେଜ ହେଉ ପଞ୍ଚପଡ଼ା ପିଲାମାନେ ମଧ୍ୟ ପଢିବାକୁ ଯିବେ । ବାଘଧରିଆ ଏବଂ ଦୁଦୁରକୋଟ ଗ୍ରାମ ମାନଙ୍କର ପ୍ରୋତ୍ସାହନରେ ଏବଂ ଲୋକ ପ୍ରତିନିଧି (M.L.A) ସ୍ୱର୍ଗତ ତ୍ରିନାଥ ନାୟକଙ୍କ ଉଦ୍ୟମରେ ଗଢି ଉଠିଲା 'ଜନତା କଲେଜ' ଆଜି ସାତ ମାଇଲ ହିନ୍ଦୋଳ ଉପଖଣ୍ଡର ଏକ ବ୍ୟବସାୟୀକ ପେଣ୍ଠ ରୂପେ ପରିଚିତ ହୋଇ ପାରିଛି । ଏହା ଉପରେ ସ୍ୱର୍ଗତ ତ୍ରିନାଥ ନାୟକଙ୍କ ଅବଦାନ ଅତୁଳନୀୟ । ଏହା ପରେ ପରେ ହିନ୍ଦୋଳର ଅନ୍ୟାନ୍ୟ ଅଞ୍ଚଳରେ ଗଢି ଉଠିଲା ମହାବିଦ୍ୟାଳୟ ମାନ । ରାସୋଳରେ ମହିଳା ମହାବିଦ୍ୟାଳୟ, ପୁରୁଣାକୋଟ ମହାବିଦ୍ୟାଳୟ, ହିନ୍ଦୋଳ ଗଡ଼ଠାରେ ଆଞ୍ଚଳିକ ମହାବିଦ୍ୟାଳୟ । ଯାହାହେଉ ହିନ୍ଦୋଳରେ ଶିକ୍ଷାର ବିକାଶରେ ଖଜୁରିଆ କଟାର ମହତ୍ୱପୂର୍ଣ୍ଣ ଭୂମିକା ରହିଛି ଏଥିରେ ଦ୍ୱିମତ ନାହିଁ ।

'ଦେଇଥିଲେ ପାଇ, ବୁଣିଥିଲେ ଦାଇ' ଏହି ନ୍ୟାୟ ପ୍ରତିଫଳନ ହୋଇଥିଲା ରଙ୍ଗାଗୋଳ ଗ୍ରାମରେ । ଛୋଟ ପିଲାମାନଙ୍କୁ ଖଜୁରିଆ କଟା ମ.ଇ. ସ୍କୁଲକୁ ପାଠ ପଢ଼ିବାକୁ ଆସବା ପାଇଁ ଅସୁବିଧା ହେବାରୁ ରଙ୍ଗାଗୋଳ ଗ୍ରାମବାସୀ ଚାହିଁଲେ ଗୋଟିଏ ମ.ଇ. ସ୍କୁଲ ପ୍ରତିଷ୍ଠା କରିବା ପାଇଁ । ଯେହେତୁ ରଙ୍ଗଗୋଳ ଗ୍ରାମ ନାମରେ ଗୋଟିଏ ମି.ଇ ସ୍କୁଲ ସରକାରୀ ଖାତାରେ ରହି ଅଛି; ତେଣୁ ଅନ୍ୟ ଗୋଟିଏ ସ୍କୁଲ ପାଇଁ ସରକାର ଅନୁମତି ଦେଲେ ନାହିଁ ।

ପ୍ରାୟ ୧୯୯୦ ମସିହା କଥା । ଢେଙ୍କନାଳ ଜିଲ୍ଲାର Inspector of Schools ଥିଲେ ରମେଶ ଚନ୍ଦ୍ର ପ୍ରଧାନ । Asst. Inspector of Schools ରେ ଥାଆନ୍ତି ଗିରୀଶ ଚନ୍ଦ୍ର ବିଶ୍ୱାଳ (ଭୂତପୂର୍ବ ପ୍ରଧାନ ଶିକ୍ଷକ ଖଜୁରିଆ କଟା ହାଇସ୍କୁଲ) । ଶ୍ୱଶୁର ଘର ରଙ୍ଗାଗୋଳ । ରମେଶ ବାବୁ ଗିରିଶ ବାବୁଙ୍କୁ କହିଲେ ସରକାରଙ୍କ ତରଫରୁ ଢେଙ୍କାନାଳ ଜିଲ୍ଲା ପାଇଁ ଗୋଟିଏ U.G. M.E School ଆସିଛି । ଆପଣ 'ବାମ ଡୋଳିଆ' ଗାଁକୁ ଯାଇ ସେଠିକାର ପରିବେଶ U.G. M.E School ପାଇଁ ଦେଖନ୍ତୁ ଏବଂ ମୋତେ ରିପୋର୍ଟ ଦିଅନ୍ତୁ । ତେଣୁ Asst. Inspector of Schools ଭାବେ ଗିରୀଶ ବାବୁ ବାମ ଡୋଳିଆ ଗାଁ କୁ ଯାଇଥିଲେ । ଏହା କାମାକ୍ଷାନଗର Sub-Division ର ଗୋଟିଏ ଆଦିବାସୀ ଅଣପନ୍ତରିଆ ଗାଁ । U.P. School ର ଛାତ୍ର ଛାତ୍ରୀ ସଂଖ୍ୟା ଖୁବ୍ କମ୍ । ଘର ମଧ୍ୟ ନାହିଁ । ସେଠାକୁ ଗମନା ଗମନର ମଧ୍ୟ ସୁବିଧା ନାହିଁ । ମୋଟା ମୋଟି ଉପରେ ଏହି ଗାଁ U.G. M.E School ପାଇଁ ଅନୁପଯୁକ୍ତ ବୋଲି ତାଙ୍କ ରିପୋର୍ଟରେ ଜଣାଇ ଦେବାରୁ ଗାଁ ଖୋଜା ପଡ଼ିଲା ।

ରମେଶ ବାବୁ କହିଲେ, ସରକାରଙ୍କୁ ଜଣାଇବା ପାଇଁ ଆମ ପାଖରେ ଆଉ ପାଞ୍ଚ ଦିନ ସମୟ ରହିଲା । ଆପଣ ଆଉ ଗୋଟିଏ ଗାଁ ମନୋନିତ କରି କୁହନ୍ତୁ । ଗିରିଶ ବାବୁ ହଠାତ୍ କହିଲେ, ମନୋନିତ କ'ଣ କରିବା ଆଜ୍ଞା, ହିନ୍ଦୋଳର ରଙ୍ଗାଗୋଳ ଗ୍ରାମରେ ଏହି ସ୍କୁଲଟି କରାଯାଉ । ସେଠାରେ ସମସ୍ତ ପ୍ରକାର ସୁବିଧା ରହିଅଛି । ଗମନା ଗମନର ସୁବିଧା ମଧ୍ୟ ରହିଅଛି । ଛାତ୍ର ଛାତ୍ରୀ ସଂଖ୍ୟା ମଧ୍ୟ ଆଶାନୁରୂପକ ହେବେ ବୋଲି ଗିରିଶ ବାବୁ ତାଙ୍କର ମନ୍ତବ୍ୟ ଦେଲେ । ତା ପରଦିନ Inspector of Schools ଗିରିଶ ବାବୁଙ୍କୁ ଧରି ରଙ୍ଗାଗୋଳ ସ୍କୁଲ ଅନୁଧାନ କରିବା ନିମନ୍ତେ ଗଲେ । ସେଠାରେ ପହଞ୍ଚି ସମସ୍ତ ତଥ୍ୟ ସଂଗ୍ରହ କରି ଖଜୁରିଆ କଟା ମ.ଇ ସ୍କୁଲକୁ ଆସିଲେ । ସେଠାରେ ସମସ୍ତ ତଥ୍ୟର ସତ୍ୟତା ପାଇଲା ପରେ ଖୁସି ହେଲେ । ତାଙ୍କର ମଧ୍ୟ ହୃଦ୍‌ବୋଧ ହେଲା । ରଙ୍ଗାଗୋଳର ମ.ଇ ସ୍କୁଲ

ଟିଏ ହେବା ଉଚିତ୍ । ତେଣୁ ସେ ଜିଲ୍ଲା ପାଳଙ୍କୁ ରଞ୍ଜାଗୋଳରେ U.G. M.E School ହେବା ପାଇଁ ସୁପାରିଷ କଲେ ଏବଂ ଜିଲ୍ଲାପାଳ ସେହି ସୁପାରିଷ ଉପରେ ଅନୁମତି ପ୍ରଦାନ କଲେ । ରଞ୍ଜାଗୋଳରେ U.G. M.E School ହେଲା ଏବଂ ରଞ୍ଜାଗୋଳ ଗ୍ରାମ ତାର ପୂର୍ବ ସ୍ମୃତି ଫେରି ପାଇଲା ।

ଏହାଥିଲା ଖଜୁରିଆକଟା ତଥା ହିନ୍ଦୋଳର ଐତିହାସିକ ପୃଷ୍ଠଭୂମି ଏବଂ ହିନ୍ଦୋଳରେ ଶିକ୍ଷା ବିସ୍ତାର ର ଇତିବୃତ ।

ଦୀର୍ଘ ୬୫ ବର୍ଷ ସ୍ୱାଧୀନତା ପରେ ଆମେ ଯଦି ଓଡ଼ିଶାର ୨୬ ଗୋଟି ଗଡ଼ଜାତକୁ ଲକ୍ଷ କରିବା ତାହାହେଲେ ଆମେ ସେପରି ଆଶାନୁରୂପକ ଉନ୍ନତି ଲକ୍ଷକରି ପାରିବା ନାହିଁ । ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଆମ ଗଡ଼ଜାତ ଗୁଡ଼ିକ ବହୁତ ନଗନ୍ୟ । କୃଷି, ଗମନା ଗମନ, ଶିକ୍ଷା ଏବଂ ଅର୍ଥନୀତି ଇତ୍ୟାଦିରେ ଆଶାନୁରୂପକ ଫଳବତୀ ଆମେ ହୋଇ ପାରି ନାହାନ୍ତି । ଦେଶ ମାତୃକାର ସୁଯୋଗ୍ୟ ସନ୍ତାନ ଯେ ଗଡ଼ଜାତ ମାନଙ୍କରେ ନାହାନ୍ତି ତା'ହା ନୁହେଁ । ଅଛନ୍ତି ନିଷ୍ଚୟ । କିନ୍ତୁ ସେମାନଙ୍କର ପ୍ରତିଭାର ପରିଷ୍ଫୁଟନ ହୋଇ ପାରିନାହିଁ । ଦୀପତଳ ଅନ୍ଧାର ପରି ସେମାନେ ରହିଯାଇଛନ୍ତି । ସେଥିପାଇଁ ଆମେ କାହାକୁ ବା ଦାୟୀ କରିବା ? ସେଥିପାଇଁ ଗୋଟିଏ ନିଛକ ଉଦାହରଣ ଦେବା ଉଚିତ ମନେ କରୁଅଛି ।

ହିନ୍ଦୋଳ ଗଡ଼ଜାତ । ବାଇଶ ପଲ୍ଲୀର ବଣ ପାହାଡ଼ ଘେରା ଛୋଟ ଗାଁ ଟିଏ 'ବାଲିକିଆରୀ' । ସେ ଗାଁକୁ ଗମନା ଗମନର ସେମିତି ସୁବିଧା ନଥାଏ । ଗାଁଟିର ପ୍ରାୟ ସମସ୍ତେ କୃଷିଜୀବୀ । ଗୋବର ଗଦାରେ ପଦ୍ମ ଫୁଟିଲା ପରି ଏଠାରୁ ପ୍ରସ୍ଫୁଟିତ ହୋଇଥିଲେ ଜଣେ ମହାନ୍ ପ୍ରତିଭା । ସେ ଏକ ଧାରାରେ ଥିଲେ ଜଣେ କବି, ସାହିତ୍ୟିକ, ଲେଖକ ଏବଂ ପୁରାଣ କାର ଇତ୍ୟାଦି । ତାଙ୍କର ସାହିତ୍ୟ କୃତୀ ଏବଂ କବି ପ୍ରତିଭା ତତ୍କାଳୀନ ହିନ୍ଦୋଳ, ନରସିଂହପୁର, ବଡ଼ମ୍ବା ଏବଂ ଆଠଗଡ଼ ରାଜ ପରିବାର ବର୍ଗଙ୍କୁ ସ୍ତମ୍ଭିଭୂତ କରିଦେଇ ଥିଲା । ଫଳରେ ହିନ୍ଦୋଳ ରାଜା ତାଙ୍କୁ ରାଜ କବିର ମାନ୍ୟତା ପ୍ରଦାନ କରିବା ସଙ୍ଗେ ସଙ୍ଗେ ତାଙ୍କୁ 'କବିରତ୍ନ' ଉପାଧିରେ ଭୂଷିତ କରିଥିଲେ । ସେହି କାବ୍ୟ ପୁରୁଷ ହେଉଛନ୍ତି ସ୍ୱର୍ଗତ ଭିକାରୀ ଚରଣ ଦାସ । ତାଙ୍କର ସମଗ୍ର ଜୀବନ ସେ ବାଣୀ ଆରାଧନାରେ ବିତାଇ ଦେଇଥିଲେ । ତାଙ୍କ ଜୀବନକାଳ ମଧ୍ୟରେ ସେ ୧୨୮ ଖଣ୍ଡ ବହି ଲେଖିଛନ୍ତି । ସେଥି ମଧ୍ୟରୁ କିଛି ପ୍ରକାଶିତ ଏବଂ ଅନ୍ୟ କିଛି ଅପ୍ରକାଶିତ ଭାବରେ ରହିଅଛି । ପୁସ୍ତକ ଗୁଡ଼ିକ ମଧ୍ୟରେ ମୁଖ୍ୟ ପୁସ୍ତକ ଗୁଡ଼ିକ ହେଲା : ୧- ଶକ୍ରାବତୀଶ ବଳାସ, ୨-ଜାତକ ଚନ୍ଦ୍ରିକା, ୩-ଜାତକ ଅଳଙ୍କାର,

୪- ଷୋଳ ପଟଳ, ୫- ଚୌପଦୀ ରତ୍ନମାଳା, ୬-ଗାୟକ ଦର୍ପଚୂର୍ଣ୍ଣ, ୭-ବାଦ୍ୟ ରତ୍ନାବଳୀ, ୮- କାବ୍ୟ ରତ୍ନାବଳୀ, ୯-ଗାୟକ ରତ୍ନ ଭଣ୍ଡାର, ୧୦-ଶ୍ରୀମଦ୍ ଭଗବତ ଗୀତା ନବାକ୍ଷରି ଅନୁବାଦ ଇତ୍ୟାଦି ୧୨୮ ଖଣ୍ଡ ବହି ଲେଖିଥିଲେ । ସେଥିରୁ ଅଳ୍ପ କିଛି ପ୍ରକାଶିତ ହୋଇଅଛି ଏବଂ ଅନ୍ୟ ଗୁଡ଼ିକ ପାଣ୍ଡୁଲିପି ଭାବରେ ରହିଅଛି ।

ତାଙ୍କର ଅଧିକାଂଶ ରଚନାରେ ଭଂଜୀୟ ଶୈଳୀ ପ୍ରତିଫଳିତ ହୋଇଥାଏ । ତହିଁରେ ବିଭିନ୍ନ ରାଗ-ରାଗିଣୀ ପ୍ରୟୋଗ, ଭାଷା ବିନ୍ୟାସ ଚାତୁରୀ, ଅଳଙ୍କାର ବିନ୍ୟାସ କୌଶଳ ଓଡ଼ିଶାର ପୁର ପଲ୍ଲୀରେ ଥିବା ଅଗଣିତ ପାଲା ଗାୟକ ମାନଙ୍କୁ ଖୋରାକ ଯୋଗାଇବା ସଙ୍ଗେ ସଙ୍ଗେ ତାଙ୍କ ସାହିତ୍ୟ ସମ୍ଭାର ଓଡ଼ିଶାର ବାଣୀ ଭଣ୍ଡାରକୁ ଅତୁଳନୀୟ ଦାନରୂପେ ବିବେଚିତ କରାଯାଇପାରେ ।

କବି ତାଙ୍କର ପୁସ୍ତକ 'କାବ୍ୟ ରତ୍ନାବଳୀ' ଲାଗି ୧୯୫୪ ମସିହାରେ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁ ଏବଂ ୧୯୬୪ ମସିହାରେ ପ୍ରଧାନମନ୍ତ୍ରୀ ଲାଲବାହାଦୁର ଶାସ୍ତ୍ରୀଙ୍କ ଠାରୁ ପ୍ରଶଂସା ପତ୍ର ପାଇଥିଲେ । ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୫୭ ମସିହା ରେ ଗଠିତ ହେବାର ତିନି ବର୍ଷ ପରେ ୧୯୬୧ ମସିହାରେ ଢେଙ୍କାନାଳ ଜିଲ୍ଲାର ପ୍ରଥମ କବି ଭାବରେ କବିରତ୍ନ ଭିକାରୀ ଚରଣ ଦାସ ତାଙ୍କ ରଚିତ 'ଶକ୍ରାବତୀଶ ବିଳାସ' କାବ୍ୟ ନିମନ୍ତେ ଓଡ଼ିଶା ସାହିତ୍ୟ ଏକାଡେମୀ ଉତ୍କଳ ଲେଖକ ସମ୍ମେଳନରେ ତାଙ୍କୁ ପୁରସ୍କୃତ କରିଥିଲେ । ଅର୍ଥାତ୍ ଓଡ଼ିଶା ସାହିତ୍ୟ ଏକାଡେମୀ ଗଠନ ହେବା ପୂର୍ବରୁ ସେ ଭାରତର ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ପୁରସ୍କୃତ ହୋଇ ପାରିଥିଲେ । ତେଣୁ ତାଙ୍କ ପ୍ରତିଭାକୁ କଳନା କରିବା ମୋ ପକ୍ଷରେ ସମୀଚୀନ ନୁହେଁ । ଯାହାହେଉ ବାଲିକିଆରୀ ଗ୍ରାମର ଯୁବ ଗୋଷ୍ଠୀ କବିରତ୍ନ ଭିକାରୀ ଚରଣ ଦାସଙ୍କର ରଚନା ଗୁଡ଼ିକୁ ନେଇ ଏକ ଗ୍ରନ୍ଥାବଳୀ ପ୍ରକାଶିତ କରିବାକୁ ଯାଉଛନ୍ତି । ଏହା ଆନନ୍ଦର ବିଷୟ ।

ହିନ୍ଦୋଳ ଗଡ଼ଜାତରେ ଏହିପରି ଏକ ଅନନ୍ୟ ଶତାୟୁ ପ୍ରତିଭା (ଜନ୍ମ ୧୮୫୮ ମସିହା ମୃତ୍ୟୁ ୧୯୬୪ ମସିହା) ଇତିହାସର ସମାଧି ତଳେ ରହି ଲୋକ ଲୋଚନରୁ ବାଦ ପଡ଼ି ଯାଇଛନ୍ତି । ଏହିପରି ହିନ୍ଦୋଳ କାହିଁକି ଅନ୍ୟାନ୍ୟ ଗଡ଼ଜାତ ଗୁଡ଼ିକର ଅନେକ ମହାନ ପ୍ରତିଭା ଲୋକ ଲୋଚନର ଅନ୍ତରାଳରେ ରହିଯାଇଛନ୍ତି । ଆଜି କେହି ସେମାନଙ୍କ ବିଷୟରେ ଜାଣିବାକୁ ହେଲେ ତଥ୍ୟ ସଂଗ୍ରହ କରିବା ଏବଂ ଲୋକ ଲୋଚନକୁ ଆଣିବା ଏକ ବ୍ୟୟ ବହୁଳ ବ୍ୟାପାର । ଯାହା ହେଉ ଗଡ଼ଜାତ ମୂଳକରେ ଏହା ଜାରି ରହିବା ଉଚିତ । ଫଳରେ

ଆମର ହତ ଗୌରବ ଏବଂ ଗତ ଗୌରବ ବିଷୟରେ ଜାଣିପାରିବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କ ମନରେ ଜାତୀୟତା ଭାବ ଉଦ୍ରେକ ହୋଇ ପାରନ୍ତା ।

ଉପସଂହାରରେ ଏତିକି କୁହାଯାଇପାରେ ଯେ, ସ୍ୱାଧୀନତା ପାଇବାର ଶତାବ୍ଦୀ ଶତାବ୍ଦୀ ବିତି ଯାଇପାରେ କିନ୍ତୁ ସ୍ୱାଧୀନତା ସଂଗ୍ରାମର ଇତିହାସ ଜାଣିବା ହେଉଛି ପ୍ରତ୍ୟେକ ଭାରତୀୟ ନାଗରିକ ମାନଙ୍କର ପରମ ଏବଂ ପବିତ୍ର କର୍ତ୍ତବ୍ୟ ।

# ସହାୟକ ଗ୍ରନ୍ଥ ସୂଚୀ

| | | |
|---|---|---|
| ୧) ଭାରତ ଇତିହାସ | - | ଜଗନ୍ନାଥ ପଟ୍ଟନାୟକ । ନିହାର ରଂଜନ ପଟ୍ଟନାୟକ । |
| ୨) ଢେଙ୍କାନାଳ ଇତିହାସ | - | ୰ ରାମଚନ୍ଦ୍ର ନନ୍ଦ ଭକ୍ତି ବିନୋଦ । |
| ୩) ଶ୍ରୀ ଅରବିନ୍ଦ | - | ଶ୍ରୀ ଲଳିତ ମୋହନ ଘୋଷ । |
| ୪) ମୁକ୍ତି ସଂଗ୍ରାମର ଅଜ୍ଞାତ ଆଦିବାସୀ | - | ବାଇଡ଼ଙ୍କ ଦାସ । |
| ୫) ଅମର ଶହୀଦ ବାଜିରାଉତ | - | ଶ୍ରୀଯୁକ୍ତ ସୁରେନ୍ଦ୍ର ନାଥ ମିଶ୍ର । |
| ୬) ଆତ୍ମଜୀବନୀ (ପାଣ୍ଡୁଲିପି) | - | ଶ୍ରୀଯୁକ୍ତ ବୈଷ୍ଣବ ଚରଣ ପଟ୍ଟନାୟକ । |
| ୭) ସଂସ୍କୃତି ଓ ସର୍ବୋଦୟ | - | ଶ୍ରୀଯୁକ୍ତ ଧନେଶ୍ୱର ସାହୁ । |
| ୮) ଗଙ୍ଗାଧର ମେହେର ଗ୍ରନ୍ଥାବଳୀର 'ଭୂମିକା' | - | ଡ଼କ୍ଟର ନଗେନ୍ଦ୍ର ନାଥ ପ୍ରଧାନ ପ୍ରକାଶକ ଧର୍ମଗ୍ରନ୍ଥ ଷ୍ଟୋର । |

୯) ସମାଜ ଦ୍ୱାରା ପ୍ରକାଶିତ ଗୋପବନ୍ଧୁଙ୍କର ଶ୍ରାଦ୍ଧ ବାର୍ଷିକୀ ବିଭିର୍ଣ୍ଣ ସଂଖ୍ୟାରୁ ସଂଗୃହୀତ ଘଟଣାବଳୀ ।
୧୦) ବିଭିନ୍ନ ସମୟରେ ସମାଜରେ ପ୍ରକାଶିତ ପ୍ରବନ୍ଧରୁ ସଂଗୃହୀତ ଘଟଣା ସମୂହ ।

**ଇତିହାସ ସଂଗ୍ରହ କରିବାରେ ଯେଉଁ ମହନୀୟ ବ୍ୟକ୍ତିମାନଙ୍କର କରୁଣା ଥିଲା ସେମାନେ ହେଲେ:-**

| | | |
|---|---|---|
| ଶ୍ରୀଯୁକ୍ତ ଦିବାକର ପ୍ରଧାନ | - ଅବସରପ୍ରାପ୍ତ ଶିକ୍ଷକ | - ରଂଜାଗୋଳ |
| ଶ୍ରୀଯୁକ୍ତ ଅନ୍ତର୍ଯ୍ୟାମୀ ନାଥ | - ଅବସରପ୍ରାପ୍ତ ଶିକ୍ଷକ | - ପଡ଼ା |
| ଶ୍ରୀଯୁକ୍ତ ଶ୍ରୀନିବାସ ବିଶ୍ୱାଳ | - ଅବସରପ୍ରାପ୍ତ ଶିକ୍ଷକ | - ହରିପୁର |
| ଶ୍ରୀଯୁକ୍ତ ଶ୍ରୀନିବାସ ପତି | - ଅବସରପ୍ରାପ୍ତ ଶିକ୍ଷକ | - ପଞ୍ଚପଡ଼ା |
| ଶ୍ରୀଯୁକ୍ତ ଗିରିଶ ଚନ୍ଦ୍ର ବିଶ୍ୱାଳ | - ଅବସରପ୍ରାପ୍ତ ଶିକ୍ଷକ | - କାମାକ୍ଷା ନଗର |
| ଶ୍ରୀଯୁକ୍ତ ରାଜକିଶୋର ପତି | - ଅବସରପ୍ରାପ୍ତ ଶିକ୍ଷକ | - ଚିତଲପୁର |
| ଶ୍ରୀମତୀ ସସ୍ମିତା ପଣ୍ଡା | - ଅଧ୍ୟାପିକା | - ମୋହନ ସୁବୁଦ୍ଧି |
| କଲେଜ ବଡ଼ମ୍ବା | | |
| ଶ୍ରୀଯୁକ୍ତ ସହଦେବ ପାଳ | - ଜରଡ଼ା | |
| ଶ୍ରୀଯୁକ୍ତ ଭାବଗ୍ରାହୀ ପାଳ | - ଜରଡ଼ା | |
| ଶ୍ରୀଯୁକ୍ତ ମିହିର କୁମାର ପତି | - ପଞ୍ଚପଡ଼ା | |
| ଶ୍ରୀଯୁକ୍ତ ପ୍ରାଣବନ୍ଧୁ ସର | - ପାଳଚକଡ଼ା | |
| ସତ୍ୟଭାମା ପାଳ | - କଳିଙ୍ଗା | |
| ଶ୍ରୀଯୁକ୍ତ ରବିନାରାୟଣ ମିଶ୍ର | - କଟକ | |
| ଶ୍ରୀଯୁକ୍ତ ଗୌରାଙ୍ଗ ଚରଣ ପତି | - ଚିତଲପୁର | |
| ଶ୍ରୀଯୁକ୍ତ ଗଗନ ବିହାରୀ ନନ୍ଦ | - ଢେଙ୍କାନାଳ | |
| ଶ୍ରୀଯୁକ୍ତ ସନ୍ତୋଷ କୁମାର ପଣ୍ଡା | - ଢେଙ୍କାନାଳ | |
| ଶ୍ରୀଯୁକ୍ତ ଜଗବନ୍ଧୁ ପାଢୀ | - ଅବସର ପ୍ରାପ୍ତ ଶିକ୍ଷକ | |
| ଚନ୍ଦ୍ରଶେଖର ବେହେରା | - ଜିଲ୍ଲା ସ୍କୁଲ ସମ୍ବଲପୁର | |



## କଲ୍ୟାଣମୟୀ ମା',

ପିତାମାତାଙ୍କର କଲ୍ୟାଣ ବିନା ଜୀବନରେ କିଛି ସମ୍ଭବ ହୋଇନଥାଏ। ପିତାମାତାଙ୍କର ସେବା ଏବଂ ସେମାନଙ୍କର ଆଶିର୍ବାଦ କାମନା କରିବା ପୁତ୍ରର ପରମ ଏବଂ ପବିତ୍ର କର୍ତ୍ତବ୍ୟ। ଭାରତୀୟ ସଂସ୍କୃତିରେ ଏହାର ପରଂପରା କେଉଁ ଅନାଦି କାଳରୁ ବିଦ୍ୟମାନ। ଆର୍ଯ୍ୟ ସଭ୍ୟତାରେ ଏହାର ଉଦାହରଣ ଅନାବଶ୍ୟକ। ପ୍ରଭୁ ଶ୍ରୀ ରାମଚନ୍ଦ୍ରଙ୍କ ଠାରୁ ଆରମ୍ଭ କରି ଶ୍ରବଣ କୁମାର ପର୍ଯ୍ୟନ୍ତ ...............

ଯଦିଓ ମୁଁ ସାହିତ୍ୟିକ ନୁହେଁ, ମୁଁ ଟିକିଏ ସାହିତ୍ୟାନୁରାଗୀ। ଏହା ମୋର ପ୍ରଥମ ପୁସ୍ତକ। ନିଜ ଜନ୍ମମାଟି ଠାରୁ ଆରମ୍ଭ କରି ସଂସଦ ଭବନ ପର୍ଯ୍ୟନ୍ତ ଦେଶପ୍ରେମ, ଭାଷାପ୍ରେମ, ଜାତି ପ୍ରେମକୁ ନେଇ ଉକ୍ତ ପୁସ୍ତକର ବିଷୟ ବସ୍ତୁକୁ ସଂଗ୍ରହ କରି ଉପସ୍ଥାପନା କରିଅଛି।

ଦେଶ ଜାତି ଉଦ୍ଦେଶ୍ୟରେ ଉକ୍ତ ପୁସ୍ତକଟିକୁ ଉତ୍ସର୍ଗ କରିବା ସଙ୍ଗେ ସଙ୍ଗେ ମୋର ସ୍ୱର୍ଗତ ପିତାମାତା ମଙ୍ଗୁଲୁ ବଡ଼ପଣ୍ଡା ଏବଂ ତୁଳସୀଙ୍କର କର କମଳରେ ଉତ୍ସର୍ଗ କଲି।

ତ୍ରୁଟିଥିଲେ କ୍ଷମା ଦେବେ

॥ ଇତି ॥

ଲେଖକ

ପଲ୍ଲୀ ଜୀବନରେ ଜଣେ ସ୍ୱାଧୀନତା ସଂଗ୍ରାମୀଙ୍କର ଦେଶପ୍ରୀତି, ସଂଗ୍ରାମ ପାଇଁ ଦୃଢ଼ୋକ୍ତି ଲେଖକଙ୍କର କଲମକୁ ଶାଣିତ କରି ପାରି ଅଛି ।

ରାଜା ନବକିଶୋର ସିଂହ ଏକ ସଭାରେ ଗଙ୍ଗାଧର ପାଣିଗ୍ରାହୀଙ୍କୁ ପଚାରି ଥିଲେ । ଭାରତ ସ୍ୱାଧୀନତା ପରେ ଆମ ରାଜ୍ୟ ବି ସ୍ୱାଧୀନ ହେବ । ଏବେ ନିରୀହ ଲୋକଙ୍କୁ ନେଇ ଆନ୍ଦୋଳନ କରିବାର ଯଥାର୍ଥତା ଅଛିକି ? ରାଜାଙ୍କ ପ୍ରଶ୍ନର ଉତ୍ତର ଦେଇ ସେ କହିଥିଲେ, ଭାରତର ସ୍ୱାଧୀନତା ପରେ ସ୍ୱାଧୀନ ଦେଶର ନାଗରିକ ଭାବେ ଆପଣ କ'ଣ ଗର୍ବ କରିବେ ନାହିଁକି ? ଜଣେ ରାଜ୍ୟର ରାଜା ଭାବେ ଆମେ ଆପଣଙ୍କୁ ସମ୍ମାନ ଦେଇ ପାରୁ, କିନ୍ତୁ ସ୍ୱରାଜ ହାସଲ ନିମନ୍ତେ X X X ସମସ୍ତଙ୍କୁ ସ୍ୱାଧୀନତାର ଚେତନା ଦେବୁ । ଗାନ୍ଧିଜୀଙ୍କର ସ୍ୱପ୍ନକୁ ସାକାର କରିବୁ । ସେଥିପାଇଁ ତ ପୂଣ୍ୟାତ୍ମା ଗୋପବନ୍ଧୁ କାରା କବିତାରେ ଲେଖିଥିଲେ :-

"କେହି ରାଜା ଜଣେ ବିଚାରେ କି କ୍ଷଣେ
ପରଜାଏ ମୋର ପୁଅ ସମାନ,
ପରଜାଙ୍କ ହିତ ମୋ' ଜୀବନ ବ୍ରତ
ପରଜା -ସୁଖେ ମୋ' ସୁଖ-ସମ୍ମାନ ।"